# ଘ

ରାଗ—କାମୋଦୀ

ଘେନାଇ ଅମ୍ଭେ ଯେତେ କହିଲୁ ରେ, ଘେନିଲୁ ନାହିଁ ବାଳା ପହିଲୁ ରେ,
ଘୃତଦଧିଙ୍କୁ ଶିଖି-ଶିଖା ପାଖରେ ରଖି ଶିରୀଷଦେହା ଏହା ସହିଲୁ ରେ । ପଦ ।
ଘସ୍ରନାଥନନ୍ଦନା ଅନାଇଣିକି ମନା କରୁଁ ଯେ ଥାଉଁ ହଠି ଗ୍ରହିଲୁ ରେ,
ଘଟୀସରିକି କରେ ନାହିଁ କି ବିବେକରେ ମହାର୍ଣ୍ଣବରେ ଅବଗାହିଲୁ ରେ ॥୧॥
ଘୋଟି କିତବମୂଳ ଘୋର ଘୋର ଜାଙ୍ଗଳ ଗରଳତୁଲେ ତାହା ପିଇଲୁ ରେ,
ଘୁମାଇବାର ସମ୍ଭବିଲା ନାହିଁ କି ଅମ୍ଭ ସୁଯୋଗୁଁ ସିନା ବଞ୍ଚିଥିଲୁ ରେ ॥୨॥
ଘେନି ଘେନାଇ ଯାଇ କହିବା ସମଜାଇ ଘଟିଲେ ଅମ୍ଭେ ଏକା ଜୀଇଲୁ ରେ,
ଘଟନା ବିରହରେ ଅବଶ୍ୟ ତ କହରେ ତୋ ଘେନି ଆତ୍ମଘାତ ହୋଇଲୁ ରେ ॥
ଘୋଳାରେ ପଛେ ମରୁ ଅଜୁ ତୋ ହୁକୁମରୁ ନିକୁଞ୍ଜ ଦଉଡ଼କୁ ରହିଲୁ ରେ,
ଘାଣ୍ଟି ହେଉଛୁ ମାନ ଅମାଳଶତପତ୍ରନେତ୍ରା ଯା ଅମ୍ଭ ବଶ ହୋହିଲୁ ରେ ॥
ଘନେ ଚପଳାଲୀଳା ଗ୍ରହି ଘନକୁନ୍ତଳା ତୁ କି ଏ ଅଭିଳାଷ ବହିଲୁ ରେ,
ଘାରି ଦେଲୁକି ରସେ ଅଷ୍ଟଦୁର୍ଗେଶ ଭାଷେ ଅବଶ୍ୟ ମୋହନକୁ ମୋହିଲୁ ରେ ॥

---

(ଘ) ଜ୍ଞାନରେ ବା ଅଜ୍ଞାନରେ ଯେଉଁ ଅପରାଧ କରିଅଛି, ପୁନଃପୁନଃ ସ୍ମରଣ କରାଇବାରୁ ତାହା ବାଣ ପରି ମୋ ଶରୀରରେ ପ୍ରବେଶ କରି ତାହାକୁ ଶୀର୍ଣ୍ଣ କରିଦେଲାଣି, ତା ଉପରେ ପୁଣି କନ୍ଦର୍ପ ତୀକ୍ଷ୍ଣ ଶର ମାରି ମୋର ସବୁ ଶକ୍ତିକୁ ଅପହରଣ କରି ସାରିଅଛି । ଏପରି ଅବସ୍ଥାରେ ତୁ ଆଉ କାହିଁକି ମୋତେ ଏପରି କଦର୍ଥନା କରୁଛୁ ? ରାଧାଙ୍କର ଧୈର୍ଯ୍ୟ ପ୍ରାୟଶଃ ନଷ୍ଟ ହୋଇ ଯାଇଥିଲା । ସେ ଏହିପରି କହି ନିବୃତ୍ତ ହୁଅନ୍ତେ ଦୂତୀ ହୃଦୟରେ ଅଭିପ୍ରାୟ ରଖି ତାଙ୍କୁ କହୁଅଛନ୍ତି—"ଘେନାଇ ଅମ୍ଭେ ଯେତେ" ଇତ୍ୟାଦି ।

---

(ଘ) ଘେନାଇ—ବୁଝାଇ; ଘେନିଲୁ ନାହିଁ—ଗ୍ରହଣ କଲୁ ନାହିଁ; ପହିଲୁ—ପ୍ରଥମରୁ; ଘୃତଦଧି—ଘିଅମାଠିଆ; ଶିଖିଶିଖା—ଅଗ୍ନିଶିଖା; ଶିରୀଷଦେହା—ଶିରୀଷ ଫୁଲ ପରି ଦେହ ଯାହାର, କୋମଳାଙ୍ଗୀ; ଘସ୍ରନାଥନନ୍ଦନା—ଘସ୍ରନାଥ ଅର୍ଥାତ୍ ଦିନନାଥଙ୍କର (ସୂର୍ଯ୍ୟଙ୍କର) ଝିଅ ଯମୁନା; ଅନାଇଣି—ଅନାଇବା, ଚାହିଁବା; ହଠି—ହଠକରି, ଜିଦଧରି; ଘଟୀସରିକି—ମାଠିଆଟିଏ ମଧ୍ୟ; ବିବେକ—ବିଚାର ବୁଦ୍ଧି; ମହାର୍ଣ୍ଣବ—ମହାସମୁଦ୍ର; କିତବ—ଧୂରୁସ୍ତ; ଘୋର—ଭୟଙ୍କର; ଜାଙ୍ଗଳ—ଏକ ପ୍ରକାର ତୀବ୍ର ବିଷଯୁକ୍ତ ଜଙ୍ଗଲ ଗଛ (ଜଙ୍ଗଲିଆ); ଗରଳତୁଲେ—ବିଷ ସାଙ୍ଗରେ; ଘୋଳା—ଗୋଡ଼ବନ୍ଧା; ନିକୁଞ୍ଜ—କୁଞ୍ଜବନ; ଘାଣ୍ଟି ହେଉଛୁଁ—କଷ୍ଟ ପାଉଅଛୁଁ; ଅମାଳଶତପତ୍ରନେତ୍ରା (ଅମାଳ, ସମ୍ପୂର୍ଣ୍ଣରୂପେ ମାଳ)

ଶତପତ୍ର—ପଦ୍ମ ଅର୍ଥାତ୍ ନୀଳପଦ୍ମ ପରି ନେତ୍ର ଯାହାର )—ହେ ନୀଳେନ୍ଦୀବର-ନେତ୍ରା; ଚପଳାଖେଳା—ବିଜୁଳି ଖେଳିବା; ଧାରିଦେଲୁ—ଅଭିଭୂତ କରିଦେଲୁ; ଘନକୁନ୍ତଳା—ଘନ ଅର୍ଥାତ୍ ମେଘ ପରି ଗାଢ଼ କୃଷ୍ଣବର୍ଣ୍ଣ କେଶ ଯାହାର ।

ହେ ସଖି ! ଅମ୍ଭେ ତୋତେ ବୁଝାଇ କହିଲୁ ତୁ ତାହା ଅବୋଧ ମାନିଲୁ ନାହିଁ, ଛିଅମାଠିଅଟାକୁ କଅଁଧାସ ପାଖରେ ରଖିଦେଲୁ । ଅର୍ଥାତ୍ ତୁ ଅତି କୋମଳାଙ୍ଗୀ, ତୋ ଦେହ ଛିଅମାଠିଅ ପରି, ଶ୍ରୀକୃଷ୍ଣଙ୍କ ପ୍ରତି ଅସକ୍ତ ହେବା କଅଁ ଧାସପରି, ଛିଅମାଠିଅକୁ କଅଁଧାସ ପାଖରେ ରଖିଲେ ତାହା ଯେପରି ନିଷ୍ଟେ ତରଳି ଯାଏ ତୁ ସେହିପରି ଶ୍ରୀକୃଷ୍ଣଙ୍କ ପ୍ରତି ଅସକ୍ତ ହେଲେ ତାଙ୍କ ଚିନ୍ତାରେ ନିଷ୍ଟେ ବ୍ୟାକୁଳ ହେବୁ । ୨ । ଯମୁନା ଅଡ଼କୁ ଚାହିଁବାକୁ ତୋତେ ମନା କରିଥିଲୁଁ, ଅଥଚ ତୁ ଆମ କଥା ନ ମାନି ସେ ଅଡ଼କୁ ଜିଦରେ ହଠକରି ଚାହିଁଲୁ । ଲୋକେ ଜାହାଜ ବା ସେହିପରି ଅନ୍ୟ କୌଣସି ପଦାର୍ଥ ଆଶ୍ରୟ କରି ସମୁଦ୍ର ପାରି ହୁଅନ୍ତି, ମାତ୍ର ତୋ ହାତରେ ମାଠିଅଟିଏ ବି ନାହିଁ, ତୁ କି ବଳରେ ମହାସାଗରରେ ବୁଡ଼ିବାକୁ ଗଲୁ ଅର୍ଥାତ୍ ତୋର ଟିକିଏ ସୁଦ୍ଧା ଧୈର୍ଯ୍ୟ ନାହିଁ, ଏପରି ଅବସ୍ଥାରେ ତୁ ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରାଗିଣୀ ହେଲୁ । ୧ । ଧୂଳିରି ମୂଳକୁ ଦୋଟି, ଲହଲଙ୍ଗଳିଆକୁ ଘୋରି ବିଷ ସାଙ୍ଗରେ ମିଶାଇ ପିଇଲୁ । ଏଭଳି ବିଷ ପିଇଲେ ଲୋକ ନିଷ୍ଟେ ମରିଯାଏ, ମାତ୍ର ତୁ ଟିକିଏ ସୁଦ୍ଧା ଘୁମାଇଲୁ ନାହିଁ । ଆମ୍ଭମାନଙ୍କ ସାହାଯ୍ୟରୁ ବର୍ତ୍ତି ଅଇଲୁ ସିନା ? ଶ୍ରୀକୃଷ୍ଣଙ୍କ ଅଡ଼କୁ ଚାହିଁବା ଦ୍ୱାରା ତୁ ଯେଉଁ ଭୟଙ୍କର ଅନ୍ୟାୟ କରିଥିଲୁ, ସେଥିରେ ନିଷ୍ଟେ ତୋର ଘୋର କ୍ଷତି ହୋଇଥାଆନ୍ତା, ମାତ୍ର ଅମ୍ଭେମାନେ ପାଖରେ ଥିବାରୁ ତୋର କିଛି ଅନିଷ୍ଟ ହେଲା ନାହିଁ ।୨। ଅମ୍ଭେମାନେ ଯାଇ ଘେନାଘେନି କରି ଶ୍ରୀକୃଷ୍ଣଙ୍କୁ କହିବୁଁ, ଯେବେ ତୋର ତାଙ୍କର ମିଳନ ଘଟିବ, ତେବେ ଅମ୍ଭେମାନେ ବଞ୍ଚିବୁଁ, ଯେବେ ନ ଘଟିବ ତେବେ ଅବଶ୍ୟ ତୋ ପାଇଁ ବିଷଖାଇ ଆତ୍ମହତ୍ୟା କରିବୁଁ । ୩। ଯାହାହେଉ, ଦଉଡ଼ି ଦଉଡ଼ି ଗୋଡ଼ବିନ୍ଧାରେ ପଡ଼ିଛେ ମରିବୁଁ, ତୋ ଆଦେଶ ଅନୁସାରେ ଆଜଠାରୁ କିଲୁଞ୍ଜିକୁ ଦଉଡ଼ିବୁଁ, ମାତ୍ର ହେ ଇନ୍ଦୀବରନେତ୍ରା ! ତୁ ଆମ୍ଭ କଥାରେ ନ ରହିବାରୁ ଅମ୍ଭେମାନେ କେବଳ ଧାଣ୍ଟି ହେଉଅଛୁଁ । ୪ । ହେ କୃଷ୍ଣକେଶା, ମେଘରେ ବିଜୁଳି ଖେଳିବା ଦେଖି ତୁ କଣ ଏ ଇଚ୍ଛା ହୃଦରେ ପୋଷିଲୁ କି ? ( ନେଳିଆ ମେଘରେ ହଳଦିଆ ରଙ୍ଗ ବିଜୁଳି ଖେଳିବା ଅତି ସୁନ୍ଦର, ଶ୍ରୀକୃଷ୍ଣଙ୍କ ବର୍ଣ୍ଣ ଗାଢ଼ ନୀଳବର୍ଣ୍ଣ ମେଘ ପରି, ତୋ ଦେହକାନ୍ତି ବିଜୁଳି ତେଜପରି । ମେଘ କୋଳରେ ବିଜୁଳି ଯେପରି ସୁନ୍ଦର ଦେଖାଯାଏ, ଶ୍ରୀକୃଷ୍ଣଙ୍କ କୋଳରେ ବସିଲେ ତୁ ସେହିପରି ସୁନ୍ଦର ଦଶିବୁ ଏହି ଇଚ୍ଛା ତୋ ମନରେ ଜାତ ହୋଇଅଛି କି ? ) ଆଠଗଡ଼ର ରାଜା କହୁଅଛନ୍ତି, ବୋଧହୁଏ ତୁ ଶ୍ରୀକୃଷ୍ଣଙ୍କୁ କି ବଚନ ରସରେ ଧାରି ଦେଇଅଛୁ, ତେଣୁ ମନେ ହୁଏ, ସେ ନିଷ୍ଟେ ତୋ ପ୍ରେମରେ ଅନୁରକ୍ତ ହେବେ । ୫ ।

(ଘ) ବନ୍ୟାମ୍ମାର୍ତ୍ତଣ୍ଡକନ୍ୟାତଟନିକଟଭୁବଃ ପ୍ରେକ୍ଷଣଂ ନୈତ ପଥ୍ୟଂ,
ଭୂୟୋଽସ୍ମାଭିଃ ପ୍ରଯୁକ୍ତା ଶ୍ରବସି ନ ଲଗିତା ତୁଚ୍ଛକୁସ୍ରାଚକସ୍ରା ।
ବୈଦ୍ୟେ ସଦ୍ୟଃ ସମୁଦ୍ୟଦ୍‌ଗଦହୃତି ଚତୁରେ ଯଦ୍ୟପେକ୍ଷାନବଦ୍ୟେ,
ଯାମଃ କାମସ୍ୟ ପୂର୍ତ୍ତୌ ଗତିରିହ ଜଗତଃ କେବଲଂ ତେଽବଲମ୍ବଃ ॥

ସ୍ୱାମୀନ୍ୟନୁଜ୍ଞାନୁଲ୍ଲଙ୍ଘନଜଙ୍ଘାଲତୈବ ମାଦୃକ୍‌ପ୍ରିୟଜନପ୍ରଣୀତ-ପ୍ରଯତ୍ନାନାମନୁପଧିକାପରଣତିଃ ପରମେଶ୍ୱରାଧୀନଂ ତର୍କ୍ୟୋଦର୍କମିତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ପ୍ରବିଶ୍ୟ ବିଜ୍ଞାପୟାମାସ ଲଳିତା ।

---

ଟୀକା—(ଘ) ମାର୍ତ୍ତଣ୍ଡକନ୍ୟାୟା ଯମୁନାୟାସ୍ତଟନିକଟଭୁବଃ କୂଲପର୍ଯ୍ୟନ୍ତର-ଜାୟମାନାୟା ବନ୍ୟା ଅରଣ୍ୟସ୍ୟ ପ୍ରେକ୍ଷଣମବଲୋକନଂ ନ ପଥ୍ୟଂ ନ ହିତକରମିତି ଅସ୍ମାଭିର୍ଭୂୟଃ ପ୍ରଯୁକ୍ତା ପୁନଃ ପୁନଃ କୃତା, ତୁଚ୍ଛା ଶୂନ୍ୟା କୁସ୍ରା ନିଦ୍ରା ଯସ୍ୟାଂ ସା ନିଦ୍ରାଶୂନ୍ୟା ଅନିନ୍ଦନୀୟା ଇତ୍ୟର୍ଥଃ, ଚକସ୍ରା ଉପଦେଶରୂପା ତବ ଶ୍ରବସି ଶ୍ରବଣେ ନ ଲଗିତା ନ ସଂଲଗ୍ନା; ତ୍ୱଂ ତୁ ଅସ୍ମାକଂ ହିତବଚନଂ ନ ଶ୍ରୁତ୍ୱା ଯମୁନାତଟବନଂ ଅବଲୋକିତବାନ୍ ଇତ୍ୟର୍ଥଃ । ସଦ୍ୟଃ ତତ୍‌କ୍ଷଣାଦେବ ସମୁଦ୍ୟନ୍ ସଂଜାୟମାନୋ ଯୋ ଗଦୋ ରୋଗସ୍ତସ୍ୟ ହୃତୌ ହରଣେ କ୍ଷଣାଦେବ ଯଃ ସଂଜାୟମାନଂ ରୋଗଂ ବିନାଶୟିତୁଂ କ୍ଷମଃ ଏବଂଭୂତେ ଚତୁରେ ସୁନିପୁଣେ ଅନବଦ୍ୟେ ନିର୍ଦ୍ଦୋଷେ ବୈଦ୍ୟେ ଭିଷଜି ଅପେକ୍ଷା ଆକାଙ୍କ୍ଷା ଚେତ୍ ତର୍ହି ବୟଂ ଯାମଃ ସାମ୍ପ୍ରତମେବ ଗଚ୍ଛାମଃ, ବୈଦ୍ୟାନ୍ୱେଷଣାର୍ଥମିତ୍ୟର୍ଥଃ । ଇହ କାମସ୍ୟ ପୂର୍ତ୍ତୌ ତବ ଅଭିଳାଷପୂରଣେ ଜଗତଃ ଗତିଃ ପରମେଶ୍ୱର ଏବ କେବଲଂ ତେ ଅବଲମ୍ବଃ ଆଶ୍ରୟ ଏବ । ଯଦି ଜଗତ୍‌ପତେରୀଶ୍ୱରସ୍ୟ ଅନୁଗ୍ରହଃ ସ୍ୟାତ୍ ତର୍ହି ଯୁବୟୋର୍ମିଳନଂ ସମ୍ଭବେତ୍ ନାନ୍ୟଥେତି ଭାବଃ ।

ହେ ସ୍ୱାମିନ, ଅନୁଜ୍ଞାୟା ଆଦେଶସ୍ୟ ଅନୁଲ୍ଲଙ୍ଘନାୟ ପାଳନାୟ ଇତି ଯାବତ୍ ଯା ଜଙ୍ଘାଲତା ବେଗବତ୍ତା ସୈବ (ଜଙ୍ଘାଲୋଽତିଜବସ୍ତୁଲ୍ୟୌ ଜଙ୍ଘା-କରିକଜାଙ୍ଘିକୌ ଇତ୍ୟମରଃ) ମତ୍ ସଦୃଶ ପ୍ରିୟଜନକୃତଚେଷ୍ଟାନାଂ ଅନୁପଧିକା କପଟହୀନା ପରିଣତିଃ, ଅୟଂ ଭାବଃ—ଅହଂ ଚ ତେ ପ୍ରିୟଜନଃ, ତବୋପକାରାର୍ଥଂ ମୟାବଶ୍ୟମେବ ନିଷ୍କପଟୋ ଯତ୍ନଃ କରଣୀୟଃ, ତ୍ୱଦାଦେଶପାଳନାୟ ପୁନଃପୁନଃ କୃଷ୍ଣାନ୍ତିକଂ ଗମିଷ୍ୟାମୀତି ମେ ଯତ୍ନସ୍ୟ ପରିଣାମଃ; ଯତସ୍ତ୍ୱଂ ମେ ସ୍ୱାମିନୀ, ତତୋ ଜଙ୍ଘାବଳେନ ବହୁଶସ୍ତତ୍ର ଗତ୍ୱା ତ୍ୱତ୍ତଃ ଜୀବନୋପାୟଂ ଲପ୍‌ସ୍ୟେ ଇତି । କିନ୍ତୁ ଉଦର୍କଂ ଅସ୍ୟ କାର୍ଯ୍ୟସ୍ୟ ଉତ୍ତରଫଳଂ ପରିଣାମ ଇତି ଯାବତ୍ ( ଉଦର୍କଂ ଫଳମୁତ୍ତରଂ ଇତ୍ୟମରଃ ) ପରମେଶ୍ୱରାଧୀନଂ ଚିନ୍ତ୍ୟ, ଲଳିତା ଶ୍ରୀମତୀଂ ଇତ୍ୟୁକ୍ତ୍ୱା ଶ୍ରୀକୃଷ୍ଣାନ୍ତିକଂ ଗତ୍ୱା ତଂ ବିଜ୍ଞାପୟାମାସ ।



ରାଗ—ସିନ୍ଧୁକାମୋଦୀ ବା କୁମ୍ଭକାମୋଦୀ

ନୂଆନଟପଟଳୀମୁକୁଟ ହେ ନାହିଁ କି ଶ୍ରୀଅଙ୍ଗ ସୁଖ,
ନିପଟ ନିଟ୍ରେକି ଦିଶୁଛୁ ତ ଅଳି ନିରଳସ ଚନ୍ଦ୍ରମୁଖ । ପଦ ।
ନୀଳୋତ୍ପଳ ବାସି ହେଲା ପରି ଦିଶି ଯାଉଛୁ ତୁରୁ ଶ୍ରୀଅଙ୍ଗ,
ନାସା ନୀଳ ତିଳଫୁଲରୁ ଅନଳ ପ୍ରସରୁଛୁ ବେଗ ବେଗ । ୧ ।
ନୀପକୁଞ୍ଜପବନ ନିକଟ, ପବନସ୍ମରଣରୁ ଯେବେ ଡର,
ନଦୀକୂଳସ୍ଥଳ ଏ ବଡ଼ ଶୀତଳ ତୁହନ୍ତ୍ରାହିକି ବିହାର । ୨ ।
ନିଦ ନାହିଁ କି ନୟନେ ନିଶି ଦିନ ଅହା ମରଇ ମୋ ଧନ,
ନବନୀତ ତନୁଁ ମୃଦୁ ଦେହେ କାହୁଁ ସମ୍ଭବିଲା ଏ କଦନ ୩ ।
ନବ ହେମଦ୍ୟୁତି ଅମଳ୍ପଏ ନିତି ନିଅନ୍ତି ଫୁଲ ଏ ବନ୍ଧୁ,
ନେନ୍ତ୍ରପଥେ ପଡ଼ିଗଲେ କି ସେ ଛାଡ଼ି ଯାଉ ନାହିଁ ଜ୍ୱର ମନ୍ଦୁ ୦ ।
ନ ବିହର ଗୋପସଙ୍ଗୀଳ ଏ ପାପଗହନରେ କିଛି ଦିନ,
ନରେଶମଣ୍ଡନ ଶ୍ରୀହରିଚନ୍ଦନ ଜଗଦ୍ଦେବ ସ୍ତବ ଘେନ । ୫ ।

---

ଅନୁବାଦ—ଯମୁନାକୂଳବର୍ତ୍ତୀ ବନକୁ ଗୃହିଁବା ତୁମ୍ଭ ପକ୍ଷରେ ହିତକର ନୁହେ, ଏହା ଅମ୍ଭେମାନେ ତୁମ୍ଭଙ୍କୁ ପୁନଃପୁନଃ କହିଲେହେଁ ତୁମ୍ଭେ ସେହି ହିତୋପଦେଶକୁ କାନରେ ଶୁଣିଲ ନାହିଁ । ଯେଉଁ ବୈଦ୍ୟ ରୋଗର ଅଶୁ ପ୍ରତିକାର ବିଧାନ କରି ପାରନ୍ତି, ସେଭଳି ବୈଦ୍ୟଠାରେ ତୁମ୍ଭର ଯେବେ ଅପେକ୍ଷା ଥାଏ, ତେବେ ଅମ୍ଭେମାନେ ବର୍ତ୍ତମାନ ତୁମ୍ଭ କାମନା ପୂରଣ କରିବାପାଇଁ ଯାଉଅଛୁଁ । ଜଗତ୍‌କର୍ତ୍ତା ପରମେଶ୍ୱରହିଁ ଏ ବିଷୟରେ ଏକା ତୁମ୍ଭର ପ୍ରଧାନ ଅବଲମ୍ବନ ।

ହେ କର୍ତ୍ତ୍ରି ! ମୁଁ ତୁମ୍ଭର ପ୍ରିୟଜନ, ଏପରି ଅବସ୍ଥାରେ ତୁମ୍ଭର ଆଦେଶ ପାଳନ କରି ଶ୍ରୀକୃଷ୍ଣଙ୍କ ନିକଟକୁ ପୁନଃପୁନଃ ଯିବା ଅସିବା କରିବାହିଁ ମୁଁ ମୋ କର୍ତ୍ତବ୍ୟର କିଷ୍ଟପଠ ପରିଣାମ ବୋଲି ମନେ କରୁଅଛି । କିନ୍ତୁ ଏହାର ଉତ୍ତରଫଳ ଈଶ୍ୱରାଧୀନ; ଲଳିତା ଏହା କହି ଶ୍ରୀକୃଷ୍ଣଙ୍କ ନିକଟକୁ ଗମନ କଲେ ଏବଂ ତାଙ୍କୁ କହିବାକୁ ଆରମ୍ଭ କଲେ, "ନୂଆନଟପଟଳୀମୁକୁଟ" ଇତ୍ୟାଦି ।

---

(୦) ନୂଆନଟପଟଳୀମୁକୁଟ—ନୂତନ ନର୍ତ୍ତକମାନଙ୍କ ବା ଦୁଷ୍ଟ ଲୋକଙ୍କ ମଧ୍ୟରେ ଶ୍ରେଷ୍ଠ; ନିପଟ—ଅତ୍ୟନ୍ତ; ନିରଳସ—ଆଳସ୍ୟହୀନ ଅର୍ଥାତ୍ ମନୋହର; ନୀଳୋତ୍ପଳ—ନୀଳକଇଁ; ବାସି—ମଉଳି ପଡ଼ିଥିବା (ସଜର ବିପରୀତ); ନୀଳ

(ଙ) ହା ହା ହନ୍ତ ହତାସ୍ମି କେନ ଵଲସନ୍ନୀଳାଶ୍ମତେଜୋଘଟା
ଧୂର୍ଣ୍ଣିଂ ପର୍ଯ୍ୟଟିତୋତ୍ପଳାବଳିରୁଚୈ ମାସୀନ୍ନିଧିଟସ୍ତେ ବପୁଃ ।
ନାନ୍ୟ ନୀତସ୍ୟ ପଞ୍ଚଶାଖୀପି ଦିନାନ୍ୟଂଚ୍ଛୋରୁହାୟାର୍ତ୍ତିକାନ୍;
ବ୍ୟାପ୍ତିଂ ନେଦମଖଣ୍ଡବେଣିତଂଥବାଭବଂ ମାଭିଣ୍ଡପ୍ରଭୃ,ୟାସ୍ତଂ ॥

ଚନ୍ଦ୍ରକାପୀଡ଼ ସୁନ୍ଦରେନ୍ଦ୍ର କିଶୋରଚକ୍ରଚୂଡ଼ାମଣେ ଭାତୃଙ୍ଗନୀରଳସ-କେଳୀକଳାକଳାପଲ୍ଲକନଲ୍ଲଲାଭାସ୍ଥ ବପୁଷେ ଭବତୋ ଭବତ ନ କିଂ ହୃତମଣ୍ଡାନ୍ତଂ ବାହ୍ନମୀତଚପର୍ଯ୍ୟଚନଂ ।

---

ତିଲପ୍ରସୂନ—କେଳଅ ରଶିଫୁଲ; ଅନିଳ—ପ୍ରବନ, ନିଶ୍ୱାସ; ବେଗ ବେଗ—ଅତି ଚଞ୍ଚଳ; ନୀପ ଉପବନ—କଦମ୍ବ ବଗିଚ୍ଚ; ନବନୀତ—ଲହୁଣୀ; ତର୍ହୁଁ—ଠାରୁ; କଦନ—କଷ୍ଟ, ଯନ୍ତ୍ରଣା; ନବହେମଦ୍ୟୁତି—ଯେଉଁମାନଙ୍କ ଦେହ ଶୋଭା ନୂତନ ସୁନା ପରି ଉଜ୍ଜ୍ୱଳ; ଅମର୍ତ୍ତ୍ୟ—ଅପ୍‌ସରାମାନେ; ଜ୍ୱର—ସନ୍ତାପ; ଗୋପସଙ୍ଗାଳି—ଗୋପ ନଗରର ସର୍ବସ୍ୱ; ଗହନରେ—ବନରେ; ନରେଶମଣ୍ଡନ—ନୃପତିଶ୍ରେଷ୍ଠ ।

ହେ ନବନାଗରଶ୍ରେଷ୍ଠ, ତୁମ୍ଭର ଶ୍ରୀଅଙ୍ଗ ଭଲ ନାହିଁ କି ? ତୁମ୍ଭର ମନୋହର ଚନ୍ଦ୍ରମା ବଦନ ତ କାହିଁକି ଆଜ ଏକାବେଳକେ ମଳିନ ଦିଶୁଅଛି ? ପଦ୍ମ । ନୀଳକାନ୍ତ ମଣିରେ ମଇଳା ପଡ଼ିଲେ ଯେପରି ଦେଖାଯାଏ, ଦୂରରୁ ତୁମ୍ଭ ଶ୍ରୀଅଙ୍ଗ ତ କାହିଁକି ସେହିପରି ଦିଶୁଛି । ନୀଳବର୍ଣ୍ଣ ତିଳଫୁଲ ପରି ଦିଶୁଥିବା ତୁମ୍ଭ ନାସିକାରୁ ତ କାହିଁକି ଆଜ ଅତି ବେଗରେ ନିଶ୍ୱାସ ବାହାରୁଛି । ୧ । କଦମ୍ବବଣ ପାଖ ପବନ ଦେହରେ ଲାଗିବାରୁ ଯେବେ ତୁମ୍ଭର ଶରୀର ଅସୁସ୍ଥ ହୋଇଥାଏ, ତେବେ ଏହି ଶୀତଳ ନଈକୂଳ ମଧ୍ୟ ତୁମ୍ଭର ବୁଲିବାର ଉପଯୁକ୍ତ ସ୍ଥାନ ନୁହେ, (ଟିକି ନିଶ୍ଚୟାର୍ଥକ ଅବ୍ୟୟ, ପ୍ରଶ୍ନାତ୍ମକ ନୁହେ ) । ୨ । ଆହା ମୋ ଧନ ! ମରିଯାଏ ! ଦିନରାତି ସବୁବେଳେ କଣ ଏ ଆଖିକି ନିଦ ମାଡୁନାହିଁ ? ଆହା । ତୁମ୍ଭର ଏ ଶରୀର ଲହୁଣୀଠାରୁ ଅଧିକ କୋମଳ, ଏ ଶରୀରରେ ପୁଣି ଏତେ କଷ୍ଟ ସମ୍ଭବପର ହେଲା । ଯେଉଁମାନଙ୍କ ଦେହର ବର୍ଣ୍ଣ ନୂଆ ସୁନା ପରି ମନୋହର, ସେହି ଅପ୍‌ସରାମାନେ ପ୍ରତିଦିନ ଏ ବନରୁ ଫୁଲ ତୋଳିବାକୁ ଆସନ୍ତି, ତୁମ୍ଭ ଆଖିରେ ପଡ଼ି ସେମାନେ କଣ ଛାଡ଼ି ଚାଲିଗଲେ କି ? ସେ ଦିନରୁ କଣ ତୁମ୍ଭ ମନରୁ ସନ୍ତାପ ଦୂର ହେଉ ନାହିଁ ? ଅର୍ଥାତ୍ ତପ୍ତକାଞ୍ଚନବର୍ଣ୍ଣାଭ ଅପ୍‌ସରାମାନଙ୍କୁ ଆଖିରେ ଦେଖିବା ଦିନୁ କଅଣ ତୁମ୍ଭେ ଏପରି ଅଧିଗ୍ରସ୍ତ ହୋଇ ପଡ଼ିଅଛ ? ଅତଏବ ହେ ଗୋପନଗର-ବାସୀଙ୍କ ଜୀବନସର୍ବସ୍ୱ, ଏ ପାପବନରେ ଆଉ ବୁଲ ନାହିଁ, ନୃପତି ଶ୍ରେଷ୍ଠ ଜଗଦେବ ହରିଚନ୍ଦନଙ୍କ ପ୍ରାର୍ଥନା ଗ୍ରହଣ କର । ୫ ।

ଟୀକା—(ଙ) ହା ହା ହନ୍ତ ହତାସ୍ମି, ଅହୋ ମ୍ରିୟମାଣାସ୍ମି, କେନ କଥଂ ଵଲସନ୍ତି ଶୋଭମାନା ଯା ନୀଳାଶ୍ମତେଜସ ଇନ୍ଦ୍ରନୀଳମଣିକାନ୍ତେଃ ଘଟା ସମୂହଃ

ତସ୍ୟ ଧୂର୍ଣ୍ଣଂ ବାହକଂ ଅସ୍ମଦମିଛ ଯାବତ୍ ସୁଶୋଭନେନ୍ଦ୍ର ନୀଳମଣିକାନ୍ତଧାରି ତେ ବପୁଃ ତବ ଶରୀରଂ ପର୍ଯ୍ୟୁଷିତାନାଂ ମ୍ଲାନାନାମିତ୍ୟର୍ଥଃ ଉତ୍ପଳାବଳୀନାଂ ଇନ୍ଦୀବରଶ୍ରେଣୀନାଂ ରୁଚ୍ୟଂ ତେଜସାଂ ନିଧିଃ ସ୍ଥାନଂ ଅସୀତ୍ । ନୀଳତେଜୋମୟସ୍ୟ ତେ ଶରୀରସ୍ୟ ମଳିନତାଂ ଦୃଷ୍ଟ୍ୱା ମରଣ ଯନ୍ତ୍ରଣା ମେ ମନସି ଜାୟତେ ଇତି ଭାବଃ; ହେ ଅମ୍ଭୋରୁହାକ୍ଷ, ହେ ନଳିନନେତ୍ର, ଅତ୍ର ଅସ୍ମିନ୍ ସ୍ଥାନେ ପଞ୍ଚଷାଣି ( ପଞ୍ଚ ବା ଷଟ୍ ବା ପରିମାଣଂ ଏଷାଂ ପଞ୍ଚଷାଣି, ବହୁବଚନାନ୍ତୋଽୟଂ ଶବ୍ଦଃ ) ଦିନାନି ( କାଲାଧ୍ୱନୋରତ୍ୟନ୍ତସଂଯୋଗେ ଇତି ଦ୍ୱିତୀୟା ) ଅର୍ଭକାନ୍ ଗୋପଶିଶୂନ୍ ନ କ୍ରୀଡୟ, ତୈଃ ସହ ମା ବିହର, ତତ୍ର ହେତୁମାହ—ଇଦଂ ମାର୍ତ୍ତଣ୍ଡପୁତ୍ର୍ୟାଃ ଯମୁନାୟା ତଟଂ କୂଳପ୍ରଦେଶଃ ଅଖଣ୍ଡଃ ଶୈତ୍ୟବିଭବଃ ଯସ୍ମିନ୍ ତଦ୍‌ଧୋତ୍ତମଂ ଅବିଚ୍ଛିନ୍ନଶୈତ୍ୟବିଧାନମିତ୍ୟର୍ଥଃ, ଅତଏବ ନବାର୍ତ୍ତିଂ ନ ନିରାମୟଂ ନ ସ୍ୱାସ୍ଥ୍ୟପ୍ରଦଂ ଭବତୀତି ଶେଷଃ । (ବାର୍ତ୍ତେ ନିରାମୟଃ କଲ୍ୟଃ ଇତ୍ୟମରଃ ।)

ଚନ୍ଦ୍ରକେତି—ହେ ଚନ୍ଦ୍ରକାପୀଡ଼ ଶିଖଣ୍ଡଚୂଳ, ହେ ସୁନ୍ଦରେନ୍ଦ୍ର ରମଣୀୟ-ଶିରୋମଣେ, କିଶୋରଚକ୍ରଂ ଯୁବକସମୂହଃ ତେଷାଂ ଚୂଡ଼ାମଣିଃ ତସ୍ୟ ସମ୍ବୋଧନେ ହେ ଯୁବଜନମୌଳିମଣ୍ଡନ, ଭବତଃ ତବ ତାଦୃକ୍ ନିରଳସଃ ଯଃ କେଳିକଲା-କଲାପଃ କ୍ରୀଡ଼ାବିଭୂତିସମୂହଃ ତସ୍ୟ ଲାଳନଂ ପୋଷଣଂ ତେନ ଲଳିତାୟୁ ମନୋଜ୍ଞାୟ ବପୁଷେ ଶରୀରାୟ ( ହିତଯୋଗେ ଚ ଇତି ଚତୁର୍ଥୀ ) ଅଶ୍ରାନ୍ତଂ ସତତଂ ବାହିନୀତଟପର୍ଯ୍ୟଟନଂ ନଦୀକୂଳଭ୍ରମଣଂ ହିତଂ ପଥ୍ୟଂ ନ କମିତି ପ୍ରଶ୍ନେ ।

ଅନୁବାଦ—ଅହା, ତୁମ୍ଭର ଯେଉଁ ଶରୀର ଇନ୍ଦ୍ରନୀଳମଣିର ତେଜ ଧାରଣ କରି ମନୋହରଣ କରୁଥିଲା, ଆଜ ତାହା କାହିଁକି ବାସି ନୀଳକଇଁ ପରି ଏଭଳି ମଳିନ ଦିଶୁଛି, ଏହା ଦେଖି ମୋ ମନରେ ବଡ଼ କଷ୍ଟ ହେଉଅଛି; ହେ ପଦ୍ମଲୋଚନ, ଏଠାରେ ପାଞ୍ଚ ଛଅ ଦିନ ଆଉ ଗୋପବାଳକମାନଙ୍କୁ ଖେଳାଅ ନାହିଁ, କାରଣ ଏ ଯମୁନା ନଈକୂଳରେ ଭାରି ଶୀତ, ଏହା ତୁମ୍ଭ ସ୍ୱାସ୍ଥ୍ୟପକ୍ଷରେ ଅନୁକୂଳ ନୁହେ ।

ହେ ଚନ୍ଦ୍ରକଚୂଳ, ହେ ସୁନ୍ଦର ଯୁବକଶ୍ରେଷ୍ଠ, ତୁମ୍ଭ ଶରୀର ମନୋହର ବିଳାସରେ ସର୍ବଦା ଅତୀବ ସୁକୁମାର, ଯମୁନାକୂଳରେ ନିରନ୍ତର ଭ୍ରମଣ କରିବାଟା ତୁମ୍ଭର ସେହି ସୁକୁମାର ଶରୀର ପକ୍ଷରେ ହିତକର ହେଉ ନାହିଁ ପରି । ଲଳିତାଙ୍କଠାରୁ ଏହି କଥା ଶୁଣି ଶ୍ରୀକୃଷ୍ଣ ତାଙ୍କୁ କହୁଛନ୍ତି:—

"ଶୃଣୁ ଶୃଣୁ ଚୋ ସରଣୀ" ଇତ୍ୟାଦି ।

---



## ରାଗ—ପଞ୍ଚମ ବରାଡ଼ି

ଚୁହିଁ ଚୁହିଁ ତୋ ସରଣୀ କକୁଭକୁ ରେ ତରୁଣି ଚନ୍ଦନାର୍ପିତ ପତ୍ର ଥିଲି ବସି । ଚିତ୍ର ମଣିଲି ମୁଁ ଚଟଚେ, ଚୁହିଁ ଯା ଅତର୍କିତେ ଚୁରଚଞ୍ଚୁ ମିଞ୍ଚାଇଲି ଆସି ରେ, ଚଳାପାଙ୍ଗି, ଚନ୍ଦ୍ରରୁ ଚପୁଡ଼ି ସୁଧା ଝର, ଚାରୁତ୍ୱପିଡର ମୁଚଖି ଭରି, ଚାତୁର୍ଯ୍ୟ କୃପାଳୁ ଗୁଣ-ନିଧି ରଖିଲୁ କି ପ୍ରାଣ ଘେନିଲି ମୁଁ ଏତେ ସହି କରି ରେ । ୧ ।

ଚେତା ଥିଲା ପରି କିଛୁ ପ୍ରତୀତ ତ ହେଉଅଛି, ଚକ୍ଷଣେ ତ ଦହୁଛି ମୋ ଦେହ । ଚହ୍ନିକି ଲାଞ୍ଛନ ସତେ ଚାମରଚିକୁରା ମତେ ଚହକାଇ ପଶ୍ଚରିଲୁ କହ ରେ, ଚଳାପାଙ୍ଗି, ଚୁମ୍ବି ରବିନନ୍ଦନୀର ନୀର, ଚନ୍ଦ୍ରକାନ୍ତି ତୁଷାର ସାର; ଚାରୁ ମାରୁତରୁ ତନୁ-ତଳ ଶୀତଳ ହେଉଛୁ, ଚିନାଏ ତ ଖେଦ ନାହିଁ ମୋର ରେ । ୨ ।

ଚାରୁ ହରିତରେ ଘେରି ଚରାଉଥାନ୍ତି ବାଛୁରି ଚୂଳମୁକୁଟିଆ ସଖାମାନେ । ଚହମହ ଶୃଙ୍ଗ ବେଣୁ, ବାଦ୍ୟନାଦ ଶୁଣୁ ଶୁଣୁ, ଚେତ ହୁଏ ଧନ ଧନେ ଧନେ ରେ, ଚଳାପାଙ୍ଗି, ଚୁମ୍ବି ବାରୁଣୀକି ଧନଦୂଣ୍ଡ, ଚପଳେ ଅମ୍ବର ବରଜନ୍ତି; ଚରମ ଭାଗ ମୋ ଭାରି, ଲାଗି ନାହିଁ ଭ୍ରମେ ତାରି ଚମକ ତ ନାହିଁ ମୋର ଚିତ୍ତ ରେ । ୩ ।

ଚାମୀକରଚାରୁ ଶିଖା—ମଣି ସେ କେଉଁ ଅମଣି, ଚାଖି ନାହିଁ ଧନେ ମୋ ନୟନ । ଚମତ୍କାର କଥା ଦେଖି ପେଟରେ କପଟ ରଖି, ତୋତେ ଡାକି ନ କହନ୍ତି ଘେନ ରେ, ଚଳାପାଙ୍ଗି, ଚରାଚର ଚାଲି ଭୟମୟ, ଚୋଟି ଦେଲୁ ମୋ ହୃଦାଶୟ, ଚରଣ ଯୁଗକୁ ତୋର, ବନ୍ଦେ ଅଷ୍ଟଦୁର୍ଗେଶ୍ୱର, ଚେତ ନାହିଁ ଥିଲେହେଁ ବଞ୍ଚାଅ ରେ । ୪ ।

---

(ଚ) ସରଣୀ—ମାର୍ଗ, ବାଟ; କକୁଭ—ଦିଗ; ଚନ୍ଦନାର୍ପିତ—ଚନ୍ଦନରେ ଅଙ୍କିତ ପିତୁଳା ପ୍ରଭୃତି; ଚିତ୍ର—ଆଶ୍ଚର୍ଯ୍ୟ; ଅତର୍କିତେ—ଅଜ୍ଞାତଭାବରେ, ଚଳାପାଙ୍ଗୀ—ଚଞ୍ଚଳନେତ୍ରା; ସୁଧାଝର—ଅମୃତର ଝରେଇ, (ପାନବିଶେଷ); ଲାଞ୍ଛନ—ଚିହ୍ନ; ଚାମରଚିକୁରା—(ଚାମର ପରି ଚିକୁର ଯାହାର) ଦୀର୍ଘ ଘନକେଶଧାରିଣୀ; ଚହକାଇ—ଉସାଇ; ରବିନନ୍ଦନୀର ନୀର—ଯମୁନାପାଣି; ଚାରୁ ମାରୁତ—ମନୋହର ପବନ; ଚିନାଏ—ଟିକିଏ; ହରିତ—ଦିଗ; ଚୂଳମୁକୁଟିଆ—ମୟୂର

ଚୂଳମୁକୁଟଧାରୀ; ଶରମର—ଡଅଁ ଡେଇଁ; ବାରୁଣୀ—ପଶ୍ଚିମଦିଗ; ଦିନକୃତ—ସୂର୍ଯ୍ୟ; ଚପଳେ—ଅତି ଚଞ୍ଚଳ; ଅମ୍ବର—ଆକାଶ; ବର୍ଜନ୍ତ—ତ୍ୟାଗ କରନ୍ତ; ଚରମ ଭାଗ—ପୃଷ୍ଠଭାଗ; କାକ—କଅଣ (ପ୍ରଶ୍ନସୂଚକ ଅବ୍ୟୟ); ଚେଗେ ଚରର ଚୂଳ—ଚନ୍ଦ୍ରକିରଣର ସ୍ଥିତ, ତୁଷାରଖଣ୍ଡ; ହୃଦାଶୟ—ଅନ୍ତଃକରଣ; ଗ୍ରେର ନାହିଁ—ଗ୍ରେସ୍ଥ ନାହିଁ ।

ଅୟି ଲଳିତେ, ତୋ ଆସିବା ବାଟକୁ ମୁଁ ଶର୍ଦ୍ଦପ୍ରତିମା ପରି ସ୍ଥିରଭାବରେ ଚାହିଁ ବସିଥିଲି; ତୁ ଯାହା ଅତର୍କିତଭାବରେ ଆସି ଗୃହରେ ମିଶାଇ ଦେଲୁ ଅର୍ଥାତ୍ ଦେଖା ଦେଲୁ, ଏଥିରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି; ହେ ଚଳାପାଙ୍ଗି ! ହେ ଗ୍ରୁତୁର୍ଯ୍ୟକୃପାକୃ ଗୁଣନିଧି ( ଚତୁରତା ଓ ଦୟାକୃଗୁଣ ଅର୍ଥାତ୍ କୃପାକ୍ରିତା ଏହାର ନିଧି ଅର୍ଥାତ୍ ସ୍ଥାନ ) ଚନ୍ଦ୍ରରୁ ଅମୃତକୁ ଶପୁଡ ଯେହି ଝରକୁ ( ପାନକୁ ) ଟାରତୁଷାରି ମୁହଁରେ ଢାଳ ଦେଇ ପ୍ରାଣ ରକ୍ଷା କଲୁ, ମୋତେ ଏହିପରି ଲାଗୁଛି । ଅର୍ଥାତ୍ ମୁଁ ତୋତେ ଦେଖିବା ପାଇଁ ବଡ଼ ବ୍ୟାକୁଳ ହେଉଥିଲି, ତୁ ହଠାତ୍ ଆସି ଏଠାରେ ଉପସ୍ଥିତ ହୋଇ ମୋର ବ୍ୟାକୁଳତା ଦୂର କଲୁ । ୧ । ('୬୮' ଗୀତରେ ଶ୍ରୀକୃଷ୍ଣଙ୍କ ଶରୀର ଅସୁସ୍ଥ ଥିବା ବିଷୟରେ ଲଳିତା ଯେଉଁ ସବୁ ପ୍ରଶ୍ନ କରିଥିଲେ, ବର୍ତ୍ତମାନ ଶ୍ରୀକୃଷ୍ଣ ତାହାର ଉତ୍ତର ଦେଉଅଛନ୍ତି ) । ହେ ଘନକେଶୀ, ମୋର କ୍ଷୀନ ଥିବା ପରି ମୋତେ ତ ଜଣାପଡ଼ୁଛି । ମୋ ଦେହ ତ ଟିକିଏ ଦିଶୁଛି, ବାସି କାଳକଇଁ ପରି ମଳିନ ଦିଶୁ ନାହିଁ ତ । କି ଶଙ୍କା ଦେଖି ତୁ ମୋତେ ଭୁରାଇ ଏ ସବୁ କଥା ପଚାରିଲୁ କହ । ହେ ଚଳାପାଙ୍ଗି ! ମୁଁ ଯମୁନା ଜଳ ପିଇ, ଚନ୍ଦ୍ର-କିରଣ ସମୂହର ତୁଷାରସାର ଅର୍ଥାତ୍ ଶୀତଳତାକୁ ସେବା କରି ଅର୍ଥାତ୍ ଚନ୍ଦ୍ର-କିରଣରେ ବୁଲି ମନୋହର ପବନ ହେତୁରୁ ଏ ସ୍ଥାନର ତରୁତଳ ବଡ଼ ଶୀତଳ ହୋଇଥିବାରୁ ଏଠାରେ ରହିଅଛି । ମୋର ତ ଏଠାରେ ଟିକିଏ ଦୁଃଖ ନାହିଁ । ୨ । ମୟୂରପୁଚ୍ଛମୁକୁଟଧାରୀ ମୋର ବନ୍ଧୁ ଗୋପବାଳକମାନେ ଗୃହଆଡ଼େ ବୁଲି ବାହୁଡ଼ି ଚରିଉଥାନ୍ତି, ସେମାନଙ୍କର ଡଅଁ ଡେଇଁ ଦେଖୁ ଦେଖୁ ଶିଙ୍ଗା ଓ ବେଣୁବାଦ୍ୟାଦିର ଶବ୍ଦ ଶୁଣୁ ଶୁଣୁ ଦିନେ ଦିନେ ଦିନ ଶେଷ ହୋଇଯାଏ, ଏହି ସମୟରେ ସୂର୍ଯ୍ୟ ପଶ୍ଚିମ ଦିଗକୁ ଆଶ୍ରୟ କରି ଚଞ୍ଚଳ ଅସ୍ତ ହୋଇଯାଆନ୍ତି । ସାଧାରଣତଃ ଲୋକେ ଡରିଲେ ତାଙ୍କ ପିଠିପଟ ଭାରି ଲାଗେ, ମାତ୍ର ମୋ ପିଠି ଆଡ଼ ତ ଭାରି ହୋଇ ନାହିଁ, ଅଥବା ଭ୍ରମରେ ମୋର ଛାତି ତ କେଉଁଠାରେ ଡରି ନାହିଁ ଅର୍ଥାତ୍ କେବେହେଲେ ମୋ ହୃଦୟରେ ତ ମୁଁ ଭୟ ଅନୁଭବ କରି ନାହିଁ । ୩ । ଆଉ ମଧ୍ୟ ସୁନାଷରି ସୁନ୍ଦର ଶ୍ରୀଯୁକ୍ତା କୌଣସି ଅପ୍‌ସରାକୁ ତ ମୁଁ ଛାଏଁ ଦେଖି ନାହିଁ, ସଖି, ଏଭଳି ଗୋଟିଏ ଚମତ୍କାର କଥା ଦେଖି ପେଟରେ କପଟ ରଖି ତୋତେ କଅଣ କହନ୍ତି ନାହିଁ ? ହେ ଚଞ୍ଚଳାକ୍ଷି, ଏହା ସ୍ଥିର ବୋଲି ଗ୍ରହଣ କର । ତୁଷାରର ସ୍ଥିତ ବଡ଼ ଭୟପୂର୍ଣ୍ଣ, ଏପରି ଅବସ୍ଥାରେ ମୋ ଅନ୍ତଃକରଣକୁ ଭଙ୍ଗିତ ହେଲି ଅର୍ଥାତ୍ ମୋ ମନରେ ବଡ଼ ଅଶାନ୍ତି ଜାତ କରିଦେଲି । ୪ । ଅଠଉଡ଼ା ଛନ୍ଦ

(ଚ) କଲ୍ୟାଣଂ ବଲ୍ଲବାନାଂ ବଗଳିତବୟସାଂ କିଂ ସ୍ୱଦାରୈରୁଦାରୈଃ
କଚ୍ଚିଦ୍ବାଲାବଲୀନାଂ ଶ୍ରିୟମନୁଭବସି ପ୍ରତ୍ୟହଂ ସତ୍ୟସନ୍ଧେ ।
ଦୀନଶ୍ଚିନ୍ତାମଣୀନାଂ ତତିମିବ ନିତରାଂ ତ୍ୱାଂ ପ୍ରପଦ୍ୟାସ୍ମି ତୁଷ୍ଟି-
ସ୍ତିଷ୍ଟଂ ସନ୍ଧ୍ୟାତମାତ୍ରା ବଧୂମୁଖି ମମ ଯତ୍ ଯାସି ନେତ୍ରାତିଥିତ୍ୱଂ ।

କିମଦ୍ୟ ଲଳିତେ 'ଧରଣୀପୁତ୍ରଚରମସଞ୍ଚାରଷଷ୍ଠିବରଗ୍ରହଗ୍ରହିଲରବିଗ୍ରହକରନିକରବ୍ୟତିକରତପ୍ତାଙ୍କୁରକେଦାରଂ ପ୍ରତି ବୃଷ୍ଟ୍ୟୈବ ଦିଷ୍ଟ୍ୟାସ ପ୍ରବିଷ୍ଟଂ ସ୍ମୃତମାତ୍ରୟା ତ୍ୱୟା ।

---

ତୋ ଚରଣଦ୍ୱୟକୁ ବନ୍ଦୁଅଛନ୍ତି; ମୁଁ କାହାଠୁ କିଛି ଚେହାଇ ନାହିଁ; ଯେବେ ସେପରି କିଛି ହୋଇଥାଏ, ତେବେ ମୋତେ ବଞ୍ଚାଅ ଅର୍ଥାତ୍ ରକ୍ଷା କର ।

ଟୀକା—ସ୍ୱପ୍ରଣୟିନ୍ୟାଃ ଶ୍ରୀରାଧାୟାଃ କୁଶଳଂ ଜିଜ୍ଞାସୁଃ ଶ୍ରୀକୃଷ୍ଣଃ ଶିଷ୍ଟାଚାର-ବ୍ୟାଜେନ ଆଦୌ ତାବତ୍ ବୃଦ୍ଧାନାଂ ଗୋପପୁରବାସିନାଂ କୁଶଳଂ ପୃଚ୍ଛତି, ବଗଳି-ତେତି । ବଗଳିତଂ ବୟୋ ଯେଷାଂ ତେଷାଂ ବୃଦ୍ଧାନାଂ ବଲ୍ଲବାନାଂ ଗୋପାଲାନାଂ ଉଦାରୈରମିତଗୁଣୈଃ ସ୍ୱଦାରୈଃ ସ୍ୱପତ୍ନୀଭିଃ ସହ କୁଶଳଂ କିଂ ? ଅୟି ସତ୍ୟସନ୍ଧେ ସତ୍ୟବାଦିନି, ତ୍ୱଂ ପ୍ରତ୍ୟହଂ ବାଲାବଲୀନାଂ ଗୋପଯୁବତୀନାଂ ଶ୍ରିୟଂ ସୁଷମାଂ ଅନୁଭବସି ପ୍ରତ୍ୟକ୍ଷୀକରୋଷି କଚ୍ଚିତ୍ ? ଅପି ଗୋପଯୁବତୟଃ ପ୍ରତ୍ୟହଂ ସର୍ବ ସୌଖ୍ୟେନ ବର୍ତ୍ତନ୍ତେ ଇତି ତ୍ୱଂ ସର୍ବଥା ଜାନାସି କିମିତ୍ୟର୍ଥଃ । ଅୟି ବଧୂମୁଖି ଚନ୍ଦ୍ରାନନେ, ସନ୍ଧ୍ୟାତମାତ୍ରା ସ୍ମୃତମାତ୍ରେଣ ତ୍ୱଂ ଯତ୍ ମମ ନେତ୍ରାତିଥିତ୍ୱଂ ମମ ଚକ୍ଷୁଷୋ ଗୋଚରତ୍ୱଂ ଯାସି ଏତସ୍ମିନ୍ । ଦୀନୋ ଦୁର୍ଗତିଶ୍ଚିନ୍ତାମଣୀନାଂ, ଯେ ହି ଚିନ୍ତିତଂ ବାଞ୍ଛିତଂ ପ୍ରୟଚ୍ଛନ୍ତି ତେ ହି ଚିନ୍ତାମଣୟସ୍ତେଷାଂ ତତିଂ ସମୂହମିବ ତ୍ୱାଂ ପ୍ରପଦ୍ୟ ପ୍ରାପ୍ୟ ନିତରାଂ ନିରତିଶୟଂ ତୁଷ୍ଟୋଽସ୍ମି । ଯଥା ଚିନ୍ତାମଣିସ୍ତଦଧିକାରିଣେଽଭିଲଷିତଂ ପ୍ରୟଚ୍ଛତି ତଥା ତ୍ୱଂ ମମାଭିଲାଷଂ ପୂରୟିଷ୍ୟସୀତି ତ୍ୱଦ୍ଦର୍ଶନାତ୍ ମେ ନିର୍ବୃତିଃ ।

ଅୟି ଲଳିତେ ! ଧରଣୀପୁତ୍ରସ୍ୟ ଭୌମଗ୍ରହସ୍ୟ ଚରମସଞ୍ଚାରେଣ ଷଷ୍ଠିବରଗ୍ରହୋ ବହୁକାଲଂ ବୃଷ୍ଟିପ୍ରତିବନ୍ଧସ୍ତସ୍ମିନ୍ ଗ୍ରହିଲସ୍ୟ ଆଗ୍ରହଶୀଳିନଃ ତତ୍ପରସ୍ୟେତି ଯାବତ୍ ରବିଗ୍ରହସ୍ୟ କରନିକରାଣାଂ କିରଣସମୂହାନାଂ ବ୍ୟତି-କରେଣ ସମ୍ପର୍କେଣ ତପ୍ତା ଅଙ୍କୁରା ଯସ୍ମିନ୍ ତାଦୃଶଂ କେଦାରଂ ପ୍ରତି କେଦାରେ ଇତ୍ୟର୍ଥଃ ବୃଷ୍ଟ୍ୟା ଇବ ବର୍ଷଣେନେବ ସ୍ମୃତମାତ୍ରୟା ସ୍ମରଣମାତ୍ରେଣ ସମୁପସ୍ଥିତୟା ତ୍ୱୟା ଦିଷ୍ଟ୍ୟା ଭାଗ୍ୟେନ ଅଦ୍ୟ ଅସ ପ୍ରବିଷ୍ଟଂ ।

ଅନୁବାଦ—ଅୟି ଲଳିତେ ! ବୃଦ୍ଧ ଗୋପାଳମାନେ ନିଜ ନିଜ ଉଦାର ସ୍ୱଭାବା ସ୍ତ୍ରୀମାନଙ୍କ ସଙ୍ଗରେ କୁଶଳରେ ଅଛନ୍ତି ତ ? ହେ ସତ୍ୟବାଦିନି, ଗୋପ ଯୁବତୀମାନେ ପରମ ସୁଖରେ ଅଛନ୍ତି ତ ? ହେ ବଧୂମୁଖି, ସ୍ମରଣ ମାତ୍ରକେ ତୁମ୍ଭେ



ରାଗ—ମୁଖାରୀ

ଛଳବାହିନୀଶ ହେ, ଛାଡ଼ ଏ ସାହସ ହେ । ପଦ ।
ଛବି ତ ଅବିଳ ଦିଶେ, ଛପିବାରେ ଅଛି କି ସେ । ୧ ।
ଛଟା କାହା କଟାକ୍ଷର, ଛୁରୀ ହେଲା କି ବକ୍ଷର । ୨ ।
ଛେଲରୁ ତ ଚିନ୍ତା ବଳି, ଛାତିରେ ଗଳୁଣି ଗଳି । ୩ ।
ଛୁଟିଯାଇ ବିଚେତନା, ଛଟପଟ ହେବି ସିନା । ୪ ।
ଛଣା ସୁଧା ପରି ଦିଶେ, ଛୁଇଁଦେଲେ ବିଷଟି ସେ । ୫ ।
ଛନ୍ଦ ମନ ତୁମ୍ଭ ବୁଝେ, ଛ ଦୁଇ ଦୁର୍ଗେଶ ଭଣେ । ୬ ।

---

ଯାହା ମୋ ପାଖରେ ଉପସ୍ଥିତ ହୋଇଗଲା ଏ ବଡ଼ ବିଚିତ୍ର କଥା । ଦରିଦ୍ର ଲୋକ ଏକାବେଳକେ ଅନେକଗୁଡ଼ିଏ ଚିନ୍ତାମଣି ପାଇଲେ ଯେପରି ଆନନ୍ଦିତ ହୁଏ, ତୁମ୍ଭଙ୍କୁ ଏଠାରେ ପାଇ ମୁଁ ସେହିପରି ଆନନ୍ଦିତ ହେଉଅଛି, ଅର୍ଥାତ୍ ତୁମ୍ଭଙ୍କୁ ପାଇବାରୁ ମୁଁ ମନେ କରୁଅଛି, ମୋର ଅଭିଳାଷ ନିଶ୍ଚୟ ପୂର୍ଣ୍ଣ ହେବ ।

ଅୟି ଲଳିତେ ! ମଙ୍ଗଳ ଗ୍ରହ ଏକ ରାଶିରୁ ଅନ୍ୟ ରାଶିକି ଚାଲିବା ବେଳେ ପ୍ରଖର ସୂର୍ଯ୍ୟରଶ୍ମି ଦ୍ୱାରା ଶସ୍ୟକ୍ଷେତ୍ରମାନଙ୍କରେ ମ୍ରିୟମାଣ ହୋଇ ପଡ଼ିଥିବା ଅଙ୍କୁରସମୂହ ଉପରେ ପ୍ରବଳ ବୃଷ୍ଟିଧାରା ଯେପରି, ତୁମ୍ଭଙ୍କୁ ସ୍ମରଣ କରୁଥିବା ବେଳେ ତୁମ୍ଭେ ସୌଭାଗ୍ୟକ୍ରମେ ଏଠାରେ ଆସି ଉପସ୍ଥିତ ହୋଇଯିବାରୁ ମୁଁ ସେହିପରି ପୂର୍ଣ୍ଣମନୋରଥ ହେଲି ବୋଲି ମନେ କରୁଅଛି ।

ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଲଳିତା ତାହାଙ୍କୁ ପୁନର୍ବାର କହିଲେ—

ଛଳବାହିନୀଶ—କପଟରୂପ ନଦୀର ଈଶ ଅର୍ଥାତ୍ ହେ କପଟସାଗର; ଛବି—ରୂପ; ଅବିଳ—ମଳିନ; ଛପିବା—ଲୁଚିବା; ଛଟା—ଭଙ୍ଗୀ; କଟାକ୍ଷ—ଅଡ଼ ଚାହାଣି; ଛେଲ—ଶଲ୍ୟ, ବାଣ; ଗଳିଗଲୁଣି—ପଶିଗଲୁଣି; ଛୁଟିଯାଇ—ଦୂର ହୋଇ; ବିଚେତନା—ଜ୍ଞାନ; ଛନ୍ଦ—ଅଚ୍ଛନ୍ନ କର; ଛ ଦୁଇ—ଆଠ ।

ହେ କପଟସାଗର, ଏ ସାହସ ଛାଡ଼, ଅର୍ଥାତ୍ ଏପରି କପଟ କଥା ଦ୍ୱାରା ତୁମ୍ଭର ସାହସିକତା ଦେଖାଅ ନାହିଁ । ପଦ । ତୁମ୍ଭ ରୂପ ତ ମଳିନ ଦିଶୁଅଛି, ଏହା କଣ ଲୁଚିବାର ଅଛି କି ? ଅର୍ଥାତ୍ ଏହା ଲୁଚିବାର କଥା ନୁହେଁ. ସ୍ପଷ୍ଟ ଜଣା ପଡ଼ୁଅଛି । କେଉଁ ସ୍ତ୍ରୀର ଚାହାଣୀ ଭଙ୍ଗୀ ତ ତୁମ୍ଭ ବକ୍ଷର ଛୁରୀ ହେଲାଣି, ଅର୍ଥାତ୍ କେଉଁ ସ୍ତ୍ରୀର ଚାହାଣୀଭଙ୍ଗୀ ତୁମ୍ଭ ବକ୍ଷରେ ପ୍ରବେଶ କରି ତୁମ୍ଭଙ୍କୁ ଘୋର ଯନ୍ତ୍ରଣା ଦେଉଅଛି । ୨ । ବାଣରୁ ବଳି ସେହି ଚିନ୍ତା ତ ଛାତିରେ ପଶିଗଲାଣି ।୩।

(ଛ) ଅଜ୍ଞାନାଭିନୟଂ ବିହାୟ ଋଜୁତାମାଲିଙ୍ଗୟିତ୍ୱା ମନ-
ଶ୍ଚାଞ୍ଚଲ୍ୟାଦ୍‌ବିରମେଦ୍ଧୁରୀରୟ ଭବନ୍ନେତ୍ରାଞ୍ଚଲୋଦଞ୍ଚନଂ ।
ନୋଚେଦାଧିବଶ ଦସାରଦଦଶାମେଷ୍ୟତ୍‌ଦୃଶଂ ସୁନ୍ଦରଂ,
କାନ୍ତାଂଶେୟୁପଞ୍ଚସାୟକ ବପୁସ୍ତେ କ୍ଷାମତାମେଷ୍ୟତି ।
ମୋହନ ନଟପଟଲୋଦ୍‌ଭଟମୁକୁଟମଣେ ନାନ୍ତଃସନ୍ତାପମନ୍ତରେଣ ଫଳମିତି ପ୍ରତୀପ୍ସତେ ତବ କୈତବକୁଶଳତାଲତାୟାଃ ।

---

ତୁମ୍ଭର ହଠାତ୍ ଜ୍ଞାନ ନଷ୍ଟେ ଦୂର ହୋଇଯିବ, ତୁମ୍ଭେ ଖାଲି ଛଟପଟ ହେବ ପ୍ରିୟ ! କିନ୍ତୁ ମନେ ରଖ, ସେ ନାରୀ ବର୍ତ୍ତମାନ ତୁମ୍ଭଙ୍କୁ ଛଣା ସୁଧା ଅର୍ଥାତ୍ ବିମଳ ଅମୃତପରି ଦଶୁଅଛି ଯେବେ ତାକୁ ଛୁଇଁଦେବ, ତେବେ ସେ ବିଷ ପାଲଟିଯିବ । ୫ । ତୁମ୍ଭର ଗୁଣରେ ମନକୁ ଅଚ୍ଛନ୍ନ କରି ଆଠଗଡ଼ର ରାଜା ଏହା ଭଣିଲେ । ୬ ।

ଟୀକା—ହେ କୃଷ୍ଣ, ଅଜ୍ଞାନାଭିନୟଂ ଅବିବେକଚେଷ୍ଟାଂ ବିହାୟ ତ୍ୟକ୍ତ୍ୱା, ଋଜୁତାଂ ସାରଲ୍ୟଂ ଅଲିଙ୍ଗୟିତ୍ୱା ସରଳତାଂ ଆଶ୍ରିତ୍ୟ ଇତ୍ୟର୍ଥଃ ( ଆଲିଙ୍ଗଂ ଆଲିଙ୍ଗନଂ କରୋତି ଅଲିଙ୍ଗୟତି, "ତତ୍ କରୋତି, ତଦାଚଷ୍ଟେ" ଇତି ସୂତ୍ରେଣ ଣିଚ୍ ପ୍ରତ୍ୟୟାନ୍ତାତ୍ 'ଅଲିଙ୍ଗି' ନାମଧାତୋଃ ସମାନକର୍ତ୍ତୃକୟୋଃ ପୂର୍ବକାଲେ କ୍ତ୍ୱାଚ୍, ଇତି ସୁଧୀଭିର୍ବିଭାବ୍ୟଂ ) ମନସଃ ଚିତ୍ତସ୍ୟ ଚାଞ୍ଚଲ୍ୟାତ୍ ଚଞ୍ଚଳତ୍ୱାତ୍ ବିରମ, ନିବୃତ୍ତୋଭବ; ଇତି ମଦୁପଦେଶଗ୍ରହଣରୂପଂ ଭବତଃ ତବ ନେତ୍ରାଞ୍ଚଳୟୋଃ ନୟନାପାଙ୍ଗୟୋଃ ଉଦଞ୍ଚନଂ ଊର୍ଦ୍ଧ୍ୱଗତିଂ ଉଦୀରୟ ପ୍ରକଟୟ, ଅପାଙ୍ଗସଞ୍ଚାଳନେନ ମଦୁପଦେଶଃ ଗୃହୀତ ଇତି ପ୍ରକାଶୟ ଇତ୍ୟର୍ଥଃ । ନୋଚେତ୍ ମଦୁକ୍ତଂ ନାଚରସି ଚେତ୍, ତବ ଈଦୃଶଂ ( ହସ୍ତସଞ୍ଚାଳନେନ ନିର୍ଦ୍ଦିଶ୍ୟ ) ସୁନ୍ଦରଂ ମନୋହରଂ କାନ୍ତାସଂଘସ୍ୟ ଯୁବତିଜନସମୂହସ୍ୟ ସମ୍ବନ୍ଧ ପଞ୍ଚସାୟକବପୁଃ କନ୍ଦର୍ପରୂପଂ, ଯସ୍ମିନ୍ ଦୃଷ୍ଟେ ଯୁବତୟଃ କନ୍ଦର୍ପବଶବର୍ତ୍ତିନ୍ୟଃ ଭବନ୍ତି ତାଦୃଶଂ ତେ ଶରୀରଂ ଆଧିବଶାତ୍ ମନୋବ୍ୟଥାଧିକ୍ୟାତ୍, ଅସାରଂ ଦଦାତୀତି ଅସାରଦା ବଳହାରିଣୀ ତାଂ ଦଶାଂ ଅବସ୍ଥାମିତି ଯାବତ୍ ପ୍ରାପ୍ୟ କ୍ଷାମତାଂ କୃଶତାଂ ଏଷ୍ୟତି ପ୍ରାପ୍ସ୍ୟତି ।

ହେ ମୋହନ, ହେ ନଟାନାଂ ପଟଳସ୍ୟ ସମୂହସ୍ୟ ଉଦ୍‌ଭଟଃ ଉତ୍କୃଷ୍ଟଃ ମୁକୁଟମଣିଃ, ତସ୍ୟ ସମ୍ବୋଧନେ ହେ ନାଗରିକକୁଳଶେଖର, ଅନ୍ତଃସନ୍ତାପଂ ଅନ୍ତରେଣ ଅନ୍ତର୍ଦାହଂ ବିନା ତବ କୈତବେଷୁ କପଟାଚୃରେଷୁ ଯା କୁଶଳତା ନିପୁଣତା ସା ଏବ ଲତା ତସ୍ୟାଃ ଫଳଂ ନ ଭବିଷ୍ୟତୀତ୍ୟର୍ଥଃ ଇତି ପ୍ରତୀୟତେ ଅବବୁଧ୍ୟତେ ।

ଅନୁବାଦ—ହେ କୃଷ୍ଣ, ଅଜ୍ଞତା ଛଳନା ତ୍ୟାଗ କରି ସରଳ ହୁଅ ଏବଂ ମନଶ୍ଚଞ୍ଚଳତା ଦୂର କର ଏବଂ ମୋ କଥା ଗ୍ରହଣ କର, ଏହା ତୁମ୍ଭର ନେତ୍ର



ରାଗ—କେଦାର ବା ପ୍ରନଙ୍ଗ

ଜାଣିଛି ମୁଁ ଏତେ ମାନ ଗୋ ଲଳିତେ ଯାହା ଇଚ୍ଛା ତୋର ତାହା କର,
ଜ୍ୱଳନରୁ ବଳି ଦହୁ ଦନୁ କେଲି କରେ ଜନ୍ମୀବନ୍ଧୁନାହାକର । ପଦ ।
ଜଣକେତେ ବ୍ରଜଶିଶୁ ଥିଲେ ନିଜ, ପୁରୁଁ ଅସୁଥିଲି ଖେଳାଇ ସମଜ,
ଜମ୍ଭାରାତିମଣି ଗିରୀନ୍ଦ୍ରକୁ ଜିଣିବାର ପୁରେ ହେଲା ମୋ ନଜର । ୧ ।
ଜାତକୁରୁବିନ୍ଦ ବାତାୟନବୃନ୍ଦ, ଅନାଇ ମୁଁ ଗୁଲୁଥିଲି ମନ୍ଦ ମନ୍ଦ,
ଜଙ୍ଗମ ହେବାର ଜମ୍ବୁନଦସାର ଶିରୀ ସ୍ଫୁରିଲା ସେ କି ପ୍ରକାର । ୨ ।
ଜୀବନଦ ନୀଳଜଳଜଯୁଗଳ, ବିଧୁବିମ୍ବେ ହୋଇ ବିଳାସବିଲୋଳ,
ଜାତ କଲା ତହିଁ ଜରଜର ଶର—ନିକର ବରଷା ଖରତର । ୩ ।
ଜହରକୁ ଗୋଳି ଦେଲା ପରି ଗିଳି, ମୋହର ଦେହର ପୀଡ଼ା ଗଲା ବଳି,
ଜୀବନାଶା ଚଳି ଯାଉଅଛି କଳି ପାରୁ ନାହିଁ ମୁଁ ମୋ ହୃଦନ୍ତର । ୪ ।
ଜନମନୋହାରୀ ସେ ବିଚିତ୍ର ଶିରୀ, କାହା ନେତ୍ରପାତେ ଯାଇ ନାହିଁ ପୂରି,
ଜଗଦ୍ଦେବ ହରିଚନ୍ଦନ ମେ ହରି ନାମ କହୁଅଛି ନିରନ୍ତର । ୫ ।

---

ସଙ୍କେତଦ୍ୱାରା ପ୍ରକାଶ କର; ନଚେତ୍ ତୁମ୍ଭର ଏହି ଯେଉଁ ସୁନ୍ଦର ଶରୀରକୁ ଦେଖି ଯୁବତିମାନେ କାମପରିବଶ ହୁଅନ୍ତି, ସେହି ଶରୀରଟି ମନସ୍ତାପ ହେଉଥିବାରୁ ବଳହୀନ ହୋଇ ଏକାନ୍ତ କ୍ଷୀଣ ହୋଇଯିବ ।

ହେ ନଗରକୁଳଚୂଡ଼ାମଣି ମୋହନ, ତୁମ୍ଭେ ଯେଉଁ କପଟାଚରଣ କରୁଅଛ, ଅନ୍ତର୍ଦାହ ବିନା ସେହି କପଟତାରୂପ ଲତାରେ ଅନ୍ୟ ଫଳ ଫଳିବ ନାହିଁ । ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ଜାଣିଛି ମୁଁ ଏତେ" ଇତ୍ୟାଦି ।

---

(ଜ) ଜ୍ୱଳନ—ଅଗ୍ନି, ଜନ୍ମୀବନ୍ଧୁନାହାକର—ଚନ୍ଦ୍ରକିରଣ, ସମଜ—ପଶୁସମୂହ, ଜମ୍ଭାରାତିମଣି—ଇନ୍ଦ୍ରମଣି, ଗିରୀନ୍ଦ୍ର—ବଡ଼ ପର୍ବତ, ନଜର—ଦୃଷ୍ଟି; ଜାତକୁରୁବିନ୍ଦ—ଉତ୍କୃଷ୍ଟ ପଦ୍ମରାଗମଣି, ବାତାୟନବୃନ୍ଦ—ଝରକା ସବୁ, ମନ୍ଦ ମନ୍ଦ—ଧୀରେ ଧୀରେ, ଜଙ୍ଗମ ହେବା—ଚଳନ୍ତା, ଚଳୁଥିବା; ଜମ୍ବୁନଦ—ନଦୀ ବିଶେଷ, ଏଥିରୁ ଉତ୍ପନ୍ନ ହୁଏ ବୋଲି ସୁବର୍ଣ୍ଣକୁ ଜମ୍ବୁନଦସାର ବା ଜାମ୍ବୁନଦ ବୋଲାଯାଏ, ଶ୍ରୀ—ଶୋଭା, ଜୀବନଦ—ବର୍ଷୁକମେଘ, ନୀଳଜଳଜଯୁଗଳ—ଦୁଇଟି ନୀଳପଦ୍ମ, ବିଧୁବିମ୍ବ—ଚନ୍ଦ୍ରବିମ୍ବ, ବିଳାସବିଲୋଳ—କ୍ରୀଡ଼ାରେ ଚଞ୍ଚଳ, ଗରଳ—ବିଷ, ଜର୍ଜର—ଲିପ୍ତ, ଶରନିକର—ବାଣସମୂହ, ଜୀବନାଶା—ପ୍ରାଣର ଆଶା ।

(ଙ) ତ୍ୱତ୍ସ୍ନେହଜାଭ୍ୟୁଦୟିନା ତ୍ୱୟି ନାପଟଦେଶଃ,
ସମ୍ପୂର୍ଣ୍ଣୟତେ ମମ ହୃଦା କଥୟାମି ତଥ୍ୟଂ ।
ବସ୍ତ୍ରେ କପସ୍ତ୍ୟସିତସୌଧଲସଦ୍ବିଳାସମ୍
ତଦ୍ବୀକ୍ଷଣାଦ ଯଦ ଇଦ୍ଧମ ଜ୍ଜଲ୍ଲସ ।

ସହଚର ଲଲିତେ, ବିମଳବଳଦଳନୋପଳପ୍ରାସାଦଚୂଳଚେଲବଲ୍ଲୀଖେଲାଲୋଲଲୋଚନେନ ମୟା ପିଷ୍ଟପୋଲ୍ଲଷ୍ଟ-ଚେଷ୍ଟାବିଶିଷ୍ଟା କାଚନ କାଞ୍ଚନମୟୀ ସଞ୍ଚାରିଣୀ ପାଞ୍ଚାଳିକା ତଦଧଃ ସମୀପୟୁଚୈାପକଣ୍ଠେ ଯଚ୍ଛପ୍ରଭୃତ୍ୟବଲୋକ ତତ୍ପ୍ରଭୃତ୍ୟେତାଦୃଗବସ୍ଥେନ ମୟା ସ୍ଥୀୟତ ଇତି କେବଳଂ ଜାନାମି ।

---

ଅ ହେ ଲଳିତେ, ତୋର ଯାହା ଇଚ୍ଛା ତା କର, ସେହି ଦିନଠାରୁ (ଯେଉଁ ଦିନ ରାଧାଙ୍କୁ ଦେଖିଲି ) ଚନ୍ଦ୍ରକିରଣ ମୋତେ ଅଗ୍ନିପରି ବୋଧ ହେଉଅଛି । ପଦ । ଦିନେ କେତେ ଜଣ ଗୋପାଳବାଳକ ମୋ ସାଙ୍ଗରେ ଥିଲେ, ମୁଁ ଘରୁ ଗାଈବାଛୁରି ପ୍ରଭୃତିଙ୍କୁ ଖେଳାଇ ଖେଳାଇ ଆସୁଥିଲି, ଏହି ସମୟରେ (ବୁଣ୍ଡ ଓ ଉଚ୍ଚତାରେ ) ଇନ୍ଦ୍ରମଣି ପର୍ବତକୁ ଜିଣିଥିବା ଗୃହରେ ମୋ ଆଖି ପଡ଼ିଗଲା । ୧ । ଉତ୍କୃଷ୍ଟ ପଦ୍ମରାଗମଣିରେ ( ରକ୍ତବର୍ଣ୍ଣ ପ୍ରସ୍ତରରେ ) ନିର୍ମିତ ହୋଇଥିବା ସେହି ଘରର ଝରକାଗୁଡ଼ିକୁ ଅନାଇ ଅନାଇ ମୁଁ ଧୀରେ ଧୀରେ ଗଲୁଥିଲି, ଏହି ସମୟରେ କି ଏକ ଅନିର୍ବଚନୀୟ ଶୁଦ୍ଧ ସୁବର୍ଣ୍ଣର ଗୋଟିଏ ଚଳନ୍ତା ତେଜ ସେହି ଘର ଭିତରେ ପ୍ରକାଶିତ ହେଲା । ୨ । ବର୍ତ୍ତୁଳ ମେଘପରି ନୀଳବର୍ଣ୍ଣ ପଦ୍ମ ଦୁଇଟି ଚନ୍ଦ୍ରବିମ୍ବ ମଧ୍ୟରେ କ୍ରୀଡ଼ାରେ ଚଞ୍ଚଳ ହୋଇ ବିଷବୋଳା ଶରମାନଙ୍କୁ ବର୍ଷିଲା, ( ଚନ୍ଦ୍ରବିମ୍ବ ମଧ୍ୟରେ ପଦ୍ମର ବିଳାସ ବିଲୋକନ ଅସମ୍ଭବ, କାରଣ ଚନ୍ଦ୍ରକିରଣରେ ପଦ୍ମ ବିକଶିତ ହୁଏ ନାହିଁ, କିନ୍ତୁ ଏଠାରେ ରାଧାଙ୍କ ମୁଖରୂପ ଚନ୍ଦ୍ରରେ ଚକ୍ଷୁରୂପ ନୀଳପଦ୍ମ ଦୁଇଟି କ୍ରୀଡ଼ା କରୁଥିବା ଲକ୍ଷ୍ୟ ) ତହିଁରୁ ବିଷାକ୍ତ କ୍ଷାରସମ୍ବନ୍ଧ ବାଣରେ ମୋତେ ବିଦ୍ଧ କରି ପକାଇଲା । ୩ । ବିଷକୁ ଗୋଳି ପିଇଦେଲେ ଦେହରେ ଯେପରି ଯନ୍ତ୍ରଣା ହୁଏ, ସେହି ଶର ବାଜିବାରୁ ମୋ ଦେହର ପୀଡ଼ା ତାହାଠାରୁ ବଳିଗଲା, ମୋ ଜୀବନର ଆଉ ଆଶା ନାହିଁ, ମୋ ହୃଦୟ ଭିତରେ କଅଣ ହେଉଅଛି ମୁଁ ତାହା ଜାଣି ପାରୁ ନାହିଁ । ୪ । ଅହୋ, ମନୁଷ୍ୟର ମନୋହରଣକାରିଣୀ ସେହି ବଦନ ଶୋଭାରେ କେଉଁ ଲୋକର ନେତ୍ରରୂପ ପାତ୍ର ପୂର୍ଣ୍ଣ ହୋଇ ନାହିଁ ? ଅର୍ଥାତ୍ କେଉଁ ଲୋକ ସେହି ବଦନ ଶୋଭା ଦେଖି ପୂର୍ଣ୍ଣମନୋରଥ ହୋଇ ନାହିଁ ? ଜଗଦ୍ଦେବ ହରିଚନ୍ଦନ ମୋ ନାମକୁ ନିରନ୍ତର ଉଚ୍ଚାରଣ କରୁଅଛି । ୫ ।

ଟୀକା—ଅୟି ଲଳିତେ, ତ୍ୱତ୍ସ୍ନେହାତ୍ ଜାୟତେ ଯଃ ଅଭ୍ୟୁଦୟଃ ସୌଭାଗ୍ୟଂ ସ ଏବ ଅସ୍ୟାସ୍ତୀତି ତେନ ତ୍ୱତ୍ସ୍ନେହଜାଭ୍ୟୁଦୟିନା ମମ ହୃଦା



## ରାଗ—ମୁଖାରୀ ବା ଚୋଖିପରଜ

୯ଂଗଡ଼ ମାନ ହେଲ ହେ ଶ୍ୟାମ, ହିମୁଣ ହେବାକୁ ସହସ୍ର ଯାମ । ପଦ ।
୯ାଉଁଳିବା ନବ ତମାଳ ରମା, ହିଙ୍କି ଆଣି ଅଙ୍ଗେ କଲଣି ଜମା । ୧ ।
୯ଢ଼ଇ ବଳ କୋମଳ ଲ୍ଲତରୁ, ୯ଷଧ୍ୱଜପୀଡ଼ା ଝାଞ୍ଜି ତାତରୁ । ୨ ।
୯ୁମି ହୁମି ଲୁଠି ପୃଷ୍ଠେ ରସାର, ୯ୁଳିବାର ଏକା ହୋଇବ ସାର । ୩ ।
୯ଳ ପାଞ୍ଚାଳୀ ୯ଂଚକେ ନାହିଁ କି ? ୯ୋଲ ମାଇଲ ତୁମ୍ଭଙ୍କୁ କାହିଁକି । ୪ ।
୯ଲକ ଗଲ କୃଷ୍ଣ ଅକାରଣେ, ୯ାଡଗଣ୍ଡ ରସ ବାଦସା ଭଣେ । ୫ ।

---

ହୃଦୟେନ ତ୍ୱୟି ଅପଦେଶଃ କପଟବ୍ୟବହାରଃ ନ ସମ୍ଭୃଶ୍ୟତେ । ଯତୋଽହଂ ତ୍ୱଦୀୟସ୍ନେହଲବ୍ଧସୁଃ ତତସ୍ତ୍ୱୟି କପଟାଚରଣଂ ନ କରୋମି ଇତ୍ୟର୍ଥଃ; ଅତଃ ତଥ୍ୟଂ କଥୟାମି—ଅସିତସୌଧେ ଇନ୍ଦ୍ରମଣିମୟେ ପ୍ରାସାଦେ ଲସନ୍ ଶୋଭମାନଃ ବିଳାସୋ ଯସ୍ୟ ତତ୍ ଏକଂ ବସ୍ତୁ ଅସ୍ତି ଛନ୍ଦୁଶଃ ଚଦାଃ ଏବମ୍ଭୂତୋ ରୋଗଃ ତଦ୍ୱୀକ୍ଷଣାଦ ତସ୍ୟ ଦର୍ଶନସମୟାଦେବ ଉଲ୍ଲସ ସଜାତ ଇତ୍ୟର୍ଥଃ ।

ସହଚରି ଲଳିତେ, ବିମଳାଃ ବିଶୁଦ୍ଧାଃ ଯେ ବଳଦଳନୋପଲାଃ ଇନ୍ଦ୍ରମଣି-ପ୍ରସ୍ତରାଃ ତେନ ନିର୍ମିତସ୍ୟ ପ୍ରାସାଦସ୍ୟ ଚୂଳେ ଅଗ୍ରଭାଗେ ଯା ଚେଳବଲ୍ଲରୀ ପତାକା-ଲତା ତସ୍ୟାଃ ଖେଳାୟାଂ ବାତାଦୋଳନଲୀଳାୟାଂ ଲୋଳେ ସତୃଷ୍ଣେ ଲୋଚନେ ଯସ୍ୟ ତେନ ମୟା ପିଷ୍ଟପେ ଜଗତି ଯା ଉତ୍କୃଷ୍ଟଚେଷ୍ଟା ବିଳାସବିଭ୍ରମାଦୟଃ ତତ୍ପରିଶିଷ୍ଟା ତଦ୍ୟୁକ୍ତା କାଚନ ଅନିର୍ବଚନୀୟା ସଞ୍ଚାରିଣୀ ଗତିଶୀଳା କାଞ୍ଚନମୟୀ ପାଞ୍ଚାଳିକା ସୁବର୍ଣ୍ଣପୁତ୍ତଳିକା ତଦଧଃ ତସ୍ୟ ପ୍ରାସାଦସ୍ୟ ନିମ୍ନଭାଗେ ସମୀରାୟନୋ-ପକଣ୍ଠେ ଗବାକ୍ଷସମୀପେ ତତ୍ ପ୍ରଭୃତି ଯନ୍ତ୍ରହୃତ୍ରିଦିବଲୋକ ଦୃଷ୍ଟା ତତ୍ ପ୍ରଭୃତ୍ୟେବ ଉନ୍ମହୂର୍ତ୍ତା ଦେବମୟା ଏତାଦୃକ୍ ଅବସ୍ଥା ଯସ୍ୟ ତେନ ସ୍ଥୀୟତେ ଇତି କେବଳଂ ଅହଂ ଜାନାମି ।

ଅନୁବାଦ—ଅୟି ଲଳିତେ, ତୋ ସ୍ନେହ ଏକା ମୋ ମନର ସମସ୍ତ ଆନନ୍ଦର କାରଣ । ଏପରି ଅବସ୍ଥାରେ ତୋ ପାଖରେ ମୁଁ ଅବୋ କପଟାଚରଣ ନ କରି ସତ୍ୟ କହୁଅଛି—ଇନ୍ଦ୍ରନୀଳମଣି ପ୍ରାସାଦରେ କ୍ରୀଡ଼ା କରୁଥିବା କୌଣସି ବସ୍ତୁକୁ ଦେଖିବା ଦିନଠାରୁ ମୋର ଏହି ରୋଗ ଜାତ ହୋଇଅଛି ।

ସଖି ଲଳିତେ, ବିଶୁଦ୍ଧ ଇନ୍ଦ୍ରମଣି ପଥରରେ ନିର୍ମିତ କୋଠା ଉପରେ ପବନରେ ଖେଳୁଥିବା ପତାକାକୁ ଚାହିଁ ଚାହିଁ ମୁଁ ଯାଉଥିଲି, ଏହି ସମୟରେ ଦେଖିଲି—ଅଲୌକିକସାମାନ୍ୟସୌନ୍ଦର୍ଯ୍ୟଯୁକ୍ତା ଗୋଟିଏ ସୁବର୍ଣ୍ଣମୟୀ ପିତୁଳା

(ଝ) ଝଙ୍କଃ ପାଙ୍କଶକାଙ୍ଗାବଭକ୍ତେବାପୀଡ୍ୟ ବସ୍ତ୍ରାଂ ଝୁଧ୍ୟା,
ମର୍ତ୍ତ୍ୟଃ କ୍ୱାପି ସୁଧାମମୂବ ବସୁଧାଲୋକେ ପିବଢ୍ୟାତୁରଃ;
ବ୍ୟର୍ଥଂ ପ୍ରାର୍ଥନୟା କଦର୍ଥୟସି ମାଂ ଗତ୍ୱା ଦୁରାଶାଂ କଥମ୍,
ସା କଂ ମଦ୍‌ବଶମେତ ହନ୍ତ ବପୃତସ୍ତାରାଧିକା ରାଧିକା ।
କେଶବ ଲଳିତାଚନ୍ଦ୍ରବଳଯୁଚାରୁଭିଃ କଣ୍ଠୀରବରାଜୀବ ରାଜୀବ-ଲୋଚନା ସାକ୍ଷାଦ୍ଦର୍ଶୀଭବଂଶୀକର୍ତ୍ତୁଂ ମଣକ୍ୟା ।

---

ତାହାର ତଳପାଖରେ ଥିବା ଝରକାବାଟେ ଗଳି ଯାଉଅଛୁ, ସେହି ସମୟରୁ ମୋର ଅବସ୍ଥା ଏପରି ହୋଇଅଛି—ମୁଁ ଏତିକି ମାତ୍ର ଜାଣେ ।

ଏହା ଶୁଣି ଲଳିତା କହୁଅଛନ୍ତି, "ଝଗଡ଼ ମାତ୍ର ହେଲ ହେ" ଇତ୍ୟାଦି ।

---

(ଝ) ଝଗଡ଼ ହେବା—ବୃଥା ଧନ୍ଦା ପାଇବା, ଝିମୁଟ—ମୁହୂର୍ତ୍ତ, ଯାମ—ପ୍ରହର, ନବତମାଳ—ନୂଆ ତମାଳଗଛ, ରମା—ଶୋଭା, ଝିଙ୍କିଅଣି—ଓଟାରି ଆଣି, ଝଡ଼ିବ—ନଷ୍ଟ ହେବ, ଝଷଧ୍ୱଜ—ମୀନଧ୍ୱଜ, କନ୍ଦର୍ପ; ଝାଞ୍ଜି—ଉତ୍ତାପ, ଝୁମି ଝୁମି—ଘୂମାଇ ଘୂମାଇ, ଝଳ—ଚକ୍ ଚକ୍, ଦୀପ୍ତିଶୀଳ; ପାଞ୍ଚାଳୀ—ପିତୁଳା, ଝଟକିବା—ଶୋଭା ପାଇବା, ଝୋଲ ମାଇଲ—ଭ୍ରମ ବା ଅଜ୍ଞାନ ଜାତ ହେଲା, ଝଲକିଗଲ—ଚମକି ପଡ଼ିଲ, ଝାଡ଼ଖଣ୍ଡ—ଅରଣ୍ୟ ଅଞ୍ଚଳ, ରସା—ପୃଥିବୀ, ବାଦସା—ରାଜା ।

ହେ ଶ୍ୟାମ, ତୁମ୍ଭେ ଅକାରଣରେ ଦିନା ଏତେ କଷ୍ଟ ପାଇଲ, ଏଥିରେ ମୁହୂର୍ତ୍ତିକ ତୁମ୍ଭଙ୍କୁ ସହସ୍ର ପ୍ରହର ପରି ଦିନା ଜଣାଯିବ । ପଦ । ଝାଉଁଳ ପଡ଼ିଥିବା ଗଜା ତମାଳଗଛର ଶୋଭାକୁ ଓଟାରି ଆଣି ନିଜ ଦେହରେ ଜମା କଲଣି, ଅର୍ଥାତ୍ ଗଜା ତମାଳ ଗଛ ଝାଉଁଳ ପଡ଼ିଲେ ଯେପରି ଦିଶେ, ତୁମ୍ଭେ ଜାଣୁ ଜାଣୁ ସେହିପରି ଦିଶିଲଣି । ୧ । ଅତଏବ କନ୍ଦର୍ପପୀଡ଼ାଜନିତ ଉତ୍ତାପ ହେଲରୁ ତୁମ୍ଭ କୋମଳ ଛାତିରୁ ବଳ କମିଯିବ ଅର୍ଥାତ୍ ତୁମ୍ଭେ କ୍ରମେ ଧୈର୍ଯ୍ୟଶୂନ୍ୟ ହୋଇଯିବ । ୨ । (କିଶାରେ) ଘୂମାଇବା ଭଳି ହୋଇ କେବଳ ମାଟିରେ ଗଡ଼ିବ ଏବଂ ଝୁରିବାଟା ମାତ୍ର ସାର ହେବ । ୩ । ତୁମ୍ଭେ ଗୋଟିଏ ଚଳନ୍ତା ସୁବର୍ଣ୍ଣପିତୁଳା ଦେଖି ଯାହା ଏପରି ହେଲ ବୋଲି କହିଲ—ଅଚ୍ଛା କହ ନା ଦେଖି, ସୁନାର ପିତୁଳା କଅଣ ଚକ୍‌ଚକ୍ ଦିଶେ ନାହିଁ ? ଏଥିରେ କାହିଁକି ତୁମ୍ଭଙ୍କୁ ଝୋଲ ମାଇଲା ? ୪ । ହେ କୃଷ୍ଣ ! ତୁମ୍ଭେ ବୃଥା ଚମକି ପଡ଼ିଲ, ଅରଣ୍ୟ ପ୍ରଦେଶର ରାଜା ଏଥିରେ ଭଣିଲେ । ୫ ।

ଟୀକା—ଅମୁତ୍ର ଅସ୍ମିନ୍ ବସୁଧାଲୋକେ ପୃଥିବ୍ୟାଂ କ୍ୱାପି ଖଙ୍କଃ ଝୁଦ୍ରକାୟଃ ମର୍ତ୍ତ୍ୟଃ ମାନବଃ ଝୁଧ୍ୟା ବୁଭୁକ୍ଷୟା ଆତୁରଃ ସନ୍ ପାଙ୍କଶଣ୍ଡଙ୍ଗୀଃ



ରାଗ—ଭୈରବୀ ଜଙ୍ଗଲା ବା ମୋହନା

ନ ଭାଙ୍ଗ ରେ ଶୁଭାଙ୍ଗି, ଭରଣୀ ହୁଅ ସାହା । ପଦ ।

ନୋହିଲେ ତୁ ପଞ୍ଚବାଣ, କାର୍ଯ୍ୟେ ନିତନୁ ବାଣ
ନିଃଶେଷ କରୁଛି ଦେହ ଲୋହା । ୧ ।

ନୀପକୁଞ୍ଜ ଉପକଣ୍ଠେ, ନ୍ୟସ୍ତ କରିଅ ମୋ କଣ୍ଠେ
ବାଟୋଇନ୍ଦ୍ର ନିରୁପମ ବାହା । ୨ ।

ନୈଦାନ୍ତବିଳାସ ତାର, ନିଦାନ ଏ ଅବସ୍ଥାର
ନିରେଖି ଉଠାରୁ ଥରେ ଆହା । ୩ ।

ନିଷ୍ଠୁର ଏ ଘେନ ଚିତ୍ତେ, ନ ଜୀଇବି ଏଦାଚିତେ
ନ ବତାଇଲେ ତୁ ସୁଖ ରାହା । ୪ ।

ନାଥ ଅଷ୍ଟାବୁର୍ଜରେ ଯେ, ନିତ ସେ ମୋ ପାଦେ ଭଜେ,
ନିନ୍ଦିବଟି ନ କଲେ ତୁ ତାହା । ୫ ।

---

ପୂର୍ଣ୍ଣିମାରଜନ୍ୟାଃ ଚୈତ୍ରଗୁର୍ବୋଃ ସ୍ୱାମିନଃ ପୂର୍ଣ୍ଣଚନ୍ଦ୍ରସ୍ୟ ଇତ୍ୟର୍ଥଃ ବିମ୍ବଂ ମଣ୍ଡଳଂ ଆପୀଡ୍ୟ ମର୍ଦ୍ଦୟିତ୍ୱା ସୁଧାଂ ଅମୃତଂ ପିବତି ? ନ କ୍ୱାପୀତ୍ୟର୍ଥଃ । ତ୍ୱଂ କଥଂ ଦୁର୍ଦ୍ଦଶାଂ ଗତ୍ୱା ଦୁର୍ଦ୍ଦଶାପୀଡ଼ିତଃ ସନ୍ ମାଂ ପ୍ରାର୍ଥନୟା ବ୍ୟର୍ଥଂ ଯଥା ସ୍ୟାତ୍ ତଥା କଦର୍ଥୟସି ପୀଡ଼ୟସି ? ହନ୍ତ ! ( ଖେଦେ ) ବିୟତଃ ଆକାଶସ୍ୟ ତାରାଧିକା ସା ରାଧିକା କିଂ ମମବଶଂ ଏତି ? ଯଥା ଆକାଶସ୍ଥାଂ ତାରାଂ କୋଽପି ଗ୍ରହୀତୁଂ ନ ଶକ୍ନୋତି ତଥା ତାଂ ରାଧିକାଂ ଅହଂ ବଶେ ଆନେତୁଂ ନ ଶକ୍ନୋମି ଇତ୍ୟର୍ଥଃ ।

ହେ କେଶବ, ଲତାତନ୍ତୁବଲୟୈର୍ବାଗୁରାଭିଃ ଲତାସୂତ୍ରପାଶୈଃ କଣ୍ଠୀରବରାଜୀବ ସିଂହସମୂହ ଇବ, ରାଜୀବଲୋଚନା ପଦ୍ମନେତ୍ରା ସା ରାଧା ଅସ୍ମାଦୃଶୀଭିଃ ବଶୀକର୍ତ୍ତୁଂ ଅଶକ୍ୟା ।

ଅନୁବାଦ—ଏ ସଂସାରରେ ରହି କୌଣସି ବାମନାକୃତି କ୍ଷୁଧାତୁର ଲୋକ ପୂର୍ଣ୍ଣଚନ୍ଦ୍ରରୁ ଅମୃତ ଚିପୁଡ଼ି ତାହାକୁ ପିଇ କ୍ଷୁଧା ନିବୃତ୍ତ କରେ କି ? ହେ କୃଷ୍ଣ, ତୁମ୍ଭେ ଦୁରବଶ ରେ ପଡ଼ି ମୋତେ ଅକାରଣରେ ଏତେ ପ୍ରାର୍ଥନା କରୁଅଛ । ମନୁଷ୍ୟ ପକ୍ଷରେ ଆକାଶର ତାରା ପାଇବା ବରଂ ସମ୍ଭବପର, କିନ୍ତୁ ସେହି ରାଧିକାଙ୍କୁ ପାଇବା ସମ୍ଭବପର ନୁହେଁ, ଏପରି ଅବସ୍ଥାରେ ସେ କଅଣ ମୋର ବଶବର୍ତ୍ତିନୀ ହେବ ?

(୫) ଦୃଢ଼ାଂ ନବ୍ୟାଂ ଭବ୍ୟାଂ ତରୁଣି ତରଣିଂ ତେ ମୃଦୁ ଗିରଂ,
କରିଷ୍ୟେ କନ୍ଦର୍ପ ମ୍ବୁନାଧିତରଣାୟେତ୍ୟହରହଃ ।
ସ୍ମିତା ଯାଶା ନାସାନ୍ତଲବବିଲାସାପି ନନୁ ତାଂ,
ରୁଷା ସାଙ୍ଗଂ ଭଙ୍ଗଂ ନ ନୟ ବହୁରଙ୍ଗଂ ନ କୁରୁ ମାଂ ॥

ନୋଚେତଂ ସଖି, ସାଧାରଣେତରସୁଖସୌଧୋର୍ଦ୍ଧ୍ୱ ସଞ୍ଚାରଶାଲିନୋ-
ଽଶ୍ୟତ୍ସାହସିକସ୍ୟ ମମାଶାଧିରୋହଣୀହରଣଂ ।

---

ହେ କେଶବ ବୃଢ଼ୀଅଣିଜାଲରେ ହିଂହମାନଙ୍କୁ ଧରିବା ଯେପରି ଅସମ୍ଭବ, ପଦ୍ମନେତ୍ରା ରାଧା ଆମ୍ଭମାନଙ୍କ ଭଳି ଲୋକମାନଙ୍କର ବଶୀଭୂତ ହେବା ସେହିପରି ଅସମ୍ଭବ ଅଟେ ।

ଏହା ଶୁଣି ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି, "ନ ଭଙ୍ଗ ରେ ଶୁଭଙ୍ଗି" ଇତ୍ୟାଦି ।

---

(୫) ଶୁଭଙ୍ଗୀ—ସୁନ୍ଦରୀ, ଭରତି—କଥା, ଅନୁରୋଧ; ସାହା—ସହାୟ, ପରିତ୍ରାଣ—ରକ୍ଷାକାରିଣୀ, ନତନୁ—ଅତନୁ, କନ୍ଦର୍ପ; ଲବହା—ସାରାଂଶ, ସତ୍ତ୍ୱ; ଉପକଣ୍ଠେ—ସମୀପରେ, ନିରୁପମ—ଅତୁଳନୀୟ ବାହା—ବାହୁ, ନେତ୍ରାନ୍ତବିଳାସ —ଆଖିକୋଣର ଭଙ୍ଗୀ, ନିଦାନ—କାରଣ, ନିରେଖି—ଦେଖି, ସୁଖରାହା—ସୁଖର ପଥ ।

ହେ ସୁନ୍ଦରି, ମୋ ଅନୁରୋଧ ଭାଙ୍ଗି ଦେ ନା, ମୋର ସହାୟ ହୁଅ । ପଦ । ତୁ ମୋତେ ରକ୍ଷା ନ କଲେ ନିଷ୍ଠୁର କନ୍ଦର୍ପର ବାଣ ମୋ ଦେହର ସାରଅଂଶକୁ ନଷ୍ଟ କଲା ବୋଲି ମନେ କର । ୧ । ଏହି କଦମ୍ବବନ ନିକଟରେ ସେହି ସୁନ୍ଦରୀ-ଶିରୋମଣି ରାଧାଙ୍କର ଅତୁଳନୀୟ ବାହୁକୁ ମୋ କଣ୍ଠଦେଶରେ ରଖାଇ ଦିଅ, ଅର୍ଥାତ୍ ରାଧାଙ୍କ ସଙ୍ଗେ ମୋର ମିଳନ କରାଅ । ୨ । ସେ ମୋତେ ନେତ୍ରଭଙ୍ଗୀରେ ଚାହିଁବାରୁ ମୁଁ ଏ ଦୁର୍ଦ୍ଦଶା ଭୋଗ କରୁଅଛି, ଏ କଥା ମୃଚକ୍ଷୁରେ ଦେଖି ଥରେ ସେ 'ଆହା' ବୋଲି ଉଚ୍ଚାରଣ କରୁ । ୩ । ହୃଦୟରେ ନିଶ୍ଚୟ ଜାଣ, ତୁ ଯେବେ ମୋର ସୁଖର ପନ୍ଥା ବତାଇ ନ ଦେବୁ, ତେବେ ମୁଁ ଆଉ କେବେହେଁ ବଞ୍ଚିବି ନାହିଁ । ୪ । ଅଷ୍ଟାଦୁର୍ଗର ରାଜା ନିତ ମୋ ପାଦତଳେ ସେବା କରୁଅଛି, ତୁ ରାଧାଙ୍କୁ ମୋ ସଙ୍ଗରେ ମିଳାଇ ନ ଦେଲେ ସେ ତୋର ନିନ୍ଦା କରିବ । ୫ ।

ଟୀକା—ହେ ତରୁଣି, ଅହଂ ଅହରହଃ ସଦୈବ ତବ ମୃଦୁଗିରଂ ତବ ଲଳିତକଥାଂ କନ୍ଦର୍ପାମ୍ବୁନିଧିତରଣାୟ କାମସାଗରତଃ ଉଦ୍ଧାରାର୍ଥଂ ଦୃଢ଼ାଂ ଛିଦ୍ରାଦିରହିତାଂ ଭବ୍ୟାଂ ମଙ୍ଗଳମୟୀଂ ନବ୍ୟାଂ ନୂତନାଂ ତରଣିଂ ନୌକାଂ କରିଷ୍ୟେ, ସର୍ବଥୈବ ଅସ୍ମିନ୍ ବିଷୟେ ତବ ବଚନାନୁସାରେଣ ବର୍ତ୍ତିଷ୍ୟେ



ରାଗ—ବଙ୍ଗଳାଶ୍ରୀ ବା ବସନ୍ତ

ଠଙ୍କାର କି ପ୍ରବସରଙ୍କ ବାସବକୋଦଣ୍ଡରୁ ଚଣ୍ଡ ଧନୁ,
ଠାଣି ବନେ ଶମ୍ଭୁସଦ୍ଗୁଣ କଳମ୍ବ ତୁମ୍ଭଙ୍କୁ ଏକା ଅତନୁ ହେ । ୧ ।
ଠେକି ଏ ସୁନ୍ଦର ଶ୍ରୀମୁଖଟି ପରଧରବ୍ରୀଡ଼ା ପରିମାସ,
ଠିକା ଏ ହେଲେ ଯେ ହୃଦୟ ସରୋଜେ ନୋହିଲା ବାସବିଳାସ ହେ ॥
ଠେକାଠେକି ମୋତେ କର ନାନାମତେ ତୁମ୍ଭ କାମନା ପୂରବ,
ଠାଣି ଖ୍ଣ୍ଡା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣସଖି ସରବ ହେ । ୩ ।
ଠପା ଥିବା ଗୃହ ବରନ୍ତୁ ଗୋଚର ଯେଉଁଠ ସମ୍ଭାଗୁର ଗୋପେ,
ଠିପିଦେବେ କଂସ ଆଗେ କେ ନୃଶଂସ ନନ୍ଦ ବନ୍ଦୀ ହେବେ କୋପେ ହେ ॥
ଠାକିଛ ସୁଧା ଶୃଙ୍ଖଳାକୁ ଅକାଣ୍ଡେ କରିବାକୁ ପାର୍ଶଗତ,
ଠିକାଯିବ ଅଶ୍ରୁଦର୍ପଣେ କହଇ ଶ୍ୟାମ ଏ କି ଆଚରିତ ହେ । ୫ ।

---

ଇତ୍ୟର୍ଥଃ, ନନୁ ହେ ନାସାନଳଲବବିଳାସସ୍ୟ ପ୍ରାଣଧାରଣାୟ ମେ ଯା ଆଶା ସ୍ଥିତା ତାଂ ରୂଷା କୋପେନ ସାଙ୍ଗଂ ଭଙ୍ଗଂ ନ ନୟ, ତତ୍ପ୍ରାପ୍ତ୍ୟର୍ଥଂ ଯା କାଚିତ୍ ଆଶା ମେ ହୃଦି ବର୍ତ୍ତତେ, ଯସ୍ମାହଂ ଜୀବାମି ତାଂ ତ୍ୱଂ ସର୍ବଥା ବ୍ୟର୍ଥତାଂ ନ ପ୍ରାପୟ ଇତ୍ୟର୍ଥଃ ମାଂ ଚ ବହିରଙ୍ଗଂ ଅନାତ୍ମୀୟଂ ନ କୁରୁ ।

ସଖି, ସାଧାରଣେତରଂ ସୁଖଂ ଯସ୍ୟାଂ ତଥୋକ୍ତାୟାଂ ସୌଧୋର୍ଦ୍ଧ୍ୱେ ପ୍ରାସାଦୋପରି ସଞ୍ଚାରଲୀଳାୟାଂ ବିହାରବିଳାସେ ଉଦ୍ୟତ୍ ଜାୟମାନଂ ସାହସିକ୍ୟଂ ସାହସକର୍ମ ଯସ୍ୟ ତଥୋକ୍ତସ୍ୟ ମମ ଆଶାଧିରୋହଣୀହରଣଂ ଆଶାନିଃଶ୍ରେଣିକାପନୟନଂ ତବ ନ ଉଚିତଂ ନ ଯୁଜ୍ୟତେ ।

ହେ ତରୁଣି, କନ୍ଦର୍ପ ସମୁଦ୍ର ପାର ହେବାପାଇଁ ତୁମ୍ଭର ମୃଦୁ କଥାକୁ ମୁଁ ନିଶ୍ଚେ ମଙ୍ଗଳମୟୀ ନୂତନ ଦୃଢ଼ ନୌକା କରିବ ଅର୍ଥାତ୍ ତୁମ୍ଭ କଥା ଅନୁସାରେ ଚଳି ଏ କାମ ଦୁଃଖରୁ ରକ୍ଷା ପାଇବ । ହେ ସଖି, ପ୍ରାଣ ଧାରଣ ପାଇଁ ଯେଉଁ ଆଶା ଟିକକ ଧରିଅଛୁ, କ୍ରୋଧରେ ସେ ଆଶାକୁ ସର୍ବଥା ନଷ୍ଟ କର ନାହିଁ ଏବଂ ମୋତେ ପର ବୋଲି ଭାବ ନାହିଁ ।

ସଖି, ମୁଁ ଅସାଧାରଣ ସୁଖସୌଧର ଉର୍ଦ୍ଧ୍ୱରେ କ୍ରୀଡ଼ା କରିବାକୁ ସାହସ କରିଅଛି, ତାହାଁର ଆଶାରୂପ ନିଃଶ୍ରେଣୀକୁ ହରଣ କରି ନେବା ଉଚିତ ନୁହେ । ଏହା ପ୍ରତି ଲଳିତା କହୁଅଛନ୍ତି, "ଠଙ୍କାର କି ଶ୍ରବସରଙ୍କ" ଇତ୍ୟାଦି ।

---

(୬) ଯତ୍ର ବନ୍ତା ବଳସନ୍ତ ଯୌବତମନଶ୍ଚୌରାଃ କିଶୋରାଃ ପୁରେ
ପଞ୍ଚାସ୍ତ୍ରସ୍ୟ ସମୁତ୍ସୃଜନ୍ ରତିଗୃହଃ ପ୍ରତ୍ୟୁଦ୍ଗନାନ୍ କୌସୁମାନ୍
ତାନ୍ହାବାହବମୂଳକଂ ତ୍ୟଜତି କିଂ ତ୍ୱଦ୍ଯୌବ ଚକ୍ରାଂଶଯେ,
ହାହା ଶମ୍ବକଦମ୍ବଡମ୍ବରଭଗଳମ୍ବାନ୍ କଳମ୍ବାନ୍ ମୁହୁଃ ।

କେନ ବାନ କିଶୋରେଣ ବଲ୍ଲବନନ୍ଦୀଯାଙ୍କକୁଷ୍ଟିମବନ୍ୟସ୍ତ-
କାନ୍ତିସ୍ୱତନ୍ତ୍ରନିଃପୁତ୍ରକା କୃତନା କତ ନାବଲ୍ଲେକ୍ୟତେ ।

---

(୬) ଟଙ୍କାର—ଟଂ ଟଂ ଶବ୍ଦକର, ଓଟାର; ଶ୍ରବ—କାନ, ବାସବକୋଦଣ୍ଡ—ଇନ୍ଦ୍ରଧନୁ, ଚଣ୍ଡ—ଭୟଙ୍କର, ଶମ୍ବ—ବଜ୍ର, କଳମ୍ବ—ଶର, ଅତନୁ—କନ୍ଦର୍ପ, ପରଘରବୁଡ଼ା—ଅନ୍ୟ ଘରକୁ ନଷ୍ଟ କରିବା, ଫରମାସ—ବରାଦ, ଟିକାଏ—ଟିକିଏ, ସାମାନ୍ୟ; ହୃଦୟସରୋଜେ—ହୃଦୟପଦ୍ମରେ, ହାସବିଳାସ—ଭୟହସ୍ରବ, ଠେକାଠେକି କରି—ଦ୍ୱନ୍ଦ୍ୱାମତ କରି, ଝାଣଖୁଣା—ପୀଡ଼ାଦାୟକ, ଗଞ୍ଜନା—ଗଞ୍ଜଣା, ଠପା ଥିବା—ସମ୍ବାଦବାହକରୂପେ ଥିବା, ଚର—ଦୂତ, ଟିପିଦେବା—ଗୋପନରେ କହିଦେବା, ଠେ'ପେ—କାରାଗୃହରେ, ଝାଙ୍କନ୍ତି—ଅପେକ୍ଷା କରନ୍ତି, ପାଣିଗତ—କରଗତ, ଟିକାସ୍ପିତ—ଯୁବକ ରାଜା ।

ହେ କୃଷ୍ଣ, କନ୍ଦର୍ପ କିଣ ଇନ୍ଦ୍ରଧନୁ ଅପେକ୍ଷା ପ୍ରକାଣ୍ଡ ଧନୁର ଗୁଣକୁ କାନଯାଏ ଓଟାରି ଆଣି ବଜ୍ରତୁଲ୍ୟ ଶରକୁ ଅତିବେଗରେ ତୁମ୍ଭଙ୍କୁ ବିନ୍ଧୁଅଛି ? ୧ । ଏ ସୁନ୍ଦର ଶ୍ରୀମୁଖଟିକୁ ଠେକି ପରଘର ନଷ୍ଟ କରିବାପାଇଁ ବରାଦ କରୁଅଛି, ଏଥିରେ ତୁମ୍ଭ ହୃଦୟପଦ୍ମ ମଧ୍ୟରେ ଟିକାଏ ହେଲେ ଭୟ ହେଉ ନାହିଁ ? ୨ । ମୋତେ ଠେକାଠେକି କରି ତୁମ୍ଭ ଅଭିଳାଷ ପୂରାଇବ, କିନ୍ତୁ ମୋ ପ୍ରାଣସଖୀ ରାଧା ପୀଡ଼ାପ୍ରଦ ଶାଶୁ-ନଣନ୍ଦଙ୍କ ଟଞ୍ଜଣାରୁ କଷ୍ଟ ପାଇ ସରିଯିବ । ୩ । ଗୋପରେ ଯେତେ ଘଟଣା ଘଟୁଅଛି, ତାକରୂପେ ରହିଥିବା ଦୂତମାନଙ୍କ କଥାରୁ ସେ ସବୁ କଂସ ଆଗରେ ଜଣାଯାଉଅଛି, ଯେବେ କୌଣସି ଖଳ ଲୋକ ଏ କଥା ଗୋପନରେ କଂସ ଆଗରେ କହି ଦିଏ, ତେବେ ନନ୍ଦ ନିଷ୍ଟୟ କଂସ୍ଚ୍ଛେଦ ଘରେ ବନ୍ଦ ହୋଇ ରହିବେ । ୪ । ଆକାଶରୁ ଚନ୍ଦ୍ରକଳାକୁ ହାତରେ ଧରିବ ବୋଲି ତୁମ୍ଭେ ଅପେକ୍ଷା କରଅଛ, ଅଠଗଡ଼ର ଯୁବକ ରାଜା କହୁଅଛନ୍ତି—ହେ କୃଷ୍ଣ, ତୁମ୍ଭର ଏ କି ଆଚରଣ ? ୫ ।

ଟୀକା—ହାହେତିଖେଦସୂଚକମବ୍ୟୟଂ, ଯୁବତୀନାଂ ସମୂହୋ ଯୌବତଂ ତସ୍ୟ ମନଶ୍ଚୌରାଃ ମନୋହାରିଣଃ ଯାବନ୍ତଃ ଯାବତ୍ସଂଖ୍ୟକା କିଶୋରା ଯୁବକା ପୁରେ ଅସ୍ମିନ୍ ନଗୋପନଗରେ ବଳସନ୍ତ ରତିପତିଃ ପଞ୍ଚଃ ସନ୍ ସହାୟଃ ସନ୍ ତେଷୁ କିଶୋରେଷୁ କୌସୁମାନ୍ ପ୍ରତ୍ୟୁଦ୍ଗନାନ୍ କୁସୁମଶରାନ୍ ସମୁତ୍ସୃଜନ୍ ଜୟିପନ୍



ରାଗ—ଚୋଡ଼ି ବା ଦେଶାକ୍ଷ

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ଗତ୍ତରେ । ପଦ ।
ଠକ ରୀତି ନ ଆଚର — ମୋ କଦନକୁ ବିଚାର
ଅକପଟ ବଂଶବିଧି ଉଚିତରେ । ୧ । *
ଠଣା ଠୁଙ୍କି ତାପ ବାସ,— — ମୁଣ୍ଡେ ମନମଥ ପ୍ରାଶ—
ବନ୍ଧନ କର ତୁ ପରି ମୋଚିତରେ । ୨ ।
ଠଉରାଇ ଅବସର, — କଲେ ତୁ ପ୍ରସଙ୍ଗ ମୋର,
ପିବ ରାଜୀବନେତ୍ରାକୁ ରୁଚିତରେ । ୩ ।
ଠୋ କର ଛୁଣ୍ଡାଇ ଦେ ନା — ପ୍ରିୟସଖି ! ମୋ ବେଦନା
ନ ଲଗଇ କାହାକୁ ଉଚିତ କଞ୍ଚିତରେ । ୪ ।
ଠାରଦେଲେ ନେତ୍ରାଞ୍ଚଲେ, — ବିଜନ ସ୍ଥଳେ ସେ ବଳେ,
ବଚଜବ କ୍ଷଣରୁଚି ଉଚିତରେ । ୫ ।
ଠାକୁର ଠାକୁରାଣୀଙ୍କ, — ପଦାମ୍ବୁଜଧ୍ୟାନରଙ୍କ,
ନୃପ ଜଗଦ୍ଦେବ କରେ ରଚିତ ରେ । ୬ ।

---

ରକ୍ତାଶୟେ ସରଳାନ୍ତଃକରଣେ ତ୍ୱୟୈବ ଶମ୍ବକଦମ୍ବସ୍ୟ ବଜ୍ରସଦୃଶସ୍ୟ ଉମ୍ବରଭରଃ ଅଟୋପାତିଶଯ୍ୟଃ ତଦାଲମ୍ବ୍ୟାନ୍ ତଦାଶ୍ରୟିଣଃ କଲମ୍ବାନ୍ ମାର୍ଗଣାନ୍ ବାହାବାହବି ଉଦ୍ଭୂତୋ ବାହୁଭ୍ୟାଂ ଯୁଦ୍ଧଂ ପୂର୍ବଂ ଯସ୍ମିନ୍ କର୍ମଣି ତତ୍ ତଥୋକ୍ତଂ ମୁହୁଃ ପୁନଃ ପୁନଃ ତ୍ୟଜତି କିଂ ? ନିକ୍ଷିପତି କିମ୍ ?

ଅତ୍ର ବଲ୍ଲବନଗର୍ଯ୍ୟାଂ ଗୋପପୁରେ କଞ୍ଚ ଅଙ୍କୁରିମେ ସୌଧୋପରିତନ-ଗୃହେ ବିନ୍ୟସ୍ତାଃ ରକ୍ଷିତାଃ ଯା କାନ୍ତିସ୍ୱରକୁନିମପୁତ୍ତ୍ଳିକାଃ ସୁବର୍ଣ୍ଣପୁତ୍ତଳିକାଃ ଭୁତନା ଚକ୍ଷୁରେଣ ଲେନ ବା କଶୋରେଣ ନ ଅବଲୋକ୍ୟନ୍ତେ ।

---

* ଅନେକ ଛପା ପୁସ୍ତକରେ ଏହି ଗୀତର ତୃତୀୟ ପାଦରେ ଦୁଇଗୋଟି ଲେଖାଏଁ ଅକ୍ଷର ଅଧିକ ଅଛି, ତାହା ଯେପରି ଭାବବିଘାତକ ସେହିପରି ମଧ୍ୟ ରାଗ ବା ସ୍ୱରର ସମ୍ପୂର୍ଣ୍ଣ ପ୍ରତିକୂଳ । ଗଞ୍ଜାମ ଜିଲ୍ଲାରୁ ହାତଲେଖା ଯେତେ ଖଣ୍ଡ ପୋଥି ଆମ୍ଭମାନଙ୍କର ହସ୍ତଗତ ହୋଇଅଛି, କାହିଁରେ ସେ ଅକ୍ଷର ଦୁଇଟି ନାହିଁ । ତେଣୁ ଆମ୍ଭେମାନେ ତାହା ବିସର୍ଜନ କରିଗଲୁଁ । ଅଠଗଡ଼ର ସୁପ୍ରସିଦ୍ଧ ଗାୟକ ପଣ୍ଡିତ ସାମନ୍ତ ଶ୍ରୀଗଙ୍ଗାଧର ପ୍ରହରାଜଙ୍କଦ୍ୱାରା ଲିଖିତ ଗ୍ରନ୍ଥରେ ମଧ୍ୟ ସେ ଦୁଇଟି ଅକ୍ଷର ନାହିଁ ।

(ଠ) ଏଣୀଦୃଶଃ ପ୍ରିୟସଖୀ ପ୍ରିୟବାଦନୀ ତେ—
ତ୍ୟାପଦ୍ଧନେନ ସଦୃଶୀଭ ବଶାରଦେତ୍;
ବିଶ୍ୱାସନାଃସ୍ୱହୃଦୟଦ୍ୟୁମପାସ୍ୟ ତୁଭ୍ୟମ୍,
ଯଦ୍ରେତତେ କୁରୁ ସୁରୂପବତୀଭ ବତ୍ ।
ଦୁର୍ଗତିଜନବର୍ଗେ ପକାରଜନ୍ୟପୁଣ୍ୟଯଶୋଽପବର୍ଗନିର୍ଗଲସକ୍ଷର୍ଗ
ହୃ ଭସ୍ମାଲବୋ ହୃଦୟାଲବଃ ।

---

ଅନୁବାଦ—ଅହୋ ! ଏହି ଗୋପପୁରରେ ଯୁବତିମତ୍ତଗୃହ ଯେତେ ରସିକ ଯୁବକ ବିହାର କରନ୍ତି, କନ୍ଦର୍ପ ସେମାନଙ୍କ ପକ୍ଷ ହୋଇ ସେମାନଙ୍କୁ କଅଣ କେବଳ କୁସୁମଶର ମାରି ତୁମ୍ଭଙ୍କୁ ସରଳମତି ଦେଖି ବାହୁ ଯୁଦ୍ଧ କରି ତୁମ୍ଭ ପ୍ରତି ଶାଳ ବଜ୍ରସଦୃଶ ଶର ପୁନଃ ପୁନଃ ମାରୁଛି ?

କେଉଁ ଚତୁର କିଶୋର ଅବା ଗୋପପୁର କୋଠାମାନଙ୍କ ଉପରେ ରଖା ଯାଇଥିବା କେତେ ସୁବର୍ଣ୍ଣନିର୍ମିତ ପିତୁଳା ଦେଖି ନାହାନ୍ତି ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି—"ଠିକ ଠ ବର୍ତ୍ତୁଳ" ଇତ୍ୟାଦି ।

---

(ଠ) ଠିକ ଠ ବର୍ତ୍ତୁଳ—ସମ୍ପୂର୍ଣ୍ଣ ରୂପେ ଠ ଅକ୍ଷର ପରି ଗୋଲ, ତୋ ଚିତ୍ତରେ—ତୋ ମନରେ, କଦନ—କଷ୍ଟ, ଠଣା—ମୁଷ୍ଟିବଦ୍ଧ ଅଙ୍ଗୁଳିମାନଙ୍କ ଗ୍ରନ୍ଥିରେ ଆଘାତ, ଠୁକି—ମାରି, ଠଉରାଇ—ଖୋଜି, ଠୋ କରି—ଏକାବେଳକେ (ଶବ୍ଦ ସହିତ), କିକ—କଅଣ. ନେତ୍ରାଞ୍ଚଳ—ନେତ୍ରକୋଣ, ଅପାଙ୍ଗ; କ୍ଷଣରୁଚ—ବିଦ୍ୟୁତ୍ ।

ହେ ସଖି. ତୋ ମୁଖ 'ଠ' ଅକ୍ଷର ପରି ସମ୍ପୂର୍ଣ୍ଣରୂପେ ଗୋଲାକାର ଚନ୍ଦ୍ରମାସଦୃଶ; ହୃଦୟ ମଧ୍ୟରେ ଠକାମି ଆଚରଣ ନ କରି ଏବଂ ମୋର ଏ କଷ୍ଟକୁ ବିଗୃହ କରି ଅକପଟଭାବରେ ମୋତେ ଉଦ୍ଧାର କରିବା ଉଚିତ ଅଟେ । ୧ । କନ୍ଦର୍ପସନ୍ତାପ ହେଉରୁ ମୋର ଯେଉଁ ଭୟ ହେଉଅଛି, ସେହି ଭୟର ମସ୍ତକରେ ଠଣା ମାରି ତୁ ମୋତେ ମନ୍ମଥପାଶ ବନ୍ଧନରୁ ଉଦ୍ଧାର କର ।୨। ଏବଂ ଯେବେ ସୁସମୟ ଦେଖି ତୁ ତାଙ୍କ ପାଖରେ ମୋର ପ୍ରସଙ୍ଗ କରନ୍ତୁ, ତେବେ ତାହା ସ୍ତ୍ରୀଜବନେହାଙ୍କୁ ରୁଚିଯିବ ଅର୍ଥାତ୍ ପ୍ରୀତିକର ହେବ । ୩ । ହେ ପ୍ରିୟସଖି, ଏହାକୁ ଠୋ କରି ଛିଣ୍ଡାଇ ଦେ ନା, ଅର୍ଥାତ୍ ଆମ୍ଭ ଦୁହିଙ୍କ ସମ୍ପର୍କ ଅନୁଚିତ ବୋଲି ହଠାତ୍ ଏ ପ୍ରସ୍ତାବ ଭାଙ୍ଗି ଦେ ନା । ମୋ ଦୁଃଖ କଅଣ ତୋତେ କେତେକ ପରିମାଣରେ ଲାଗେ ନାହିଁ ? ୪ । ଯେବେ ତୁ ତାଙ୍କୁ ଟିକିଏ ଆଖିକଣରେ ଠାରି ଦେବୁ, ତେବେ ସେ ଏ ନିର୍ଜନସ୍ଥାନରେ ବିଜୁଳି ପରି ବିରାଜିବ । ୫ । ଠାକୁରଠାକୁରାଣୀଙ୍କ ପାଦପଦ୍ମ-ଧ୍ୟାନକାରୀ ରାଜା କିଶୋରଚନ୍ଦ୍ରଦେବ ହରିଚନ୍ଦନଙ୍କଦ୍ୱାରା ଏହା ରଚିତ ହେଲା । ୬ ।



ରାଗ—ତୋଡ଼ି ପରଜ

ତର ନାହିଁକି ହେ, ପରତରୁଣୀ ହରଣୁ,
ତୋର ଲଗି ଘେର ପଡିବ ଯେ ହେବ ଗୃର ପର ଅଚରଣୁ । ପଦ ।
ତୋଳା ପ୍ରତିମାକୁ ପ୍ରାୟେ ତୁମ୍ଭଙ୍କୁ ଯତନେ ଦା ଅଛନ୍ତି ପାଳି,
ତୁଳବତି ଧନ କେଳାକ ମୋହନ ଲୋଡୁଛ ଯେ କୁଳପାଳି । ୧ ।
ତଳା ଦେବା ଧନେ ଅବଶେଷ ତତ୍ତ୍ୱନେ ଦେଖିଲୁ ଶକଟ ଦଶା,
ତାକମଧ୍ୟମାକୁ ତାକ ଅଣିବାକୁ ଏଠାକୁ କାହା ଭରସା । ୨ ।
ତବ ତବ ବାର ନିଃସରିବ ଗୃହ ପଥରେ ନୟନଯୁଗ୍ମ,
ତହୁ ତହୁ ହେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗୁଟି ଭେଗୁ । ୩ ।
ତାକୁ ତ ଜାଣ ମୋହନ ବଂଶୀରବେ ବହର ସୁଗେ ଏ ବନେ,
ତୁଳି ହେଉଁ ସିନା ଅଛୁ ଫଳ ବନା ନ ପନ୍ତି ତା ଆମ୍ଭ କାନେ । ୪ ।
ତାଳମ୍ୟମଞ୍ଜୀମଞ୍ଜୁଳଦଶନା ସେ ଖେଳୁଥାଉ ତୁମ୍ଭ ତୁଲେ,
ତେଣିଥାଅ ବିନଯାକ ତୁମ୍ଭ ମନ ଶ୍ରୀହରିଚନ୍ଦନ ବୋଲେ । ୫ ।

---

ଟୀକା—ଏଣୀଦୃଶଃ ମୃଗନୟନାୟାଃ ରାଧାୟାଃ ପ୍ରିୟସଖୀ ପ୍ରିୟବାଦିନୀ ପ୍ରିୟଂବଦା ଚ ଇତି ହେତୋଃ ଆପଦ୍‌ଭବେନ ସଦୃଶୀ ଆପଦର୍ଥଂ ସଞ୍ଚିତଧନେନ ତୁଲ୍ୟା ହିତକାରିଣୀ ଝଟିତ୍ୟୁପାୟଚତୁରା ଚ ଇତି ସ୍ୱରୂପବତୀ ଶୋଭନାକୃତି-ଶାଳୀନୀତି 'ଯତ୍ରାକୃତିସ୍ତତ୍ର ଗୁଣା ବସନ୍ତି' ଇତି ସ୍ମରଣାତ୍ ବିଶ୍ୱାସନଃ ସୁହୃଦୟତ୍ୱଂ ବିଶ୍ୱାସଶୂନ୍ୟ ହୃଦ୍‌ଭାବ ଅପାସ୍ୟ ଦୂରୀକୃତ୍ୟ ବିଶ୍ୱାସମବଲମ୍ବ୍ୟେତି ଯାବତ୍ ବକ୍ଷ୍ୟ ସ୍ୱାନ୍ତର୍ବେଦନାକାରଣଂ ତୁଭ୍ୟଂ ବିଜ୍ଞାପୟାମି, ଯତ୍ ରୋଚତେ ତତ୍ କୁରୁ ।

ଯେ ତୁ ଦୟାଳବଃ ଦୟାର୍ଦ୍ରାଃ ହୃଦୟାଳବଃ ପ୍ରଶସ୍ତହୃଦୟଯୁକ୍ତାଃ ତେହି ଦୁର୍ଗତଜନବର୍ଗସ୍ୟ ଅକିଞ୍ଚନଜନସମୂହସ୍ୟ ଉପକାରାତ୍ ଜନ୍ୟାନାଂ ପୁଣ୍ୟଯଶସାଂ ଅପବର୍ଗେ ଫଳନିଷ୍ପତ୍ତୌ ସଂସିଦ୍ଧୌ ବିଚଯ୍ୟେ ନିର୍ଗତାଳସଃ ନିରଳସଃ ନିସର୍ଗଃ ସ୍ୱଭାବୋ ଯେଷାଂ ତେ ତଥୋକ୍ତାଃ ଭବନ୍ତି ।

ଅନୁବାଦ—ତୁମ୍ଭେ ମୃଗନୟନା ରାଧାଙ୍କର ପ୍ରିୟସଖୀ, ଏହି ହେତୁରୁ ନିଶ୍ଚୟ ପ୍ରିୟବାଦିନୀ ଓ ବିପତ୍‌କାଳ ନିମନ୍ତେ ସଞ୍ଚିତ ଧନସ୍ୱରୂପ ହିତକାରିଣୀ, ଆଉ ମଧ୍ୟ ଉପାୟ ନିରୂପଣରେ ଚତୁର ଅଟ, ତୁମ୍ଭର ମନୋହର ଆକୃତିରୁ ଏହା

(ଡ) କଂସଃ ପୁଂସାଂ ନୃଶଂସାନାଂ ବତଂସଃ ଶାସ୍ତି କାଶ୍ୟପୀମ୍
ଦୁଷ୍ଟାଥେ ଧନିନଃ ସ୍ତନୋ କଥଂ ଯାସ୍ୟଧ୍ୱନୀନତାମ୍ ।
ଅବର୍ଣ୍ଣାର୍ଣ୍ଣବୋଦ୍‌ଗୀର୍ଣ୍ଣକଲ୍ଲୋଲମାଲାନ୍ଦୋଳିତଚ୍ଛିଦ୍ରମପି କିଂ ପୁନ-
ସ୍ତରୁଣି ତରଣିତ୍ୱମୁଦୀକରଣୀୟ ମିତ୍ରପଦଣୀ ମାମପି କୁଳକୂଳଦବିଷ୍ଟାଂ ବିଧାୟ
ମଜ୍ଜୟିତୁଂ ଧୃତୁରମାରଭସେ ।

---

ଜଣାଯାଏ, ଏଣୁ ଅବିଶ୍ୱାସ ଭବ ପରିତ୍ୟାଗ କରି ମୁଁ ନିଜର ଅନ୍ତର୍ବେଦନା ତୁମ୍ଭ ଆଗରେ କହିଲି, ବର୍ତ୍ତମାନ ତୁମ୍ଭଙ୍କୁ ଯାହା ଭଲ ଲାଗେ ତାହା କର ।

ଯେଉଁମାନେ ପ୍ରକୃତରେ ଦୟାଳୁ ଓ ହୃଦୟବାନ୍ ସେମାନଙ୍କ ସ୍ୱଭାବ ଦୁଃଖୀ ଲୋକମାନଙ୍କ ଉପକାର କରିବାରୁ ଜାତ ହେବା ପବିତ୍ର ଯଶର ଫଳ ସାଧନ ବିଷୟରେ ସାଧାରଣତଃ ନିରଳସ ହୋଇଥାଏ, ଅର୍ଥାତ୍ ଉଦାରଚେତା ଲୋକମାନେ ସ୍ୱଭାବତଃ ପରୋପକାରୀ ହୁଅନ୍ତି ।

---

(ଡ) ଚୋର୍—ବାନ୍ଧିବା ଦଉଡ଼ି, ଘେର ପଡ଼ିବ—ବନ୍ଧାହେବ, ଲୋଲା ପ୍ରତିମା—ଚନ୍ଦ୍ରର ପୁତ୍ତଳିକା, କାମିନୀକା; ଡୁବିବଟି ଧନ—ସମସ୍ତ ନଷ୍ଟ ହେବ, କୁଳପାଳି—ସାଧ୍ୱୀ ସ୍ତ୍ରୀ, ଅରିଷ୍ଟେ—ସୂତିକାଗୃହରେ, ଶକଟ—କଂସପ୍ରେରିତ ଅସୁରବିଶେଷ, ଉତ୍ତାନେ—ଚିତ୍ ହୋଇ, ଡାକମଧ୍ୟମା—ଡମରୁମଧ୍ୟା ଅର୍ଥାତ୍ କ୍ଷୀଣକଟି, ତବ ତବ—ଅବିରଳଭାବରେ, ତହ ତହ—ପ୍ରଜ୍ୱଳିତ, ଭୋଗୁ—ଭୋଗ କାମନାରୁ, ଜୁଇଁ ହେବୁଁ—କଷ୍ଟ ପାଇବୁଁ, ବ୍ୟାକୁଳ ହେବୁଁ; ଡାଳିମ୍ବମଞ୍ଜି-ମଞ୍ଜୁଳଦଶନା—ଡାଳିମ୍ବ ମଞ୍ଜି ପରି ସୁନ୍ଦର ଦନ୍ତ ଯାହାର ।

ହେ କୃଷ୍ଣ, କି ଅଶ୍ଚର୍ଯ୍ୟ କଥା; ପରସ୍ତ୍ରୀ ହରଣ କରିବାରେ ତୁମ୍ଭର ଆଦୌ ଡର ନାହିଁ ? ଏହି ଚୌର୍ଯ୍ୟାଚରଣ ହେତୁରୁ ତୁମ୍ଭେ ଦଉଡ଼ିରେ ବନ୍ଧା ହେବ । ସଦା ତୁମ୍ଭେ ମା ଯଶୋଦା ଆଖିର ପିତୁଳା ପରି ତୁମ୍ଭଙ୍କୁ ଅତି ଯତ୍ନରେ ପାଳନ କରିଅଛନ୍ତି; ତୁମ୍ଭେ ବର୍ତ୍ତମାନ ସତୀକୁଳନାରୀକୁ କ୍ରୀଡ଼ାସଙ୍ଗିନୀ କରିବାକୁ ଖୋଜୁଥିବାରୁ ମୁଁ ମନେ କରୁଅଛି ତାଙ୍କର ସେହି ଧନ ନଷ୍ଟ ହୋଇଯିବ । ୧ । ତୁମ୍ଭେ ଯେତେବେଳେ ଜନ୍ମଘରରେ ଚିତ୍ ହୋଇ ଶୋଇ ଡକାପାଡ଼ୁଥିଲ, ସେ ଅବସ୍ଥାରେ ମଧ୍ୟ ଶକଟାସୁରକୁ ମାରିଥିଲ ଏହା ଆଖିରେ ଦେଖିଅଛୁଁ; ଏପରି ଅବସ୍ଥାରେ ସେହି କ୍ଷୀଣକଟି ସ୍ତ୍ରୀକୁ ଏଠାରୁ ଡାକି ଆଣିବାପାଇଁ କାହାର ସାହସ ହେବ ? ଅର୍ଥାତ୍ ଯେ ପିଲାଦିନେ ଏଡ଼େ ବଡ଼ ଅସୁରକୁ ମାରିଅଛି, ସେ ଯେ ଏ ବୟସରେ ଗୋଟିଏ କ୍ଷୀଣକଟି ସ୍ତ୍ରୀକୁ ରଖିବ ଆମ୍ଭମାନଙ୍କର ଏ ଭରସା ନାହିଁ । ୨ । ଯେବେ ତୁମ୍ଭ ସଙ୍ଗେ



ରାଗ—ଦେଶାକ୍ଷ

ତାଲେ ତ ତାଳଲ ନାହିଁ କୃପାସୁଧା ଝରକ ରେ । ପଦ ।
ଚକ୍‌କା ବାଜୁଥାଇ ବ୍ରଜେ, କଳାତାର ହୃଦମ୍ବୁଜେ,
କରୁଣା ଅଛୁ ବୋଲି ଯା ନେଲ କେ ତା ହବ କ ରେ । ୧ ।
ଟୁଲାଇଲ ପର ଚଳ, ତଚେଲ ପଡ଼ିବା ଭଳି,
ହେଲନ ଯେ କୁନ୍ଦକଳଦଶନା ଏ ସରକ ରେ । ୨ ।
ଲୁକାଇ ଦେଲେ ତୃଷିତ, ଚକୋର ଚଞ୍ଚୁରେ ଶୀତ-
ଭାନୁଚନ୍ଦ୍ରିକାକୁ ବଢ଼ ଯାଏ କେଣ୍ଠୁ ସବ କ ରେ । ୩ ।
ଚୋକୁଟିକୁ ସିନା ହଟି, ମୋ ସାର ଯାଉଛୁ ଲୁଟି,
ପିଇ ଦାଅନ୍ତ କ ଗୋଷ୍ଠିଯାକ ସେ କଚଶୋଗ୍ରକ ରେ । ୪ ।
ଚବା-ଚନାବରୁ ଗୋପ—ନଟବର ବନ୍ଦେ ଭୂପ
ବାଲ୍ମକେଶ ଦେବ ନୀପକୁଞ୍ଜପୁଞ୍ଜସଦକ ରେ । ୫ ।

---

ତାଙ୍କର ମିଳନ ହୁଏ, ତେବେ ତୁମ୍ଭର ଏହି ଶ୍ୟାମଳବର୍ଣ୍ଣ ସୁନ୍ଦର ଅଙ୍ଗ ଭୋଗ କରିବା ହେତୁରୁ ତାଙ୍କର ଘୋର କଷ୍ଟ ହେବ, ଘାତ ପ୍ରତିପ୍ରହାରଯାକ ଯନ୍ତ୍ରଣାରେ ତାଙ୍କ ଚକ୍ଷୁରୁ ଡବ ଡବ ହୋଇ ଲୁହ ଝରିକ ପଡ଼ିବ, ତାଙ୍କର କୋମଳ ଶରୀରରେ ଘୋର ଦାହ ଜାତ ହେବ ॥ ମୁଁ ତାଙ୍କୁ କେବେହେଁ ଡାକି ଆଣିବ ନାହିଁ । ତୁମ୍ଭେ ତ ବଂଶୀସ୍ୱରରେ ଡାକି ଜାଣ, ତାଙ୍କୁ ଏଠାକୁ ଡାକି ଆଣ; କିନ୍ତୁ ମୁଁ ଦେଖୁଛି, ସେଥିରେ ଆଦୌ ଫଳ ହେବ ନାହିଁ, ତେଣୁ ତାହା ଆମ୍ଭ କାନରେ ନ ପଡ଼ୁ ଏବଂ ଆମ୍ଭେମାନେ ବ୍ୟାକୁଳ ନ ହେଉଁ । ୪ । (ଯେବେ ଫଳ ହୁଏ) ସେ ଡାଳିମ୍ବଦନ୍ତୀ ଏଠାରେ ତୁମ୍ଭ ସଙ୍ଗେ ଖେଳୁ, ତୁମ୍ଭ ମନ ଅନୁସାରେ ତୁମ୍ଭେ ଏ ବଣରେ ଭେଟିଥାଅ, ହରିଚନ୍ଦନ ଏହା ରଚନା କଲେ । ୫ ।

ଟୀକା—ହେ କୃଷ୍ଣ, ନୃଶଂସାନାଂ ହିଂସ୍ରାଣାଂ ପୁଂସାଂ ପୁରୁଷାଣାଂ ବତଂସଃ ଭୂଷଣଂ ଘାତୁକଶ୍ରେଷ୍ଠ ଇତ୍ୟର୍ଥଃ, କଂସଃ କାଶ୍ୟପୀଂ ପୃଥ୍ୱୀଂ ଶାସ୍ତି; ହେ ଧନାନଃ ସୂନୋ ହେ ଧନକପୁତ୍ର ! ତ୍ୱଂ କଥଂ ଦୁଷ୍ପଥେ ଅଧିକାନତାଂ ପଥିକତ୍ୱଂ ଯାସି ? କଥଂ କୁମାର୍ଗେ ପଥିକୋ ଭବସୀତ୍ୟର୍ଥଃ ।

ତ୍ୱଂ ଅବର୍ଣ୍ଣାର୍ଣ୍ଣବେ ଅପବାଦ ସମୁଦ୍ରେ ଉଦ୍‌ଗୀର୍ଣ୍ଣୟା ଉତ୍‌ଥିତୟା କଲ୍ଲୋଳ-ମାଳୟା ତରଙ୍ଗପରମ୍ପରୟା ଆନ୍ଦୋଳିତଃ ବ୍ୟାକୁଳିତୋଽସି, ହେ ତରୁଣି, ତ୍ୱୟା ତରଣୀତ୍ୱଂ ଅପବାଦ ସମୁଦ୍ରୋତ୍ତରଣାର୍ଥଂ ନୌକାତ୍ୱବୋଽଙ୍ଗୀକରଣୀୟଃ ଇତ୍ୟୁପଲକ୍ଷ୍ୟ

(ଖ) ଶୃଣ୍ୱଂ ଶୃଣ୍ୱଂ ମଦ୍ୟୋ'ଚ୍ଚୈଃ କଥିତମକପଟଂ ଶୃଣ୍ୱନ୍ନାକର୍ଣ୍ଣ୍ୟ ଭୂୟଃ,
ପାୟଂ ପାୟଂ ଚ ଦୃଷ୍ଟ୍ୟା ମମ ତନୁମତନ୍ତ୍ର କ୍ରୂର ନାରାଚଭଲ୍ଲାଂ;
ସାନୁକ୍ରୋଶେନ ସନ୍ନୁଗ୍ରହମହହ ମମ ପ୍ରାଣବଶ୍ରାଣନୌକା—
ମିଚ୍ଛାଂ ତୁଚ୍ଛାଂ ବିଧାୟ କ୍ଷିପସି ସୁମୁଖି କିଂ ରୋଷରୁଷଂ କଟାକ୍ଷମ୍ ।

ମୀନାଙ୍କକଙ୍କପତ୍ରଦୂନ ସ୍ୱାନ୍ତଃ କଥମାଭିମସ୍ୟ ବିଷୟେ କାର୍ତ୍ତସ୍ୱର-ଗୌରାଙ୍ଗୀଭିରକାରୁଣିକତ୍ରୁଦୟବୃତ୍ତିଭିସ୍ତୁପସିକ୍ତିତ ଇତି ବ୍ରୁବତି କିଶୋର-ଶିରୋମଣୌ ସସ୍ମିତଭ୍ରୂଭଙ୍ଗଂ ଲଳିତା ।

---

ଶିକ୍ଷୟିତ୍ୱା ମାମପି କୂଳଂ କଂଶଃ ତଦ୍ଭୂପାର କୂଳାତ୍ ତଟାତ୍ ଦବିଷ୍ଠାଂ ଦୂରତରାଂ ବିଧାୟ କୃତ୍ୱା ମଙ୍କ୍ଷୟିତୁମପବାଦ ସମୁଦ୍ରେ ଇତି ଶେଷଃ କିଂ ପୁନଃ ବ୍ୟଗ୍ରମାରଭସେ ? କଥଂ ପୁନଃ ଚଲୟସି ? -

ଅନୁବାଦ—ହେ କୃଷ୍ଣ, କଂସ ନୃଶଂସମାନଙ୍କ ମଧ୍ୟରେ ଶ୍ରେଷ୍ଠ, ସେ ବର୍ତ୍ତମାନ ପୃଥିବୀ ଶାସନ କରୁଅଛି । ଏପରି ଅବସ୍ଥାରେ ତୁମ୍ଭେ ଜଣେ ଧନୀ ଲୋକର ପୁଅ ହୋଇ କାହିଁକି ଅପଥରେ ପଥିକ ହେଉଅଛ ?

ତୁମ୍ଭେ ବର୍ତ୍ତମାନ ଅପବାଦସମୁଦ୍ରରୁ ଉଠୁଥିବା ଲହରୀରେ ଆନ୍ଦୋଳିତ ହେଉଅଛ, ସେହି ସମୁଦ୍ର ପାରି ହେବାପାଇଁ, ହେ ଯୁବତି ! ତୁମ୍ଭେ ମୋର ନୌକା ହୁଅ ବୋଲି ଉପଦେଶ ଦେଇ ମୋତେ ପୁଣି କାହିଁକି କୂଳରୁ ଦୂରକୁ ଠେଲି ଦେଇ ସେହି ଅପବାଦସମୁଦ୍ରରେ ବୁଡ଼ାଇବାକୁ ଉଦ୍ୟମ କରୁଅଛ ?

ଏହା ଶୁଣି ଶ୍ରୀକୃଷ୍ଣ କହୁଅଛନ୍ତି, "ତାଲେ ତ ତାଳିଲ ନାହିଁ" ଇତ୍ୟାଦି ।

---

(ଡ) ତାଲେ—ଥରେ, ଝରି - ସୁରେଇଆକୃତିର ଜଳପାତ୍ରବିଶେଷ, ଡକ୍କା—ବାଦ୍ୟବିଶେଷ, ବଡ ଢୋଲ; ହୃଦମ୍ବୁଜେ—ହୃଦୟରୂପ ପଦ୍ମରେ, ଢୋଲାଇଲା—ଢୁଳାଇଲା, କୁନ୍ଦକଳିଦଶନା—କୁନ୍ଦଫୁଲର କଢ଼ି ପରି ଦାନ୍ତ ଯାହାର, ଟୁଙ୍କାଇଦେଲେ—ପିଆଇଦେଲେ, ଚଞ୍ଚୁ—ଥଣ୍ଟ, ଶୀତଭାନୁ—ଚନ୍ଦ୍ର, ଚୋକୁଟିକୁ — ଥଟରମାନ ପିଇବାକୁ, ଧାର — ବଳ, ତବା — କୋଠାଘର, ଚନାବ—ଝରକା ।

ଅୟି ଲଳିତେ, ତୋତେ ଏତେ ଅନୁନୟ କରି କହିଲି, ତଥାପି ତୁ ଥରେ ହେଲେ ଦୟାରୂପ ଅମୃତ ଝରୀକୁ ଢାଳିଲୁ ନାହିଁ; ଅର୍ଥାତ୍ ଟିକିଏ ହେଲେ କୃପା କଲୁ ନାହିଁ ? ପଦ । ଏ ଗୋପପୁରରେ ଡକା (ଢୋଲ) ବାଜୁଥାଏ ଯେ ଅର୍ଥାତ୍ ଗୋପପୁରରେ ସମସ୍ତେ ଜାଣନ୍ତି ଯେ, ଲଳିତାର ହୃଦପଦ୍ମରେ ଦୟା ଥାଏ ବା ଲଳିତା ଦୟାବତୀ ବୋଲି ଗୋପପୁରରେ ସମସ୍ତଙ୍କୁ ଜଣା; ସେ

# ୩

ରାଗ—ସୋମ

ଅତସୀ କୁସୁମସମ ଶ୍ୟାମ ହେ ମୁଁ ଗଲିଟି । ପଦ ।

ଅଳି ଭ୍ରମର ନିବିଡ଼, ଅସହ୍ୟ ସେ ଯେ ବନ୍ଧ

ଅବଶ୍ୟ ତା ସ୍ମୃତରେ ମୁଁ ନିବେଦନ କଲିଟି । ୧ ।

ଅଧ ଅଧରରେ ସ୍ମିତ ଉଲ୍ଲାସି ହେଲେ ଲକ୍ଷିତ

ଉଦ୍ଭବ ଏହିଟି ବୋଲି କୃପାକାଲିବଲ୍ଲୀଟି । ୨ ।

ଆରକତ କଲେ ମୁଖ, ଅଖଣ୍ଡ ସୁଧାମୟୂଖ,

ଅରୁଚ ସରବ ମୋର ଜୀଇଲେ ହେଁ ମଲିଟି । ୩ ।

ଅଦୃଷ୍ଟବନ୍ଧୁଁ କଟାକ୍ଷ, ଅଙ୍ଗୀକାର କଲେ ପକ୍ଷ

ଅଭିବେ ଉଚ୍ଛନ୍ନ ହେବ ଏ ବଲ୍ଲବବର୍ଲ୍ଲୀଟି । ୪ ।

ଉଗ୍ରନିର୍ଦ୍ଦେଶ ନୃପର ଉପବନ ଗୋପପୁର

ଅଗ୍ରେ ନୋହିବ ଗୋବର୍ଦ୍ଧନଟିରିଦଗ୍ଧିଟି । ୫ ।

ଅଷ୍ଟଦୁର୍ଗନାଥ ଭିଷେ ଅହା ଧ୍ୟାନେ କି ଶୋଭା ସେ

ଅଖିଳ ଜନନୀ ନାସାମୃତମନ୍ଦକଲିଟି । ୬ ।

---

ଦସ୍ୟୁ କିଏ ହରଣ କରିନେଲା କି ? ୧ । ହେ କୃଷ୍ଣଚନ୍ଦ୍ର, ତୁମ୍ଭର ଚାଲି ଦେଖି ଡଳେ ପଡ଼ିଯିବା ଭଳି ମୋର ଦଶା ହେଲାଣି । ୨ । ତୃଷାର୍ତ୍ତ ଚକୋର ଅଣ୍ଟରେ ଯେବେ ଚନ୍ଦ୍ରକିରଣକୁ ପିଆଇ ଦଅପାଏ, ତେବେ କିଛି ସମ୍ପତ୍ତି ସହିଯାଏ କି ? ୩ । ସାମାନ୍ୟ ତୋକକ ପାଇଁ ସିନା ମୋ ବଳ ହଟି ଯାଉଛି, ଅର୍ଥାତ୍ ମୋର ସର୍ବନାଶ ହେଉଅଛି; ଆଚ୍ଛା କହ ଭଲା, ମୁଁ କଣ ସେ କଟାକ୍ଷକୁ ଗୋଟିକି ଯାକ ପିଇ ଦଅନ୍ତି ? ୪ । ରାଜା ବାଲୁକେଶ ଦେବ ଗୋପନଗରର କୋଠାଘର ଝରକାଠାରୁ ( ଯେଉଁ ଝରକାବାଟେ ଶ୍ରୀକୃଷ୍ଣ ରାଧାଙ୍କୁ ଦେଖିଥିଲେ ) କଦମ୍ବ-କୁଞ୍ଜସମୂହ ପର୍ଯ୍ୟନ୍ତ ( କୃଷ୍ଣ ବର୍ତ୍ତମାନ ଯେଉଁଠାରେ ଅଛନ୍ତି ) ସେହି ସମଗ୍ର ପଥକୁ ନମସ୍କାର କରୁଅଛି ।

ଟୀକା—ଅୟି ସୁମୁଖି, ସାନୁକୋଶେନ ଦାନେନ ମୟା ଉଚ୍ଚୈଃ ଅତ୍ୟନ୍ତଂ ଅକପଟଂ ସର୍ବସ୍ୱଂ ଯଥା ସ୍ୟାତ୍ ତଥା କଥିତଂ ନିବେଦିତଂ ରହସ୍ୟଂ ବସ୍ତୁ ଗୃହ୍ୟଂ ଗୃହ୍ୟଂ ହୃଦ କଥାୟୁ ଲୁପ୍ତଃ ପୁନଃ ଗୃଢ଼ଂ ଅକର୍ଣ୍ୟ ଶ୍ରୁତ୍ୱା, ଅତନୋଃ କନ୍ଦର୍ପସ୍ୟ କ୍ରୂରନାରାଚଭଲ୍ଲାଂ ନିଷ୍ଠୁରଶରବର୍ଷାର୍ତ୍ତାଂ ମମ ତନୁଂ ମତ୍ଶରୀରଂ ଦୃଷ୍ଟ୍ୱା ଚକ୍ଷୁଷା ସାନୁଗ୍ରହଂ ଅନୁଗ୍ରହପୂର୍ବକଂ ପାୟଂ ପାୟଂ ପୀତ୍ୱା ପୀତ୍ୱା ପୁନଃ ପୁନଃ ଦୃଷ୍ଟ୍ୱା

(ଣ) ଯାମି ପ୍ରତାପମନୁକୂଲୟିତୁଂ ପ୍ରପନ୍ନେ—
କ୍ଷେତ୍ରତଃ ସବେରୁହସହୋଦରଲୋଚନାୟାଃ,
ସାମିପ୍ରସନ୍ନମପିଚେଦ୍‌ଭବ କୃତାର୍ଥା,
ନୋ ଚେତ୍ତ୍ୱଦାସ୍ୟବଧୂବୀକ୍ଷଣମେତଦେବ ।

ନନ୍ଦନନ୍ଦନ କର୍ହିଚିଲ୍ଲୋଚନବଲ୍‌ବସ୍ୟାପ୍ୟୁପସ୍ଥିତୌ ତମନ୍ତୁଭୂଷ୍ୟ ଭୂୟସ୍ତ୍ୱନ୍ମୁଖସୁନ୍ଦରେନ୍ଦୁସନ୍ଦର୍ଶନକନ୍ଦଳତାନନ୍ଦସନ୍ଦୋହାନୁଭବମନ୍ଦାଦରୟାବାମୟା ଭାବ୍ୟମିତି ନିବେଦ୍ୟ ନିଷ୍କ୍ରମ୍ୟ ସବ୍ୟଧଂ ଶ୍ରୀରାଧାୟାଃ ପ୍ରବଶ୍ୟ ତାଂ ପ୍ରତି ।

---

ଇତ୍ୟର୍ଥଃ, ଅହହ ମମ ପ୍ରାଣବଶ୍ରାଣନୋତ୍କାଂ ମମ ପ୍ରାଣଦାନେ ସମୁତ୍ସୁକାଂ ଇଚ୍ଛାଂ ଭୁଚ୍ଛାଂ ବଧାୟ କ୍ୱଂ କଥଂ ରୋଷରୁଷଂ କୋପେନ କର୍କଶଂ କଟାକ୍ଷଂ କ୍ଷିପସି ପାତୟସି ମୟି ଇତି ଶେଷଃ ।

ମୀନାଙ୍କସ୍ୟ କନ୍ଦର୍ପସ୍ୟ କଙ୍କପତ୍ରୈଃ ବାଣୈଃ ଦୂନଃ ପରିତାପିତଃ ଆତ୍ମାଯସ୍ୟ ତସ୍ୟ ଆର୍ତ୍ତସ୍ୟ ବ୍ୟାକୁଳସ୍ୟ ମମ ବିଷୟେ, କାର୍ତ୍ତସ୍ୱରଂ ସ୍ୱର୍ଣ୍ଣଂ ତଦ୍‌ବତ୍ ଗୌରାଙ୍ଗୀ ଅଙ୍ଗାନି ଯାସାଂ ତାଭିଃ ତ୍ୱାଦୃଶୀଭିଃ କଥଂ ଅକାରୁଣିକା ନିର୍ଦ୍ଦୟା ହୃଦୟବୃତ୍ତିଃ ଯାସାଂ ତାସାଂ ଭାବଃ ତତ୍ତ୍ୱଂ ଉରୀକ୍ରିୟତେ, ସ୍ୱୀକ୍ରିୟତେ ? କିଶୋରଶିରୋମଣୌ କିଶୋରତିଲକେ ଶ୍ରୀକୃଷ୍ଣେ ଇତି ବ୍ରୁବତି କଥୟତି ସତି ଲଳିତା ସସ୍ମିତତ୍ୱରଂ ସସ୍ମିତତ୍ୱରାଭ୍ୟାଂ ସହ କଥୟତି ।

ଅନୁବାଦ—ସଖି, ମୁଁ ଦୀନ ହୋଇଥିବାରୁ ମନ ଖୋଲି ସ୍ପଷ୍ଟରୂପେ ଯାହା ପ୍ରକାଶ କଲି, ସେ ସବୁ କଥାକୁ ଗ୍ରହଣ କରି, ପୁଣି ମୋ ମୁଖରୁ ଉକ୍ତିକୁ ବାରଂବାର ଶୁଣି, କନ୍ଦର୍ପର ନିର୍ଦ୍ଦୟ ବାଣଦ୍ୱାରା ବିଦୀର୍ଣ୍ଣ ହୋଇଯାଇଥିବା ମୋର ଏହି ଶରୀରକୁ ଅନୁଗ୍ରହ କରି ନିଜ ଚକ୍ଷୁରେ ଦେଖି ମଧ୍ୟ ତୁ ପୁଣି ମୋ ଜୀବନ ରଖିବାରେ ଜାତ ହେଉଥିବା ଉତ୍କଣ୍ଠାକୁ ବୃଥା କରି ଅର୍ଥାତ୍ ମୋ ଜୀବନ ରକ୍ଷାରେ ମୋଟେ ଇଚ୍ଛା ନ କରି କାହିଁକି କୋପକର୍କଶ ଦୃଷ୍ଟିକୁ ମୋ ଉପରେ ପକାଉଅଛୁ ?

ଯେଉଁ ଲୋକ କନ୍ଦର୍ପବାଣରେ ଏକାନ୍ତ ସନ୍ତପ୍ତ ହୋଇଅଛି, ସେହି ଆର୍ତ୍ତମାନଙ୍କୁ ରକ୍ଷା କରିବାରେ ତୁମ୍ଭ ପରି ତପ୍ତକାଞ୍ଚନବର୍ଣ୍ଣାଭା ସୁନ୍ଦରୀମାନଙ୍କ ହୃଦୟ ଏଡ଼େ ନିର୍ଦ୍ଦୟ କାହିଁକି ? କିଶୋରତିଲକ ଶ୍ରୀକୃଷ୍ଣ ଏହା କହି ନିବୃତ୍ତ ହୁଅନ୍ତେ ଲଳିତା ହସି ହସି ଚଞ୍ଚଳ ତାଙ୍କୁ କହୁଅଛନ୍ତି,—"ଅତସୀକୁସୁମ ସମ" ଇତ୍ୟାଦି ।

---

(ଣ) ଅତସୀକୁସୁମ —ପେଶୀଫୁଲ, ଅଳି—ସନ୍ନିବନ୍ଧ ଅନୁରୋଧ; କ୍ଷିବଢ଼—କ୍ଷୁଡ଼, ଅଧ ଅଧରରେ—ତଳ ଓଠରେ, ଉହିବ—ତର୍କିବ, ଅନୁମାନ କରିବି;

କଳ୍ପବଲ୍ଲୀ—କଳ୍ପଲତା, ଅଖଣ୍ଡସୁଧାମୟୂଖ—ପୂର୍ଣ୍ଣଚନ୍ଦ୍ର, ଅବୁର—ମହତ୍ତ୍ୱ, ସର—ଭଲ ହେଲା ( ଗଞ୍ଜାମ ଅଞ୍ଚଳର ପ୍ରୟୋଗ ), ବଲ୍ଲବପଲ୍ଲୀ—ଗୋପାଳଗାଆଁ, ଗୋପପୁର; ଉଗ୍ରନର୍ଦ୍ଦେଶ—ନିଷ୍ଠୁରାଦେଶ, ମୃଗମଦକଳ୍ପ—କସ୍ତୁରୀଚିତ୍ର ।

ହେ ଅତସୀଫୁଲ ପରି ନୀଳବର୍ଣ୍ଣ ଶରୀରଧାରୀ କୃଷ୍ଣ ମୁଁ ବର୍ତ୍ତମାନ ବାହାରିଲି । ପଦ । ଏକପକ୍ଷରେ ତୁମ୍ଭର ସନିର୍ବନ୍ଧ ଅନୁରୋଧ, ଅନ୍ୟ ପକ୍ଷରେ ସେ ରାଧା ବଡ଼ ଅସହିଷ୍ଣୁ, ଅର୍ଥାତ୍ ପରପ୍ରୀତି କଥା ଆଦୌ ସହିପାରେ ନାହିଁ, ଏପରି ଅବସ୍ଥାରେ ଦୁଇଆଡ଼ ରକ୍ଷା କରିବା ମୋ ପକ୍ଷରେ ବଡ଼ କଠିନ, ତଥାପି ତୁମ୍ଭ କଥା ଅନୁସାରେ ତା ଆଗରେ ଏ ବିଷୟ ନିବେଦନ କରି ବୋଲି ଜାଣ । ୧ । ଯେବେ ସେ ମୋ ପ୍ରାର୍ଥନା ଶୁଣି ଚଳଓଠରେ ହସକୁ ପ୍ରକାଶ କରି ଲଜ୍ଜିତ ହେଲା ଭଳି ହେବ, ତେବେ ତାହାକୁ ଅନୁଗ୍ରହର କଳ୍ପଲତା ବୋଲି ଅନୁମାନ କରିବ, ଅର୍ଥାତ୍ ତୁମ୍ଭ ପ୍ରତି ନିଶ୍ଚେ ଅନୁଗ୍ରହ କରିବ ବୋଲି ମନେ କରିବ । ୨ । କିନ୍ତୁ ଯେବେ ତାହାର ପୂର୍ଣ୍ଣଚନ୍ଦ୍ର ମୁଖକୁ ରକ୍ତବର୍ଣ୍ଣ କରିଦେବ, ଅର୍ଥାତ୍ ରାଗିଯିବ ତେବେ ମୋ ମହତ୍ତ୍ୱ ସରିଗଲା, ମୁଁ ଜୀଇଲେହେଁ ମଲି ବୋଲି ଜାଣିବ । ୩ । ଶୁଭଦୃଷ୍ଟିବଶରୁ ଯେବେ କିଶୋରୀ ଅଙ୍ଗୀକାର କରେ, ତେବେ ତ ସର ( ଭଲ ହେଲା ), ନଚେତ୍ ଏ ଗୋପପୁର ଉଚ୍ଛନ୍ନ ହୋଇଯିବଟି । ୪ । କଂସର ଆଦେଶ ନିଷ୍ଠୁର ଅଟେ; ଯେବେ ସେ ଏ କଥା ଜାଣିବ, ତେବେ ବନ ନିକଟରେ, କି ଗୋପପୁରରେ କିମ୍ବା ଗୋବର୍ଦ୍ଧନ ପର୍ବତ ଗହ୍ୱରରେ କୌଣସିଠାରେ ଆଶ୍ରୟ ମିଳିବ ନାହିଁ । ୫ । ଆଠଗଡ଼ର ରାଜା କହନ୍ତି, "ଅଖିଳଜନନୀ ଯେ ପୃଥିବୀ ତାହାଙ୍କର ନାସିକାର ମୃଗମଦକଳ୍ପ ସଦୃଶ ଯେ କୃଷ୍ଣଚନ୍ଦ୍ର, ଧ୍ୟାନରେ ତାହାଙ୍କର ଶୋଭା କି ମନୋହର ଅଟେ ।" ( ଅଥବା ନିଖିଳ ମାତୃମଣ୍ଡଳୀଙ୍କର ଶୀର୍ଷସ୍ଥାନୀୟା ରାଧାଙ୍କ ଶୋଭା ଧ୍ୟାନରେ କି ସୁନ୍ଦର ଅଟେ ) । ୬ ।

ଟୀକା—ପ୍ରଯତ୍ନୈଃ ଅତ୍ୟନ୍ତନିର୍ବନ୍ଧୈଃ ସନ୍ଦେହେହଂ ପଦ୍ମଂ ତସ୍ୟ ସହୋଦରେ ତତ୍ତୁଲ୍ୟେ ଲୋଚନେ ଯସ୍ୟାଃ ତସ୍ୟାଃ ଶ୍ରୀରାଧାୟାଃ ଇତ୍ୟର୍ଥଃ ପ୍ରତୀପଂ ଚେତଃ ବିରୁଦ୍ଧଭାବାପନ୍ନଂ, ମନଃ ଅନୁକୂଳୟିତୁଂ ତ୍ୱଦନୁକୂଳଂ କର୍ତ୍ତୁଂ ଯାମି ତଚ୍ଚେତଃ ସାଧିପ୍ରସନ୍ନଂ ଈଷତ୍ ପ୍ରସନ୍ନଂ ଚେତ୍ କୃତାର୍ଥା ଅଭବଂ, ନୋଚେତ୍ ତ୍ୱଦାସ୍ୟବିଧୁବୀକ୍ଷଣଂ ତବ ମୁଖଚନ୍ଦ୍ରାବଲୋକନଂ ଏତଦେବ । ଅକୃତକାର୍ଯ୍ୟା ଚେତ୍ ପୁନଃ ତ୍ୱତ୍ସମୀପଂ ନାଗମିଷ୍ୟାମୀତ୍ୟର୍ଥଃ ।

ହେ ନନ୍ଦନନ୍ଦନ, କର୍ହିଚିତ୍ ଲଘବଲବସ୍ୟ ସ୍ୱଳ୍ପାୟାଃ ଅପି ହାନତାୟାଃ ଉପସ୍ଥିତୌ ଅପି ତଂ ଲଘବଲବଂ ଅନୁଭୂୟ ଭୂୟଃ ପୁନଃ ତବ ମୁଖଂ ଏବ ସୁନ୍ଦରେନ୍ଦୁଃ ତସ୍ୟ ସନ୍ଦର୍ଶନେନ ବନ୍ଦନୀୟଃ ଉଚ୍ଛଳିତଃ ଯଃ ଆନନ୍ଦସନ୍ଦୋହଃ ତସ୍ୟ ଅନୁଭବେ ମନ୍ଦଃ ଶିଥିଳଃ ଆଦରଃ ଯତ୍ନଃ ଯସ୍ୟାଃ, ତଥାଭୂତୟା ବାମୟା ବିମୁଖ୍ୟା ଭବ୍ୟଂ ଭବିଷ୍ୟତେ ମୟା ଇତି ଶେଷଃ, ଯଦି ମେ ମନୋରଥସିଦ୍ଧିଃ ନ



ରାଗ—କାନଡ଼ଗୌଡ଼ା ବା କନଡ଼ା

(ସଖି ରେ) ତୋ ଘେନି ତମାଲଶ୍ୟାମ ମୋ ମରଜି କଷିଲା ରେ,
ତଥାପି ତ ତଳେ ହେଲେ ତୋ ସ୍ନେହେ ନ ରସିଲା ରେ । ପଦ ।
ତଳେ ବସନ ପ୍ରସାରି, ତୃଣ ଦଶନାଗ୍ରେ ଧରି,
କହିଲେହେଁ ଅନୁସରି, ଯାଜ୍ଞା ତ ନ ଦଶିଲା ରେ । ୧ ।
ତହୁଁ କି ବିଷମଭାବ, ତର୍କିଲା ମୋ ଗୂଢ଼ ଭାବ—
ତଟକୁ ଘଟନ୍ତେ ଅବଧାନ ବିନା ହସିଲା ରେ । ୨ ।
ତପନଜାତଟକୁ ତୁ, ତରୁଣୀଠା କେଉଁ କୁତ୍ରୁ—
ହଳରୁ ଆସିଲୁ ହେତୁ, କହ ବୋଲି ଘୋଷିଲା ରେ । ୩ ।
ତାରି ତୋର ସୁଲୋଚନା, ତାରତମ୍ୟ ବିବେଚନା—
ଲବ ହୋଇ ନାହିଁ ତହିଁ, ତୋ ଚିତ୍ତ କେ ଚପିଲା ରେ । ୪ ।
ତିରସ୍କାର ପୂର୍ବଭାଷା, ତଚଳାଇ ପୂର୍ଣ୍ଣ ଆଶା,
ଓଠିକି ଚୁମ୍ବିଲ ତୃଷା ତମିର ବିଳସିଲା ରେ । ୫ ।
ତୁଚ୍ଛସ୍ନେହମନ ଜନ, ତୋ ସଙ୍ଗକୁ କି ଭାଜନ,
ପ୍ରପନ୍ନ ହରିଚନ୍ଦନ ଜଗଦ୍ଦେବ ଭାଷିଲା ରେ । ୬ ।

---

ସ୍ୟାତ୍ ତର୍ହି ହୀନତାମପ୍ୟନୁଭୂୟ ପୁନସ୍ତ୍ୱନ୍ମୁଖଂ ନ ପଶ୍ୟାମୀତ୍ୟର୍ଥଃ । ଲଳିତା ଇତି ନିବେଦ୍ୟ ଶ୍ରୀକୃଷ୍ଣଂ ବିଜ୍ଞାପ୍ୟ ନିଷ୍କ୍ରମ୍ୟ ତଦନ୍ତିକାତ୍ ବହିର୍ଗତ୍ୟ ଶ୍ରୀରାଧାୟାଃ ସବିଧଂ ସମୀପଂ ପ୍ରବିଶ୍ୟ ଗତ୍ୱା ତାଂ ପ୍ରତି କଥୟତୀତି ଶେଷଃ ।

ଅନୁବାଦ—ହେ କୃଷ୍ଣ, ପଦ୍ମନେତ୍ରା ରାଧାଙ୍କର ବିପରୀତଭାବାପନ୍ନ ମନକୁ ନାନା ଚେଷ୍ଟାରେ ତୁମ୍ଭପ୍ରତି ଅନୁରକ୍ତ କରିବାକୁ ମୁଁ ଯାଉଅଛି । ଯେବେ ତାଙ୍କ ମନ ଅର୍ଦ୍ଧମାତ୍ରାରେ ପ୍ରସନ୍ନ ହୁଏ, ତେବେ ମୁଁ କୃତାର୍ଥ ହେଲି ବୋଲି ମନେ କରିବି, ଅନ୍ୟଥା ତୁମ୍ଭ ଚନ୍ଦ୍ରମୁଖ ଦର୍ଶନ ଏହିଠାରେ ମୋର ଶେଷ ହେଲା ।

ହେ ନନ୍ଦନନ୍ଦନ, ଉଦ୍ଦେଶ୍ୟ ସିଦ୍ଧିରେ ନୀଚତା ମଧ୍ୟ ଅଙ୍ଗୀକାର କରିବି । କିନ୍ତୁ ତୁମ୍ଭ ମୁଖଚନ୍ଦ୍ର ଦର୍ଶନରେ ଯେଉଁ ଆନନ୍ଦ ଅନୁଭବ କରୁଥିଲି, ତହିଁରେ ଆଉ ମୋର ଉତ୍ସାହ ରହିବ ନାହିଁ, ମୁଁ ସେ ବିଷୟରେ ବିମୁଖ ହୋଇ ରହିବି ସିନା । ଲଳିତା ଶ୍ରୀକୃଷ୍ଣଙ୍କୁ ଏହିପରି କହିବା ପରେ ରାଧାଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ କହିଲେ, "ତୋ ଘେନି ତମାଲ ଶ୍ୟାମ" ଇତ୍ୟାଦି ।

---

(ଡ) ଯସ୍ୟାଂ ତ୍ୱଦ୍‌ଭ୍ରୂଜଦମ୍ବୁଦହେମଲତୟୋର୍ଗଚ୍ଛତ୍ୟା ମତ୍ୟଂ ସ୍ଥିତାନ୍ତ,
ପାଣ୍ୟାତ୍ମାମଧୁନାପି ତନ୍ମ୍ୟ ଭବତୀ ଭଲ୍ଲାଧିକାଲ୍ଲାଘବାତ୍,
ଅସ୍ୟାସଃ ସଖି କେବଲଂ ଫଳମଭୂତ୍ ବାଧାପ୍ୟସାଧାରଣୀ,
ଚେତସ୍ୟାବିରଭୂଦ୍‌ବଭୂବ ନ ପୁନସ୍ତ୍ୱଲ୍ଲୀଳସୋଲ୍ଲାସନମ୍ ।
ଦୃଷ୍ଟ୍ୟା କଦାଚିଦ୍‌ଭବଦୀୟାଭିଷ୍ଟସିଦ୍ଧୌ ସମ୍ଭାବ୍ୟାମପି ବନ୍ଧ୍ୟାତ୍ୱ-
ମୁତପତ୍‌ସ୍ୟତେ କଲ୍ୟାଣବଲ୍ଲ୍ୟାଃ ।

---

(ଡ) ତୋ ଧେକ—ତୋ ପାଇଁ ବା ତୋ ହେତୁରୁ, ତମାଲଶ୍ୟାମ—ତମାଲ ଗଛର ପତ୍ରପର ବର୍ଣ୍ଣ ଯାହାର, କୃଷ୍ଣ; ମରଜ—ଇଚ୍ଛା, ହୃଦ୍‌ଭାବ; କଷିଲ୍ଲ—ପରୀକ୍ଷା କରି ନେଲ୍ଲ, ବସନ—ବସ୍ତ୍ର, ରାଜ ଦଶିଲ୍ଲ ନାହିଁ—ସମ୍ମତ ହେବା ଭଳି ଜଣାଗଲା ନାହିଁ, ଶ୍ରବଣଠକୁ—କାନ ପାଖରେ, ତପନଜାତଠ—ଯମୁନାକୂଳ, କୁତୁହଳରୁ—କୌତୁକ ହେତୁରୁ, ତାରତମ୍ୟ ବିବେଚନା—ନ୍ୟୂନତା ଓ ଅଧିକ୍ୟ ଜ୍ଞାନ, ତିରସ୍କାର ପୂର୍ବଭାଷା—ଗାଳିଦେଇ କହିବା, ତରଳାଇ—ନାଶକରି ବା ଦୂରକରି, ତୋଣ୍ଟି—କଣ୍ଠ, ଭୁଛସ୍ନେହମନ ଜନ—ଯାହା ମନରେ ଆଦୌ ସ୍ନେହ ନାହିଁ, ସ୍ନେହଶୂନ୍ୟ ଲୋକ; ପ୍ରପନ୍ନ—ଆଶ୍ରିତ ।

ହେ ସଖି, ସେହି ତମାଳବୃକ୍ଷର ପତ୍ରପରି ଶ୍ୟାମଳବର୍ଣ୍ଣ କୃଷ୍ଣ ତୋ ସକାଶେ ମୋ ହୃଦୟକୁ ପରୀକ୍ଷା କରିନେଲା, ତଥାପି ଟିକିଏ ହେଲେ ତୋ ପ୍ରତି ଅନୁରାଗ ପ୍ରକାଶ କଲା ନାହିଁ । ପଦ । ମୁଁ ତଳେ ଲୁଗା ପକାଇ ଦାନ୍ତରେ କୁଟା ଧରି ଯେତେ ଅନୁସରଣ କରି କହିଲି, ସେ ତହିଁରେ ରାଜି ହେଲା ନାହିଁ । ୧ । ତୁମ୍ଭରେ ମୋର ଗୃଢ଼ କଥା ଯେତେବେଳେ ତା କାନ ପାଖରେ ପହଞ୍ଚିଲା, ଅର୍ଥାତ୍ ତା କାନରେ ପଡ଼ିଲା ସେତେବେଳେ ତହିଁରେ ସେ ଗୋଟିଏ ବିରୁଦ୍ଧ ଭାବ ଅନୁମାନ କଲା ଏବଂ ତହିଁରେ ଆଦୌ ମନ ନ ଦେଇ ହସିବାକୁ ଆରମ୍ଭ କଲା । ୨ । ଏବଂ ବାରମ୍ବାର କହିଲା, ତୁ ଯୁବତୀ ସ୍ତ୍ରୀଟିଏ, କି କୌତୁକରୁ ଯମୁନାକୂଳକୁ ଆସିଲୁ କହ । ୩ । ହେ ସୁଲୋଚନେ, ତୁ କେଡ଼େ ସ୍ଥାନ, ସେ କେଡ଼େ ବଡ଼, ଏ ବିଚାର ତୁ ଟିକିଏ ସୁଦ୍ଧା କରି ନାହୁଁ, ଏପରି ଅବସ୍ଥାରେ ତୋ ମନ କିପରି ତା ପ୍ରତି ଅନୁରକ୍ତ ହେଲା । ୪ । ସେ ଯେତେବେଳେ ଗାଳି ଦେଇ କଥା କହିଲା, ସେତେବେଳେ ମୋର ସବୁ ସୁଖ ଆଶା ଭାଙ୍ଗିଗଲା, ମୋ କଣ୍ଠ ଶୁଖିଗଲା ଏବଂ ମୋତେ ଚାରିଆଡ଼ ଅନ୍ଧାର ଦିଶିଲା । ୫ । ଯେଉଁ ଲୋକର ମନ ସ୍ନେହଶୂନ୍ୟ ସେ କଅଣ ତୋ ସଙ୍ଗର ଉପଯୁକ୍ତ ପାତ୍ର, ଆଶ୍ରିତ ହରିଚନ୍ଦନ ଜଗଦ୍ଦେବ ଏହା କହିଲେ । ୬ ।

# ଥ

ରାଗ—ଝିଂଝୋଟି ବା ଟୋଡ଼ୀ ଜଙ୍ଗଲା

ଥାପିରେ କହ ତଥାପିରେ ପ୍ରିୟସଖି ଥିବ କି ଛାଡ଼ିବି ପ୍ରାଣ । ପଦ ।
ଥିଲା ପର ସ୍ନେହ ଲଗିଲା କି କହ, ଅଛୁଟି ତୋତେ ମୋ ରାଣ । ୧ ।
ଥକାଇ ତୁ କହୁ, କହୁ ଧୃତ ରହୁ, ନାହିଁଟି ମୋହର ଜାଣ । ୨ ।*
ଥୋକାଏ ତୋ ପ୍ରୀତି-ବର୍ଦ୍ଧିକି ସମ୍ମତ କଲେ କି ମୋ ପରିତ୍ରାଣ । ୩ ।
ଥରେ ହେଲେ ବିକି, ହେବ ମୋତେ ନିକି ବର୍ଷାଇବ ପଞ୍ଚବାଣ । ୪ ।
ଥୋଇ ହୃଦେ ଛଳ, ନ କର ବିକଳ, କହେ ଅଷ୍ଟଦୁର୍ଗରାଣ । ୫ ।

---

ଟୀକା—ହେ ତନ୍ୱି, ତବ ଭ୍ରୂକୌ ଏବ ଦମ୍ଭହେମଲତେ ବ୍ୟାଜସ୍ୱର୍ଣ୍ଣଲତେ ତୟୋଃ ଛାୟାଂ ଆଶ୍ରିତ୍ୟ ନିତ୍ୟଂ ସ୍ଥିତାଂ ମାଂ ଭବତୀ ତ୍ୱଂ ଭିଲ୍ଲାଧିକାତ୍ ଭିଲ୍ଲାସ୍ୱାଘାତାଦଧିକପୀଡ଼ାପ୍ରଦାତ୍ ଲଘବାତ୍ ଅଗୌରବାତ୍ ଅଧୁନାପି ପାୟାତ୍ ରକ୍ଷେତ୍ ହେ ସଖି, ଆୟାସଃ ପରିଶ୍ରମଃ କେବଲଂ ଫଳଂ ,ଅଭୂତ୍, ଅସାଧାରଣୀ ଅଲୌକିକା ବାଧାପି ଚେତସି ଆବିରଭୂତ୍ ସଂଜାତା, କିନ୍ତୁ ତ୍ୱୟି ଲାଲସାୟାଃ ଉଲ୍ଲାସନଂ ଅନୁରାଗ ପ୍ରକାଶଃ କୃଷ୍ଣସ୍ୟ ଇତି ଶେଷଃ ନ ବଭୂବ ।

ଦଷ୍ଟ୍ୟା ଭାଗ୍ୟବଳେନ ଭବଦୀୟାଭିଷ୍ଟସିଦ୍ଧୌ ସମ୍ଭାବ୍ୟାୟାଂ ଅପି ତବାଭିଲାଷେ ପରିପୂର୍ଣ୍ଣେଽପି କଲ୍ୟାଣବଲ୍ଲ୍ୟାଃ ମଙ୍ଗଲଲତାୟାଃ କଦାଚିତ୍ ବନ୍ଧ୍ୟାତ୍ୱଂ ଉତ୍ପତ୍ସ୍ୟତେ ସତ୍ୟପି ଭବତ୍ୟ । ସହ ତସ୍ୟ ମିଳନେ ପରିଣାମୋ ନ ସୁଖାବହୋ ଭବିଷ୍ୟତୀତ୍ୟର୍ଥଃ ।

ଅନୁବାଦ—ହେ ସୁନ୍ଦରି, ମୁଁ ତୁମ୍ଭର ନିତ୍ୟ ଅନୁଗତ, ଗୌରବହୀନ ହେବାରୁ ମୋତେ ପ୍ରାଣାନ୍ତକ କଷ୍ଟ ହେଉଅଛି, ତହିଁରୁ ତୁମ୍ଭେ ମୋତେ ରକ୍ଷା କର, ମୋର ପରିଶ୍ରମ ମାତ୍ର ସାର ହେଲା ଏବଂ ହୃଦୟରେ ଅସାଧାରଣ କଷ୍ଟ ଜାତ ହେଲା; କିନ୍ତୁ ତୁମ୍ଭ ଆଶା ପୂରଣ ହେଲା ନାହିଁ ।

ଭାଗ୍ୟବଶରୁ ଯେବେ କେତେବେଳେ ତୁମ୍ଭ ଅଭିଳାଷ ପୂର୍ଣ୍ଣ ହୁଏ ତେବେ ଶେଷଫଳ ଭଲ ହେବ ନାହିଁ ।

---

(ଥ) ଥାପି—ସ୍ଥିର କରି, ଲଗିଲା—ଜଣାଗଲା, ଥକାଇ—ରହି ରହି, ଧୃତ—ଧୈର୍ଯ୍ୟ, ଥୋକାଏ—ଟିକିଏ, ପରିତ୍ରାଣ—ରକ୍ଷାକାରୀ, ନିକି—ସତେ କି ?

ହେ ସଖି, ସ୍ଥିର କରି କହ, ବର୍ତ୍ତିବ କି ପ୍ରାଣତ୍ୟାଗ କରିବ ? ପଦ । ତୋତେ ମୋ ରାଣଟି ସତ କରି କହ, ମୋଠାରେ ତାଙ୍କର ସ୍ନେହ ଥିଲା ପର

---

* ପାଠାନ୍ତର—ଥୋକାଏ ମୋ ପ୍ରୀତିବର୍ଦ୍ଧିକି ସମ୍ମତ ନ କଲେ କି ପରିତ୍ରାଣ ।

(୪) ସ୍ମିତସୁଭଗମୁଖଃ ଶିଖଣ୍ଡମୌଳିର୍ବଦ କିମୁସ୍ୱୀକୃତବାନ୍ ମଦଙ୍ଗସଙ୍ଗମ୍;
କଥୟ ସଖି ଯଦା ତୃଣାୟ ମେନେ ବପୁରଥ କିଂ ବିସୃଜାମି ଧାରୟାମି ॥
ସହଚରି ଲଳିତେ । ଦମ୍ଭସମ୍ଭୃତସମୁଜ୍ଜୃମ୍ଭଣମନ୍ତରେଣ ବିଲମ୍ବ-
ମନବଲମ୍ବ୍ୟ ବ୍ରୂହି ସବିଶ୍ରମ୍ଭଂ ଜୀବାମି ବା କିଂତଦନାନ୍ୟଥବା ତାପିଞ୍ଛଶାଖି-
ଶାଖାୟାମୁଦ୍‌ବନ୍ଧନମଙ୍ଗୀକରିଷ୍ୟାମି !

---

ଜଣାଉଛନ୍ତି ? ୧ । ତୁ ରହି ରହି କଥା କହିବାରୁ ମୁଁ ଧୈର୍ଯ୍ୟ ଧରି ପାରୁ ନାହିଁ । ୨ । ତୁ ଯେପରି ଢଙ୍ଗରେ ମିଳନର ବିଧାନ କଲୁ ତହିଁରେ ଠିକ୍‌ଏ ହେଲେ କଅଣ ମୋର ରକ୍ଷାକର୍ତ୍ତା ( ଶ୍ରୀକୃଷ୍ଣ ) ସମ୍ମତି ପ୍ରକାଶ କଲେ ନାହିଁ ? ୩ । ମୁଁ ଥରେ ହେଲେ ଏ ଜୀବନକୁ ତାଙ୍କ ଶ୍ରୀଚରଣରେ ବିକିଦେଅନ୍ତି, ଅନ୍ୟଥା ମୋତେ କନ୍ଦର୍ପ ବଞ୍ଚାଇବ କି ? ୪ । ହୃଦୟରେ କପଟ ରଖି ମୋତେ ବିକଳ କର ନା; ଅଷ୍ଟାଦୁର୍ଗର ରାଜା ଏହା କହିଲେ । ୫ ।

ଟୀକା—ହେ ସଖି, ସ୍ମିତେନ ମୃଦୁହାସ୍ୟେନ ସୁଭଗଂ ସୁନ୍ଦରଂ ମୁଖଂ ଯସ୍ୟ ସଃ ମୃଦୁହାସ୍ୟବିମଣ୍ଡିତମୁଖମଣ୍ଡଳଃ, ଶିଖଣ୍ଡଃ ମୟୂରପୁଚ୍ଛଃ ମୌଳୌ ଯସ୍ୟ ସଃ ଶ୍ରୀକୃଷ୍ଣଃ ମଦଙ୍ଗସଙ୍ଗଂ ଉରରୀକୃତବାନ୍ ସ୍ୱୀକୃତବାନ୍ କିଂ ? ବଦ ଯଦା ଯଦି ବା ତୃଣାୟ ମେନେ ତୃଣବତ୍ ଅକିଞ୍ଚିତ୍‌କରଂ ଅମଂସ୍ତ କଥୟ କିଂ ବପୁଃ ଇଦଂ ଶରୀରଂ ବିସୃଜାମି ତ୍ୟଜାମି ଅଥ ଅଥବା ଧାରୟାମି ମ୍ରିୟେ ବା ଜୀବାମି କଥୟ ଇତ୍ୟର୍ଥଃ ।

ସହଚରି ଲଳିତେ, ଦମ୍ଭଭୃତ୍ୟା କପଟବ୍ୟବହାର ସମୂହସ୍ୟ ସମୁଜ୍ଜୃମ୍ଭଣଂ ପ୍ରକାଶଃ ତଦନ୍ତରେଣ କପଟାଗ୍ରହଂ ବିନା ଇତ୍ୟର୍ଥଃ, ବିଲମ୍ବଂ ଅନବଲମ୍ବ୍ୟ ଅବଲମ୍ବଂ ଯଥାସ୍ୟାତ୍ ତଥା ସବିଶ୍ରମ୍ଭଂ ବିଶ୍ୱାସସହିତଂ ବ୍ରୂହି କଥୟ, କିଂତଦନାନ ବ୍ୟାପ୍ୟ ଜୀବାମି ବା ତାପିଞ୍ଛଶାଖିଶାଖାୟାଂ ତମାଲବୃକ୍ଷଶାଖାୟାଂ ( ଶ୍ରୀକୃଷ୍ଣସ୍ୟ ତମାଳଶ୍ୟାମତ୍ୱାତ୍ ) ଉଦ୍‌ବନ୍ଧନଂ ଅଙ୍ଗୀକରିଷ୍ୟାମି, ଉଦ୍‌ବନ୍ଧନେନ ପ୍ରାଣାନ୍ ତ୍ୟକ୍ଷ୍ୟାମି ।

ଅନୁବାଦ—ଅୟି ସଖି ଲଳିତେ, ସତ କହ, ମୟୂରଚୂଳିଆ ସ୍ମିତ-ସୁନ୍ଦରବଦନ ଶ୍ରୀକୃଷ୍ଣ ତୋ ପ୍ରସ୍ତାବକୁ ଅଙ୍ଗୀକାର କଲେଟି ? କିମ୍ବା ମୋ ଅଙ୍ଗସଙ୍ଗକୁ ଅତି ସାମାନ୍ୟ ବୋଲି ମନେ କଲେ, ଏ ଦେହକୁ ରଖିବି କି ଛାଡ଼ିବି କହ ।

ସହଚରି, ହୃଦୟରେ କପଟ ନ ରଖି ଆଉ ବିଳମ୍ବ ନ କରି ସତକରି କହ, ତମାଲଗଛ ଡାଳରେ ଦଉଡ଼ିଦେଇ ପ୍ରାଣ ହରିବି କି ଅଉ କିଛି ଦିନ ବଞ୍ଚିବି ?

ଏହା ଶୁଣି ଲଳିତା କହିଲେ,—"ରେ ଦୁଃଖିଧନ" ଇତ୍ୟାଦି ।

(ବ) ଏଷା ତ୍ୱଂ ଶିଞ୍ଜିତାଙ୍ଗଲତେ ସହେଥା ନାଲୀକନାଲୁଙ୍ଗନେମପ୍ୟାଗାଢ଼ଂ,
ଅଙ୍ଘାଳରନ୍ଧ୍ରାର୍ଗଳଯୁଗଚ୍ଛିଦ୍ରା ସୈବଭ୍ରମାସୀଃ କଥମଦ୍ୟ କଷ୍ଟଂ ।

ସାନ୍ଦ୍ରଃପ୍ରଣୟହାସପରିହାସୈର୍ବଂଗ୍ରୈଭିରଚ୍ୟୈବମାଲୀନାମାଲିନାଯୃ-ମଙ୍ଗେଷୁ ଲଜ୍ଜାଯୃ ଲୀଳାବମର୍ଦ୍ଦନ୍ୟୂନାଙ୍ଗ୍ୟାମଙ୍ଗୀକୃତ୍ୟାଙ୍ଗରାଗାଦ୍ରଙ୍ଗସ୍ଥାନଂ ସାଳସଲ୍ଲସତ୍ ସମୀରେଣ ପଥା କଦମ୍ବକଦମ୍ବସମ୍ବାଧେନ ତାଭିଃ ସହଚରୀଭି-ରବଗାହ୍ୟ ଯମୁନାବାଃପ୍ରବିଷ୍ଟାୟାଂ ରାଧାୟାମକସ୍ମାଦାଗତଃ ସାନ୍ଦୀପନି-ମୁନିନନ୍ଦନଃ ସାନନ୍ଦଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ।

---

ଗୋପୀମାନଙ୍କ ଅଳଙ୍କାର ଧ୍ୱନି ସଙ୍ଗେ ପ୍ରଭୃତସୂଚକ କଣ୍ଡ୍ରିମ ଶବ୍ଦ ମିଶି ଶୁଣା ଗଲଣି, ଏହି ସବୁ ଶବ୍ଦଦ୍ୱାରା ଆକାଶପୂର୍ଣ୍ଣ ହେବାରୁ ରାଧା ଧୀରେ ଧୀରେ କୁଞ୍ଜ ମଧ୍ୟରୁ ବାହାରିଲେ, ସେତେବେଳେ ସଖୀମାନେ ତାଙ୍କୁ ପରିହାସରେ କହୁ ଅଛନ୍ତି—"ବିଚିତ୍ର ବେଶ ମଞ୍ଜୁଳା ରେ" ଇତ୍ୟାଦି ।

---

(ବ) ବଲ୍ଲୀନିଳୟ—ଲତାକୁଞ୍ଜଗୃହ, ବାସ—ଲୁଗା, ବିଲକ୍ଷଣ—ବିଶିଷ୍ଟ, ଅସାଧାରଣ; ବ୍ୟସ୍ତ—ଇତସ୍ତତଃ ଲିପ୍ତ, ଚିତ୍ରମାଛ—କସ୍ତୂରୀ ପ୍ରଭୃତି ଦ୍ୱାରା ଗଣ୍ଡସ୍ଥଳରେ ଅଙ୍କିତ ହୋଇଥିବା ମାଛର ଚିତ୍ର, ବ୍ରଣଗଣ—ଖଣ୍ଡିଆ ଚିହ୍ନ, ନବ ପଲ୍ଲବ—ନୂଆ ପତ୍ର, ବିଶ୍ଳଥ—ଢିଲା, ଫୁଗୁଲା; ବଲ୍ଲୀକା—ଲତାକୁ, ବାସରେ—ଦିନବେଳେ, ବିଜନେ—ନିର୍ଜ୍ଜନ ସ୍ଥାନରେ, ବିନୟନୟବସତି—ବିନୟ ଓ ନୀତିରେ ନିପୁଣା, କଳାବତୀ—ସୂକ୍ଷ୍ମଶିଳ୍ପନିପୁଣା, ବିରୂପାକ୍ଷଦେବବିପକ୍ଷ—ଶିବଙ୍କ ଶତ୍ରୁ, କାମ; ବଲ୍ଲବଯୁବତୀ—ଗୋପାଙ୍ଗଣୀ ।

ହେ ବାଳା, ତୁ ତ ଅତି ବିଚିତ୍ର ବେଶରେ ସୁନ୍ଦର ହୋଇଅଛୁ ଏବଂ ନାନାବିଧ ଗୃହକର୍ମରେ ନିପୁଣା ଅଟୁ, ଅଧରାତିରେ ଏକାହୋଇ ତୁ କିପରି ଏ ବଣରେ ଫୁଲ ତୋଳୁଅଛୁ ? ହେ ସଖି ତୁ ବିଳାସରେ ବଡ଼ କୁଶଳା ଅଟୁ ଏବଂ କୁଞ୍ଜବନରେ କ୍ରୀଡ଼ା କରିବାରେ ତୁ ବଡ଼ ଉତ୍ସୁକା । ୧ । ଆମ୍ଭେମାନେ ପିଲାଦିନରୁ ପିନ୍ଧାଲୁଗା ଦେହରେ ଲାଗି ରହିଲା ପରି ତୋତେ ଅନୁସରଣ କରିଥିଲୁଁ, କିନ୍ତୁ ତୋର ଏହି ବିଶିଷ୍ଟ ବନବିହାରରୂପ ଉତ୍ସବବେଳେ ତୁ ଯାହା ଆମକୁ ଏକା-ବେଳକେ ପାସୋରି ଦେଲୁ ଏହା ବଡ଼ ଦୁଃଖର କଥା । ହେ ଗୋରି, ବିଚାର କରି, ସଂସାରରେ ଲୋକେ କାହିଁକି ବନ୍ଧୁତ୍ୱ କରନ୍ତି ? ୨ । ହେ ସଖି, ତୋ ଗଣ୍ଡସ୍ଥଳରେ ଯେଉଁ ମାଛର ଚିତ୍ରସବୁ ଅଙ୍କିତ ହୋଇଥିଲା, ସେଗୁଡ଼ିକ ତ କାହିଁକି ଲିଭିଗଲା ପରି ଜଣା ଯାଉଅଛି ଏବଂ ଗଣ୍ଡଦେଶରେ ତ କଣ କ୍ଷତ ଦେଖାଯାଉ-ଅଛି, କି ତୋ ବିମ୍ବଫଳ ସ୍ୱରୂପ ଅଧରରୁ ନୂଆ ପତ୍ରମାନଙ୍କୁ କିଛି କିଛି (ରକ୍ତିମା) ବାଣ୍ଟି ଦେଇଅଛୁ କି ? (ତା ହୋଇ ନ ଥିଲେ ତୋ ରକ୍ତବର୍ଣ୍ଣ ଅଧର ଏପରି

ମଳିନ ଦିଶୁଅଛି କାହିଁକି ? ) ଅଧରୁ ମଧ୍ୟ ତୋ ପିନ୍ଧାଲୁଗା ତ କାହିଁକି ଛୁଟିଗଲା ହୋଇ ଯାଇଅଛି ? ତୁ ସଖୀ ସବୁଦିନେ ଲୁଗା କାଛି କରି ପିନ୍ଧି ଥାଉ ? ୩ । ଆଉ ମଧ୍ୟ ଦିନବେଳେ ତୁ ସଖୀ ଲତାକୁ ଦେଖି ଡରୁ । ଆମ୍ଭେମାନେ ଆଜି ବ୍ରଜରେ ଶୁଣି ଅଛିଲୁଁ ଯେ, ତୁ ପ୍ରତି ରାତିରେ ଘରୁ ଆସି ନିର୍ଜନ ବଣରେ ବୁଲୁଛୁ, ତୁ ଯାହା ଆଦୌ ଡରୁ ନାହୁଁ ଏ ତ ବଡ଼ ବିଷମ କଥା । ୪ । ହେ ସଖି, ତୁ ବିନୟ ଓ ଗୀତର ଆଶ୍ରୟ ସ୍ଥଳ ଅର୍ଥାତ୍ ତୁ ଯେପରି ବିନୟବତୀ ସେହିପରି ଗୀତନିପୁଣା ଅଟୁ ଏବଂ ବିଚିତ୍ର ସୂକ୍ଷ୍ମ ଶିଳ୍ପବିଦ୍ୟାରେ ମଧ୍ୟ ଦକ୍ଷା ଅଟୁ, ତୁ ଗଉଡ଼ ଘରର ଭୂଅସୁଣୀ ହୋଇ କନ୍ଦର୍ପକୁ ଜିଣି ଯଶରେ ପୃଥିବୀକୁ ମଣ୍ଡିତ କଲୁ । ଅଷ୍ଟଦୁର୍ଗର ରାଜା ତୋତେ ବନ୍ଦନା କରୁଅଛନ୍ତି । ୫ ।

ଟୀକା—ହେ ଶିରୀଷାଙ୍ଗଲତେ, ଶିରୀଷପୁଷ୍ପମିବ କୋମଳା ଅଙ୍ଗଲତା ଯସ୍ୟାଃ ତତ୍ ସମ୍ବୋଧନେ ହେ ଶିରୀଷକୋମଳାଙ୍ଗି, ଯା ତ୍ୱଂ ଅଗାଢ଼ଂ ମୃଦ୍ୱପି ଆଲି-ଜନାନାଂ ସଖୀଜନାନାଂ ଆଲିଙ୍ଗନଂ ନ ସହେଥାଃ ସୋଢୁମକ୍ଷମା, ସା ଏବ ତ୍ୱଂ କଥଂ ଅଦ୍ୟ ଆସମ୍ୟକ୍ ନୀଲଂ ଯତ୍ ରତ୍ନାର୍ଗଲଯୁଗ୍ମଂ ଅର୍ଗଳାବିବ ନୀଲବାହୁଯୁଗଂ ତେନ ରୁଦ୍ଧା ନିୟନ୍ତ୍ରିତା ଆସୀଃ ଅଭୂବଃ ଇତି କଷ୍ଟମ୍ ।

ସାନ୍ତଃପ୍ରଣୟିହାସପରିହାସୈଃ ଆନ୍ତରାନୁରାଗେଣ ହାସେନ ପରିହାସେନ ଚ ସହିତୈଃ ଆଲୀନାଂ ସଖୀନାଂ ଇତ୍ୟେବଂ ବଚୋଭିଃ ଲଜ୍ଜୟା ଅଙ୍ଗେଷୁ-ଲୀନାୟାଂ ସଙ୍କୁଚିତାୟାଂ, ତଥା ନୀଲାବିମର୍ଦ୍ଦେନ ବଲାଦାଲିଙ୍ଗନାଦିନା ଦୂନାଙ୍ଗ୍ୟାଂ କ୍ଲିଷ୍ଟା-ବୟବାୟାଂ ରାଧାୟାଂ ଅଙ୍ଗରାଗାଦି ସଂସ୍କାରଂ ତନୁମାର୍ଜନୋଚିତ ସୁଗନ୍ଧଦ୍ରବ୍ୟଜାତଂ ଅଙ୍ଗୀକୃତ୍ୟ ଗୃହୀତ୍ୱା ସ୍ଥିତାଭିରିତି ଶେଷଃ ତାଭିଃ ପରିହାସକାରିଣୀଭିଃ ସହଚରୀଭିଃ ସହ ସାଲସଂ ଧୀରଂ ଲସନ୍ ବହନ୍ ସମୀରଃ ପବନୋ ଯସ୍ମିନ୍ ତଥୋକ୍ତେନ କଦମ୍ବାନାଂ ନୀପବୃକ୍ଷାଣାଂ କଦମ୍ବେନ ସମୂହେନ ସଂବାଧେନ ସଙ୍କୀର୍ଣ୍ଣେନ ପଥା ଗତ୍ୱା ଇତି ଶେଷଃ ଅବଗାହାୟ ସ୍ନାନାର୍ଥଂ ଯମୁନାୟା ବାରି ସଲିଲେ ପ୍ରବିଷ୍ଟାୟାଂ ରାଧାୟାଂ ସତ୍ୟାଂ ଅକସ୍ମାଦାଗତଃ ହଠାଦୁପସ୍ଥିତଃ ସାନନ୍ଦଃ ସହର୍ଷଃ ନାନ୍ଦୀପକ-ମୁକୁନ୍ଦନନ୍ଦନଃ ମଧୁମଙ୍ଗଲଃ ଶ୍ରୀକୃଷ୍ଣଂ ପ୍ରତି ସସ୍ମିତଂ ଈଷଦ୍ଧାସ୍ୟସହିତଂ ବଦତୀତି ଶେଷଃ ।

ଅନୁବାଦ—ହେ ଶିରୀଷପୁଷ୍ପାଙ୍ଗି, ତୁ ତ ସଖୀଜନମାନଙ୍କର କୋମଳ ଆଲିଙ୍ଗନ ସହିପାରୁ ନାହିଁ, ସେହି କୋମଳାଙ୍ଗୀ ତୁ ଆଜି କିପରି ନୀଳରତ୍ନସ୍ୱରୂପ ବାହୁ ଅର୍ଗଳରେ ( କିଳଣିରେ ) ଅବରୁଦ୍ଧା ( ବନ୍ଦୀ ) ହେଲୁ । ଓଃ, ଏ ବଡ଼ କଷ୍ଟର କଥା ।

ଆଲୀମାନଙ୍କର ଏହି ପରିହାସ କଥାରେ ରାଧା ଲଜ୍ଜାରେ ସଙ୍କୁଚିତ ହୋଇଗଲେ । ତାଙ୍କ ଶରୀର ରତିରଙ୍ଗରେ ବଡ଼ କ୍ଲାନ୍ତ ହୋଇ ପଡ଼ିଥିଲା, ଧୀର ସମୀରଣ ପ୍ରବାହରେ ଆନ୍ଦୋଳିତ କଦମ୍ବବୃକ୍ଷସମାକୁଳ ସଙ୍କୀର୍ଣ୍ଣ ପଥରେ

# ଶ

ଶ୍ୟାମ ଶିଖଣ୍ଡଚୂଳ, ଶ୍ରମ କି ଅଜପାକେ ହେଲା ସଫଳ । ପଦ ।
ଶର୍ବରୀ ନିଦ୍ରା ବିନା ଗଲା କି ସରି, ସମ୍ବରପରପୁର କଲ କି ଲୁଟି । ୧ ।
ଶ୍ରୀଅଙ୍ଗ ବେଶ କିପାଁ ଏପରି ଅଜି, ଶରଦଚନ୍ଦ୍ର ତୁମ୍ଭ ନାହିଁ କି ଲାଜ । ୨ ।
ଶିଶୁ ହେଲେହେଁ ତୁମ୍ଭେ କଲଭ*ସରି, ଶଶକଶୋରୀ ଠିକି ଦେଲ ଯେ ସାରି ॥
ଶିରୀଷମାଳା ଦଳିଦେଇ କୁଠାରେ, ଶଙ୍କା ନ କଲ ସଖୀମାନଙ୍କଠାରେ ।୪।
ଶରମପ୍ରଦ ଆଜ ସରିକି ହେଲା, ଶମନସ୍ୱସା-ତଟ-ଅଟବୀବୁଲା । ୫ ।
ଶିର ସୁନ୍ଦର ଦଶେ ଯାବକ ବୋଳେ, ଶରଣ ବୋଲି କି ପଡ଼ିଲ ପା ତଳେ ॥
ଶପଥ ଶତ ଅଛୁ କହୁଛି ସତେ, ଶ୍ରୀ ବଳଦେବ ନୃପ ରଚିଲେ ଗୀତେ । ୭ ।

ତନୁ ମାର୍ଜନ ପାଇଁ ସୁଗନ୍ଧ ଦ୍ରବ୍ୟମାନ ଧାରଣ କରିଥିବା ସେହି ସହଚରୀମାନଙ୍କ ସଙ୍ଗରେ ଯମୁନାଜଳରେ ପ୍ରବେଶ କଲେ । ଏହି ସମୟରେ ସାନ୍ଦୀପନି ମୁନିଙ୍କ ପୁତ୍ର ମଧୁମଙ୍ଗଳ ହଠାତ୍ ଉପସ୍ଥିତ ହୋଇ ହସି ହସି ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି:—
"ଶ୍ୟାମ ଶିଖଣ୍ଡଚୂଳ" ଇତ୍ୟାଦି ।

---

(ଶ) ଶିଖଣ୍ଡଚୂଳ—ମୟୂରପୁଚ୍ଛମୁକୁଟଧାରୀ, ଶର୍ବରୀ—ରାତି, ଶମ୍ବରପର-ପୁର—କାମଦେବଙ୍କ ରାଜଧାନୀ, ଲୁଟି—ଲୁଟି, କଲଭ—ଶିଶୁ ହାତୀ, ଶଶ-କଶୋରୀ—କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ ରାଧା, କୁଠାର—କୁରାଢ଼ି, ଶରମପ୍ରଦ—ଶର୍ମଦାୟୀ, ସୁଖପ୍ରଦ; ଶମନସ୍ୱସା—ଯମ ଭଗ୍ନୀ, ଯମୁନା; ଅଟବୀବୁଲା—ବଣରେ ବୁଲିବା, ଶିର—ମସ୍ତକ, ଯାବକ—ଅଳତା. ବୋଳ—ଲେପ, ପା ତଳେ—ଗୋଡ଼ତଳରେ ।

ହେ ମୟୂରପୁଚ୍ଛମୁକୁଟଧାରୀ ଶ୍ୟାମ, ଆଜପାକେ ଯେତେ ପରିଶ୍ରମ କରିଥିଲ ତାହା ସଫଳ ହେଲା କି ? ପଦ । କାମରାଜାଙ୍କ ରାଜଧାନୀକୁ ଲୁଟି କରିବାରେ ବିନା ନିଦ୍ରାରେ ରାତି ପାହି ଗଲା କି ? ୧ । ତୁମ୍ଭ ଶ୍ରୀଅଙ୍ଗ ବେଶ କାହିଁକି ଆଜି ଏପରି ଦିଶୁଛି ? ହେ ଶରଦଚନ୍ଦ୍ର, ତୁମ୍ଭଙ୍କୁ କଣ ଲାଜ ଟିକିଏ ନାହିଁ ? ଅର୍ଥାତ୍ ଏ କାର୍ଯ୍ୟରେ କଣ ତୁମ୍ଭଙ୍କୁ ଲାଜ ମାଡୁ ନାହିଁ ? ( ତୁମ୍ଭେ ଶରଦଚନ୍ଦ୍ର ପରି ସୁନ୍ଦର, ଆଜି ତୁମ୍ଭର ସେହି ସୁନ୍ଦର ଦେହ ମଳିନ ହୋଇଥିବାରୁ ତୁମ୍ଭଙ୍କୁ ଟିକିଏ ଲଜ୍ଜା ହେଉ ନାହିଁ କି ?) । ୨ । ତୁମ୍ଭେ ବାଳକ ହେଲେହେଁ କଲଭ ଅର୍ଥାତ୍ ହାତୀଛୁଆ ପରି ଅସାଧାରଣ ବଳଶାଳୀ, ସୁତରାଂ କୋମଳପ୍ରାଣ ଠେକୁଆ ପରି କୋମଳାଙ୍ଗୀ କିଶୋରୀ ଠିକି ସାରିଦେଲ ଅର୍ଥାତ୍ ଦଳି ଦେଲ । ୩ । ଅହା, କି ଦୁଃଖର

---

* 'କେଶରୀ ସରି' ପାଠାନ୍ତର । ମାତ୍ର ଅଳଙ୍କାର ଦୃଷ୍ଟିରେ ଏହା ଅସଙ୍ଗତ ।

(ଗ) ନବଶୈଶବସୌକୁମାର୍ଯ୍ୟଧୁର୍ଯ୍ୟାଙ୍ଗୁଲୀଲୀଳୋଦ୍ଧୃତଦୁର୍ଦ୍ଧରାଚଳସ୍ୟ,
ତବ ତସ୍ୟ ବାଲାଢ଼୍ୟ ବାଲିକାୟାଃ ସ୍ତନତାଳଦ୍ୱୟଧାରଣଂ ନ ଶକ୍ୟଂ ।
ଶରେଣ ଲବ୍‌ଧାପୂର୍ବ୍‌ଧମନୋରଥ ଫଳତୟା ଗର୍ବିତୋଽସି ଖର୍ବିତପର୍ବ-
ଶର୍ବରୀରମଣାସ୍ୟାଦ୍ୟବୋଦ୍ଧବ୍ୟଂ ନନ୍ଦଯଶୋଦୟୋଃ ପୁରତସ୍ତବାଚରିତ-
ମିତ୍ୟୁକ୍ତବତି ମଧୁମଙ୍ଗଳେ ସପ୍ରଣୟସ୍ମିତହାସସମ୍ପ୍ଳୁତଂ ତଂ ପ୍ରତି କୃଷ୍ଣଃ,
ଧୂର୍ତ୍ତାଳିସ୍ୟ ବାର୍ତ୍ତା ବାର୍ତ୍ତାମପି ତ୍ୱଂ ନାଭିପ୍ରୈଷି ଭିନ୍ନାମବଲମ୍ବସେ
ଦାରୁଣାଂ ସରଣୀମ୍ ।

---

କଥା । ସୁକୋମଳ ଶିରୀଷଫୁଲର ମାଳାକୁ କୁସଙ୍ଗିରେ ଦଳି ଦେଇ ବନ୍ଧୁମାନଙ୍କୁ ଟିକିଏ ସୁଦ୍ଧା ଭୟ କଲ ନାହିଁ । ୪ । ଯମୁନାକୂଳବର୍ତ୍ତୀ ବଣରେ ବୃନ୍ଦାବନ ଆଜି ସଭିଙ୍କ ସୁଖଦାୟକ ହେଉଛି ପରା । ୫ । ଅଳତାବୋଳରେ ତ ମୁଣ୍ଡ ସୁନ୍ଦର ଦିଶୁଅଛି, "ତୁ ମୋର ଏକମାତ୍ର ଶରଣ" ଏହି କଥା କହି ତାଙ୍କ ଗୋଡ଼ତଳେ ପଡ଼ିଗଲ କି ? ୬ । ତୁମ୍ଭଙ୍କୁ ଶହେଥର ମୋ ରାଣ ଅଛି, ସତକଥା କହ, ବାଲ୍ୟକେଶ ରାଜା ଏ ଗୀତ ରଚନା କଲେ । ୭ ।

ଟୀକା—ହେ ବାଲାଢ଼୍ୟ, ବଲଶାଳିନ୍, ନବେ ଶୈଶବେ ଯତ୍ ସୌକୁମାର୍ଯ୍ୟଂ କୋମଳତା ତସ୍ମିନ୍ ଧୁର୍ଯ୍ୟାଃ ନିପୁଣାଃ ଶୈଶବୋଚିତସୁକୋମଳା ଇତ୍ୟର୍ଥଃ ଯାଃ ଅଙ୍ଗୁଲୟଃ ତାଭିଃ ଲୀଲୟା ଅକ୍ଳେଶେନ ଉଦ୍ଧୃତ ଉତ୍ତୋଳିତଃ ଦୁର୍ଦ୍ଧରାଚଳଃ ଗୋବର୍ଦ୍ଧନାଖ୍ୟଃ ଯେନ ତସ୍ୟ ତବ ବାଳିକାୟାଃ ରାଧାୟାଃ ସ୍ତନତାଳଦ୍ୱୟସ୍ୟ ତାଳଫଳସଦୃଶସ୍ତନୟୋଃ ଧାରଣଂ ନ ଶକ୍ୟଂ, ଯସ୍ତ୍ୱ ଶୈଶବେ କୋମଳାଙ୍ଗୁଳିଭିଃ ଗୋବର୍ଦ୍ଧନାଦ୍ରିଂ ଲୀଲୟା ଉଦ୍ଧୃତବାନ୍ ସାଂପ୍ରତଂ ତତ୍‌ପକ୍ଷେ ବାଳିକାୟାଃ ସ୍ତନଧାରଣମକିଞ୍ଚିତ୍କରମିତ୍ୟର୍ଥଃ ।

ଖର୍ବିତଃ ତିରସ୍କୃତଃ ପର୍ବଶର୍ବରୀରମଣଃ ପୂର୍ଣ୍ଣିମାଚନ୍ଦ୍ରଃ ଯେନ ତଥାଭୂତଂ ଆସ୍ୟଂ ଯସ୍ୟ ତତ୍ ସମ୍ବୋଧନେ, ଶରେଣ ଶରତ୍କାଳପରଂ ଲବ୍‌ଧଂ ପ୍ରାପ୍ତଂ ଅପୂର୍ବ୍‌ଧ-ମନୋରଥସ୍ୟ ଅବଚଳିତାଭିଳାଷସ୍ୟ ଫଳଂ ଯେନ ତସ୍ୟ ଭାବଃ ତତ୍ତତୟା, ଶର-କାଳାନନ୍ତରଂ ତବାଭିଲାଷଃ ପୂର୍ଣ୍ଣ ଆସୀତ୍ ତସ୍ମାତ୍ ତ୍ୱଂ କୁନ୍ଦଗର୍ବମନୁଭବସି, ଅଦ୍ୟ ନନ୍ଦଯଶୋଦୟୋଃ ତବ ପିତ୍ରୋଃ ପୁରତଃ ତବ ଆଚରିତଂ ଆଚରଣଂ ବୋଦ୍ଧବ୍ୟଂ ବିଜ୍ଞାପୟିତବ୍ୟଂ ମୟା ଇତି ଶେଷଃ; ମଧୁମଙ୍ଗଳେ ଇତି ଉକ୍ତବତି ସତି ତଂ ପ୍ରତି ସପ୍ରଣୟଂ ପ୍ରୀତିପୂର୍ବକଂ ଈଷତ୍‌ହାସସମ୍ପ୍ଳୁତଂ କିଞ୍ଚିତ୍ ଉପହାସସହିତଂ ଶ୍ରୀକୃଷ୍ଣଃ କଥୟତୀତି ଶେଷଃ; ହେ ଧୂର୍ତ୍ତ, ଆଳିସ୍ୟ ମମବାଳିସ୍ୟ ନୀରୋଗସ୍ୟ ଭାବସ୍ତତ୍ତ୍ୱ ତସ୍ୟା ବାର୍ତ୍ତାଂ କୁଶଳସମ୍ବାଦମପି ଯାବତ୍ ଅପି ନ ଅଭିପ୍ରୈଷି ଜିଜ୍ଞାସସେ, ଅପି ପୁନଃ ଭିନ୍ନାଂ ଅନ୍ୟଂ ଦାରୁଣାଂ କଷ୍ଟପ୍ରଦାଂ ସରଣୀଂ ପଦ୍ଧତିଂ ଅବଲମ୍ବସେ ।

ଅନୁବାଦ—ହେ ବଳଶାଳୀ, ଯେଉଁ ନୂତନ ଶୈଶବକାଳରେ ସୁକୋମଳ ଅଙ୍ଗୁଳି ସାହାଯ୍ୟରେ ଦୁର୍ଦ୍ଧର ଗୋବର୍ଦ୍ଧନ ପର୍ବତକୁ ଟେକିଥିଲେ,

# ସ

ରାଗ—ମୁଖାବରୀ

ସପଥଟି ମୋର ରେ, ସହ ଏହୁ ଥର ରେ,
ସାର ହାରମସାରମଣିବର ପର ଧର ବକ୍ଷଃସ୍ଥଳେ ନିରନ୍ତର,
ନ ଫିଙ୍ଗି ପୁଣି ହଟି ସୁନ୍ଦର ନୁହଇଟି ବଗୁର ଭରସା ବଢ଼ାଅ ଅପରମିତ । ପଦ ।
ଶୁଣିଲେ ଅଜ କେ ବ୍ରଜେ, ସରସିବ ସିନା ଲଜେ,
ସାହା ତୁ ନୋହିଲେ କିଛୁ, ସଂସାରେ ନିକର୍ମୁଁ ଅଛୁ । ୧ ।
ସାଧୁଜନ କୁଷିକୁପେ, ଭଲ ମନ୍ଦ ସିନା ଛପେ,
ସ୍ୱହର କ୍ରୋଧ ଉଦୟ, ସହଜେ ତୁ ସହୃଦୟ । ୨ ।
ସବୁ ଅନ୍ୟାୟ ଚରିତ, ଶିକ୍ଷାକୁ ଗୁରୁ ତୁହ ତ,
ସମୟେ କାହ୍ନୁ ଛୋଟିକି, ସଖା ଲକ୍ଷଣ ଏ ଟିକି । ୩ ।
ସମାଂସମୀନା ଅଯୁତେ, ସମର୍ପି ଦେବଟି ତୋତେ,
ସମ୍ଭାଳ ମୋର ଅଗୁର, ସର୍ବସ୍ୱ ପର୍ଗ୍ର ତୁ ମୋର । ୪ ।
ସାକ୍ଷାତ ଦେଖିଲ୍ଲ ପର, ସାକ୍ଷୀ ହେବାକୁ ବାହାର,
ସାଧିବାର ଅବଗୁର, ସପନୃ ନୁହେଁ ମୁଁ ଚୋର । ୫ ।
ସାନ୍ଦୀପନିସୁତ ଯତ, ସେ କ ଜାଣେ ବୋଲି ପ୍ରୀତ,
ସରସେ ପିଟିବେ ଚକ୍‌କା, ସମ୍ବାଦକୁ ଏତେ ଏକା । ୬ ।
ଶୁଣି କିଶୋର ବଚନ, ସଖା କଲେ ଆଲିଙ୍ଗନ,
ସୁନ୍ଦ'ମା ଅଙ୍କୁଦର୍ଗର ସନ୍ତୋଷେ ଯୋଡିଲେ କର । ୭ ।

---

ତାଙ୍କ ପକ୍ଷରେ (ଅର୍ଥାତ୍ ତୁମ୍ଭ ପକ୍ଷରେ) ବାଳକାର ତାଳଫଳ ସଦୃଶ ସ୍ତନଦ୍ୱୟର ନିଦାରଣ ବଚନ ନୁହେ ।

ତୁମ୍ଭର ମୁଖ ପୂର୍ଣ୍ଣିମାଚନ୍ଦ୍ରର ଗର୍ବକୁ ଖର୍ବ କରେ; ହେ କୃଷ୍ଣ, ବହୁଦିନର ଅଭିଳାଷ ପୂର୍ଣ୍ଣ ହୋଇଯିବାରୁ ତୁମ୍ଭେ ଗର୍ବିତ ହୋଇଅଛ । ହେଉ; ଅଜ ତୁମ୍ଭ ବାପ ମାଙ୍କ ଆଗରେ ଏ କଥା ବୁଝାଯିବ; ମଧୁମଙ୍ଗଳ ଏହୁପରି କହନ୍ତେ ଶ୍ରୀକୃଷ୍ଣ କିଞ୍ଚିତ୍ ଭୟ ଓ ହାସ୍ୟ ସହିତ ପ୍ରୀତି ପ୍ରକାଶପୂର୍ବକ କହିଲେ, ହେ ଧୂର୍ତ୍ତ, ମୁଁ ବର୍ତ୍ତମାନ ଅତ୍ୟନ୍ତ ଆର୍ତ୍ତ ହୋଇଅଛି; ମୋର କୁଶଳ ପ୍ରଶ୍ନ ନ ପଚାରି ଏପରି ବିପରୀତ ନିଦାରୁଣ ମାର୍ଗ କାହିଁକି ଅବଲମ୍ବନ କରୁଅଛ ? ଅନନ୍ତର ଶ୍ରୀକୃଷ୍ଣ ମଧୁମଙ୍ଗଳକୁ କହୁଅଛନ୍ତି:—"ସପଥଟି ମୋର ରେ" ଇତ୍ୟାଦି ।

(ଘ) ଅନ୍ୟୋଽନ୍ୟାଶ୍ଳେଷଶର୍ମବ୍ୟତିକରବିମଳସ୍ଵାନ୍ତସନ୍ତୋଷବନ୍ତା—
ବନ୍ୟୋନ୍ୟାଗୀର୍ଣଲକ୍ଷ୍ମୀକ୍ଷଣଗଳିତସମସ୍ତାନ୍ତରାୟୌ ସଖାୟୌ ।
ସଂଶ୍ରାବର୍ଦ୍ଦଂପଦ୍ଧତ୍ରୂ୍ୟପନତସଖିଭିଃ ସାର୍ଦ୍ଧମାନନ୍ଦ ବଂଶୀ—
ଶୃଙ୍ଗଧ୍ୱାନାଢ୍ୟଗୀରଂ ତଦପଘନଭୁବୋ ଜଗ୍ମତୁସ୍ତିଗ୍ମରଶ୍ମେଃ ॥

ତତସ୍ତସ୍ୟାସ୍ତୀରେଽପ୍ୟନ୍ୟନୀନୀଳଶଡପନୀପନୀସଗୋନନେନାଭି-
ଙ୍କ୍ଷିବପଲ୍ଲବାଧରାଭସ୍ତିରୀଦବଲୋକ୍ୟ ସବ୍ରଜବାଳକବ୍ରଜଂ ସମୁଦ୍ଧତ୍ରିଭଙ୍ଗିବ-
ପାଣ୍ଡିତ୍ୟଶୋଭିପିଚ୍ଛିଲଚରଣାମ୍ଭୋଜଂ କଣ୍ଠଦବଶିଷ୍ଟଶୈଶବଂ କେଶବଂ
ମିଥଃ କଥାପ୍ରେନଚରେ ।

---

(ଘ) ସପଥ—ଶପଥ, ଶିଣ; ସାର—ଉତ୍କୃଷ୍ଟ; ହାରମସାରମଣିବର—
ହାର ମଧ୍ୟରେ ଥିବା ଶ୍ରେଷ୍ଠ ଇନ୍ଦ୍ରନୀଳମଣି; ହଠି—ହଠ କରି, କୌତୁକରେ;
ଭରସା—ଆଶା; ଅପରମିତ—ଅନନ୍ତ; ସାହା—ସହାୟ; କିଆ—କଅଣ(ଅବ୍ୟୟ);
କୁକ୍ଷିକୂପେ—ପେଟରୂପ କୂଅରେ; ଛପେ—ଲୁଚେ; ସଂହର—କମାଅ; ସହୃଦୟ—
ବନ୍ଧୁ; ସମାଂସମୀନା—ଯେଉଁ ଗାଈ ପ୍ରତିବର୍ଷ ପ୍ରସବ କରେ (ସମାଂସମୀନା ଯା
ଯୈବ ପ୍ରତିବର୍ଷଂ ପ୍ରସୂୟତେ); ସମ୍ଭାଳ—ରକ୍ଷାକର; ଆବୁର—ମହତ୍ତ୍ୱ; ସପତ୍ନ—
ଶତ୍ରୁ; ସରସେ—ଆନନ୍ଦରେ; ଡଙ୍କା ପିଟିବେ—ଢେଙ୍ଗୁରା ଦେବେ, ପ୍ରଚାର
କରିବେ, ସୁନାମା—ଇନ୍ଦ୍ର ।

ହେ ବନ୍ଧୁ ମଧୁମଙ୍ଗଳ, ମୋ ରାଣଟି, ଏହି ଥରକ ସହି, ହାର ମଧ୍ୟରେ ଥିବା
ଉତ୍କୃଷ୍ଟ ଇନ୍ଦ୍ରନୀଳମଣି ପରି ସର୍ବଦା ଛାତିରେ ଧରି ପରେ କୌତୁକରେ ତାକୁ
ପିଙ୍ଗି ଦେ ନା, ଏ କଥା ସୁନ୍ଦର ନୁହେ; ଏହା ବିଚାର କରି ମୋର ଅନନ୍ତ ଆଶା
ବଢ଼ାଅ ଅର୍ଥାତ୍ ମୋର ଭବିଷ୍ୟତ୍ ବନ୍ଧୁ ଆଶାରେ ସାହାଯ୍ୟ କର । ଯଦି । ଏ
କଥା ଯେବେ ଗୋପପୁରରେ କେହି ଶୁଣେ, ତେବେ ମୁଁ ଲାଜରେ ମରିଯିବି
ସିନା । ତୁ ମୋର ସହାୟ ନ ହେଲେ ମୁଁ ବଞ୍ଚିବି କିପରି ? ୧ । ସାଧୁ ଲୋକଙ୍କର
ଉଦରରୂପ କୂପ ମଧ୍ୟରେ ସବୁ କଥା ଲୁଚି ରହେ ଅର୍ଥାତ୍ ଭଦ୍ରଲୋକ ଭଲମନ୍ଦ
ସବୁ କଥାକୁ ନିଜ ପେଟରେ ଲୁଚାଇ ରଖେ, କିନ୍ତୁ ବାହାରେ ପ୍ରକାଶ କରେ
ନାହିଁ । କ୍ରୋଧର ଉଦୟକୁ ସଂହାର କର ଅର୍ଥାତ୍ ଆଉ ରାଗ ନାହିଁ । ପ୍ରକୃତରେ
ତୁ ବନ୍ଧୁ ଅଟୁ । ୨ । ତୁ ମୋତେ ସବୁ ଅନ୍ୟାୟ ଆଚରଣ ଶିଖାଇଅଛୁ; ସେ
ବିଷୟରେ ତୁ ମୋର ଗୁରୁ, କିନ୍ତୁ ସମୟ ପଡ଼ିଲେ ତୋଟି କାଟି ଦେଉ, ଅର୍ଥାତ୍
ଅପବାଦ ରଟାଇବାଦ୍ୱାରା ମୋର ସର୍ବନାଶ ଘଟାଉ; ଏହା କି ବନ୍ଧୁଲକ୍ଷଣଟି ? ୩ ।
ମୁଁ ତୋତେ ଦଶ ହଜାର ଦୁଧିଆଳୀ ଗାଈ ଦେବି; ତୁ ମୋର ମହତ୍ତ୍ୱ ବା
ଇଜ୍ଜତ୍ ରଖ; ତୁ ମୋର ସର୍ବସ୍ୱ ଅଟୁ । ୪ । ଆଖିରେ ଦେଖିବା ପରି ତୁ ତ ସାକ୍ଷୀ
ହେବାକୁ ବାହାରୁଛୁ, ମୁଁ ତ ତୋର ଶତ୍ରୁ ନୁହେ, ତୁ ଏପରି ଅବିଚାର କରୁଛୁ

କିଅଁ ? ୫ । ହେଉ, ଭୁ ଏକଥା ପ୍ରକାଶ କଲେ ଲୋକେ କହିବେ, "ସେ ତ ସାନ୍ଦୀପନିଙ୍କ ପୁଅ, ଜଣେ ତପସ୍ୱୀ, ସେ କଅଣ ପ୍ରୀତି କଥା ଜାଣେ ?" ଏ ଅପବାଦ ଏକା ତୋତେ ଭୋଗିବାକୁ ପଡ଼ିବ । ୬ । ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ସଖା ମଧୁମଙ୍ଗଳ ତାଙ୍କୁ ଆଲିଙ୍ଗନ କଲେ । ଆଠଗଡ଼ର ଇନ୍ଦ୍ର (ରାଜା) ସନ୍ତୋଷରେ ହାତ ଯୋଡ଼ିଲେ । ୭ ।

ଟୀକା—ଅନ୍ୟୋ୯ନ୍ୟଂ ପରସ୍ପରଂ ଯଃ ଆଶ୍ଲେଷଃ ଆଲିଙ୍ଗନଂ ତେନ ଶର୍ମ ସୁଖଂ ତସ୍ୟ ବ୍ୟତିକରେଣ ସଂମ୍ପର୍କେଣ ବିମଳଂ ନିର୍ମଳଂ ଯତ୍ ସ୍ୱାନ୍ତଂ ଅନ୍ତଃକରଣଂ ତସ୍ମିନ୍ ସନ୍ତୋଷବନ୍ତୌ ସନ୍ତୁଷ୍ଟୌ, ଅନ୍ୟୋ୯ନ୍ୟଂ ପରସ୍ପରଂ ଅଧୀଣା ପ୍ରକୃଷ୍ଟା ଯା ଲକ୍ଷ୍ମୀଃ ଶୋଭା ତସ୍ୟାଃ ଈକ୍ଷଣେନ ଦର୍ଶନେନ ଗଳିତଃ ଲୁପ୍ତଃ ସମସ୍ତଃ ଅନ୍ତରାୟଃ ବିଘ୍ନଃ ଯୟୋଃ ତୌ, ସଶ୍ରଦ୍ଧୌ ଶ୍ରଦ୍ଧାଯୁକ୍ତୌ ସଖାୟୌ କୃଷ୍ଣମଧୁମଙ୍ଗଳୌ, ଅର୍ଦ୍ଧପଦ୍ଧତ୍ୟାଂ ଅର୍ଦ୍ଧମାର୍ଗେ ଉପନତାଃ ସମୀପୋପଗତାଃ ଯେ ସଖାୟଃ ବାନ୍ଧବାଃ ତୈଃ ସାର୍ଦ୍ଧଂ; ଚିତ୍ରାଃ ବିଚିତ୍ରାଃ ରଶ୍ମୟଃ କିରଣାଃ ଯସ୍ୟ ତସ୍ୟ ସୂର୍ଯ୍ୟସ୍ୟ ଅପତ୍ୟାତ୍ ଶରୀରାତ୍ ଲୁଃ ଉତ୍ପତ୍ତିଃ ଯସ୍ୟାଃ ତସ୍ୟାଃ ସୂର୍ଯ୍ୟାତ୍ମଜାୟାଃ ଯମୁନାୟାଃ, ଆନକଂ ପଟହମୃଦଙ୍ଗାଦି, ବଂଶୀ ବେଣୁଃ, ଶୃଙ୍ଗଂ 'ଶିଙ୍ଗା' ଇତି ଖ୍ୟାତଃ ବାଦ୍ୟଯନ୍ତ୍ରବିଶେଷଃ ତେଷାଂ ସମାହାରଃ ଆନକବଂଶୀଶୃଙ୍ଗଂ ତସ୍ୟ ଧ୍ୱାନାଢ୍ୟଂ ଶବ୍ଦପୂର୍ଣ୍ଣଂ ତତ୍ ପ୍ରସିଦ୍ଧଂ ତୀରଂ ଜଗ୍ମତୁଃ ଗତବନ୍ତୌ ।

ତତସ୍ତଦନନ୍ତରଂ ତସ୍ୟାଃ ଯମୁନାୟାସ୍ତୀରେ ଅପି ଅନ୍ୟତ୍ର ଅନ୍ୟସ୍ମିନ୍ ତୀର୍ଥେ ଅଖିଲଂ ସର୍ବତୋଭାବଂ ଯତ୍ ଶତପତ୍ରାଣାଂ ପଦ୍ମାନାଂ ପତ୍ରଂ ତସ୍ୟ ସଙ୍ଗୋପେ ସଦୃଶେ ନେତ୍ରେ ଯାସାଂ ତାଭିଃ ବଲ୍ଲବାନାଂ ଗୋପାଳାନାଂ ପଲ୍ଲବବତ୍ କୋମଳପତ୍ରବତ୍ ଅଧରଃ ଯାସାଂ ତାଭିଃ କର୍ତ୍ତ୍ରୀଭିଃ ଚତ୍ୱରେ ବହୁପଣଂ ଯାବତ୍ ଅବଲୋକ୍ୟ ସବ୍ରଜବାଳକବୃନ୍ଦଂ ବ୍ରଜବାଳକବୃନ୍ଦସହିତଂ, ସମୁଦଣ୍ଡଃ ଉତ୍କଟଃ ଯଃ ତାଣ୍ଡବଃ ନୃତ୍ୟଂ ତସ୍ମିନ୍ ପାଣ୍ଡିତ୍ୟଂ ତସ୍ୟ ଶୋଭା ତୟା ପିଣ୍ଡିତଂ ସମନ୍ୱିତଂ ଚରଣଦ୍ୱୟଂ ଯସ୍ୟ ତଂ, କିଞ୍ଚିଦବଶିଷ୍ଟଶୈଶବଂ ଶୈଶବଯୌବନୟୋଃ ସନ୍ଧୌ ବର୍ତ୍ତମାନଂ କେଶବଂ ଶ୍ରୀକୃଷ୍ଣଂ ଅବଲୋକ୍ୟ ମିଥଃ ପରସ୍ପରଂ କଥାଃ ବକ୍ଷ୍ୟମାଣରୂପାଃ ତେନରେ ବିସ୍ତାରିତାଃ କୃତା ଇତି ଯାବତ୍ ।

ଅନୁବାଦ—ଶ୍ରୀକୃଷ୍ଣ ଓ ମଧୁମଙ୍ଗଳ ଦୁହେଁ ପରସ୍ପରକୁ ଆଲିଙ୍ଗନ କରି ଅନ୍ତଃକରଣରେ ବିମଳ ଆନନ୍ଦ ଅନୁଭବ କଲେ, ପରସ୍ପର ଶୋଭା ସନ୍ଦର୍ଶନରେ ଉଭୟଙ୍କ ମନରୁ ସମସ୍ତ ବାଧା ଅନ୍ତର୍ହିତ ହୋଇଗଲା, ସସ୍ନେହରେ ଦୁହେଁ ଯାଉ ଯାଉ ଅନ୍ୟ ସଖାମାନଙ୍କ ସଙ୍ଗେ ଅର୍ଦ୍ଧପଥରେ ମିଶି ମୃଦଙ୍ଗ ବଂଶୀ ଶିଙ୍ଗାନାଦପୂର୍ଣ୍ଣ ସେହି ଯମୁନାତୀରକୁ ଗମନ କଲେ ।

ଅନନ୍ତର ସେହି ଯମୁନାର ଅନ୍ୟ ଘାଟରେ ସମବେତ ହୋଇଥିବା ପଦ୍ମପଲାଶଲୋଚନା ପଲ୍ଲବାରୁଣାଧରା ଗୋପାଙ୍ଗନାମାନେ ନବୀନଯୁବକ ନୃତ୍ୟପଟୁ



ରାଗ—ଶଙ୍କରାଭରଣ ବା ମୋହନ

ଷଟ୍‌ପଦନୀଳକେଶୀ ଆଗୋ ଗୃହୀଁ ଗୃହୀଁ,
ସର୍ବଂସହାରେ ଖେଳୁଛନ୍ତି ନବ ବାରିବାହ;
ସମୀପରେ ଛାର ରହି,
ସରଜୁଛନ୍ତି ନର୍ତ୍ତନ ଅନେକ ବରହୀ । ୧ ।
ସଜ ହୋଇ ସ୍ମରସରଦାର ଅବା ଆସେ,
ସ୍ବକୀୟ ଫଉଜ ଘେରିଅଛି ଚଉପାଶେ,
ସାରଦେବ ପରି ଆଜ,
ସରୋଜସୁନ୍ଦରନେତ୍ରା ଜନ ମନ ଲାଜ । ୨ ।
ସୁରେଶ୍ବରରତନ କି ହେବାରୁ ଜଙ୍ଗମ,
ସବୁ ମଣିମାନଙ୍କୁ ମିଳିଲା ସେହି କ୍ରମ,
ସ୍ବର୍ଣ୍ଣ ବର୍ଣ୍ଣା ଏ ଏଟିକ,
ସମ୍ବାଦବେ ମୂର୍ତ୍ତିମନ୍ତ ରତନଶ୍ରେଣୀକ । ୩ ।
ସଞ୍ଚରଣଶୀଳ ନବ ତମାଳ ଭୂରୁହ,
ସଙ୍ଗେ ଘେନି ଆସୁଅଛି ସଖା-ଶାଖୀବ୍ୟୂହ,
ଶୁକ ଶାରୀ ପରଭୃତ,
ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୪ ।
ସୁରଧୁନୀ ତୀରେ କରିଥିବା ଯେବେ ତପ,
ସଙ୍ଖାଳି କରି ଏ ତାପିଞ୍ଛର ଅନାପତ,
ସୁଖେ ବଞ୍ଚିବା ବସନ୍ତେ,
ସାମନ୍ତ ସୁଧାଂଶୁ ଜଗଦ୍ଦେବ ବୋଲେ ଗୀତେ । ୫ ।

---

ଶ୍ରୀକୃଷ୍ଣଙ୍କୁ ବ୍ରଜବାଳକମାନଙ୍କ ସଙ୍ଗେ ଅବଲୋକନ କରି ପରସ୍ପର ଆଳାପ କରିବାକୁ ଲାଗିଲେ—"ଷଟ୍‌ପଦ ନୀଳକେଶୀ" ଇତ୍ୟାଦି ।

---

(ଷ) ଷଟ୍‌ପଦନୀଳକେଶୀ—ଭ୍ରମର ପରି ନୀଳବର୍ଣ୍ଣ କେଶ ଯେଉଁ ମାନଙ୍କର; ସର୍ବଂସହା—ପୃଥିବୀ; ନବବାରିବାହ—ନୂତନ ମେଘ; ବରହୀ=ବର୍ହୀ—ମୟୂର; ସରଦାର—ସେନାପତି; ଫଉଜ—ସୈନ୍ୟ, ସରୋଜସୁନ୍ଦରନେତ୍ରା—ପଦ୍ମ ପରି

(ଖ) ପୁରତଃପରତୋଽପି ତର୍ଣ୍ଣକା ବ୍ରଜନ୍ତି କ୍ରୀଡ଼ନମାଳି ଯସ୍ୟ ସଃ,
ଅତସୀସୁମନଶ୍ଚବିଃ ଶିଶୁବୃନ୍ଦ କୋଽପ୍ୟଂ ଜନନେ-ତ୍ରରଞ୍ଜନଃ ।
ଇତି କୌତୁହଲଲୋଲଲୋଚନାନାମାଭୀରସୁଭ୍ରୁହାକ୍ଷୀଣାମନ୍ୟୋଽ-
ନ୍ୟସମ୍ଭାଷଣସମାପ୍ତାବେବ ନେନ୍ଦଷ୍ଟ ସୈକତାଙ୍ଗଣାଲଙ୍ଗିତଚରଣସରସିଜେ ନଟଭ୍ରଜେ ବଧ୍ୱସ୍ତ୍ରଚତୁଷ୍କୋଷ୍ଟିକ ଜ୍ଞାନମପ୍ୟଂ ମଦନମୋହନ ଇତି ପ୍ରେମମନ୍ଦ୍ରମା-ତୁମ୍ବରଃ ସମାବରୀରୀତ୍ ।

---

ସୁନ୍ଦର ନେତ୍ର ଯାହାଙ୍କର; ସୁରେଶ୍ବରରତ୍ନ—ଇନ୍ଦ୍ରନୀଳମଣି; ଜଙ୍ଗମ—ଗତିଶୀଳ; କ୍ରମ—ଗତି; ସ୍ୱର୍ଣ୍ଣବର୍ଣ୍ଣାଏ—ସୁବର୍ଣ୍ଣ ପରି ବର୍ଣ୍ଣଧାରିଣୀ ସ୍ତ୍ରୀମାନେ; ଶାଖିବ୍ୟୂହ—ବୃକ୍ଷସମୂହ; ପରଭୃତ—କୋକିଳ; ସୁରଧୁନୀ—ସ୍ୱର୍ଗନଦୀ, ମନ୍ଦାକିନୀ; ତାପିଞ୍ଛ—ତମାଳବୃକ୍ଷ; ଅନାତପ—ଛାୟା; ସାମନ୍ତସୁଧାଂଶୁ—ସାମନ୍ତରାଜାମାନଙ୍କ ମଧ୍ୟରେ ଚନ୍ଦ୍ରମାସ୍ୱରୂପ ।

ଅଗୋ ଭ୍ରମରବର୍ଣ୍ଣ ନୀଳକେଶଧାରିଣୀ ସଖୀମାନେ ! ଦେଖ, ଦେଖ, ପୃଥିବୀ ଉପରେ ଗୋଟିଏ ନୂଆ ମେଘ ଖେଳୁଅଛି, ଅନେକ ମୟୂର ସେହି ମେଘ ପାଖରେ ରହି ନୃତ୍ୟରଚନା କରୁଅଛନ୍ତି । ( ଏଠାରେ ଶ୍ରୀକୃଷ୍ଣଙ୍କୁ ନବମେଘରୂପେ ଓ ତାଙ୍କର ସଖାମାନଙ୍କୁ ମୟୂରରୂପେ ବର୍ଣ୍ଣନା କରାଯାଇଅଛି ) । ୧ । ଅଥବା କାମରୂପ ସେନାପତି ଯୁଦ୍ଧ କରିବାକୁ ସଜ ହୋଇ ଆସୁଛି କି ? ତାହାର ନିଜ ସୈନ୍ୟମାନେ ତା ଚାରିପାଖରେ ଘେରି ଅଛନ୍ତି କି ? ସେ ନିଶ୍ଚେ ଆଜି ପଦ୍ମ-ଲୋଚନା ବାଳାମାନଙ୍କ ମନରୁ ଲଜ୍ଜା ଦୂର କରିଦେବ । ୨ । ଇନ୍ଦ୍ରନୀଳମଣି ଗତିଶୀଳ ହେବାରୁ ଅନ୍ୟ ମଣିମାନଙ୍କୁ ସେହି କ୍ରମ ମିଳିଲା କି ? ଅର୍ଥାତ୍ ଅନ୍ୟ ମଣିମାନେ ମଧ୍ୟ ଗତିଶୀଳ ହେଲେ କି ? ( ଶ୍ରୀକୃଷ୍ଣ ଇନ୍ଦ୍ରନୀଳମଣି ପରି ଏବଂ ତାଙ୍କ ସଖାମାନେ ଅନ୍ୟାନ୍ୟ ମଣିପରି ) ଏଣିକି ସ୍ୱର୍ଣ୍ଣବର୍ଣ୍ଣା ରମଣୀମାନେ ସାକ୍ଷାତ୍ ମୂର୍ତ୍ତିଧାରଣ କରି ଚାଲୁଥିବା ମଣିମାନଙ୍କୁ ଯତ୍ନ କରି ସାଇତି ରଖିବେ ଅର୍ଥାତ୍ ସୁନ୍ଦରୀ ସ୍ତ୍ରୀମାନେ ଏମାନଙ୍କ ସୌନ୍ଦର୍ଯ୍ୟରେ ନିଶ୍ଚୟ ବିମୁଗ୍ଧ ହୋଇ ଦେହର ଭୂଷାମଣି-ପରି ଏମାନଙ୍କୁ ଲୋଡ଼ିବେ; ସୁତରାଂ ମଣିକାଞ୍ଚନ ସଂଯୋଗ ଘଟିବ । ୩ । ଅଥବା ସଞ୍ଚରଣଶୀଳ ବା ଗତି କରୁଥିବା ନୂଆ ତମାଳଗଛ ( ଶ୍ରୀକୃଷ୍ଣ ଲକ୍ଷ୍ୟ ) ନିଜ ସଙ୍ଗରେ ତାର ବନ୍ଧୁରୂପୀ ବୃକ୍ଷମାନଙ୍କୁ ( ସଖାମାନେ ଲକ୍ଷ୍ୟ ) ଘେନି ଆସୁଛି କି ? ଶୁଆ, ଶାରୀ, କୋଇଲି ପ୍ରଭୃତି ସେହି ବୃକ୍ଷର ଶାଖାମାନଙ୍କରେ ସଙ୍ଗୀତ କରୁ-ଅଛନ୍ତି କି ? । ୪ । ହେ ସଖି, ଯେବେ ସ୍ୱର୍ଗଗଙ୍ଗା ଅର୍ଥାତ୍ ମନ୍ଦାକିନୀକୂଳରେ ଆମ୍ଭେମାନେ ତପସ୍ୟା କରିଥିବା, ତେବେ ଏହି ତମାଳଗଛର ଛାୟାକୁ ସଙ୍ଗୀନ ଅର୍ଥାତ୍ ସର୍ବସ୍ୱରୂପେ ଆଦର କରି ବସନ୍ତରେ ସୁଖରେ ବଞ୍ଚିବା, ସାମନ୍ତରାଜା-ମାନଙ୍କ ମଧ୍ୟରେ ଚନ୍ଦ୍ରସ୍ୱରୂପ ଜଗିବେ ଏ ଗୀତ ବୋଇଲେ । ୫ ।



ରାଗ—ଗୌଡ଼ା

ହରି ହାମ'ର, ଏ ତ ପ୍ରାଣେର୍ଦ୍ଧନ ଗୋ । ପଦ । *
ହରିହସ୍ତ ମଣିକି ଜିଣିଛୁ ଅପଘନ, ନିନ୍ଦୁଅଛୁ ଇନ୍ଦୁକୁ ବଦନ ଗୋ । ୧ ।
ହଜାରସଂଖ୍ୟକ ହେଲେ ହେଲେହେଁ ମଦନ,ନୋହିବ ଏ ମୋହନ ସମାନ ଗୋ
ହଜ ନ ଯିବ ଜୀମୂତକେଶୀର କି ଛାନ, ଶୁଣୁ ଶୁଣୁ ମୃଦୁ ବେଣୁଗାନ ଗୋ ।୩।
ହଟି ଅଟ଼ର କରିବା କି ଋଦାମ୍ବର ପାନ, ହେଉ ଫଳବନ୍ତ ଯଉବନ ଗୋ ॥
ହାର ମଧ୍ୟରେ ଅମ୍ବର ତରଳରତନ ଗୋ, ହେବେ କି ଏ ଯୁବତୀଜୀବନ ଗୋ ॥
ହୃଷ୍ଟ ହୋଇ ଅଷ୍ଟଦୁର୍ଗନମ୍ଦନହୃଦନ ଗୋ, କରେ ଏ ରସରେ ବିରଚନ ଗୋ ।୭।

---

ଟୀକା—ହେ ଅଳି ହେ ସଖି, ଯସ୍ୟ ପୁରତଃ ସମ୍ମୁଖେ ପରିତଃ ଚତୁର୍ଦ୍ଦିକ୍ଷୁ ଚ ଅପି ଚଣ୍ଡିକାଃ ଗୋବତ୍ସାଃ କ୍ରୀଡ଼ନଂ କ୍ରୀଡ଼ାଂ ଦଧତି କୁର୍ବନ୍ତି, ଅୟଂ ଅତସୀସୁମନସାଂ ଫଳପୁଷ୍ପସ୍ୟ ଛବିଃ ଶୋଭା ଇବ ଛବିଃ ଯସ୍ୟ ସଃ ଅତସୀପୁଷ୍ପସଙ୍କାଶଃ ଜନାନାଂ ନେତ୍ରରଞ୍ଜନଃ ଲୋକଲୋଚନପ୍ରୀତିଜନକଃ ଶିଶୁଃ କଃ ?

ଇତି ଅନେନ ପ୍ରକାରେଣ କୌତୂହଳେନ ଅପୂର୍ବକୃଷ୍ଣମୂର୍ତ୍ତିଦର୍ଶନଜନିତେନ ଔତ୍ସୁକ୍ୟେନ ଲୋଲେ ଚଞ୍ଚଲେ ଲୋଚନେ ଯାସାଂ, ତାସାଂ, ଅମ୍ବରାମ୍ଭୋରୁହାକ୍ଷୀଣାଂ ପଦ୍ମନେତ୍ରାଣାଂ ଗୋପୀନାଂ ଅନ୍ୟୋଽନ୍ୟ ଯତ୍ ସମ୍ଭାଷଣଂ ଆଲାପଃ ତସ୍ୟ ସମାପ୍ତୌ ଏବ ନନ୍ଦବ୍ରଜେ ନୃତ୍ୟତ୍ଗୋପଶିଶୁବ୍ରଜେ ନେଦିଷ୍ଠଂ ନିକଟତମଂ ସୈକତଂ ସିକତାମୟପ୍ରଦେଶ ଏବ ଅଙ୍ଗଣଂ ଚତ୍ୱରଂ ତସ୍ମିନ୍ ଅଲଙ୍ଘିତଂ ନିହିତଂ ଚରଣମେବ ସରସିଜଂ ପଦ୍ମଂ ଯସ୍ୟ ତସ୍ମିନ୍ ସତି ବଧ୍ୱସ୍ତଚତୁଷ୍କୋଟିକଙ୍କଣଂ ବଲ୍ଲପ୍ରସର୍ବାଙ୍ଗୀନ-ଙ୍କଣଂ ବେଦ୍ୟାନ୍ତରଙ୍କଣଶୂନ୍ୟମିତି ଯାବତ୍ ଅୟଂ ମଦନମୋହନଃ ମଦନଂ କନ୍ଦର୍ପଂ ମୋହୟତି ରୂପେଣ ଇତି ପ୍ରେମ୍ଣଃ ମହମ୍ନଃ ଆଡ଼ମ୍ବରଃ ପ୍ରେମପୂର୍ତ୍ତିମହାହର୍ଷ-ଧ୍ୱନଃ ସମାବିରାସୀତ୍ ସଂଜାତଃ ।

---

* ଗଞ୍ଜାମ ଜିଲ୍ଲାରୁ ଆମ୍ଭେମାନେ ପାଞ୍ଚଖଣ୍ଡ ହାତଲେଖା ପୋଥି ସଂଗ୍ରହ କରିଥିଲୁ, ପ୍ରତ୍ୟେକ ପୋଥିରେ 'ହ' ଗୀତର ଘୋଷା ଯେପରି ଲେଖାଥିଲା, ଏଠାରେ ଅବିକଳ ତାହା ଦେଲୁଁ । ପୂର୍ବ ଛପା ବହିମାନଙ୍କରେ 'ହରି ଆମ୍ଭର ହେ ଏତ ପ୍ରାଣଧନ' ଏହିପରି ପାଠ ଦେଖାଯାଏ । ଉତ୍କଳରେ ଚୈତନ୍ୟ ପ୍ରବର୍ତ୍ତିତ ବଙ୍ଗଳା ସଂକୀର୍ତ୍ତନର ଭାଷା ପୂର୍ବରେ ଲୋକମୁଖରେ ଚଳୁଥିବାରୁ କବି ପୁରୀବାସ ସମୟରେ ଏହା ଶୁଣିଥିଲେ ଏବଂ ପ୍ରେମହିଲ୍ଲୋଳରେ ଓଡ଼ିଆ ଭାଷାରେ ଏ ପଦ ନ ଲେଖି ବଙ୍ଗଳା ସଂକୀର୍ତ୍ତନ ଛାୟାରେ ଏ ପଦ ରଚନା କରିଅଛନ୍ତି, ଏହିପରି ବୋଧ ହୁଏ । ଭାବାବେଗରେ ଏ ଭଳି ହେବା ଅସ୍ୱାଭାବିକ ମଧ୍ୟ ନୁହେ ।

(ଖ) ଏତସ୍ୟେକ୍ଷଣକୋଣକ୍ଷେପଣବଲଲ୍ଲୀଳାରସାନ୍ଦାଶୁଗା—
ସାରୈଃ ସାରସସାରସୁନ୍ଦରଦୃଶାଂ କନ୍ଦର୍ପଦର୍ପୋଦୟୈଃ ।
ଦାସ୍ୟଂ କିଂ ନ ବିବେଶବଶ୍ୟମିୟତୈଃ ତତ୍ କିଂ ମଣୀନାଂ ଗଣୈଃ
ସମ୍ବାଧାଂ ମୁରଲୀଂ ଦୁରନ୍ତମୁରଲୀଂ ବିମ୍ବାଧରସ୍ଥାମ୍ବତ ।

ଚରାଚରଧୈର୍ଯ୍ୟବିଧ୍ୱଂସିନି ବର୍ହାବତଂସବଂଶୀନିନଦେ ପ୍ରସରତକି-ଜାତ୍ୟାଃ କାର୍କଶ୍ୟସ୍ୟ ଶିଳାବଲୀନାଂ ଜଳତାୟାଃ ଶାଖିନାମପ୍ୟାଖିଳଂ ସପ୍ରୁଲ୍ଲକତ୍ୱସ୍ୟ ମୃଗାଣାମୁତ୍କର୍ଣ୍ଣତାୟାଃ ଫଣିନାଂ ଚଳିତବିଲୋଚନସ୍ୟାନୁଭବୋ ବଭୂବ ।

---

ଅନୁବାଦ—ହେ ସଖି, ଯାହାଙ୍କ ଆଗରେ ଓ ପୃଷ୍ଠପାଖରେ କଅଁଳା ବାଳୁଙ୍ଗମାନେ ଖେଳୁଅଛନ୍ତି, ସେହି ଅତସୀପୁଷ୍ପସଦୃଶ ଶରୀରଧାରୀ ଲୋକଚକ୍ଷୁର ଆନନ୍ଦବର୍ଦ୍ଧକ ଏହି ବାଳକଟି କିଏ ?

ଅପୂର୍ବ ଶ୍ରୀକୃଷ୍ଣମୂର୍ତ୍ତିଦର୍ଶନଜନିତ କୌତୁକରେ ଚଞ୍ଚଳନେତ୍ରା ପଦ୍ମ-ଲୋଚନା ଗୋପାଙ୍ଗନାମାନେ ଏହିପରି ପରସ୍ପର ଆଳାପ କଲେ, ଏହା ଶେଷ ହେବା ସମୟରେ ସେହି ନଟିକମାନେ ନିକଟବର୍ତ୍ତୀ ଯମୁନାସୈକତରେ ପଦାର୍ପଣ କରନ୍ତେ, 'ଏ ମଦନମୋହନ ଅଟନ୍ତି' ଗୋପୀମାନେ ନିଜର ସକଳ ଜ୍ଞାନ ଭୁଲିଯାଇ ଏହାଙ୍କୁ କହିବାରେ ଲାଗିଲେ ।

---

(ଖ) ହରିହୟମଣି—ଇନ୍ଦ୍ରନୀଳମଣି; ଅପଘନ—ଦେହ; ଜୀମୂତକେଶା—ମେଘପରି କୃଷ୍ଣବର୍ଣ୍ଣ କେଶ ଯାହାର; ହଠି—କୌତୁକରେ ହଠ କରି; ରଦାମ୍ବର—ଅଧର; ତରଳରତ୍ନ—ଦୀପ୍ତିବିଶିଷ୍ଟ ଉଜ୍ଜ୍ୱଳ ରତ୍ନ; ନମୁଚିସୂଦନ—ଇନ୍ଦ୍ର ।

ଅହା ! ଏହି ତ ଆମ୍ଭର ପ୍ରାଣର ସଙ୍ଗୀଳି ହରି ! ( ଆମ ଆଗରେ ଶୋଭା ପାଉଅଛନ୍ତି ) । ପଦ । ଏହାଙ୍କ ଶରୀର ଇନ୍ଦ୍ରନୀଳମଣିକୁ ଜିଣୁଅଛି ଏବଂ ମୁଖଚନ୍ଦ୍ରକୁ ନିନ୍ଦା କରୁଅଛି । ୧ । ସହସ୍ର କନ୍ଦର୍ପ ଏକତ୍ର ହେଲେ ଏ ମୋହନ (ଶ୍ରୀକୃଷ୍ଣ) ସଙ୍ଗେ ସମାନ ହେବେ ନାହିଁ । ୨ । ଏହାଙ୍କ ବଂଶୀର କୋମଳ ଶବ୍ଦ ଶୁଣୁ ଶୁଣୁ ଘନନୀଳ-କୁନ୍ତଳା ନାରୀଙ୍କର କଣ ଜ୍ଞାନ ହଜିଯିବ ନାହିଁ ? ଅର୍ଥାତ୍ ଏହାଙ୍କର ସୁମଧୁର ବେଣୁ ଶବ୍ଦ ଶୁଣିଲେ ସୁନ୍ଦରୀ ନାରୀମାନଙ୍କର ଜ୍ଞାନ ନିଶ୍ଚୟ ଲୋପ ହୋଇଯିବ । ୩ । ହେ ସଖି, ଥରେ କୌତୁକରେ ହଠ କରି ତାଙ୍କର ଅଧରମଧୁ ପିଇବା କି ଅର୍ଥାତ୍ ଅଧରକୁ ଚୁମ୍ବନ କରିବା କି ? ତା ହେଲେ ଯୌବନ ସଫଳ ହୁଅନ୍ତା ।୪। ଯୁବତୀମାନଙ୍କର ପ୍ରାଣପରି ପ୍ରିୟତମ ଏହି କୃଷ୍ଣ ଆମ୍ଭ ହାରମଧ୍ୟବର୍ତ୍ତୀ ତରଳ ରତ୍ନ ହେବେ କି ? ଅର୍ଥାତ୍ ହାର ମଧ୍ୟରେ ଥିବା ସମୁଜ୍ଜ୍ୱଳ ରତ୍ନପରି ଏହି ଯୁବତୀଜୀବନ ଶ୍ରୀକୃଷ୍ଣଙ୍କୁ ସବୁବେଳେ ହୃଦୟରେ ଗଣ୍ଠିଧନ ଭଳି ବାନ୍ଧି ରଖିବା କି ? ଆଠଗଡ଼ର ଇନ୍ଦ୍ର (ରାଜା) କୃଷ୍ଣ ହୋଇ ସପ୍ରେମରେ ଏହାକୁ ରଚନା କଲେ । ୫ ।

(ଢ) ଟୀକା—ଗୋପବାଲାନାଂ ଶ୍ରୀକୃଷ୍ଣବପୁଷ୍କଂ ଅନେଶ୍ୱନେଶ୍ୱାଳାଙ୍ଗ ବର୍ଣ୍ଣୟତି ଏତସ୍ୟେତି । ହେ ସଖ୍ୟ, ଏତସ୍ୟ ଶ୍ରୀକୃଷ୍ଣସ୍ୟ ଈକ୍ଷଣକୋଣେନ ବାକ୍ଷଣେମେବ ବଲନ୍ତଃ ଚଲନ୍ତଃ ଗାଲାରଛଦମୟାଃ ଗାଲୋପୂଳକର୍ମିତାଃ ଅସ୍ତ୍ରଗାଃ ଶରାଃ ତେଷାଂ ଅପାରୈଃ ବର୍ଷଣୈଃ ସାରସସାରବେତ୍ ଉଜ୍ଜ୍ୱଳ ପଦ୍ମବତ୍ ସୁନ୍ଦରେ ଦୃଶୌ ଯାସାଂ ତାସାଂ ଯୁବତୀନାଂ ଇତ୍ୟର୍ଥଃ । କନ୍ଦର୍ପଦର୍ପୋଦୟଃ ମଦନମତ୍ତତାୟାଃ ଉଦୟଃ ଭବତୀତି ଶେଷଃ ଅସ୍ୟ ଶ୍ରୀକୃଷ୍ଣସ୍ୟ ନେତ୍ରାନ୍ତପାତେନ କାମିନୀନାଂ ମନସି କାମୋଦୟଃ ଯାୟତେ ଇତ୍ୟର୍ଥଃ । ଏତତ୍ ବଶ୍ୟଂ କନ୍ତି ଦାସ୍ୟଂ ଭୃତ୍ୟତ୍ୱଂ କର୍ମ ଇତ୍ୟୁକ୍ତା ଈକ୍ଷଣକୋଣବାଣୈରେବ କିଂ ନ ଭବେତ, ବିଶ୍ୱବାସିନଃ କିଂ ଭୃତ୍ୟତ୍ୱଂ ନ ଗତାଃ ଇତି କାକୁଃ । ଅସ୍ୟ ବିମ୍ବାଧରଃ ମଣୀନାଂ ଗଣୈଃ ରତ୍ନସମୂହୈଃ ସ୍ତମ୍ଭାଧାଂ ବ୍ୟାପ୍ତାଂ; ଦୂରନ୍ତା ଦୁର୍ଦ୍ଦଣୋଦର୍କା ଶୁଦ୍ଧିଲଂ ଅଭ୍ୟାସଃ ଯସ୍ୟାଃ ତାଂ ମୁରଲୀଂ ବଂଶୀଂ କିଂ କିମର୍ଥଂ ଚୁମ୍ବତି ?

ଚରାଚରାଣାଂ ସ୍ଥାବରଜଙ୍ଗମାନାଂ ଧୈର୍ଯ୍ୟଂ ଧ୍ୱଂସତି ଇତି ଚରାଚରଧୈର୍ଯ୍ୟଧ୍ୱଂସୀ ତସ୍ମିନ୍ ବଶ୍ୟଧୈର୍ଯ୍ୟବଲୋପିନି ବର୍ହାବତଂସସ୍ୟ ଶିଖଣ୍ଡମୁକୁଟସ୍ୟ ଶ୍ରୀକୃଷ୍ଣସ୍ୟ ବଂଶୀନନଦେ ବଂଶୀଧ୍ୱନୌ ପ୍ରସରତି ସତି ଅର୍କଜାୟାଃ ଯମୁନାୟାଃ ଜଳପ୍ରବାହସ୍ୟ ଇତ୍ୟର୍ଥଃ । କାର୍କଶ୍ୟସ୍ୟ କଠିନତାୟାଃ ଅନୁଭବୋ ବଭୂବ, ତରଳଂ ବହମାନଂ ଅପି ଯମୁନାଜଳଂ ସ୍ଥିରଂ କଠିନଂ ଅଭୂତ୍ ଇତ୍ୟର୍ଥଃ । ଶିଲାବଲୀନାଂ ପ୍ରସ୍ତରାଣାଂ କଠିନାନାଂ ଇତ୍ୟର୍ଥଃ । ଜଲତାୟାଃ ତରଳତ୍ୱସ୍ୟ ଅନୁଭବୋ ବଭୂବ, କଠିନ ଅପି ଶିଲାବଳଃ ତରଳତାଭୂତ୍ ଇତ୍ୟର୍ଥଃ; ଶାଖିନାଂ ବୃକ୍ଷାଣାମପି ଆଶିଖଂ ମୂଳାଦଗ୍ରଭାଗପର୍ଯ୍ୟନ୍ତଂ ସପୁଲକତ୍ୱସ୍ୟ ପ୍ରେମାଙ୍କୋଦୟସ୍ୟ ଅନୁଭବୋ ବଭୂବ, ମୃଗାଣାଂ ଉତ୍କଣ୍ଠତାୟା ଅନୁଭବୋ ବଭୂବ, ମୃଗାଃ ଉତ୍କଣ୍ଠାଃ ସନ୍ତ ତଂ ବଂଶୀନନ୍ଦଂ ଅନ୍ୱଭବନ୍ ଇତ୍ୟର୍ଥଃ, ଫଣିନାଂ ସର୍ପାଣାଂ ଚକ୍ଷତଦ୍ୱଲୋଚନତ୍ୱସ୍ୟ ଅନୁଭବୋ ବଭୂବ, ସର୍ପାଃ ତତ୍ସ୍ୱରଶ୍ରବଣେନ ଚକ୍ଷୁଃଶ୍ରବତ୍ୱାତ୍ ବଦ୍ଧ୍ୟୁବସ୍ଥାବଦତେକ୍ଷଣା ବଭୂବୁଃ ଇତ୍ୟର୍ଥଃ ।

ଅନୁବାଦ—ହେ ସଖି, ଏହି ଶ୍ରୀକୃଷ୍ଣଙ୍କର ଅପାଙ୍ଗଦୃଷ୍ଟିପାତ, ଗାଲୋପ୍ଳନିର୍ମିତ ଚଳନ୍ତା ଶର ପରି ପଦ୍ମନୟନା ସୁନ୍ଦରୀମାନଙ୍କ ମନରେ କନ୍ଦର୍ପର ଉନ୍ମାଦ ଜାତ କରୁଅଛି । ବିଶ୍ୱବାସୀମାନେ ଏହି ଅପାଙ୍ଗ ଦୃଷ୍ଟିପାତ ଦ୍ୱାରା ତ ବଶୀଭୂତ ହୋଇଗଲେ, ଆଉ କାହିଁକି ବିମ୍ବାଧର ମୁରଲୀ ବଜାଇବାକୁ ଅଭ୍ୟାସ କରୁଅଛି ? ଆହା, କୋମଳ ବିମ୍ବାଧରରେ ରତ୍ନକଠିନ ମୁରଲୀସ୍ପର୍ଶ ବାଧା ଦେଉଅଛି ପରା ।

ଅହୋ କି ବଚନ କଥା ? ଏହି ମୟୂରଚୂଳଅଙ୍କର ଚରାଚର ଧୈର୍ଯ୍ୟଧ୍ୱଂସକାରୀ ବଂଶୀନାଦ ଶୁଣନ୍ତେ ଯମୁନାର ତରଳ ଜଳ ଘନୀଭୂତ ହୋଇଗଲା, କଠିନ ପଷାଣସମୂହ ତରଳିତ ହୋଇଗଲା, ବୃକ୍ଷମାନଙ୍କର ମୂଳରୁ ଅଗ୍ର ପର୍ଯ୍ୟନ୍ତ ରୋମାଞ୍ଚ ଜାତ ହେଲା, ମୃଗମାନେ କାନଡେରି ସ୍ଥିରହୋଇ ରହିଗଲେ ଏବଂ ସର୍ପମାନେ ବଦ୍ଧ୍ୟବସ୍ଥାରତ ନୟନରେ ଅନାଇ ରହିଲେ ।

———



ରାଗ—କେଦାର

କ୍ଷମାନୁକମ୍ପାଧର ହେ,
କ୍ଷୀରସାଗରସମ୍ଭବାକୁଚକୁମ୍ଭଯୁଗଳପରିରମ୍ଭଚତୁର ହେ । ପଦ ।
କ୍ଷିତିଚକ୍ରବାଳ ମହାଭୀତି ନିବାରଣ ହେ,
ଶ୍ରୁତିଶିର-ଅବତଂସୀକୃତ ଶ୍ରୀଚରଣ ହେ,
ମରାଳବାହରଣ, କର୍ଚ୍ଚିତ ଚରଣ, ଧରାଭାର ହରଣ, ଚରାଚର ଶରଣ,
ତରାବର କରଣ, ବରାବର ଚରଣ,-ନଖାଂଶୁ ସୁରତରଣୀଶିଖାଭରଣ ହେ ।୧।
କ୍ଷଣକେ ହେଲେ ନାମକୁ ନ ଭଣେ ମୁଁ ତୁମ୍ଭର ହେ,
ଭଣେ ତ ହେବାରୁ ପାପିଗଣେ ବିଶ୍ୱମ୍ଭର ହେ,
ମନା ନ କର ହିତ, ଅନାଦରରହିତ,-ଅନାଇଣି ନିରତ, ଚିନ୍ତାକରୁ ଦୁରିତ
ଅନୁରତ ମୋ ଚିତ୍ତ, ମନାସୁଛି ଅହିତ, ଜନାର୍ଦ୍ଦନ ପତିତଜନାବହିତ ହେ ।
କ୍ଷମ ତ ମୁଁ ନୁହେ ଅନୁପମ-ଅନୁଭାବ ହେ,
ଯମଦଣ୍ଡରୁ ମୋ ରକ୍ଷା କେମନ୍ତି ହେବ ହେ,
ଜଳାକରଭବନ,-ବଳାମୁଖ ଭୁବନ,-ବଳାହିତ ରତନ, ବଳାବରଜ, ଜନ-
କଳାପର ବୃଜିନ,-ଦଳା ସୁକୃତଧନ,-ବଳାଢ୍ୟମୁନି-ମନ,-କଳାପି ଘନ ହେ ।
କ୍ଷମାଧିପ ଜଗଦ୍ଦେବ ସମାପନ କରେ ହେ;
କ୍ଷମାରୁ ହେବାରୁ ଭବ ଭ୍ରମାତିଶୟରେ ହେ,
ବ୍ୟଥା ନିବହ ହର, ପ୍ରଥାଚଳ୍ପ ମିହିର, ପଥ ନ୍ତରକୁ ହର -ରଥାଦରୁ ଅମର,
ମଥାମଣି ନିକର, ରଥାଙ୍ଗଯୁତ କର, କଥା ବିନୟ ମୋର ବୃଥା ନ କର ହେ ।

---

(କ୍ଷ) କ୍ଷମାନୁକମ୍ପାଧର—ହେ କ୍ଷମାଶୀଳ, ହେ ଦୟାସାଗର, କ୍ଷୀରସାଗର-ସମ୍ଭବା—ଲକ୍ଷ୍ମୀ, ପରିରମ୍ଭ—ଆଲିଙ୍ଗନ, କ୍ଷିତିଚକ୍ରବାଳ—ପୃଥିବୀମଣ୍ଡଳ, ଶ୍ରୁତିଶିର ଅବତଂସୀକୃତ—ବେଦମସ୍ତକର ଭୂଷଣସ୍ୱରୂପ, ମରାଳବାହରଣ—ବ୍ରହ୍ମା, ତସ୍ୱବର—ଚନ୍ଦ୍ର, ବରାବର—ସଦ୍ଗୁଣ, ନଖାଂଶୁ—ନଖର ଜ୍ୟୋତି, ନ ଭଣେ—ଉଚ୍ଚାରଣ କରେ ନାହିଁ, ଅନାଦରରହିତ—ଆଦର ସହିତ, ଅନାଇଣି—ଚାହିଁବା, ଅନୁରତ—ସର୍ବଦା, ଅହିତ—ପାପ, ପତିତଜନାବହିତ—ପାପିଜନ ଉଦ୍ଧାରକାରୀ, କ୍ଷମ—ସମର୍ଥ, ଅଧିକାରୀ ବା ହକଦାର; ଅନୁପମ ଅନୁଭାବ—ଯାହାର ମହିମା ଅତୁଳନୀୟ ଅଟେ, ଜଳାକର—ସମୁଦ୍ର, ବଳହିତ—ବଳାରି, ଇନ୍ଦ୍ର; ବଳାବରଜ—ବଳରାମଙ୍କ ସାନଭାଇ, ବୃଜିନ—ପାପ, ଧରରଥ—ପୃଥିବୀ ।

ହେ କ୍ଷମାସାଗର, ଦୟାଶୀଳ, ହେ ଲକ୍ଷ୍ମୀଦେବୀଙ୍କର କୁଚକୁମ୍ଭକୁମ୍ଭଦ୍ୱୟ ଆଲିଙ୍ଗନରେ ନିପୁଣ । ପଦ । ହେ ପ୍ରଭୁ, ତୁମ୍ଭେ ସମଗ୍ର ପୃଥିବୀମଣ୍ଡଳର ମହାବିପଦ ନିବାରଣକାରୀ ଅଟ । ତୁମ୍ଭର ସୁନ୍ଦର ଚରଣଦ୍ୱୟ ବେଦର ଶିରୋଭୂଷଣସ୍ୱରୂପ ହୋଇଅଛି ଅର୍ଥାତ୍ ତୁମ୍ଭର ପାଦପଦ୍ମଦ୍ୱୟ ବେଦରେ ମୁଖ୍ୟ ପ୍ରତିପାଦ୍ୟ ବିଷୟ । ତୁମ୍ଭର ଚରଣଦ୍ୱୟ ବ୍ରହ୍ମାଙ୍କ କରଦ୍ୱାରା ଅର୍ଚ୍ଚିତ ହେଉଅଛି, ଅର୍ଥାତ୍ ବ୍ରହ୍ମା ତୁମ୍ଭ ଶ୍ରୀଚରଣ ସେବାକାରୀ ଅଟନ୍ତି । ହେ ଧରାଭାରହରଣ (ପୃଥିବୀର ଭାର ହରଣକାରୀ), ହେ ଚରାଚରଶରଣ ( ସମଗ୍ର ସଂସାରର ଆଶ୍ରୟ ), ତୁମ୍ଭର ଚନ୍ଦ୍ରକିରଣ ସଦୃଶ ପାଦସ୍ଥିତ ନଖର କିରଣ ଦେବତାମାନଙ୍କର ଶିଖା ଅର୍ଥାତ୍ ମସ୍ତକର ଆଭରଣ ଅଟେ । ୧ । ମୁଁ କ୍ଷଣେ ହେଲେ ତୁମ୍ଭର ନାମକୁ ଉଚ୍ଚାରଣ କରୁ ନାହିଁ, ହେ ବିଶ୍ୱମ୍ଭର, ମୁଁ ପାପିଗଣଙ୍କ ମଧ୍ୟରେ ଜଣେ ହେବାରୁ ଅର୍ଥାତ୍ ମୁଁ ଜଣେ ପ୍ରଧାନ ପାପୀ ହେବାରୁ ତୁମ୍ଭେ ମୋ ହିତ ଅର୍ଥାତ୍ ମଙ୍ଗଳକୁ ମନା କର ନାହିଁ, ଅର୍ଥାତ୍ ମୋର ମଙ୍ଗଳରେ ବାଧା ଦିଅ ନାହିଁ । ତୁମ୍ଭର ଅନାଦରରହିତ (ସ୍ନେହପୂର୍ଣ୍ଣ) ଚାହାଁଣି ସର୍ବଦା ମୋ ଦୁରିତକୁ (ପାପକୁ) ଚୂନା କରି ଦେଉ, ହେ ଜନାର୍ଦ୍ଦନ, ହେ ପତିତମାନଙ୍କ ହିତକାରୀ, ମୋ ଚିତ୍ତ ସର୍ବଦା ଅହିତ (ପାପ) ମନାସୁଅଛି ଅର୍ଥାତ୍ ପାପଚିନ୍ତା କରୁଅଛି । ୨ । ହେ ଅତୁଳନୀୟ ଶକ୍ତିଶାଳୀ, ମୁଁ ଅବଶ୍ୟ ପାପରୁ କ୍ଷମା ପାଇବାର ଅଧିକାରୀ ନୁହେ, ମୋର ଯମଦଣ୍ଡରୁ କିପରି ରକ୍ଷା ହେବ ? ହେ ଜଳାକରଭବନବଳୀମୁଖ (ଜଳାକର ଯେ ସମୁଦ୍ର ସେ ଭବନ କି ଜନ୍ମସ୍ଥାନ ଯାହାର ଅର୍ଥାତ୍ ଚନ୍ଦ୍ର ତାକୁ ବଳିଅଛି ଅର୍ଥାତ୍ ତାହାଠାରୁ ମନୋଜ୍ଞତର ମୁଖ ଯାହାର ), ହେ ଭୁବନ ବଳାହିତରତ୍ନ ( ହେ ସଂସାରର ଇନ୍ଦ୍ରମଣି ), ହେ ବଳଭଦ୍ରଙ୍କ ସାନ ଭାଇ, ହେ ଜନକଲାପର ବୃଜିନଦଳୀ ( ମନୁଷ୍ୟମାନଙ୍କର ପାପବିନାଶକ ), ତୁମ୍ଭେ ସୁକୃତଧନବଳାଢ୍ୟ ମୁନିମନ କଳାପିଘନ ଅଟ । (ପୁଣ୍ୟରୂପ ଧନରେ ବଳବାନ୍ ଅଟନ୍ତି ଯେଉଁ ମୁନିମାନେ), ସେମାନଙ୍କ ମନରୂପ ମୟୂର ପକ୍ଷରେ ତୁମ୍ଭେ ମେଘସ୍ୱରୂପ ଅଟ ଅର୍ଥାତ୍ ପୁଣ୍ୟାତ୍ମା ମୁନିମାନେ ତୁମ୍ଭଙ୍କୁ ମନୋମଧ୍ୟରେ ଅନୁଭବ କରି ଆନନ୍ଦିତ ହୁଅନ୍ତି । ୩ । କ୍ଷମାର ଅଧିପ ଅର୍ଥାତ୍ ପୃଥିବୀର ରାଜା ଜଗଦ୍ଦେବ ଏହି ଗୀତକୁ ସମାପନ କଲେ; ହେ ପ୍ରଭୁ ଭବ-ଭ୍ରମାତିଶୟରେ ଅର୍ଥାତ୍ ସାଂସାରିକ ମାୟାଦି ଭ୍ରମରେ ପଡ଼ି ମୁଁ ଅତ୍ୟନ୍ତ ଶ୍ରମାର୍ତ୍ତି (କ୍ଳାନ୍ତ) ହୋଇ ପଡ଼ିଅଛି, ତୁମ୍ଭେ ମୋର ଏହି ବ୍ୟଥାନିବହ ( କ୍ଳାନ୍ତିସମୂହକୁ ) ହରଣ କର; ଏହି ପ୍ରଥା ଅର୍ଥାତ୍ ଏହି ଦୁଃଖ ଦୂର କରିବା ଖ୍ୟାତି, ହରରଥାଦିରୁ ଅର୍ଥାତ୍ ପୃଥିବୀରୁ ଆରମ୍ଭକରି ( ତ୍ରିପୁରାସୁରକୁ ମାରିବାବେଳେ ମହାଦେବ ପୃଥିବୀକୁ ରଥସ୍ୱରୂପ ବ୍ୟବହାର କରିଥିବାରୁ ପୃଥିବୀକୁ ହରରଥ କହନ୍ତି ) ମିହିର-ପଥାନ୍ତରକୁ ଅର୍ଥାତ୍ ସୂର୍ଯ୍ୟଙ୍କ ଗମନାଗମନ ପଥ ଆକାଶ ପର୍ଯ୍ୟନ୍ତ ଚଳିତ ଅର୍ଥାତ୍ ପ୍ରଚଳିତ ହେଉ । ହେ ଅମରମଥାମଣି ( ହେ ଦେବବୃନ୍ଦଙ୍କ ନମସ୍ୟ ), ହେ

( ୬.) ଦଳିତାଞ୍ଜନପୁଞ୍ଜମଞ୍ଜୁଳାଙ୍ଗୋ, ଲଳିତାଦ୍ୟମ୍ବୁଜଲୋଚନାର୍ଚ୍ଚିତାଂଘ୍ରିଃ,
ଫଳିତାମରଭୂରୁହଃ ଶ୍ରିତାନାଂ କଳିତାପଂ ଦଳୟତ୍ୱଲଂ କବୀନାଂ ।
ଲୀଳାବନୀଭରସୁସାହିତବୀରବାସୋ—
ତ୍ରୀଣାନ୍ତ୍ରକେନ୍ଦ୍ରଚରମାଭରଣଂ ମହୋ ନଃ,
ଚୀନାନିଳାନ୍ତଚଲଦଞ୍ଚଳରେଲମାଲଂ,
ହୀନାଂହସାମସୁମତାଂ ଶରଣଂ ଶରଣ୍ୟଂ ।
ପୀନାନୁକମ୍ପନରସାମୃତପୂରପୂର୍ଣ୍ଣୋ
ଧ୍ୟାନାସ୍ୟନାଃସ୍ତୁତତରସ୍ତବସଜ୍ଜକଣ୍ଠଃ,
ମୀନାଦ୍ୟନେକବିଧରୂପଧରଃ ପରାତ୍ମା
କୀନାଶକିଙ୍କରଭୟାନ୍ନ ଜଗଦବତୁ ।

ଶ୍ରୀମଦ୍‌ଭ୍ୟାମନ୍ୟୋଽନ୍ୟଲବଣ୍ୟଲୋଲଲୋଚନାଭ୍ୟାମମ୍ବରାଡ଼ମ୍ବର-ବିଡ଼ମ୍ବିତାମ୍ବୁଧରରୋଚନାଭ୍ୟାଂ କାନ୍ତିସ୍ମରମସାରସାରସାକୃଣ୍ୟପୂର୍ଣ୍ଣବର୍ଣ୍ଣାଭ୍ୟାଂ-ମାଣିକ୍ୟସ୍ୱରାକର୍ଣ୍ଣନସଜ୍ଜକର୍ଣ୍ଣାଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟନିନ୍ଦଲଚରଣାଭ୍ୟା-ମସ୍ମାନୁପାନୁଭବବିଭବାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଇତି କିଶୋରଚନ୍ଦ୍ରାନନ୍ଦାଖ୍ୟଂ ଚମ୍ପୂକାବ୍ୟଂ ।

ଓଁ ତତ୍ ସତ୍ ।

---

ରଥାଙ୍ଗସୁଭଙ୍କର ( ହେ ଚକ୍ରଧର ), ମୋର କଥା ବିନୟୁକ୍ତ ଅର୍ଥାତ୍ ବିନୟପୂର୍ଣ୍ଣ କଥାକୁ ନକର ( କେବେହେଁ ) ବୃଥା କର ନାହିଁ ।

ଟୀକା—ଅଥ କବିଃ ପ୍ରାର୍ଥନାଦ୍ୱାରେଣ ସ୍ୱରଚିତକାବ୍ୟସମାପ୍ତିଂ ବିଦଧାତି ଦଳିତେତି । ଦଳିତାନି ମର୍ଦ୍ଦିତାନି ଯାନି ଅଞ୍ଜନାନି କଜ୍ଜଲାନି ତସ୍ୟ ପୁଞ୍ଜବତ୍ ସଙ୍ଘାତବତ୍ ମଞ୍ଜୁଳାନି ମନୋହରାଣି ଅଙ୍ଗାନି ଯସ୍ୟ ସଃ, ଲଳିତାଦିଭିଃ ସଖୀଚୂଡ଼ାମଣିଭିଃ ଅମ୍ବୁଜଲୋଚନାଭିଃ ପଦ୍ମନେତ୍ରାଭିଃ ଅର୍ଚ୍ଚିତଂ ସେବିତଂ ଚରଣଂ ଯସ୍ୟ ସଃ, ଶ୍ରିତାନାଂ ଆଶ୍ରିତାନାଂ ଜୀବାନାଂ ବିଷୟେ ଫଳିତଃ ଫଳବାନ୍ ଅମରଭୂରୁହଃ କଳ୍ପପାଦପଃ ତତ୍‌ସଦୃଶଃ ଇତ୍ୟର୍ଥଃ, ଏବଂଭୂତଃ ଶ୍ରୀକୃଷ୍ଣଃ କବୀନାଂ ସତାଂ କଳିତାପଂ କଳିକାଳସମୁଦ୍‌ଭୂତଂ ଦୁଃଖଂ ଅଳଂ ଅତ୍ୟର୍ଥଂ ଦଳୟତୁ ବିନାଶୟତୁ ।

ଘନେତି—ଘନଃ ବିନାଶିତଃ ଅବନ୍ୟାଃ ପୃଥିବ୍ୟାଃ ଭରଃ ଭାରଭୂତଃ ସୁରବୈରିଣାଂ ଦେବଶତ୍ରୂଣାଂ ଦୈତ୍ୟାନାଂ ଅସୁରାଣାଂ ଇତ୍ୟର୍ଥଃ । ବାହଃ ବାହଃ ଯେନ ତତ୍, ଉଡ୍ଡୀନଃ ଯଃ ଅଣ୍ଡଜେନ୍ଦ୍ରଃ ପକ୍ଷିରାଟ୍ ଗରୁଡ଼ଃ ତସ୍ୟ ଚରମସ୍ୟ ପୃଷ୍ଠଭାଗସ୍ୟ ଆଭରଣଂ ଭୂଷଣସ୍ୱରୂପଂ ଉଭୟୋର୍ବିଶେଷଣସମାସଃ । ଚୀନାଂଶୁକେନ ମନ୍ଦପବନେନ ଅଳ୍ପଂ ଚଳନ୍ତ୍ୟୌ ଅଞ୍ଚଳଚେଳଂ ମାଳା ଚ ଯସ୍ୟ ତତ୍, ମ୍ଳାନାନି ବିରତାନି ଅଂହାଂସି ପାପାନି ଯେଷାଂ ତେଷାଂ ନଷ୍ଟପାପାନାଂ ଅସୁମତାଂ ପ୍ରାଣିନାଂ ଶରଣ୍ୟଂ ରକ୍ଷଣାର୍ହଂ ମହଃ ଶ୍ରୀକୃଷ୍ଣାଖ୍ୟଂ ତେଜଃ, ନଃ ଅସ୍ମାକଂ ଶରଣଂ ରକ୍ଷିତୃ ଅସ୍ତୁ ।

ପୀନେତି—ପୀନଃ—ପ୍ରବୃଦ୍ଧଃ ଅନୁକମ୍ପନରସ କରୁଣାରସ ଏବ ଅମୃତପୂରଃ ପୀୟୂଷପ୍ରବାହଃ ତେନ ପୂର୍ଣ୍ଣଃ; ଦୀନାନାଂ ଦୁଃଖିନାଂ ଆସ୍ୟାତ୍ ମୁଖାତ୍ ନିଃସୃତତରଃ ସମ୍ୟକ୍ ବହିର୍ଗତଃ ଯଃ ସ୍ୱନଃ ତସ୍ମିନ୍ ତତ୍ଶ୍ରବଣେ ଇତ୍ୟର୍ଥଃ, ସଜ୍ଜୌ ଉଦ୍ୟୁକ୍ତୌ କର୍ଣ୍ଣୌ ଯସ୍ୟ ସଃ, ନିତ୍ୟଂ ଦୀନଦୁଃଖାପନୋଦନତତ୍ପର ଇତ୍ୟର୍ଥଃ, ମୀନାଦ୍ୟନେକବିଧରୂପଧରଃ ମତ୍ସ୍ୟାଦ୍ୟନେକବିଧମୂର୍ତ୍ତିଃ, ପରାତ୍ମା ପରମେଶ୍ୱରଃ, କୀନାଶସ୍ୟ ଯମସ୍ୟ ଯେ କିଙ୍କରାଃ ଭୃତ୍ୟାଃ ମରଣାନନ୍ତର ପାପଦଣ୍ଡବିଧାନାର୍ଥଂ ସମାଗତାଃ ଇତ୍ୟର୍ଥଃ, ତେଭ୍ୟଃ ଯାନି ଭୟାନି ତାନି ହରିହରତୁ ଅତିଶୟେନ ହରତୁ ଦୂରୀକରୋତ୍ୱିତ୍ୟର୍ଥଃ ।

କାବ୍ୟସମାପ୍ତୌ ରାଧାମାଧବୌ ନମସ୍କରୋତି ଶ୍ରୀମଦ୍ଭ୍ୟାମିତି ।
ଶ୍ରୀମଦ୍ଭ୍ୟାଂ କମନୀୟରୂପାଭ୍ୟାଂ ଅନ୍ୟୋନ୍ୟଂ ପରସ୍ପରଂ ଯତ୍ ଲାବଣ୍ୟଂ ଲୋକାତିଶାୟି ସୌନ୍ଦର୍ଯ୍ୟଂ ତେନ ଲୋଲାନି ଚଞ୍ଚଳାନି ଲୋଚନାନି ଯୟୋଃ ତାଭ୍ୟାଂ, ଅମ୍ବରୟୋଃ ପରସ୍ପରପରିହୃତବସ୍ତ୍ରୟୋଃ ଅତ୍ରାମ୍ବରେଣ ସମାବେଶେଣ ବିଡମ୍ବିତଃ ଅନୁକୃତଃ ଅମ୍ଭୋଧର ମେଘଃ କୃଷ୍ଣବର୍ଣ୍ଣ ଇତି ଯାବତ୍, ରୋଚନା ଗୋରୋଚନା ହରିଦ୍ରାଭା ଇତି ଯାବତ୍ ଯୟୋଃ ତାଭ୍ୟାଂ, କାର୍ତ୍ତସ୍ୱରଂ ସୁବର୍ଣ୍ଣଂ ମସାରଃ ଇନ୍ଦ୍ରନୀଳମଣିଃ ତୟୋଃ ସାରଃ ଉତ୍କର୍ଷଃ ତତ୍ ସାଦୃଶ୍ୟେନ ପୁଷ୍ଟଃ ବର୍ଣ୍ଣଃ ଯୟୋଃ ତାଭ୍ୟାଂ, ଆର୍ତ୍ତାନାଂ ଦୀନାନାଂ ସ୍ୱରଃ ଆର୍ତ୍ତଧ୍ୱନିଃ ତସ୍ୟ ଆକର୍ଣ୍ଣନେ ଶ୍ରବଣେ ସକ୍ତୌ କର୍ଣ୍ଣୌ ଯୟୋଃ ତାଭ୍ୟାଂ ରକ୍ତାରବିନ୍ଦାନାଂ ରକ୍ତପଦ୍ମାନାଂ ଯତ୍ ସୌନ୍ଦର୍ଯ୍ୟଂ ତେନ ଛୁନ୍ଦଲାନି ଅଭିଶଙ୍କିତାନି ଚରଣାନି ଯୟୋଃ ତାଭ୍ୟାଂ, ଅମାନୁଷାନୁଭାବବିଭବାଭ୍ୟାଂ ଅତିମାନୁଷତେଜଃସମ୍ପନ୍ନାଭ୍ୟାଂ ଶ୍ରୀରାଧାମାଧବାଭ୍ୟାଂ ନମୋନମଃ ।

ଅନୁବାଦ—ଯାହାଙ୍କର ଅଙ୍ଗ ଦଳା କଜ୍ଜଳ ପରି ମନୋହର, ଲକ୍ଷ୍ମୀଆଦି ସର୍ବଦେବୀମାନେ ଯାହାଙ୍କର ଚରଣାର୍ଚ୍ଚନା କରନ୍ତି, ଆଶ୍ରିତ ଲୋକମାନଙ୍କ ପକ୍ଷରେ ଯେ ଫଳବାନ୍ କଳ୍ପପାଦପ ସଦୃଶ, ସେହି ଭଗବାନ ଶ୍ରୀକୃଷ୍ଣ ସାଧୁମାନଙ୍କର ଚିନ୍ତାପୁଞ୍ଜ ବିନାଶ କରନ୍ତୁ ।

ଯେ ଅବତାର ଭାରଭୂତ ଅସୁରମାନଙ୍କୁ ବିନାଶ କରିଅଛନ୍ତି, ଯେ ପକ୍ଷୀରାଜ ଗରୁଡ଼ର ପୃଷ୍ଠଦେଶରେ ଆଭରଣସ୍ୱରୂପ; ଯାହାଙ୍କର ବସ୍ତ୍ରାଞ୍ଚଳ ଓ ମାଳା ମୃଦୁ ବାୟୁରେ ଆନ୍ଦୋଳିତ, ନିଷ୍ପାପ ପ୍ରାଣୀମାନଙ୍କର ଆଶ୍ରୟ ସେହି ସମୁଜ୍ଜ୍ୱଳ ତେଜ ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।

ଅନନ୍ତ ଦୟାରୂପ ଅମୃତରସରେ ଯେ ପରିପୂର୍ଣ୍ଣ, ଦୁଃଖୀର ମୁଖରୁ ବାହାରୁଥିବା ସ୍ତବକୁ ଶୁଣିବାପାଇଁ ଯେ କାନ ଡେରି ଥାଆନ୍ତି, ମୀନାଦି ଅବତାର ଧାରଣକାରୀ ସେ ହରି ଯମକିଙ୍କରମାନଙ୍କ ଭୟ ଦୂର କରନ୍ତୁ ।

ପରସ୍ପର ଲାବଣ୍ୟଦର୍ଶନରେ ଯାହାଙ୍କର ଲୋଚନ ସର୍ବଦା ଚଞ୍ଚଳ, ଯାହାଙ୍କର ପରିହିତ ବସ୍ତ୍ର ମେଘର ଓ ଗୋରଚନାର ବର୍ଣ୍ଣ ପରି ମନୋହର, ଯାହାଙ୍କ ଶରୀରଶୋଭା ସୁବର୍ଣ୍ଣ ଓ ଇନ୍ଦ୍ରନୀଳମଣି ପରି, ଦୁଃଖୀମାନଙ୍କର ଦୁଃଖ ଶୁଣିବାକୁ ଯେ ସବୁବେଳେ କାନ ଡେରି ଥାଆନ୍ତି, ଯାହାଙ୍କ ଶ୍ରୀଚରଣଶୋଭା ରକ୍ତ ପଦ୍ମ ପରି ମନୋଜ୍ଞ, ଅମାନୁଷତେଜଃସମ୍ପନ୍ନ ସେହି ରାଧାମାଧବଙ୍କୁ ମୁଁ ନମସ୍କାର କରୁଅଛି ।

ଉଡୁବ୍ରାତେ ବପୁଷି ସତତଂ ଦ୍ୟୋତମାନେଽପି ରାତ୍ରୌ
ଖଦ୍ୟୋତଃ କିଂ ନ କୁରୁତ ନିଜାଂ ଭାସମାସାନ୍ତ୍ରଦଲେ ।
ତଚ୍ଚେଷ୍ଟା ମେ ନ ଖଲୁ ବିଫଳା କ୍ଷୀଣବୁଦ୍ଧେରପି ସ୍ୟାତ୍,
ବ୍ୟାଖ୍ୟାକାର୍ଯ୍ୟେଽମୃତରସମୟସ୍ୟାସ୍ୟ କାବ୍ୟସ୍ୟ ନୂନଂ ॥
କୃତାଞ୍ଜଲିପୁଟେନାହଂ ଯାଚେ ହରିପଦାମ୍ବୁଜେ
କ୍ଷମ୍ୟତାଂ ଧୃଷ୍ଟତା ମେଽଦ୍ୟ ବାଳିଶସ୍ୟାଳ୍ପମେଧସଃ ॥

ଓଁ ତତ୍ସତ୍ ।



# ଚୌପଦୀ ରତ୍ନାକର

ବା

## ରତ୍ନାକର ଚମ୍ପୂ

( ୧ )

ରାଗ—ପୂରବୀ

କୁନ୍ତଳକୁଞ୍ଚିତ ଭ୍ରମରକେଶା, କ୍ରୀଡ଼ାଚପଳକୁରଙ୍ଗୀଦୃଶା,
କନକକଳିତ, କେତକୀଦଳିତ, ଗଉରାଙ୍ଗୀ ଏକା ମୋ ଭରସା,
ଅରେ କୁନ୍ଦହାସି, କଳାକଲ୍ଲୋଳିନୀକେଳି କଳହଂସୀ । ୧ ।
କିଶୋରୀକୁଳକିରୀଟମଣି, କୃଶୋଦରୀ କଳକଣ୍ଠବାଣୀ,
କୋମଳ ବୟସେ, କାହ୍ନୁଁ ଶିଖିଲା ସେ, କେଳିତନ୍ତ୍ର ଜାଣିବାର ଠାଣି,
ସେ ମୋ କୁତୁକିନୀ, କାମରଣ ସମୟେ ମୋ ଅନୀକିନୀ । ୨ ।
କଳ୍ପିଲେ କଳ୍ପାନ୍ତ ଯାଏ କବି, କହାପିବ ନାହିଁ ତାହା ଛବି,
କେ ଅବା ବୋଲିବ, ବଢ଼ାଇ ନିନ୍ଦକ, ବାମାକୁ, ବଳିତ ମୋ ବାଞ୍ଛୀ
ସେ ମୋ କମଳାକ୍ଷୀ, କୋଟିକଳାକରକମନୀୟମୁଖୀ । ୩ ।
କୁସୁମବାସିନୀ ବାମା ପାଶେ, କରନ୍ତେ ସଞ୍ଚାର ମୁଁ ନିମିଷେ,
କଣ୍ଟକବନଗ୍ରସ୍ତ, ମିଳିନ୍ଦର ପରି, କଳେବର ଟୋଟିଯାଇ ବାସେ,
ସେ ମୋ କାନ୍ତସିନ୍ଧୁ, କୁଞ୍ଜନିଳୟଭୂଷା ମୋ ପ୍ରାଣବନ୍ଧୁ । ୪ ।
କାଳିନ୍ଦୀକୂଳ ସଙ୍କେତ ସ୍ଥାନେ, କିଶୋରଚନ୍ଦ୍ର ଶ୍ରୀମତୀ ଧ୍ୟାନେ,
କରନ୍ତେ ଶରଧା, ମିଳାଇଲେ ରାଧା ପ୍ରିୟ ସହଚରୀ ସେ ବିପିନେ,
ସେ ମୋ କରଭୋରୁ, କହେ ରସେ ଭଞ୍ଜବଂଶ ରାୟଗୁରୁ । ୫ ।

---

୧ । ଟୀକା—କନକକଳିତକେତକୀଦଳିତଗୌରାଙ୍ଗୀ—ଯାହାର ଦେହର ବର୍ଣ୍ଣ ସୁବର୍ଣ୍ଣ ଓ ପ୍ରସ୍ଫୁଟିତ କେତକୀ ଫୁଲର ବର୍ଣ୍ଣଠାରୁ ଅଧିକ ମନୋହର; କିରୀଟ—ମୁକୁଟ; କଳକଣ୍ଠ—କୋଇଲି; କେଳିତ—ରତି; କୁତୁକିନୀ—କୌତୁକସମ୍ପୂର୍ଣ୍ଣା; ଅନୀକିନୀ—ସୈନ୍ୟବଳ ପରି ସହାୟ; କଳାକର—ଚନ୍ଦ୍ର; କଣ୍ଟକବନଗ୍ରସ୍ତ—

( ୨ )

ରାଗ—ଚୋଖିପରଜ

ଖେଳାଖଞ୍ଜରୀଟଦୃଶା, ମୋ ବନ୍ଧୁ, ଖୋଜୁଅ ମୋତେ ତା' ବେହରଣ-
ଫୁଲ ଖଟେଇଲେ ଦବାନଶା । ପଦ ।

ଖିଲଇ ମାନକ ବିନ୍ଦୁମିତ ମଧୁ ବନ୍ଧୁକବନ୍ଧୁଅଧରୁ, ଖିଆଲରସପ୍ରସଙ୍ଗ ସଙ୍ଗିନୀଙ୍କ ଗଣେ ମୋତେ ଜଣେ କଣ୍ଠୁ । ୧ । ଖମଣିମଣ୍ଡଳ ଅସ୍ତ ହେବା କାଳ ଭରି କୋକ ଜାଗରୁକ, ଖଞ୍ଜିଥିବ ସୁନସଜଡ଼ା ମଣ୍ଡନ ମଞ୍ଚ ମୋ ଅଙ୍କପଲ୍ଲଙ୍କ । ୨ । ଖିଲ ଖିଲ କରି ଦୁଆଇବ ଶିରୀମୁଖେ କର୍ପୂର ବଡ଼ିଆ, ଖଲ ମୃଗମଦ ଚଟିବ ପ୍ରମୋଦଭରେ ଉରଜ ନଡ଼ିଆ । ୩ । ଖଣ୍ଡ ସନ୍ଦୋଦର ମଧୁର ତା ଗିର ବରତନ ବୋଲି ଭାବ, ଖୁନ୍ଦା ନ ଥିବାର ଅଲକ୍ତସାର ଚାନ୍ଦ ପଦେ ଲେଟିଥିବ । ୪ । ଖୋଟା ଲେଶ ଚାଖେ ନ ରଖି ଲଜ୍ଜାରେ ଦେନାଅ ବାଳାପ୍ରବରେ, ଖସ୍ୱପ କୁହେଟି ପରଭୃତକୁତ କନ୍ଦର୍ପ ଦେବ୍ୟ ଲେ ଗୀତେ । ୫।

( ୩ )

ରାଗ—କେଦାର

ଗୁରୁରତ୍ନାକର ହେ,

ଗଲନୀ କ ସର ଦେଖ କଣୋଷ୍ଣ କୁଳାଗ୍ରର ହେ । ପଦ ।

ଗୋପାଳଙ୍କ କୁଳଶୀଳ ଗଙ୍ଗାରୁ ଦେଖିବ ହେ, ଗୋମ୍ୟଦ୍ଦାରୁ ଦୃଶା ମଶିଲ ବ ବଂଶୀଧର ହେ । ୧ । ଗଣ୍ଡି ଅନ୍ତ ଗୁମ୍ଫତ ଦେମା ମଶୀର ଅନ୍ତର ହେ,

---

ପଦ୍ମବନରେ ଭ୍ରମଣକାରୀ; ମଳନ—ଭ୍ରମର; କାନ୍ତସିନ୍ଧୁ—ଚକ୍ଷୋଭସମୁଦ୍ର; କଳସ୍ପୃଶ—ଶୁଦ୍ଧ; କାଳନ୍ଦୀ—ଯମୁନା; କରତ୍ରୋଳ—ମଣିବନ୍ଧଠାରୁ କାଣୀ ଅଙ୍ଗୁଠି ପର୍ଯ୍ୟନ୍ତ ହାତର ବହିର୍ଭାଗକୁ କରଭ କହନ୍ତି, ଯାହାର ହେତୁ (ଅଶ୍ରୁ ଉପର) ସେହିପରି ହୋଇଥାଏ । ୮

୨ । ଟୀକା—ଶ୍ରୀକୃଷ୍ଣ ଦୂତୀ ଲଳିତାଙ୍କୁ କହୁଅଛନ୍ତି:—ଖେଳାଖଞ୍ଜରୀଟଦୃଶା—କ୍ରୀଡ଼ାରତ ଖଞ୍ଜନପକ୍ଷୀ ପରି ଅଖି ଯାହାର ଅଖି ଚଞ୍ଚଳ, ବେହରଣ—ବହାରମଣ୍ଡପ, ଖିଲଇ—ସପ୍ନେଇରେ ଖୁଆଇ, ବିନ୍ଦୁମିତ—ଏକ ବିନ୍ଦୁପରିମାଣବିଶିଷ୍ଟ, ବନ୍ଧୁକ—ରକ୍ତବର୍ଣ୍ଣ ଫୁଲବିଶେଷ, (ବନ୍ଧୁ ଅଧରର ଉପମାନ); ଖମଣି—ସୂର୍ଯ୍ୟ, କୋକ—ଚକ୍ରବାକ, ଏହି ପକ୍ଷୀର ରାତ୍ରିରେ ବିଚ୍ଛେଦ ହୁଏ; ଜାଗରୁକ—ସତର୍କ, ସନ—ଫୁଲ, ବଡ଼ିଆ—ପାନ, ମୃଗମଦ—କସ୍ତୁରୀ, ଖଣ୍ଡସନ୍ଦୋଦର—ଖଣ୍ଡନାମକମିଷ୍ଟାନ୍ନ ଭୁଲି, ବରତନ—କେତନ, ଅଲକ୍ତ—ଅଳତା, ଖୋଟା ଲେଶ—କିଛି ମାତ୍ର ମନୋଦୁଃଖ; ଉପକୃତ—ଉପକାର ।

ଗହନ କୁସୁମ ପଥ ହେବ କି ଏଥର ହେ ।୨। ଗୋପନୃପବଳକୁ ନ ଥିଲେ
ହେଲେ ଡର ହେ ଗଡ଼କୁ ନିକଟ ପଥ ଏ ତୁମ୍ଭ ନଟର ହେ ।୩। ଗେହସ୍ତ
ପ୍ରତାପୀ କଂସ ଶୁଣିଲେ ଖବର ହେ, ଗୋବର୍ଦ୍ଧନଗିରିଗୁହାପୁଟ ଯିବ 'ଜୁର
ହେ' ।୪। ଗଲେ ମୁଁ ତିଆକୁ ସବୁ ହୋଇବ ଚୋଟବ ହେ, ଗୀତେ
ବୋଲେ କବିରବି ସର୍ବସହାସୁର ହେ ।୫।

( ୪ )

ରାଗ—ରେଗୁପ୍ତ

ଘନକେଶୀ ରେ, ଘେନ ଏତେ ଗିର ମୋର ସୁଯାଚରେ । ପଦ ।
ଘସ୍ରନାଥକନ୍ୟାକୂଳଚରା ରେ, ଘୋଷାଂଗ୍ର କିଶୋର ଶ୍ୟାମ ପ୍ରସାଦରେ ।୧।
ଘୋରତର କାମକାଣ୍ଡଭୂଷାରେ, ଘାଣ୍ଟି ହେଉଅଛୁ ଦବାନଳାରେ ।୨।
ଘଟସ୍ତନୀ ତୁ ଏ କଷ୍ଟଦଶା ରେ, ଘନାଶ୍ଳେଷେ ରଖ ଯଶ ଫସାରେ ।୩।
ଘାର ହେଉଅଛୁ ଏ ଦୁର୍ଦ୍ଦଶାରେ, ଘୋର ହୋଇ ଯାଉଛୁ ସେ ରସାରେ ॥
ଘୋଟି କାମତମ ଘ୍ରତଦଶାରେ, ଘୂମାଉଅଛୁ ଟି ରସାଳସାରେ ।୫।
ଘଣ୍ଟୁଏ ଶ୍ରୀପଦ ପ୍ରଶଂସାରେ, ଘଟାଇଲେ କବିରବି ଭୂଷାରେ ।୬।

( ୫ )

ରାଗ—କାମୋଦୀ

ନିଦ ନାହିଁ ଟି ନଟବରକୁ ଟୋ, ନେହୁ ନାରଟେ ମୁଖେ ନାରକୁ ଟୋ, ନ ଲଭିବାକୁ ନବନୀଲାଙ୍ଗି ଟୋ ପଲ୍ଲବଅଧରମଧୁରନିର୍ଝରକୁ ଟୋ । ପଦ ।

ନୂଆ ନାଗରୀ କେତେ, ନାହାନ୍ତି ଏ ଜଗତେ ନଗ୍ରୁହ ନୟନାନ୍ତେ ସ୍ମରକୁ ଟୋ, ନିର୍ମଳ କେତେ ତୋର, ପୂର୍ବପୁଣ୍ୟ ନାଗର, ନ ଚନ୍ଦ୍ରେ

---

୩ । ଟୀକା— ଲଳିତା ଶ୍ରୀକୃଷ୍ଣଙ୍କୁ କହୁଅଛନ୍ତି— ଅବୁର—ମହସ୍ତ୍ର, ଗହନକୁସୁମ—ବଣଫୁଲ ପଥ ନିଷ୍ପ୍ରୟୋଜନ, ଗୋପନୃପ—ନନ୍ଦ, ଗଡ଼କୁ—କଂସ ରାଜଧାନୀକୁ, ଜୁର—ନଷ୍ଟ, ସର୍ବସହାସୁର—ଭୂମୁର ଅର୍ଥାତ୍ ବ୍ରାହ୍ମଣ ।

୪ । ଟୀକା—ଲଳିତା ରାଧାଙ୍କୁ ନିକଟରେ ଶ୍ରୀକୃଷ୍ଣପ୍ରସଙ୍ଗ ବର୍ଣ୍ଣନ କରୁଅଛନ୍ତି—ସୁଯାଚରେ—ସ୍ଥିର ଚିତ୍ତରେ, ଘସ୍ରନାଥକନ୍ୟା—ଯମୁନା, ଘୋଷାଗ୍ରେ—ଗ୍ରାମ ଅଗ୍ରରେ, ଘୋରତରକାମକାଣ୍ଡଭୂଷାରେ—କନ୍ଦର୍ପର ଭୟଙ୍କର ଅସ୍ତ୍ର ଆଘାତରେ, ଘନାଶ୍ଳେଷ—ଗାଢ଼ାଲିଙ୍ଗନ, ରସାରେ—ପୃଥିବୀରେ, ରସାଳସା—ହେ ରସିକେ ।

ତୋ ବିନା ଇତରକୁ ଗୋ । ୧ । ନିପଟ ତୁ କପଟୀ, କୋହୁ ତୁ ଅଟମ୍ଭ ହୃଷ୍ଟି, ହୃଷ୍ଟି ସିନା ତୋ ବଦ୍ୟା ଇତରକୁ ଗୋ, ନଉଙ୍କବଙ୍କ ବାଇ,ହେବାଙ୍ଗା ଏ ଲଗାଇ ଜାଣୁ ତ ମୋହନମନ୍ତ୍ରକୁ ଗୋ । ୨ । ନିସ୍ୱମ କରୁ ପରା, କାହିଁ ଶିଖଣ୍ଡେଶ୍ୱର, ତୁହି ମୁଁ ବୋଲି ଥର ଥରକୁ ଗୋ, ନୟନବାଣ ଘୋର, ନ ବାଜ ନିକି ସ୍ମର, ନୀଳଦେହରେ ଦେଲା ଜ୍ୱରକୁ ଗୋ । ୩ । ନ ଜାଣି ଅବା ଜାଣି, ବଢ଼ାଇ ଦେଲୁ ପାଣି, ବ୍ୟୋମସଞ୍ଚାରୀ କଳାକରକୁ ଗୋ, ନ ହସୁ ଜନ ଯେବେ, ଉପାୟବଳେ ଏବେ ଅଣାଅ ତାକୁ ନିଜ ଭରକୁ ଗୋ । ୪ । ନଳିନୀଦଳ ଶେଯ, କେବେ ଦେଖିଲି ଆଜ, ନୀରଦନିଭ କଳେବରକୁ ଗୋ, ନାସାଗ୍ରେ ଶ୍ୱାସ ବହେ, କବିସିନ୍ଧୁର କହେ ସମ୍ଭବର ଦୁର୍ଲଭ ଜନକୁ ଗୋ । ୫ ।

(୭)

ରାଗ—ସାବେରୀ

ଚନ୍ଦ୍ରମୁଖି ରେ, ଚଞ୍ଚଳ ରୁଚିରଚନ୍ଦ୍ରକଚୂଳ ତୁହାଁ । ପଦ ।

ରୂପ ଗୁରୁ ଚିଲ୍ଲୀ ବଲ୍ଲୀ ଭଲେ, ଗୁଞ୍ଜାଚଞ୍ଚଳଗଣ୍ଡଯୁଗଳେ, ଚଞ୍ଚଳମାନ କୁଣ୍ଡଳ ଦୋଳେ ତୁହିଁ ଦେଖୁ ନେଗୋ ହୁଏ ପରମସୁଖୀ ରେ । ୧ । ତୁମ୍ଭେ ଅଛୁ ଭାଲପଟ ରେଖା, ଚୂର୍ଣ୍ଣକେଶ କି ସୁନ୍ଦର ଦେଖା, ଚନ୍ଦ୍ରରେ ଯେକୁ ଜାଣିଛୁ ମୁଖା; ଚଞ୍ଚଳକତୁଳୀ ତାରତରଳ ଆଖି ରେ । ୨ । ଚମତ୍କାର ଦନ୍ତବାସ ସୀମା, ବିସ୍ତରିଛି କି ବନ୍ଧୁସୁଷମା, ଚନ୍ଦ୍ର କି ଲାଗୁଛି ଏ କିସ ମା, ଚାହିଁ ପଡ଼ିସିବା କି ଶୁଣୁଛ ଉପେକ୍ଷି ରେ । ୩ । ଚତୁର୍ଦ୍ଦଶଲୋକ ରମଣୀୟ; ତୁମୀକଟ କାନ୍ତି-ଜ୍ୟୋତିର୍ମୟ, ତେଲ ମଧ୍ୟରେ କି କମନୀୟ, ଚେତା ଚମକାଇ ଦେଉଅଛି ନ ରଖି ରେ । ୪ । ଚରଣରେ କବିରବି ଭାଷେ, ତୁରମୁଖଦେବ ପଦକୋଷେ ଚେଷ୍ଟୀ ହେଲେ ହେଲେ ଏ ପୁରୁଷେ, ଚିରନ୍ତନ ଜନ୍ମ ପୁଣ୍ୟ ପୁଣ୍ୟରେ ନେଖି ରେ । ୫ ।

---

ଟୀକା—ଲଳିତା ରାଧାଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଦଶା ବର୍ଣ୍ଣନା କରୁ-ଅଛନ୍ତି:—ନବନୀତାଙ୍ଗୀ—ଲହୁଣୀପରି ଯାହାର ଅଙ୍ଗ କୋମଳ (ସମ୍ବୋଧନ), ନିପଟ—ନିଷ୍ଠୁର, ଶିଖଣ୍ଡେଶ୍ୱର—ମୟୂରପୁଚ୍ଛ ମୁକୁଟଧାରୀ, ନିକି—କାମ୍ପା, କଳାକର—ଚନ୍ଦ୍ରମା, ନଳିନୀଦଳ ଶେଯ—ପଦ୍ମପତ୍ରଶଯ୍ୟାଗତ, ନୀରଦନିଭକଳେବର—ମେଘସଦୃଶ ଶରୀର (ଶ୍ରୀକୃଷ୍ଣ) । କବିସିନ୍ଧୁର—କବିସୂର୍ଯ୍ୟ ।

୭ । ଟୀକା—ଲଳିତା ଦୂରରୁ ରାଧାଙ୍କୁ ଶ୍ରୀକୃଷ୍ଣଙ୍କ ଶୋଭା ଦେଖାଇ ଦେଉଅଛନ୍ତି:—ଚନ୍ଦ୍ରକଚୂଳ—ମୟୂରପୁଚ୍ଛରେ ନିର୍ମିତ ହୋଇଥିବା ମୁକୁଟ; ଲୁଣ୍ଠିତକୁ—ଧନୁପରି ସୁନ୍ଦର; ଚିଲ୍ଲୀ—ଭ୍ରୂ; ବଲ୍ଲୀ—ଲତା, ଗୁଞ୍ଜ—ଗୁଞ୍ଜାଫଳ,

( ୭ )

ରାଗ—ମୁଖାରୀ

ଛଇଲା ମୋରେ ଛଳଉଲ ଛାଡ଼, ଛଦ୍ମନୀରେ ନିରନ୍ତର ନ ବୁଡ଼ । ପଦ ।
ଛାମୁରେ ଥିବା ସହଚରୀଗଣେ, ଛାଇ ତୁ ପରି ମୋ ଅନୁସରଣେ । ୧ ।
ଛଣା ପୀୟୂଷ ପରି କହୁ ଅଣି, ଛପାଇ ଦେଉଛୁ କାହିଁକି ପୁଣି । ୨ ।
ଛାପ ଦେଇ ଲଘୁ ନ କର ହେଳେ, ଛତି ଠେକାଇ ଦେ ତରୁଣୀକୁଳେ । ୩ ।
ଛିଦ୍ରଭେଦ ଦେଖିବାକୁ ମୋହର, ଛକେ ଛକେ ଜଗି ଅଛନ୍ତି ଚର । ୪ ।
ଛୁଇଁ ଦେଇ ନୀଳଛବି ବାସନା, ଛଟପଟ ହୋଇ ମରିବା ସିନା । ୫ ।
ଛାତି ଉପରୁ ଧୃତ ଗଲା ସରି, ଛଳ ଛାଡ଼ି କୋଳ କଲେ କିଶୋରୀ । ୬ ।
ଛନ୍ଦିଲା ଶଙ୍କା ସଖୀ ହୃଦୟରୁ, ଛ ଏଲ ମତେ କହେ ରାସ୍ୟଗୁରୁ । ୭ ।

( ୮ )

ରାଗ—ତୋଡ଼ି

ଜଳଜନୟନା ଜାତ କେତେ କରକଶ ଗୋ,
ଜୀବ ଥାଇଁ ଯାହା ଜାଣି ପ୍ରିୟଜନକ୍ଲେଶ ଗୋ । ପଦ ।

ଜମ୍ବାଳ ନୀଳଅଙ୍ଗ ଦୁଃଖଜଳେ ବୁଡ଼ି ଗୋ, ଜର୍ଜର ତମାଳଦଳ ପରି ଝଡ଼ି ପଡ଼ି ଗୋ, ଯାଉଛନ୍ତି ଜମି ଏଥି ପରାଗରେ, ଯା ଉଚିତ ତାହା ନ ଲଭିବାରେ, ଜାଣିଶୁଣି କର୍ଣ୍ଣେ ଲୋଚନେ ଶୁଣି, ଜହର ଯାହା ଗିଳିଲେଁ ନାହିଁ । ୧ । ଜପିଲେ କୋଟିକଳସ ମୂରସବ ଜୀରେ ଗୋ, ଯା ଚରଣତଳେ ଚୂମ୍ବ ହେବା ସୁରତରେ ଗୋ, ଜଗଦୀଶ ବା ନ କରନ୍ତି ସତେ, ଜପିଲେ ହେଲେ ଆମ୍ଭଙ୍କ ନିରତେ, ଜାଣିଲେ ଶୁଣି ନ ବାଗୁର ଗୁଣ, ଜନମ୍ଭ ନାହିଁ

---

ଚଞ୍ଚରୀକ—ଭ୍ରମର; ତାରତରଳ ଅକ୍ଷି—ଚକ୍ଷୁର ତାରାଦ୍ୱାରା ଚଳ ଚଳ ହେଉଥିବା ଅକ୍ଷି; ଦନ୍ତବାସ ସୀମା—ଅଧରର ପ୍ରାନ୍ତଭାଗ; ଏ କସ ମା—ଏ କ ବଚନ (ଗଞ୍ଜାମ ଅଞ୍ଚଳରେ ପ୍ରଯୁକ୍ତ) । ଚାମୀକର—ସୁବର୍ଣ୍ଣ; ଚେଲ—ବସ୍ତ୍ର; ଚତୁର୍ମୁଖଦେବ—ବିଧାତା; ଚେଟୀ—ଦାସୀ ।

୭ । ଟୀକା—ରାଧା ଶ୍ରୀକୃଷ୍ଣଙ୍କ ଶୋଭା ସନ୍ଦର୍ଶନ ପରେ ଲଳିତାଙ୍କୁ କହୁ ଅଛନ୍ତି—ଛଇଲା—ହେ ଚତୁର, ଛଳଉଲ—କପଟ ବ୍ୟବହାର; ଛଦ୍ମନୀରେ ନିରନ୍ତରେ ନ ବୁଡ଼—କପଟରୂପ ଜଳରେ ସର୍ବଦା ବୁଡ଼ନାହିଁ ଅର୍ଥାତ୍ ମୋ ସଙ୍ଗେ କପଟ ବ୍ୟବହାର କର ନାହିଁ । ଛପାଇ ଦେଉଛି—ଲୁଚାଇ ଦେଉଛି, ଛାପ ଦେଇ—ଦାଗଦେଇ ବା ଦୋଷାରୋପ କରି; ଛିଦ୍ରଭେଦ ଦେଖିବାକୁ—ଦୋଷାରୋପ କରିବାକୁ ।

ମାନସେ କରୁଣା । ୨ । ଜଗତ ଜୀବାତୁ ସେ ଜଙ୍ଗମନୀଳମଣି ଗୋ, ଜଟାଧରପରଙ୍କରେ କମ୍ପୁଛନ୍ତି ପୁଣି ଗୋ, ଯାଇ ତାଙ୍କ ଧରିବା କି ଯତନେ, ଜାତରୂପ ହୋଇ ଜମାଇ ସ୍ତନେ, ଜନେ ହସିଲେ ହସିବେ ଜଗତେ, ଜୀବନ କି ଦୁଃଖ ପାଇଲେ ସତେ । ୩ । ଜନ୍ମାନ୍ତରମାନଙ୍କର ସୁକର୍ମ ବଳରେ ଗୋ, ଜନ୍ମ ସିନା ମାତ୍ର ନନ୍ଦସୁନ୍ଦରୀ କୋଳରେ ଗୋ, ଜୁରାଇ ଘର ଗୋରସ ସମସ୍ତ, ଜଞ୍ଜାଳରେ ଅଟନ୍ତି କରି ସମ୍ମତ, ଜଳିବାକୁ ଏବେ ନାହିଁ ବଳ, ଜଗି ପାରୁଲେଁ ନାହିଁ ଏ କାଳ । ୪ । ଜ୍ୟାଗୀର୍ବାଣ କବିବର ସୂର୍ଯ୍ୟଗୁରୁ ଭଣେ ଗୋ, * ଯାହା କଲେ ଗୋପକୁ ଦନୁଜ ଜନେ ଜନେ ଗୋ, ଜୀବନ ଜନେନ୍ଦ୍ର ଥିବାରୁ ସିନା, ଜଣା ନୋହିଲା ସେ ଦସ୍ୟୁବାସନା, ଜଣିବାକୁ ହେଲେ ସେ ଉପକୃତି, * ଜାଇଁ ମୁହିଁ ଲଭି ନାହିଁ ପ୍ରୀତ । ୫ ।

( ୯ )

ରାଗ—ବଙ୍ଗଳାଶ୍ରୀ

ଝୁମୁଝୁମୁ ନାଦ ଲଳିତାଙ୍କ ପାଦମଣ୍ଡନର ଶୁଣି ତୋଷେ, ଝୁମିଝୁମି ଜାମ ଅମଳରେ ଶ୍ୟାମ ମିଳି କୁଞ୍ଜଦ୍ୱାରଦେଶେ । ୧ । ଝାଉଁଳିଲା ନବ-ତମାଳ ପଲ୍ଲବ ଅବସ୍ଥା ଶ୍ରୀଅଙ୍ଗ ରଖି, ଝରବାର ବାରି ନୟନ୍ତୁ ଚାରିବାର ଜଳପିଲେ ପ୍ରିୟସଖୀ । ୨ । ଝିମିଝିକ ଜାଲ ଖଚିରୁ ଅନଳ ହୋଇଲାଣି ଝର ଝର, ଝଷଧ୍ୱଜ-ଧନଞ୍ଜୟ ଝାସ ଜ୍ଞାନଲତାକୁ ଦେଲାଣି ସାର । ୩ । ଝାଙ୍କିନେଇ ମନ-ମଣିକି ଯା ସ୍ତନ ଝାମ୍ପୁଟରେ ରଖାଇଲୁ, ଝଟକ ତା ରଦ-ବାସରୁ ସୁଅଦ ମଧୁ ତ ନ ଚଖାଇଲୁ ।୪। ଝାଳିଦେଲୁ ନାହିଁ ଝଳ ଗୁଣ୍ଡ ମୁହିଁ ଗଣ୍ଡକୁ ମୋ ଗଣ୍ଡେ ଥରେ, ଝୋଲାଇ ନ ଦେଲି ରସକଳ୍ପବଲ୍ଲୀ ଉରୁମୂଳସ୍ଥଳ

---

୮ । ଟୀକା—ଲଳିତା ସଖୀଙ୍କ କହୁଅଛନ୍ତି:—ଜଳଜନୟନାଜାତ—ପଦ୍ମନେତ୍ରୀ ସ୍ତ୍ରୀସମୂହ, ଜମ୍ବୁବତ୍ତି ନୀଳଅଙ୍ଗ—ଇନ୍ଦ୍ରନୀଳମଣି ସଦୃଶ ଶ୍ରୀକୃଷ୍ଣଙ୍କ ଶରୀର, ଜର୍ଜରତମାଳଦଳ—ତମାଳଗଛର ପୁରୁଣା ପତ୍ର. ଧରାପଞ୍ଜର—ପୃଥିବୀମଣ୍ଡଳ, ଜୀବାତୁ—ଜୀବନ. ଜଙ୍ଗମ—ଚଳନ୍ତା, ଜଟାଧରପର—ଶିବଶତ୍ରୁ, କାମ; ଜୁରାଇ—ଚୁରି କର ବା ନଷ୍ଟକର, ଜଞ୍ଜାଳରେ—ବେଶି ଅଳି ବା ଗୋଳମାଳ କଲେ, ଜଳିବାକୁ—ପ୍ରସ୍ତାବ କରିବାକୁ. ଜ୍ୟାଗୀର୍ବାଣ—ଭୂସୁର, ବ୍ରାହ୍ମଣ ।

---

* ଆଗେ ଏ ଦେଶର ପଣ୍ଡିତମାନେ 'ଯାହା','ଯାଇଁ' ପ୍ରଭୃତି ପଦର 'ଯ' ସ୍ଥାନରେ 'ଜ' ବ୍ୟବହାର କରୁଥିଲେ । ସୁପଣ୍ଡିତମାନଙ୍କଦ୍ୱାରା ଲିଖିତ ତାଳପତ୍ର ପୋଥିରେ ସବୁଠାରେ ଏହାର ପ୍ରମାଣ ମିଳେ ।

ଭଜେ । ୫ । ଝୁମ୍ପା ଝାଲରିଆ ଅଳକ ତିଳକଶୋଭନୀର କେଶ ଦୋଳଣ, ଝଟା ଖଞ୍ଜି ବନ୍ଧୁଙ୍କ ଶତ ଚୁମ୍ବ ରଚିବା କେବେ ହରଷେ । ୬ । ଶ୍ରୁତିଅ ଶ୍ରୀକୃଷ୍ଣ ବାଦେ । ହରିହରପୁରପଦବିଭୂତ ନାରତେ, ଶୁଣି ଦେଇ ଚିତ୍ତ ଏବେ କବିବର ସ୍ୱୟଂ ଗୁରୁ ବୋଲେ ଗୀତ । ୭ ।

( ୫୦ )

ରାଗ—ବରାଡ଼ି

ନୟନେ ନମିଷେ ନାଦ, ନାରଣି ତ ମୁଁ ତୋ ପଦ-ମଞ୍ଜୀର-ଶିଞ୍ଜିତ ଶିଞ୍ଜି କାନ, ନାଚରଣି ବସିଛୁ ପଥ, ନ ପୂରେ ମୋ ମନୋରଥ, ହୋଇଲୁ ତ ଦୁଃଖର ନିଦାନ ରେ; ନତଦେହା, ନିର୍ଦ୍ଧୂତା ପଙ୍କଟ ହୋଇଲୁ, ନ କହିଲୁ ତ କନକ-ନିନ୍ଦା ନଭସନ୍ଧାଧିକ, ତଉରାଙ୍ଗୀ ଶ୍ରୁତି କ ବୋଇଲୁ ରେ । ୧ । ନଉକରଗଣେ ଜଣେ, କର ମୋତେ ଅନୁକ୍ଷଣେ, ରଖିବାକୁ ହଲଚିଙ୍କି ସହ୍ୟ ନାରଣ ଭାରତୀ ଅବା, ଜଳଫିଲ ନବ-ଜବା,-ଦଶନ-ବସନା ପ୍ରାଣସହି ରେ, ନତଦେହା, ନିଃଶଙ୍ଗ କର କହ କହ, ନ ରଖିବାକୁ ନିର୍ଲ୍ଲଜ୍ଜ, ପ୍ରାଣକୁ ମୁଁ ହେବ ସଙ୍ଗ, ପେଟିବ, ନାହିଁ ତାଲା ଅନୁଗ୍ରହ ରେ । ୨ । ନୀପ ନିକୁଞ୍ଜ ନିକଟ, ନଟନ କେଳିଲମ୍ପଟ ହୋଇ ହରୁଥିଲ ସୁରୂପ କାଳ, ନିର୍ଘୋଷରେ ବନ୍ଦ ନେନ୍ତ୍ର, ଅନିମିଷ ପଙ୍କଜନେତ୍ର, ଝାଳିଲ ମୋ ସ୍ୱର୍ଣ୍ଣଲତା ମୂଳ ରେ, ନତ ଦେହା, ନିର୍ଯାଣ ସମ୍ପୂ ହେଲେ ଅପି, ନ ସଙ୍ଖୋଳି-ଅଙ୍କୀରତ, ନେଇ ତ ରତ୍ନପୁରତ ନିଶି କରବଳ-ଦରହାସି ରେ । ୩ ।

---

୯ । ଟୀକା—ଲଳିତା କୁଞ୍ଜ ନିକଟରେ ଉପସ୍ଥିତ ହୁଅନ୍ତେ ଶ୍ରୀକୃଷ୍ଣ ତାଙ୍କୁ କହୁଅଛନ୍ତି:—ପାଦମଣ୍ଡନ—ପାଦର ଅଳଙ୍କାର, ଝୁମିଝୁମି—ଘୁମାଇ ଘୁମାଇ, ଝିମିଟକ—ମୁଦ୍ରିକ, କଳଶତ—ଶତପୂର୍ଣ୍ଣ, ଅନଳ—ଅଧିକ, ଝଷଧ୍ୱଜଧନଞ୍ଜୟ ଝାସ—କନ୍ଦର୍ପରୂପ ଅଗ୍ନିଦାହ, ସମ୍ପୁଟ—ଫଟୁଆ, ଝଟଡ—ଚଞ୍ଚଳ, ରଦବାସ—ଅଧର, ଝଲ—( ବିଶେଷଣ ) କାନ୍ତିମତୀ, ଝୁଲାଇବା—ହଲାଇବା, ଝଟ୍କଳତ କରଦେବା; ରସକଳ୍ପବଲ୍ଲୀ—ରସକଳ୍ପଲତା ରୂପିଣୀ, ଝୁମ୍ପାଝାଲରିଆ—କେଶର ଅଳଙ୍କାର, ଝଟା—ଫୁଲଟେଣ୍ଡା, ହରିହରପୁରପଦବିଭୂତ—ଚନ୍ଦ୍ରଚୂଡ଼ର ସଙ୍ଗତି ।"

୧୦ । ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି:— ମଞ୍ଜୀର—ନୂପୁର, ଶିଞ୍ଜିତ—ଅଳଙ୍କାରଧ୍ୱନି, କନକନିନ୍ଦାନଭସନ୍ଧାଧିକ—ସୁବର୍ଣ୍ଣକୁ ନିନ୍ଦା କରିବାରେ ଅଧିକ ନିପୁଣ ( ନଉଧରା—ନିପୁଣ ), ନଉକର—ଶୁକର, ସହ୍ୟ—ସ୍ୱୀକାର, ନିଷ୍ଠୁରଭାରତୀ—ନୈଷ୍ଠୁର୍ଯ୍ୟପୂର୍ଣ୍ଣ କଥା, ନବ-ଜବା-ଦଶନବସନା—ନୂତନମନ୍ଦାର ଫୁଲପରି ଅଧର ଯାହାର, ନୀପ—କଦମ୍ବ, ନେତ୍ରଅନିମିଷପଙ୍କଜ—ନିମିଷଶୂନ୍ୟ ଚକ୍ଷୁରୂପ ଶର, ନିର୍ଯାଣ—ପ୍ରାଣବାୟୁର ଦେହତ୍ୟାଗ, ନିର୍ଜରନଗରୀ—ଅମରାବତୀ,

ନନ୍ଦନ ନାଗରୀ ନନ୍ଦ-ନନ୍ଦନ ମନ ଆନନ୍ଦ, ନନ୍ଦୀ ବନେ ମଞ୍ଜାଇଲୁ ଭୋଳ, ନାଗିଲ ଲେକେ ଏ ଗିର, ନଠିକ ନଗୃଇବାର, ଯଶ ନ ଲୁଚିଲା ଦେଲି ଚେଲି ରେ, ନଭଦେହା, ନାଦା ଅରବନ୍ଦାକ୍ଷୀ ପାଇଲା, ନର୍ଜରନଗକ୍ଷମଣି-କୁଛିମେ ଚଢ଼ାଇ ପୁଣି ନିଃଶ୍ରେଣୀଠି କାଟି ପକାଇଲା । ୪ । ନବଗାତ୍ରୁଁ ମୁକୁମାର, ଧଳେ ଦେହଟି ଗ୍ରମାର, ନାରପଗଧ ନାସ୍ତୁର ମନ, ନାସ୍ତିକେଳ ଫଳଲୀଲା ଉରୋଜେ ବହୁଛୁ ବାଲା, ସେପର ନୃହଇ ଅପଘନ ରେ, ନଭଦେହା, ନ ଘେନାଲ୍ଲ ଦୁଃଖ ଲବେ ହେଲେ, ନ ଘେନୁ ଘେନୁ ଶରଣ ତାହାର ଶ୍ରୀଚରଣେ କବରବ ବସୁଗୁରୁ ବୋଲେ ରେ । ୫ ।

( ୧୧ )

ରାଗ—ଦେଶାକ୍ଷ

ଛିକାର ଦୋଷକୁ ଗ୍ରମା କେଡ଼େ ରୁଷା ରୁଷିଲ୍ଲ ରେ । ପଦ ।

ଟୋପରେ ପକାଇ ରୋଷେ, ନିଗ୍ରହ ଶଙ୍ଖ ବଶେଷେ, ମୋ ସୁଗ୍ରୀବଗକୁ ତ ସେ ଧରାଭୂଷା ଭୂଷିଲ୍ଲ ରେ ॥ ଠାକର ମାର ମୋ ଆଶା, ମୁଣ୍ଡେ ଖଞ୍ଜଗ୍ରଠ-ଭୂଷା, ପରପନ୍ତୀ ଲେକହସା, କରବାକୁ ବସିଲ୍ଲ ରେ । ୨ । ଥିକିଏ ହେଲେ ଛବେକ, ନ କର ସେବକ-ବେକ, କରଭ ବୋଲି ଦର୍ପକ ବାରୁଣକୁ ପେଷିଲ୍ଲ ରେ । ୩ । ଠମକ ଯେ ବାଜେ ବ୍ରଜବଜାରେ ଦସ୍ୟାଳୁରାଜ ବୋଲି ମୋ ଦନ୍ତରୁ ଆଜ, ଦାଣ୍ଡକୁ କ ଦଶିଲ୍ଲ ରେ ।୪। ଟୋକୀଏ ଥିଲେ ଗହଣେ, ଠାକ ଉରୋଜ ଗ୍ରହଣେ, ଚିପି ଦେଲି ନଖ ସେହ କଥାକୁ କ ଘୋଷିଲ୍ଲ ରେ ॥ ଟେକାନ୍ତା ବବେକବତୀ, ମଣ୍ଡଳେ ବଳଯଛନ୍ତ, ବୋଲେ କବରବ ସବୁ ଦୋନ୍ଦେ ଭୂଷିଲ୍ଲ ରେ । ୬ ।

( ୧୨ )

ରାଗ—ମୁଖାବରୀ

ଠଣ ରନ୍ଧ୍ରମୁହିଁ ରେ ଠଉରବ କେହ୍ନ ରେ । ପଦ ।

ଠକ ମୁଁ ବୋଲେ ମାନସେ, ଠୁଳ କଲେ ଶଙ୍କା ଲେଶେ । ୧ । ଠ ବଡ଼ିନ୍ୟାସ୍ତନେ ନଖ, ଠୁକଲେ ହେଲେ ବମୁଖ ।୨। ଠାର ନାହିଁ ନୟନାନ୍ତେ,

ମଣିକୁଟ୍ଟିମ—ରତ୍ନନିର୍ମିତ ପ୍ରାସାଦ; ନିଃଶ୍ରେଣୀ—ନଶୁଣି ବା ସିଢ଼ି; ଅପଘନ—ଦେହ; ନବଗାତ୍ରୁଁ—ଲହୁଣିଠୁଁ ।

୧୧ । ଠୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି:—ଟୋପରେ—ଖୋଳରେ, ନଗ୍ରହ—ତାଡ଼ନା ( ଅନୁଗ୍ରହର ବପରୀତ ), ସେ ଧରାଭୂଷା—ସେହ ପୃଥିବୀର ଅଳଙ୍କାରରୂପିଣୀ, ଭୂଷିଲ୍ଲ—ଅଘାତ କଲ୍ଲ, ଠାକରମାର—ଅଘାତ କର, ପରପନ୍ତୀ—ଶତ୍ରୁ, ଦର୍ପକ—କନ୍ଦର୍ପ, ଠମକ—ଧେଣ୍ଡୁରା, ବଳଯଛନ୍ତ—ଧଳାଛନ୍ତ ।

ଠାକୁରଙ୍କ ଗୁଣ ମୋତେ । ୩ । ଠାଣେଦାର ରଣରଣ, ଦୋ କର ନେବ ମୋ ପ୍ରାଣ । ୪ । ଠ ପର ଜଗତ ଦୃଶେ, ଠିକେ କବିରବି ଭାଷେ । ୫ ।

( ୧୩ )

ରାଗ—କାମନଗୌଡ଼ା

ଡାକିଲା କୋକିଳା ଲୀଳା-ସୂନ-ଉପବନରେ

ଡମରୁରୁଚିରମଧ୍ୟା ଖେଳିଲା ମୋ ମନରେ । ପଦ ।

ଡାଳନ୍ତେଳ କିଶଳୟ, କରେ କରି ଅଭିନୟ, ନାଚିଲା ବଲ୍ଲୀଚୟ ଚନ୍ଦନ ପବନରେ । ୧ । ଡଗର ବୁଲୁଚ୍ଛି ସ୍ମର, ବିଷାଇ ବିଷମ ଶର, ଧରିଛି ପରାଗ-ଗର ଘୁଁ ବାକ ଜୀବନରେ ।୨। ଡାଳିମ୍ବବୀଜରଦନା, ଏ ଦନେ ହୋଇ ବିମନା, କଲା ତ ଉତ୍ସବ ମନା ଲତିକା ଭବନରେ ।୩। ଡିମ୍ଭଚକିତ କୁରଙ୍ଗ-ନୟନାର ନିକ ଭଙ୍ଗ—ଉନ୍ମାଦ-ରବ ତରଙ୍ଗ ପଡ଼ୁ ନାହିଁ କାନରେ । ୪ । ଡରୁ ନାହିଁ କି ସେ ଭୀରୁ, ସ୍ମରକର-କରତରୁ କବିରବି ରାୟଗୁରୁ ଚଳିଲେ କବନରେ । ୫ ।

( ୧୪ )

ରାଗ—ଶଙ୍କରାଭରଣ

ଢାଳି ଗୃହିଲା ରେ, ଢାଙ୍କି ପକ୍ଷ୍ମ କି ଭଙ୍ଗୀରେ ରହିଲା ରେ । ପଦ ।

ଢବାତନାବୀଦେହଲୀ ସମୀପରେ ପ୍ରିୟଆଳୀ, ସମାଜେ ବିରାଜି ବର ମହିଳା ରେ ।୧। ଢୁଳାଇଲା ପରି କାମ-ଅମଳଲିଗିରୁ ଶ୍ୟାମ ଜଳଜନୟନେ

---

୧୨ । ଟୀକା—ଶ୍ରୀକୃଷ୍ଣ ଲଳିତାଙ୍କୁ କହୁଅଛନ୍ତି:— ଠଣ—ଶୋଭା, ଠଣଚନ୍ଦ୍ରମୁଖି—ହେ ଶୋଭାପୂର୍ଣ୍ଣ ଚନ୍ଦ୍ରମୁଖି ! ଠଉରିବ—ସ୍ଥିର ହୋଇ ରହିବ, ଠୁଳ କଲେ—ଏକତ୍ର କଲେ, ଠାଣେଦାର—ଜମାଦାର, ଯେ ଜୋର ପ୍ରକାଶ କରେ; ରଣରଣ—କନ୍ଦର୍ପ, ଠ ପର—ଶୂନ୍ୟ ।

୧୩ । ଟୀକା—ଶ୍ରୀକୃଷ୍ଣଙ୍କର ରାଧାଗତ ଅନୁସ୍ମୃତି:—ଲୀଳାସୂନ-ଉପବନରେ—କ୍ରୀଡ଼ାପୁଷ୍ପ ଉଦ୍ୟାନରେ, ଡମରୁରୁଚିରମଧ୍ୟା—ଡମରୁପରି ଯାହାର କଟି କ୍ଷୀଣ, କିଶଳୟ—ନୂଆପତ୍ର, ବଲ୍ଲୀଚୟ—ଲତାସମୂହ, ଡଗର—ଘୋଷଣା-ପ୍ରଚାରକ, ବିଷାଇ—ବିଷଯୁକ୍ତ କରି, ବିଷମଶର—ପଞ୍ଚବାଣ, ପରାଗଗର—ପୁଷ୍ପ-ରେଣୁରୂପ ବିଷ, ଘୁଁ ବାକ୍—ଯେ ଘୁଁ ଘୁଁ ଶବ୍ଦ କରେ ଅର୍ଥାତ୍ ଭ୍ରମର, ଡିମ୍ଭ—ଶିଶୁ, କବନ—କବଡ଼ା ।

୧୪ । ଟୀକା—ପକ୍ଷ୍ମ—ଆଖିପତାବାଳ, ଢବାତନାବୀ—କୋଠାଘର ଝରକା, ଦେହଲୀ—ଚୌକାଠର ତଳଭାଗ, ଢୁଳାଇଲା ପରି—ଘୁମାଇଲା ପରି,

ଲୀଳା ବହିଲ ରେ । ୨ । ଭୁକାଇ ମୋ ଅପଘନ, ଶ୍ରୀଅଙ୍ଗରେ ତା ଅଧୀନ, ହୋଇବାକୁ ସମସ୍ତ ନ ସହିଲ ରେ । ୩ । ତୋକୁଟିଏ ତା ପଲ୍ଲବ, ଅଧରରୁ ମଧୁ ଦ୍ରବ, ଚୋକିବା ଏବେକ ଲବ ନୋହିଲ ରେ । ୪। ଏକା ପ୍ରକାଶନ୍ତା ମତେ, ଧନ୍ୟ ବୋଲି ଏ ଜଗତେ, କବି-ଚନ୍ଦ୍ରଭାନୁ ଗୀତେ କହିଲ ରେ ।୫।

( ୧୫ )

ରାଗ—ପୂରବୀ

ଅନାଇ ନାହିଁ ନାଗରମଣିକି ମୁଁ ତାଳେ । ପଦ ।

ଅନେକ ପ୍ରକାରେ ପ୍ରେମ, ଅଚରେ ଅତସୀଶ୍ୟାମ, ଅଙ୍ଗୀକାର କରି ନାହିଁ କାଳେ । ୧ । ଅହିତ ଜନ ନ ସହେ, ଅପବାଦ କଥା କହେ, ଅଛି ଏହା ଲେଖା ମୋ କପାଳେ ।୨। ଅମୃତ ବାଣୀ ବିଳାସେ, ଅନଙ୍ଗ ମୋହନ ବେଶେ, ଉପବନ ଅୟନ ଓଗାଳେ । ୩ । ଆଜ କେତେ କେତେବେଳେ, ଅମ୍ଳାନ କେତକୀଦଳେ, ଅରଜି ବନାଇ ବନୁ ଗୃହେ । ୪ । ଅଙ୍କିତ ଜାଣି କାଳ, ଅଙ୍କିତ କରେ ମୋ ଗଳ, ଆପଣେ ଗୁନ୍ଥିବା ଫୁଲମାଳେ ।୫। ଅଙ୍ଘ୍ରିକି ମୋ କବିଭାନୁ, ଅଟକ୍କ ଭଜିବା ଦନୁ, ଅଲଙ୍ଘ୍ୟ କରି ମୁଁ ପରିପାଳେ । ୬ ।

( ୧୬ )

ରାଗ—କଳହଂସକେଦାର

ତମାଳତଳେ ନ ଗୃଲେ ରେ ମୋ ଅଭିନ୍ନା, କେତେ ଦୂର ଯାଏ କାହିଁ ॥
ତଳକୁ ତାଳକ ତୁଳି କଲେ ଲୋକ ତଥ୍ୟ ମଣୁଥାଇ ତାହିଁ । ୧ ।
ତରକିବା କଥା ତ୍ରିକାଳ ସର୍ବଥା ତତ୍ତ୍ୱ ତୁ ଘେନିବୁ ନାହିଁ । ୨ ।
ତୁ ତ ସୁବିବେକୀ, ତୁଳ ମୁଁ କେବେ କି, ତହିଁ ଥିବ ଅବଗାହି । ୩ ।

---

କାମଅମଳଲଗିରୁ—କନ୍ଦର୍ପରୂପ ମାଦକଦ୍ରବ୍ୟର ନିଶାରୁ, ଶ୍ୟାମକଲଜନୟନେ—ନୀଳଇନ୍ଦୀବର ନେତ୍ରରେ, ଭୁକାଇ—ସଂଯୋଜିତ କରି ବା ପ୍ରବେଶ କରାଇ, ଅପଘନ—ଦେହ, ଚନ୍ଦ୍ରଭାନୁ—ସୂର୍ଯ୍ୟ ।

୧୫ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:—ତାଳେ—ଥରେ, ଅତସୀଶ୍ୟାମ—ଅତସୀ (ଫେସି) ଫୁଲପରି ଶ୍ୟାମଳବର୍ଣ୍ଣ, ଅହିତଜନ—ଦୁର୍ଜନ-ମାନେ, ଉପବନ ଅୟନ ଓଗାଳେ—କୁଞ୍ଜବନକୁ ଯିବା ବାଟର ଆଡୁଆଳରେ, ଅରଜି—ପ୍ରେମପୂର୍ଣ୍ଣ ନିବେଦନପତ୍ର, ଅଙ୍ଘ୍ରି—ପାଦ, କବିଭାନୁ—କବିସୂର୍ଯ୍ୟ ।

୧୬ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:— ତମାଳତଳେ ନ ଗୃଲେଁ ରେ ଅଭିନ୍ନା—ହେ ଅଭିନ୍ନହୃଦୟା, କୃଷ୍ଣଙ୍କ ରୂପ ସଙ୍ଗେ ସାମ୍ୟ ଥିବାରୁ ମୁଁ ତମାଳଗଛ ତଳରେ ମଧ୍ୟ ଗୃଲେ ନାହିଁ; ତୁଳ—ତୁଳନା କରି, ତପରେ

ଉପନେ ଶୀତମାଅଙ୍କ ଧଅନ୍ତି ମା ତୁଚ୍ଛା ଲୋକନାମେ ବାହ୍ୟ । ୪ ।
ତୁଟାଏ କ କାଉ ତୁଣ୍ଡର ଶୀରଭ ତାମସା ଟାପର ଟାହ୍ୟ । ୫ ।
ଉତ୍ତ କାରଣେ କବିତରଣୀ ତା ଭାବ ଉଲ୍ଲାସ ଯେ ଯାକୁ ନାହିଁ । ୬ ।

( ୧୭ )

ରାଗ—ଧନାଶ୍ରୀ

ଥରେ ଏକାନ୍ତରେ ସିନା କହିଥିଲି ସଙ୍ଗୀକ,
ସ୍ଥାପିତ ନ କର ଦୁର୍ଜନଙ୍କ ଅଗେ କହି କ । ପଦ ।

ଥିଲାଠାରେ ବିଶ୍ୱାସ କପଟ ପାରେ ରହିକ, ଥୋଇବା ହୃଦୟେ ଖ୍ୟାତ ପୂର୍ତ୍ତିକରେ ମଙ୍ଗୀ କ । ୧ । ସ୍ଥାବର ଜଙ୍ଗମେ ଶ୍ୟାମ କାହା ହୃଦେ ନାହିଁ କ, ଥିଲି ମୋ ଲମ୍ପଟପଟେ ଏ ଅଯଶ କାହିଁକ ।୨। ଆପିପଣ ଥିବାର ସଜ୍ଜନଗୁଣ ଏହିକ, ସ୍ଥାୟୀ କଲି ବିଷାର୍ଜନ କ୍ଷୀର ଦେଇ ଅହିକ ।୩। ସ୍ଥିର ପୀରତିବଲ୍ଲୀକି ଦମ୍ଭାନଳେ ଦହିକ, ସ୍ଥଳଆଳୀମାନଙ୍କର ଏ ଦ୍ୱେଷକୁ ମୁହିଁ କ ॥ ସ୍ଥିରାଚକେ ଜଣେ ବୋଲି ଜାଣଇ ସୁମୁହାଁ କି, ଅରୁଥାଏଁ ଟି ମୁଁ କବିରବି ସାକ୍ଷୀ ଉହିଁକ ॥

( ୧୮ )

ରାଗ—ହସନି

ଦାରହାସି, ଦମ୍ଭତୋୟମୟ ଜଳରାଶି ରେ । ପଦ ।

ଦୂରୁ ହେଲେ ନଟବର, ଦେଖା କେଭେ ନାହିଁ ତୋର, ଦଶନବ୍ରଣ ଅଧର,-ଦଳେ ବଳସେ କାହାର, ଦୟାବତ, ତୁ କେଡ଼େ ସାହସୀ ରେ ।୧। ଦର୍ପକଦର୍ପଦଳନ, ଦବ୍ୟ ପରିମଳ ଧନ, ଦେହରେ ଦୋର୍ମୂଳେ ସ୍ତନ-ଦ୍ୱୟରେ ନଖଲାଞ୍ଛନ, ଦଇବ କ, ଦେଇଗଲା ଆସି ରେ । ୨ । ଦବାନଶି ତ ମୁଁ ତୋର, ଦେହ ବାହୁଲ୍ୟ ଯେ ପର, ଦିନେଶତନୟା ତୀର, ଦ୍ରୁମଦୋହଦ-

ଶୀତମାଅଙ୍କ—ଏ ସଂସାରରେ ଏପରି ଲୋକ ଅଛନ୍ତି ଯେଉଁମାନେ ସୂର୍ଯ୍ୟତେଜରେ ମଧ୍ୟ ଶୀତଳତା ଦୋଷ ଆରୋପ କରିପାରନ୍ତି; ଟାହ—ଥଟା, କବିତରଣୀ—କବିସୂର୍ଯ୍ୟ ।

୧୭ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:—ସ୍ଥାପିତ ନ କର—ହୃଦୟରେ ଲୁଚାଇ ନ ରଖ (ଗ୍ରାମ୍ୟ ପ୍ରୟୋଗ) । ଥୋଇବାହୃଦୟରେ—ଯେ ନିଜ ହୃଦୟରେ ବିଶ୍ୱାସକୁ ସ୍ଥିର କରି ରଖେ, ଅହିକ—ସର୍ପକୁ, ପ୍ରୀତିବଲ୍ଲୀ—ପ୍ରୀତିରୂପା ଲତା, ଦମ୍ଭାନଳ—ଛଳନାରୂପ ଅଗ୍ନି, ସ୍ଥିରାଚକ—ପଣ୍ଡିତାସମୂହ ।

୧୮ । ଟୀକା—ସଖୀ ରାଧାଙ୍କୁ କହୁଅଛନ୍ତି:—ଦମ୍ଭତୋୟମୟ ଜଳରାଶି—ଛଳନାରୂପକ ଜଳପୂର୍ଣ୍ଣ ସମୁଦ୍ର ଅର୍ଥାତ୍ ତୁ ବଡ଼ କପଟାଚାରିଣୀ । ଦର୍ପକ ଦର୍ପଦଳନ—କନ୍ଦର୍ପଗର୍ବଖର୍ବକାରୀ, ପରିମଳ—ସୁବାସ, ଦୋର୍ମୂଳ—ବାହୁମୂଳ;

ନିକର, ଦରବାରେ, ହେଲୁଣି ଦୋଭ୍ରଷୀ ରେ । ୩ । ଦୁଇ ଚରଣସାରସେ ଦେବାର ଶିଖଣ୍ଡ ଶେଷେ, ଦେଖିଲ୍ ଯାବକ ରସେ, ଦୋଷ କି କିଶୋରର ସେ, ଧ୍ରୁବ କବିରବି ଅଛୁ ଭୃଷି ରେ । ୪ ।

( ୧୯ )

ରାଗ—କେଦାର

ଧିକ ଧିକ ମନ୍ଦବିଧି ଅପସନ୍ଦ ନାରୀଜନ୍ମ ନ ନିବାରିବାର,
ଧିକ ଅବିବେକ ମୋ ପରି ଗୁଡ଼ାକ କେଡ଼େ ନିର୍ଲଜ ସେ ପାରିବାର । ପଦ ।
ଧମକ ସ୍ଫୁରଣ ହୁଅନ୍ତେ ତରୁଣୀଚରଣୁ ଅନ୍ୟକୁ ନ ଲଭ ଶରଣ ଗୋ,
ଧୁଁଇ ଆଚରଣ ଧୁରନ୍ଧର ଗୁଣ ଗୃହୁଁ କ୍ଷଣରେ ବାହାରିବାର । ୧ ।
ଧାଇଁ ଧାଇଁ ଦୂତୀମନ୍ଦିରକୁ ରତି ପଦେ ଲକ୍ଷାଦ୍ୟୁତ ନ ଲଭଇ ସ୍ଥିତ,
ଧାତାବଶୁଁ ପ୍ରୀତି ଘଟିଲେ କଳତ୍ର ବହୁ ଚେଲାଞ୍ଚଳ ମାରିବାର । ୨ ।
ଧରି ଧନୁର୍ବାଣ ସ୍ମର ସତେ ପ୍ରାଣ ନେବା ପରି ଡରି ଧରି ଦନ୍ତେ ତୃଣ,
ଧରାରେ ତରୁଣ-ଶିର ଆବରଣ ଲୁଟାଇଲେ ନ ପଶୁରିବାର । ୩ ।
ଧରି ଧରି ବଳେ କରୁଥିଲେ କୋଳେ ଧରାଧରୁଁ ବଳେ ଧରଯ୍ୟ ନିଷ୍ଠଳେ;
ଧାନେ ଉଣା ଭୁଲେ ହେଲେ ସ୍ନେହ ଖେଳେ କ୍ଷଣକେ ବିନୟ ଗୃହିବାର ।୪।
ଧନ୍ୟ ଧୃତସାର ସୁପୁରୁଷଙ୍କର ପ୍ରସାଦୁ ସଂଭୂତ ସେ ଶଙ୍କରଙ୍କର,
ଧରଣୀନିର୍ଜର କବିରବି ସ୍ମର ଗୁଣି ତାଙ୍କୁ ନ ଜୁହାରିବାର । ୫ ।

( ୨୦ )

ରାଗ-ସିନ୍ଧୁକାମୋଦୀ

ନାହିଁ ନାହିଁ ନିଖିଳ ଜଗତେ ଗୋ ନ ଦିଶଇ ଉପମାନ,
ନବ ନୀରଦ ନୀଳମଣି ଅତସୀଶ୍ୟାମସୁନ୍ଦର ସମାନ ଗୋ । ପଦ ।
ନିରେଖୁଥାଇ ଏ ନଗରେ ଯେ ନିତି ବରତରୁଣଙ୍କ ଶିରୀ,
ନୟନକୁ ଲେଶେ ନ ରୁଚଇ ତ ସେ ନୂଆ ନାଗରଙ୍କ ପରି । ୧ ।

---

ଦିନେଶତନୟା—ଯମୁନା, ଦୋହଦ—ଅଭିଳାଷ, ଦୋଭ୍ରଷୀ—ମିଥ୍ୟାବାଦିନୀ, ଯାବକରସ—ଅଳତାରସ, ଚରଣସାରସ—ପାଦପଦ୍ମ ।

୧୯ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି:—କେଡ଼େ ପାରିବାର—କେଡ଼େ ସାହସିକ; ଲକ୍ଷାଦ୍ୟୁତ—ଅଳତାରଞ୍ଜିମା; ଚେଲାଞ୍ଚଳ ମାରିବାର—କାନି ପଣତରେ ନିଷେଧ କରିବା; ଗୃହିବାର—ଗୃହିଥର; ତରୁଣଶିର ଆବରଣ—କୃଷ୍ଣ; ଧରାରେ ଲୁଟାଇଲେ—ପୃଥିବୀରେ ଗଡ଼ିଲେ; ଶଙ୍କରଙ୍କର—ମଙ୍ଗଳମୟ ଶିବଙ୍କର; ଧରଣୀନିର୍ଜର—ବ୍ରାହ୍ମଣ ।

ନତନୁ ନିବହ ଭଜି ଯେବେ ଦେହ ନାନା ବିଳାସ ବହିବ,
ନଳିନ-ପେଶଳ ତା ଚରଣତଳ ନିଉଁଛଳି ଭଲି ହେବ । ୨ ।
ନତ ନୋହିବା କୁଳଜାତ ନବୋଢ଼ା ନ ରସି ପଶିବ କାହିଁ,
ନକ୍ଷତ୍ରନାଥ-ନିକୁରମ୍ବବିଜୟ-ସନ୍ନଦ୍ଧ ଶ୍ରୀମୁଖ ଚୁହିଁ । ୩ ।
ନର୍ମେ ମର୍ମଭେଦୀ ଚିଲ୍ଲୀ ଚୁହୁଚୁପ ନଚୁହଇ ଜାଣଇ ସେହି,
ନିଃଶେଷ ତ ବାଳି ନୋହିବାରେ ତୁଳି ତାର ଲୋକେ ନାହିଁ କେହି । ୪ ।
ନିନ୍ଦିଲେ ନିନ୍ଦିବେ ନରେ ପଛେ ଏବେ ନିଶ୍ଚୟ କହୁଛୁ ଜାଣ,
ନ ଚୁମ୍ବିଲେ ତାର ମଧୁର ଅଧର ନ ଠଉରଇ ମୋ ପ୍ରାଣ । ୫ ।
ନୋହିଲୁ ଯେବେ ତୁ ଏ ଘଟନା ହେତୁ ତୋ ନାମେ ତେଜିବି ଦେହ,
ନିୟମ କରି କହୁଛି କବିରବି ଏଥି ନ ଘେନ ସନ୍ଦେହ । ୬ ।

( ୨୧ )

ରାଗ—ମନୋରମା

ପ୍ରୀତପରି କେ ସୁଆଦ ଗୋ,
ପୀୟୂଷ ତୁଲେ ଯା ବାଦ ଗୋ । ପଦ ।

ପହିଲୁ ଗଞ୍ଜାଇ ଗରବ ଗଞ୍ଜାଇ ସମ୍ଭବାଏ ପରମାଦ,
ପଞ୍ଚଶରଶାଣ-କରନିକରକୁ ବଳେ ତାହା ଆହ୍ଲାଦ ଗୋ । ୧ ।
ପଡ଼ିଗଲେ କାନେ ଜନ୍ମାଏ ବିବେକ ହଜାଇ ଦେବା ଉନ୍ମାଦ ଗୋ,
ପ୍ରିୟଜନ ଯିବା ଆସିବା ସମୟ ଚରଣମଣ୍ଡନ ନାଦ ଗୋ । ୨ ।
ପୁଷ୍ପଶରସିନ୍ଧୁ କେଳିତରି କି ସେ ପଛରୁ ପେଲିବା ବାଦ,
ପସନ୍ଦ ତାହାକୁ ଅରଜିବା ପାଇଁ ଧରିଲେହେଁ ନୀଚ ପାଦ ଗୋ । ୩ ।
ପ୍ରାପତ ନୁହେ ସେ ପ୍ରାଣୀକି ନ ଥିଲେ ପରମେଶ୍ୱର ପ୍ରସାଦ ଗୋ,
ପୟଃପରିଣତ ମଧୁରସା ସିତ ଶର୍କରା କେତେ ବେଷାଦ ଗୋ । ୪ ।
ପରପତ୍ନୀ ସ୍ୱତ କରି ଯେଉଁ ସତୀ ଅପାଦନ୍ତି ପରିବାଦ ଗୋ,
ପୃଥ୍ୱୀଦେବ କବିରବି ରସିଗୁଳୁ ବୋଲେ କରୁ ଫରିଆଦ ଗୋ । ୫ ।

---

୨୦ । ଟୀକା—ସଖୀ କହୁଅଛନ୍ତି—ନବନୀରଦ—ନୂଆମେଘ, ଅତସୀ—ଫେଶି ଫୁଲ, ନତନୁନିବହ—ଅନେକ କନ୍ଦର୍ପ, ନଳିନପେଶଳ—ପଦ୍ମପରି କୋମଳ ବା ସୁନ୍ଦର, ନିଉଁଛଳି—ବନ୍ଦାପନା, ନବୋଢ଼ା—ନବଯୁବତୀ, ନକ୍ଷତ୍ରନାଥ—ଚନ୍ଦ୍ର, ନିକୁରମ୍ବ—ସମୂହ ବିଜୟସନ୍ନଦ୍ଧ—ଜୟ କରିବାକୁ ଉଦ୍ୟତ, ନର୍ମେ—କୌତୁକରେ, ଚିଲ୍ଲୀ—ଭ୍ରୂ ।

୨୧ । ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି—ପୀୟୂଷତୁଲେ—ଅମୃତ ସଙ୍ଗେ, ଗଞ୍ଜାଇ—ମାଦକଦ୍ରବ୍ୟ, ପଞ୍ଚଶରଶାଣକରନିକର—ପୂର୍ଣ୍ଣିମାର ଚନ୍ଦ୍ର-

( ୨୨ )

ରାଗ—ରେଗୁପ୍ତ

ଫେରି ଯା ଗଲେ ଗୋ,

ସଖି ଫାଟିଲା ମୋ କରମ ଜାଣିଲି ଭଲେ । ପଦ ।

ଫୁଟିଲା ଫୁଲବାସେ ପୁରନ୍ଧ୍ରା ଚିତ୍ତ, ଫତୁରି ଶୁଣି କମ୍ପା କଲା ଏ ଚିତ୍ତ ଗୋ । ୧ । ଫତୁଅ ଗର୍ବ ଫେଇ ନିର୍ଦ୍ଦୋଷ ମଣି, ଫିଙ୍ଗି ଯା ଦେଲି ରୋଷେ ସଦୋଷ ମଣି ଗୋ । ୨ । ଫୁଲଗଲି ମୁଁ ଗୃହ୍ଟୁ ଶୁଣି ମଦରେ, ଫୁଲଲଲାମ ମର୍ଦ୍ଦି ଦେଲି ପାଦରେ । ୩ । ଫୁଲପଙ୍କଜ ମୃଦୁ ସୁନ୍ଦର ପାଦ, ଫାନ୍ଦୁ ଯେ ଥିବ ଲଭି ଫଗୃବ ଖେଦ । ୪ । ଫନ୍ଦା ଧବ ଯେ ଫିଙ୍ଗି ଦେଲି ପାଣିକି, ଫୁରୁଣା ହେବି କାହା ଘେନ ଏଣିକି । ୫ । ଫେଇ ଦଅନ୍ତି କଣ୍ଠୁ ଏ ମଣିହାର, ଫନ୍ଦାଇ ପାରିବ କି କବି ମିହିର । ୬ ।

( ୨୩ )

ରାଗ—ମୁଖାବରୀ

ବିଧାତା କି କଲା ରେ, ବ୍ୟର୍ଥେ ଦିନ ଗଲା ରେ, ବାରବାର ମଦ-ବାରଣବରଗତି, ରତିରସବିଦ୍ୟାତରଙ୍ଗିଣୀପତି, ଗୁମାନ ଧରି ସରି ଯାଉଛୁ ଜଗତ କି ନିକୁଞ୍ଜମହୀ ମଣ୍ଡିବା ସମୟରେ । ପଦ ।

ବେଶେ କରିବାକୁ ତୋରି, ବନାଉ ଅଛୁ ମୁଁ ଝରି, ବସିଛୁ ଦୁଃଖ-ପାସୋରି, ବାଢ଼ି ବିରସପସରି । ୧ । ବିମ୍ବୋଷ୍ଠେ ଚୁମ୍ବିବା ଅଶେ, ବିନୟେ ମିଳାଇ ପାଶେ, ବଦନକୁ ମହିଳା ସେ, ବର୍ଜିତ କରିଛି ହାସେ । ୨ । ବାଧୁ ଥିଲେହେଁ ଦୁର୍ଜନେ, ବୁଢ଼େ ମୋ ସ୍ନେହ ମଜ୍ଜନେ, ବୋଧିଲେ ତ ଏବେ

---

କରଣସମୂହ, କାନ୍ତ—କାନ୍ତ, ପୟଃପରିଣତ—ଦୁଧରେ ଦ୍ରବୀଭୂତ, ମଧୁରସା—ଦ୍ରାକ୍ଷା, ସିତଶର୍କରୀ—ସାର, ବେଷାଦ—ଶକ୍ତିଶାଳୀ, ପରପକ୍ଷୀରୀତି—ଶତ୍ରୁ ପରି ଆଚରଣ, ପରିବାଦ—ନିନ୍ଦା, ଫରିଆଦ—ନାଲିସ୍ ବା ଅଭିଯୋଗ, ଅପାଦରୁ—ସମ୍ପାଦରୁ ।

୨୨ । ଟୀକା—ରାଧା ଲଳିତାଙ୍କୁ କହୁଅଛନ୍ତି—ଫତୁରି—ହତଭାଗୀ, ଫୁଲଲଲାମ—ପୁଷ୍ପନିର୍ମିତ ଭୂଷଣ, ଫୁଲି—ଫୁଟିଲା, ଫୁରୁଣା—ଭାଗ୍ୟବତୀ, ଫନ୍ଦାଇ ପାରିବ—ମନାଇ ପାରିବ ।

୨୩ । ଟୀକା—ଶ୍ରୀକୃଷ୍ଣଙ୍କର ଭାବନା—ମଦବାରଣବରଗତି—ମତ୍ତଗଜ-ଗମନା, ଝରି—ପୁଷ୍ପଭୂଷଣ, ପସରି—ଦୋକାନ, ବାଧୁଥିଲେ—ବାଧା ଦେଲେହେଁ,

ମନେ, ବିବେକକନିଧି ନ ଘେନେ । ୩ । ବନ୍ଧୁ ମୋ ଶିରୀଷଅଙ୍ଗୀ, ବକବିଷମ-ଅପାଙ୍ଗୀ, ବସନ୍ତବିହାରସଙ୍ଗୀ, ବଢ଼ାଇ ଦେଲା କେ ଭଙ୍ଗୀ । ୪ । ବିସ୍ମୃ ଜନେ ମୋ ଶତେ, ବନମାଳା ସଖି ମୋତେ, ବିସ୍ମର ଦେଲା କେମନ୍ତେ, ବୋଲେ ବଳଦେବ ଗୀତେ । ୫ ।

( ୨୪ )

ରାଗ—କାମୋଦୀ

ଭୂଲୋକର ଭର୍ମଭୂଷା ଯୋଷା ରତନ ରସାଳସା ପେ, ଭଙ୍ଗୁର ତରଳକଠାଣି, ଭର୍ଗ ଅହିତ ମାର୍ଗଣ ଶତ ସମ୍ମୋହନ ଗୁହାଣି, ଭ୍ରିବତ୍ତୁଲ କେଳକୋକିଳ, କଳକୂଜନ ବାଣୀ, ଭାସୀ ନିତମ୍ବ ବିମ୍ବ ଉରଜା, ବାରିଜ-ନେତ୍ରା, ନାଗରୀରାଜା, ବଲ୍ଲଭୀ ମୋର ରଙ୍ଗ ସୁନ୍ଦର ପଲ୍ଲବସାରପାଣି । ୧ । ଭଲା ତା ଲୀଳାବଞ୍ଚଳଡୋଳା ଅପାଙ୍ଗପ୍ରାଙ୍ଗଣଖେଳା, ପସନ୍ଦ କୁନ୍ଦ ସୁନ୍ଦର ମନ୍ଦହାସ, ଭ୍ରୂଯୁଗଖେଳ ଚପଳ ନୀଳଭୁଜଙ୍ଗିନୀ ସଙ୍କାଶ, ଭସ୍ମୀଭିନୟ ଦାସୀ ବିନୟ ନୟନ ଫରମାସ, ଭତ୍ତରେ ଲେଖି ମୋ ବଦନ, ଚୁମ୍ବନେ ବଳାଇ ମନ, ଗୃହିଁ ମୋତେ, କି ସ୍ନେହସ୍ମିତେ ଠାରେ ଦଶନବାସ ।୨। ଭରତକୃତ ସିଦ୍ଧାନ୍ତ ମତ ସଙ୍ଗୀତ କଳା ସମ୍ପତ୍ତି ନୁତ, ନବୀନ ବନରୁହ ବିପିନଭୃଙ୍ଗୀ, ଭାରତୀଙ୍କର ସାର ଭଣ୍ଡାର, ଲୁଣ୍ଠନ ଖାନାଜଙ୍ଗୀ, ଭୂଷଣତତ୍ତ ଶୋଭା ସମ୍ପତ୍ତି, ଜନନ ଚତୁରାଙ୍ଗୀ, ଭଦୁରପାଣି ନୀଳମଣିକୁନ୍ତଳ କୃତଗୁରୁବେଣୀ, ବିମ୍ବପ୍ରତିବିମ୍ବ ରଦନଅମ୍ବରା, ପ୍ରାଣସଙ୍ଗୀ । ୩ । ଭଜନ ଇଷ୍ଟମନ୍ତ୍ର କାରିକା ଭାବିନୀ ସେ ମୋ ଜୀବିକା ବିକା, ମୋ ଦେହ ତାହାର ସ୍ନେହ ଧନେ, ଭଗାରିଜନ ବଦନମ୍ଲାନ ହୁଏ ତା ଅବଧାନେ, ଭୂମିରେ କାହିଁ ଶରଣ ନାହିଁ ତାହା ବାହାରେ ଅନେ, ଭରସା ସାର ସେହି ମୋହର ଭଲ ହୋଇବା ଭାଲସର କାହିଁ ରୁପ କିଶୋରୀ ଉପମାନେ ।୪। ଭୃତ୍ୟବତ୍ସଳା, ନୃତ୍ୟକୁଶଳା, ଦାସୀ ଅନୁରାଗ ଶୀଳା, କୁଞ୍ଚନୀଳସୂପୁଞ୍ଜ ମଞ୍ଜୁଲଖେଳା, ଭୁଚେଶପରଶବ ବିକାର

---

ଶିରୀଷ ଅଙ୍ଗୀ—କୋମଳାଙ୍ଗୀ, ବାରବାର—ଥରକୁ ଥର, ରତ୍ନରସବିଦ୍ୟା-ତରଙ୍ଗିଣୀପତି—ରତ୍ନରସବିଦ୍ୟାରୂପ ନଦୀର ପତି ଅର୍ଥାତ୍ ସମୁଦ୍ର ।

୨୪ । ଟୀକା—ଶ୍ରୀକୃଷ୍ଣଙ୍କର ଅନୁଚନ୍ତା:—ଭୂଲୋକର ଭର୍ମଭୂଷା—ପୃଥିବୀର ସ୍ୱର୍ଣ୍ଣଅଳଙ୍କାର ସଦୃଶୀ । ଭର୍ଗଅହିତ—କନ୍ଦର୍ପ, ମାର୍ଗଣ—ବାଣ, ଭରତ—ସଙ୍ଗୀତଶାସ୍ତ୍ରର ଆଚାର୍ଯ୍ୟ, ନୁତ—ପ୍ରଶଂସିତ, ବନରୁହବିପିନ—ପଦ୍ମବନ,

କୀଲାଲନିଧି ଭେଲା, ଭୁଜାନୁକମ୍ପା, ଜଳଧିଶମ୍ପାଗୋରଅନିଳଚେଳା, ଭାଷଇ କବିସିନ୍ଧୁର ଭାବ ବ୍ରଜରାଜନନ୍ଦନ ଗାନ୍ଧର୍ବୀ ଗୁରୁପଦବାରିରୁହରେ କରି ମାନସମେଳା । ୫ ।

( ୨୫ )

ରାଗ—ଶୋକକାମୋଦୀ

ମନ୍ଦହାସି ଯିବା ଅସ ରେ । ପଦ ।

ମହେନ୍ଦ୍ରମଣି ମୂରତି ପୁଣି ମନେ ଝଲିଛନ୍ତି ରାସ ରେ । ୧ । ମୁରଲୀଯନ୍ତ୍ର ମୋହନମନ୍ତ୍ର ମୋହି ନେଲଣି ମୋ ମାନସରେ । ୨ । ମୃଦୁ-ଲଳିତ ମଧୁରଗୀତ ମନା କଲଣି କୁଳବାସ ରେ । ୩ । ମାତି ସସ୍ନେହେ ମୁକୁନ୍ଦଦେହେ ପେଶି ଗଞ୍ଜିବା ବାହୁ ପାଶରେ । ୪ । ମୁଖୁ ତାହାର ମରନ୍ଦା-ହାର ମାଗ ଦଶନେ ଧରି ଘାସ ରେ । ୫ । ମହା ପ୍ରଚଣ୍ଡ ମଦନକାଣ୍ଡ ମୁନେ ହେବଟି ପ୍ରାଣ ନାଶ ରେ । ୬ । ମହୀଗୀର୍ବାଣେ ମୁଖ୍ୟ ଯେ ଭଣେ ମାନସୁ କଲି ଫରମାସ ରେ । ୭ ।

( ୨୬ )

ରାଗ—ବରାଡ଼ି

ଯଦୁମଣି ଯିବେ ପୁଣି ଯାମିନୀ ନ ସରେ ଅଭ ନାହିଁ ନାଡ଼ି । ପଦ ।

ଯନ୍ତ୍ରର କି ଜାଣୁ ଯେବେ, ଯେମନ୍ତେ ହୋଇଲେ ଜବେ, ଯାହା ଅନୁକୂଳମୂଳ ଦେ ଉପାଡ଼ି । ୧ । ଯୁଗ୍ମ ନୋହିଥିଲେ ଷଣେ, ଯୁଗୁଁ ମୁଁ ଅଧିକ ମଣେ, ଯୁବରଚନ୍ଦ୍ର ତ ଅମ୍ବର ଲାଗି ଶାଢ଼ୀ । ୨ । ଯମରୁ ଦାରୁଣ ମାରଯବନଶର ପ୍ରହାର, ପାତନାକୁ କେ ଅମ୍ବର ଦେବ ଅଡ଼ି । ୩ । ଯୁବତିନେତ୍ର-ଅଞ୍ଜନ, ଯାମଳତରୁଭଞ୍ଜନ, ଯେବେ ଯିବେ ନୋହିବେଟି କେ ଅଗାଡ଼ି । ୪ । ଯନ୍ତେ କବିରବି ବୋଲେ, ଯୋଗ ଥିଲି ଏ କି ଭାଲେ, ଯାବନ୍ତ ତେଜିବା ତହିଁ କରତାଡ଼ି । ୫ ।

---

ଖାନାଜଙ୍ଗୀ—ଜମାଦାର, ଭାଲ୍ଲଷର—ଅଦୃଷ୍ଟ ଲିପି, ଲୁତେଶପର—କନ୍ଦର୍ପ, କୀଲାଲନିଧି—ସମୁଦ୍ର ।

୨୫ । ଟୀକା—ଲଳିତା ରାଧାଙ୍କୁ କହୁଅଛନ୍ତି:—ମହେନ୍ଦ୍ରମଣି ମୂର୍ତ୍ତି—ଇନ୍ଦ୍ରନୀଳମଣିକାନ୍ତିଧାରୀ, କୁଳବାସ—ବଂଶମର୍ଯ୍ୟାଦାଜନିତ ଭୟ, ମରନ୍ଦାହାର—ମକରନ୍ଦରୂପ ଖାଦ୍ୟ, ଘାସ—କୁଟା, ମହୀଗୀର୍ବାଣ—ବ୍ରାହ୍ମଣ ।

୨୬ । ଟୀକା—ଲଳିତାଙ୍କୁ ରାଧା କହୁଅଛନ୍ତି:—ନାଡ଼ି ନାହିଁ—ଜ୍ଞାନ ନାହିଁ, ଜବେ—ଶୀଘ୍ର, ଅଡ଼ିଦେବା—ବ୍ୟର୍ଥ କରିଦେବା, ଅଗାଡ଼ି—ଅଗ୍ରଗାମୀ ।

( ୨୭ )

ରାଗ—ମୁଖାରୀ

ରମାବର ରେ, ରେଷ ବହିଲୁ କି ନଉକରରେ,
ରଦନର ବ୍ରଣ ଦେଖି ଦରପଣବିମ୍ବରେ ଦଶନାମ୍ବରରେ । ପଦ ।

ରୁଦ୍ରାଣୀଙ୍କ ବ୍ରତ, ଦିନେ ସନ୍ନିପତ, ହୋଇ ମନମଥଜ୍ୱରରେ, ରମ୍ଭା ସମ୍ଭାବନାଯୋଗ୍ୟ ଊରୁମୂଳ ଛୁଇଁ ଦେବାରୁ ନଖର ରେ । ୧ । ରାତି ପାହିଗଲା ବୋଲି କମ୍ପିଥିଲି ଗୁରୁଜନଙ୍କର ଡରରେ, ରତି ଶେଷେ ହସି ଛନ୍ଦିଲ ତୋ କଟି ଯାହା ପୀତଫେଟା ଫେରରେ । ୨ । ରାଣ ବୋଲି ଠେସି ନଖି ଭଙ୍ଗି ହସି ପଶିଗଲି ଅନ୍ତଃପୁରରେ, ରସିକା ରେ ପାଣି ବାଜିବାର ଜାଣି ନାହିଁ ମୁଁ ତୋ ପୟୋଧରରେ । ୩ । ରଙ୍କ ସଦୃଶ ତ ହେଉଥାଏ ଚିତ୍ତ ବୁଝି ତୋ ଶୋଭା ନାଗରରେ, ରମିବାରେ ଚେତା ରହେ କି ପଣ୍ଡିତାମଣି ବିବେଚନା କର ରେ । ୪ । ରସିଲେ ଏ ବାଣୀ ଶୁଣି ଠାକୁରାଣୀ ମୋହନ-ମୁରଲୀଧରରେ, ରଥକୁଳ-ଜଳନିଧି-ବୀଚ ବଳଦେବ ବନ୍ଦେ ଅବସରରେ ॥

( ୨୮ )

ରାଗ—ସାବେରୀ

ଲାଗିଲା ରେ ଲାବଣ୍ୟନିଧିକି ଶ୍ୟାମଲଟ,
ଲୋଚନେ ଦେଖିଲେ ଲୋକ ମୁକୁଟଚନ୍ଦ୍ରକପାକ
ଲାଷାରେ ହେବାରେ ନଟପଟ । ପଦ ।

ଲବଙ୍ଗଲତା ଭବନେ, ବ୍ୟସ୍ତ ହୋଇ ନିଧୁବନେ, ପଢ଼ିଅଛୁ ପୁଣି ଫୁଲଗଟ; ଲୋହିତ ସୁଧାଂଶୁକଳା ନୀଳଲୋହିତ ବହିଲା ପରି ପୁଣି ଦିଶେ ସ୍ତନଘଟ । ୧ । ଲଳିତା ଦେଖିଲା ପୁଣି, ଲାଗି ହେବାର କାଛେଣୀ, କରି ନୀଳଚେଳ ନୂଆନଟ; ଲହକେ ପୁଣି କଶୋରୀ-ରତନ ଚେତା ପାସୋରି,

---

୨୭ । ଟୀକା—ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି—ନଉକର—ଚାକର, ରଦନ—ଦାନ୍ତ, ଦଶନାମ୍ବର—ଅଧର, ରୁଦ୍ରାଣୀଙ୍କ ବ୍ରତ—ଗୌରୀବ୍ରତ, ନଖର—ନଖ, ପୀତଫେଟା—ହଳଦିଆ ପିନ୍ଧା ଲୁଗା, ନଖି—ଦୁଇଟି ଅଙ୍ଗୁଳିର ନଖ ପରସ୍ପର ଘଷିଲେ ରାଣ କାଟେ ନାହିଁ—ଏହି ପ୍ରଥାକୁ ନଖି ବୋଲି କହନ୍ତି । ରଥକୁଳଜଳନିଧି ବୀଚ—ରଥବଂଶରୂପ ସମୁଦ୍ରର ଲହରୀସ୍ୱରୂପ ।

୨୮ । ଟୀକା—ସଖୀମାନେ ରାଧାକୃଷ୍ଣଗତ ପ୍ରୀତି ବର୍ଣ୍ଣନ କରୁଅଛନ୍ତି:—ଲାବଣ୍ୟନିଧି—ପରମା ସୁନ୍ଦରୀ ରାଧା, ଲଟ—ଜଞ୍ଜାଳ, ଲାଷା—ଅଳତାର ବୋଳ, ନିଧୁବନ—କ୍ରୀଡ଼ାକୌତୁକ, ଲୋହିତ ସୁଧାଂଶୁକଳା—ରକ୍ତବର୍ଣ୍ଣ ଚନ୍ଦ୍ରଲେଖା, ନୀଳଲୋହିତ—ମହାଦେବ, କାଛେଣୀ ପରି ଲାଗି ହେବା—ଅଣ୍ଟାରେ ଭିଡ଼ି କରି

ଚ୍ଛିନ୍ନ ପକାଇଲ୍ଲ ପୀତପଟ । ୨ । ଲଜ୍ଜା ହେବାରୁ ପ୍ରବଳ, ହେଲେ ହେଲେ ଅନୁକୂଳ, ଖଜ ନ କରିବାରୁ ଜଳଟ; ଲଷ ପରମିତ ଅନ, ପକାଇ ଚ୍ଛେହ୍ନ ବିଧାନ ହେବାଯାଏ କଲେ ପୁଣି ହଟ । ୩ । ଲେଖାଧିପ ମଣିମୟ ଦଶୁଛୁ ଶଶୀ ଉଦୟ, ସମୟେ ଅର୍ଯମାଜେମାତଟ; ଲଳିତ ଶମ୍ପାବଲ୍ଲରୀ, ଜିଣି ତାହା ମଧ୍ୟେ ଶିରୀ, ଝଲସୁଛୁ ପୁଣି ଝଟଝଟ । ୪ । ଲ୍ଲଳଗଲ୍ଲଣି ନିକୁଞ୍ଜ-ସଞ୍ଚାରୁ ଚରଣକଞ୍ଜ, କହେ କବିରବି ମୃଦୁଲଟ; ଲୁଗୁହୁଥାଏ ଯୁବତୀ-ରତନ ମୋହନ ପ୍ରୀତି, ନ ଜାଣଇ ବୋଲି ମୁଁ ନିପଟ । ୫ ।

( ୨୯ )

ରାଗ—ରେଗୁପ୍ତ

ବନ୍ଧୁ ମୋ କାହୁଁ କସ ଶୁଣିଲ୍ଲ ରେ, ବିପତ୍ତୁଲ୍ୟ ତ ମୋତେ ମଣିଲ୍ଲ ରେ,
ବଚନ ନ କହିଲ, ବିନୟ ନ ସହିଲ,
କି ହେଲ, ମହିଳାବର ରୁଷି ରହିଲ୍ଲ ରେ । ପଦ ।

ବସନ୍ତକାଳ, ବିଚ୍ଛେଦରେ ଏ କାଳ, ବହଇ ମଳୟାନିଳ, ବିଯୋଗି-ପ୍ରଳୟାନଳ, ବିପକ୍ଷ ସଙ୍ଗରେ ତ ଗଣିଲ୍ଲ ରେ । ୧ । ବାଳାବର ସେ, ବେଳେ ମୋରେ ନ ରୁଷେ, ବିବେକ ନ କର ଲେଶେ, ବିଳସିବାର ହରଷେ, ବିରଜ ଏ ଦୁର୍ଯୋଗ କଣିଲ୍ଲ ରେ । ୨ । ବିଡ଼ଅ ବିଡ଼, ବଢ଼ାଇଲ ସଙ୍କାଡ଼ ବାତ୍ସଲ୍ୟପୀୟୂଷ ଇଡ଼, ବସିଲ୍ଲ ଶ୍ରୀମୁଖ ମୋଡ଼ି, ବିକଚନାଳକଞ୍ଜକୁ ଜିଣିଲ୍ଲ ରେ । ୩ । ବିକଳ ହୋଇ, ବହୁ ଅଶ୍ରୁ ବୁହାଇ ବଦନବିଧୁ ନୁଆଇଁ; ବିରତୁଳସ୍ତନେ ଥୋଇ, ବରୁଣାଦ୍ରିଚନ୍ଦ୍ରକୁ ଟାଣିଲ୍ଲ ରେ । ୪ । ବିଅର୍ଥେ ଦିନ ବିଞ୍ଚାହୁଅଛୁ ମୋ ଧନ, ବିଷମ ଏ ଯଉବନ ବିକୁଳଠାରୁ ଜବନ, ବଳଦେବ କବୀନ ଭଣିଲ୍ଲ ରେ । ୫ ।

---

ପିନ୍ଧିବା, ନୀଳଚେଲ—ନୀଳବସ୍ତ୍ର ( ରାଧାଙ୍କର ); ନିଆନଟ—ଶ୍ରୀକୃଷ୍ଣ, ଲହକେ—ଅବନତ ହୋଇ ବା ନଇଁପଡ଼ି; ଅନ—ପ୍ରାଣ, ଲେଖାଧିପ ମଣିମୟ—ଇନ୍ଦ୍ରମଣି ତେଜଃପୂର୍ଣ୍ଣ; ଅର୍ଯମାଜେମାତଃ—ଯମୁନା କୂଳ, ଶମ୍ପାବଲ୍ଲରୀ—ବିଦ୍ୟୁତ୍ ଲତା, ଲ୍ଲଳ ଗଲ୍ଲନ—କ୍ଲାନ୍ତ ହୋଇ ଢଳିଲାଣି ।

୨୯ । ଟୀକା—ଶ୍ରୀକୃଷ୍ଣଙ୍କ ରାଧିକାଗତ ଚନ୍ତା:—ବିଚ୍ଛେଦରେ ଏ କାଳ—ବିରହ ବିଷୟରେ ଏହା ଯମସ୍ୱରୂପ, ବିଯୋଗି ପ୍ରଳୟାନଳ—ବିରହୀ ପକ୍ଷରେ ପ୍ରଳୟ କାଳର ଅଗ୍ନି ପରି, ବେଳେ—ଥରେ, ବିଡ଼ଅ ବିଡ଼—ପାନଖିଲ, ବାତ୍ସଲ୍ୟପୀୟୂଷ ଇଡ଼—ସ୍ନେହରୂପ ଅମୃତକୁ ଢାଳଦେଇ ଅର୍ଥାତ୍ ସ୍ନେହଶୂନ୍ୟ ହୋଇ, ବିକଚନାଳକଞ୍ଜ—ଯେଉଁ ପଦ୍ମର ନାଳ ବଙ୍କା; ବରୁଣାଦ୍ରିଚନ୍ଦ୍ର—ପଶ୍ଚିମ ଦିଗର ଅସ୍ତଗାମୀ ଅତଏବ ଅରକ୍ତ ଚନ୍ଦ୍ର, ଜବନ—ଚଞ୍ଚଳ, କବୀନ—କବିସୂର୍ଯ୍ୟ ।

( ୩୦ )

ରାଗ—ତୋଡ଼ିମୁଖାରୀ

ଶ୍ରୀହରି ହେ ରଜନୀ ପାହିଲା, ଶତପତ୍ର ବନରୁ ପବନ ମନ୍ଦ ମନ୍ଦ ବହିଲା, ଶମନଭଗିନୀର ନୀରଜାଙ୍ଘ୍ରି ନୂପୁର, ପରିପୂରିତ ମନୋରଥ ରଥାଙ୍ଗସ୍ୱର, ଶଶି-କର-ଶୀକର, ନିକର ଅସ୍ତଧର ବରଚୂଳକୁ ମାନ୍ଦ ଗ୍ରହିଲା । ପଦ ।

ଶମ-ସିନ୍ଧୁ ମଧ୍ୟେ କେ ସାହସତରୀ ବାହିଲା, ଶଙ୍କା ଲେଶ ହେଲେ ଦରିବ୍ୟରତ୍ନକୁ ନ ପାଇଲା । ୧ । ଶମ୍ଭୁପରିପନ୍ଥୀ ତୂଣେ କେତେ ବାଣ ବହିଲା । ଶୃଙ୍ଗାର-ଶାସ୍ତ୍ରକୁ ଜାଣି ସମସ୍ତ ନ ସହିଲା । ୨ । ଶାବକ ମୃଗାକ୍ଷୀ କେତେ ଜନ୍ମ ତପେ ଦାହିଲା । ଶମ୍ବାସ୍ତୁଧମଣି ଶ୍ୟାମତନୁ ମନ ମୋହିଲା । ୩ । ଶରଦିନ୍ଦୁ ସୁଧାସୁତନାଳକୁ କି ବହିଲା, ଶ୍ରବଅବତଂସ କଳହଂସ ଧ୍ୱନି ନୋହିଲା । ୪ । ଶମ୍ବରାରି ସଜ୍ଜରିକ ଏ ଭ୍ରାନ୍ତିକ ବହିଲା, ଶରସୂଚୀରେ ଶରୀର ଯୁଗ ଗାଢ଼େ ସିଇଁଲା । ୫ । ଶୂର କବିକର ପଦକଞ୍ଜତଳେ କହିଲା, ଶେଷ ଅଙ୍କ ନିଶାକୁ ରହିଲେ ପଛେ ରହିଲା । ୬ ।

( ୩୧ )

ରାଗ—ଭୈରବ

ଶାଢ଼ୀ କାହିଁ ଦେବ ଦେବଟି ହେ, ଫଙ୍କୋରେ ମୋର ପ୍ରାଣ ଯିବଟି ହେ, ସୁନ୍ଦର ନହ ମଲ, ଏ ବଡ଼ ଛଇଲ, ଛଳିଲରେ ଜାତ ନେବଟି ହେ । ପଦ ।

ସାକ୍ଷାତ ଦେଖିଲେ ହେଲେ ଲୋଚନେ, ସମସ୍ତଙ୍କୁ ଜଟି ହୁଏ ବଚନେ, ସାଧୁଅଛୁ ଏ କି ସବଙ୍କ ଦେବୀ କି ଏହାକୁ ପାରିବ କେ ବଟି

୩୦ । ଟୀକା—ସଖୀମାନେ କୁଞ୍ଜଗୃହଗତ ଶ୍ରୀକୃଷ୍ଣଙ୍କୁ ନିଦରୁ ଉଠାଉ ଅଛନ୍ତି:—ଶତପତ୍ରବନରୁ—ପଦ୍ମବନରୁ, ଶମନଭଗିନୀର ନୀରଜାଂଘ୍ରି ନୂପୁର-ପରିପୁରିତ ମନୋରଥ ରଥାଙ୍ଗସ୍ୱର—ଯମୁନାର ପଦ୍ମପାଦର ନୂପୁରଶବ୍ଦ ସଦୃଶ ପୂର୍ଣ୍ଣମନୋରଥ ଚକ୍ରବାକମିଥୁନର ଶବ୍ଦକୁ ଘେନି ପଦ୍ମବନର ପବନ ଧୀରେ ଧୀରେ ବହିଲା । ଶଶିକରଶୀକରନିକର—ଚନ୍ଦ୍ରକିରଣରୂପ ଜଳକଣାସମୂହ, ଅସ୍ତଧର-ବରଚୂଳ—ଅସ୍ତପର୍ବତର ଅଗ୍ରଭାଗ, ଶମ୍ଭୁପରିପନ୍ଥୀ—କନ୍ଦର୍ପ, ଶମ୍ବାସ୍ତୁଧମଣି ଶ୍ୟାମତନୁ—ଇନ୍ଦ୍ରନୀଳମଣି କାନ୍ତିଧାରୀ କୃଷ୍ଣଙ୍କର ଶ୍ୟାମ ଶରୀରକୁ, ସୁଧାସୁତ—ପଦ୍ମ, ଶମ୍ବରାରି—କନ୍ଦର୍ପ, ସୌଚିକ—ଦରଜୀ, ଶୂରକବି—କବିସୂର୍ଯ୍ୟ ।

୩୧ । ଟୀକା—ରାଧା କୃଷ୍ଣଙ୍କୁ କହୁଅଛନ୍ତି:—ଛଇଲ—ରସିକା, ପରିହାସପ୍ରିୟା; ଛଳିଲ—ପରିହାସ, ଜଟି ହୁଏ—ବନ୍ଦ୍ର କରେ, ବଟି ପାରିବ—

ହେ । ୧ । ସହସ୍ର କୋଟି ସପତ୍ନି ମୋର, ସତେ କାହିଁ ଛପାଇଛ ଅମ୍ବର, ସୁନାପୁଅ ପରି, ସଖୀ ଆଗେ ଧରି, ନ ପଡ଼ୁ ମୋତେ ରଖିବଟି ହେ । ୨ । ସୁଖସଙ୍ଗାଲ ହେ ଦୁଃଖପାସୋରି, ସେ ବିଧିକ ନ ମଙ୍ଗିବାକୁ ପରି, ସଢ଼ାଇଛ ଲାଜ, ଯନ୍ତ୍ରେ ଜାଣି ଆଜ, ସବୁ ସେହିପରି ହେବଟି ହେ । ୩ । ସନ୍ତକଟୀରେ ପୀତଚେଲ ଭିଡ଼ି, ସୀମା ପାର କରିଅଛ ମୋ ଶାଢ଼ୀ, ସମର୍ପିତ ଜନ, ସଙ୍କୋଚରେ ଲୀନ, ହେଲେ ଅପଣା ଲଦ୍ଧବଟି ହେ । ୪ । ସଂସାରେ ନ ଥିବାର ତୁମ୍ଭ ସ୍ନେହ, ସୁରତ ସରଲେ ସହାସ୍ୟ ନୃହ, ସରୋଜାକ୍ଷିଜାତ, କଦମ୍ବ ବ୍ରତତୀ ମନ୍ଦିରେ ସପନ ଦେଖିବଟି ହେ । ୫ । ସମ୍ପାଦିଛ ସତେ କାହିଁ ଅପଣ, ସୀମନ୍ତିନୀଙ୍କ ସଢ଼ାଇବା ଗୁଣ, ସ୍ମରୁଥିବ ଅନୁଦିନେ କବିଭାନୁ ସ୍ୱଗୁରୁ ବଳଦେବଟି ହେ । ୬ ।

( ୩୨ )

ରାଗ—ଶ୍ରୀ

ଷୋଡ଼ଶ ସହସ୍ର ବ୍ରଜ, ସରୋଜନେତ୍ରା ସମାଜ, ବିପିନ ମରନ୍ଦ ପାନେ ଅତି ସରାଗେ । ଷଟ୍‌ପଦ ଯୁବବର, ପରି ଶିଖଣ୍ଡଶେଖର ବିହରିଲେ ଶରଦ ରଜନୀ ବିଭାଗେ । ଷଡ଼ାସ୍ୟଜନକାହିତର; ଷଷ୍ଠବାଣ ବନିଲେ ସେ ମୁରଲୀଧର । ୧ । ଷଡ଼କ୍ଷର ମନ୍ତ୍ର ଜପ, କରିଥିଲେ କି ଅନଳ୍ପ, କଳ୍ପ ଯାଏ ନବ ଗୋପତରୁଣୀ ଜନେ । ଷଡ଼ଙ୍ଗ ବେଦ ସ୍ତବନ-ଯୋଗ୍ୟବାହୁ ଅଲିଙ୍ଗନ, ମୁଖ ସଦ୍‌ଭାଗ୍ୟର ହୋଇଲେ ଭାଜନ । ଷଡ଼ୁପାୟ ବିଗ୍ରହ ହର, ଷଡ଼ାରାତି ପ୍ରଥମକୁ ଦେଲେ ଜାବର । ୨ । ଷଡ଼୍‌ଜାଦି ସ୍ୱର ସଙ୍ଗୀତ, ମଣି-ମଣ୍ଡନ ଶିଞ୍ଜିତ, ହେଲା ବୀଣା ଆଦ୍ୟ ବାଦ୍ୟରବନିବହ । ଷଟ୍‌ପଞ୍ଚାଶତ କୋଟି, ଜୀବଙ୍କ ହୃଦୟେ ଘୋଟି, ପ୍ରସରିଲା ପରଂବ୍ରହ୍ମାନନ୍ଦ ପ୍ରବାହ । ଷଣକ୍ଷୀଣ ନୋହିଲା ପର, ଷୋଡ଼ଶଧାଏ ମଣିଲେ ମୋଦେ ବିହର । ୩ । ଷଡ଼ରତୁ

---

ଭଣ୍ଡିଦେବ ବା ଠକଦେବ, ଶପଥ—ରାଣ, ଅମ୍ବର—ଲୁଗା, କଦମ୍ବବ୍ରତତୀ ମନ୍ଦିରେ—କେଳିକଦମ୍ବ ଲତାକୁଞ୍ଜରେ, ସଢ଼ାଇବା—କଷ୍ଟଦେବା ।

୩୨ । ଟୀକା—ବନବିହାରବର୍ଣ୍ଣନ:—ସରୋଜନେତ୍ରାସମାଜ ବିପିନମରନ୍ଦ ପାନେ—ପଦ୍ମନେତ୍ରାନାରୀସମୂହରୂପ ବନର ମକରନ୍ଦ ପାନରେ, ଷଡ଼ାସ୍ୟଜନକା-ହିତର—କାର୍ତ୍ତିକେୟ ପିତାଙ୍କର ଶତ୍ରୁ ଅର୍ଥାତ୍ କନ୍ଦର୍ପର; ଷଷ୍ଠବାଣ ବନିଲେ—କନ୍ଦର୍ପର ୫ ଗୋଟି ବାଣ, ମାତ୍ର ଶ୍ରୀକୃଷ୍ଣ ତାହାର ଷଷ୍ଠବାଣ ସ୍ୱରୂପ ହୋଇଥିଲେ । ଷଡ଼କ୍ଷରମନ୍ତ୍ର—ଓଁ ନମଃ ଶିବାୟ ଏହି ମନ୍ତ୍ର, ଅନଳ୍ପକଳ୍ପ—ବହୁଯୁଗ, ଷଡ଼ଙ୍ଗ-

ସ୍ତି ବନ, ଯାକ ହୋଇଲା ଶୋଭନ, ସୁରବାରବିଳାସିନୀମାନେ ନାଚିଲେ; ଷଟ୍‌ସପ୍ତବିଂଶକୋଟି, ଦେବେ ବୃଷ୍ଟୁ ପଦେ ଗୋଟି, ହୋଇ ମୋଦେ ଦୁନ୍ଦୁଭି ବାଦନ ରଚିଲେ। ଷକାର ନିୟମ ସରିଲା,ଷଟ୍‌କର୍ମ ନିରତ କବିରବି କହିଲା ॥

( ୩୩ )

ରାଗ—କାଫି

ହେଲେ ହରିହୟଭୂତ ଅଜ ମିଳିଲା ରେ । ପଦ ।

ହାସ ପୀୟୂଷ-ଶୀକର, ଫୁଲ୍ଲମୁଖ ଶଶିକର, ସନ୍ଦେହ ଅନ୍ଧକାରକୁ ଗିଳିଲା ରେ । ୧ । ହରଷେ ମୋ ଗୃହବାଣୀ, ହୃଦୟକଞ୍ଜକୁ ଆଣି, ହରିଣାକ୍ଷୀ ଯା ମୋ କୋଳେ ଖେଳିଲା ରେ । ୨ । ହଜାରେ ଚୁମ୍ବିଲି ଘଷି, ଗଣ୍ଡେ ଗଣ୍ଡ ଇଷି ଇଷି, ଗିର ସଙ୍ଗେ କି ରସ ଉଚ୍ଛୁଳିଲା ରେ । ୩ । ହୃଦେ ଲଗାଇଲି ସ୍ତନ, ହରିତାଳ ତାଳ ଧନ, ମନ ଘନ ପରିରମ୍ଭେ ବଳିଲା ରେ । ୪ । ହରିଲି ବସନ ଯହୁଁ, ହସି ବ୍ୟାଜେ ଉହୁଁ ଉହୁଁ, ଭ୍ରୂଷୁଥିଲା ମୁଖେ ମାଧ୍ୱ ଚଳିଲା ରେ । ୫ । ହରିଦଶ୍ୱଦେବସୁତା, ତଟ ନାଟ ଉପୃରତା, ହାଟକାଙ୍ଗୀ ଲଭି ଫଳ ଫଳିଲା ରେ । ୬ । ହଠେ ପୁର ଅଭିଳାଷ, ହେବାର ମୁଁ ପୂର୍ଣ୍ଣତୋଷ, କବିରବି ରାୟଗୁରୁ କଳିଲା ରେ । ୭ ।

( ୩୪ )

ରାଗ—ସୋମ

କ୍ଷୀଣମଧ୍ୟମା ରେ, କ୍ଷଣେ ନୋହିବାଟି ଭିନ୍ନ,
କ୍ଷେମତନୁ ପର ହରିବା ଏ ଯତ୍ନବନ । ପଦ ।

କ୍ଷୋମରୂପିଣୀ ଚନ୍ଦ୍ରଗୃହମଗୌର୍ଯ୍ୟ ଧୂର୍ଯ୍ୟତର୍ଯ୍ୟନନେ, କ୍ଷୁଣ୍ଣ ବାସବ ନୀଳ ଗ୍ରମର ଚୂର୍ଣ୍ଣକୁନ୍ତଳ ଶୋଭନେ, କ୍ଷୌଣୀଭୃଦ୍‌ବର, ପୀବର ସ୍ତନ-

---

ବେଦ—ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଜ୍ୟୋତିଷ, ଛନ୍ଦ—ଏହି ଛ ଅଙ୍ଗ ସହିତ ବେଦ; ଷଡ୍ରାରାତି ପ୍ରଥମ—କାମାଦି ଛ ଶତ୍ରୁର ପ୍ରଥମ ଅର୍ଥାତ୍ କାମ; ଷଡୁପାୟ—ସାମ, ଭେଦ, ଦାନ, ନତି, ଉପେକ୍ଷା ଓ ରସାନ୍ତର, ମାନଭଙ୍ଗ ନିମିତ୍ତ ନାୟକ ଅବଲମ୍ବିତ ଏହି ଛଅଗୋଟି ଉପାୟ ।

୩୩ । ଟୀକା—ଶ୍ରୀକୃଷ୍ଣ ରାଧିକାଙ୍କ ପ୍ରଣୟର ଅନୁସ୍ମୃତି କରୁଅଛନ୍ତି:—ହେଲେ—ଅକ୍ଳେଶରେ, ହରିହୟଭୂତ—ଇନ୍ଦ୍ରସମ୍ପତ୍ତି, ହାସପୀୟୂଷଶୀକର—ହାସ୍ୟରୂପ ଅମୃତର କଣିକା, ଘନପରିରମ୍ଭ—ଗାଢ଼ ଆଲିଙ୍ଗନ, ବ୍ୟାଜେ—ଛଳରେ, ହରିଦଶ୍ୱଦେବସୁତା—ସୂର୍ଯ୍ୟକନ୍ୟା, ଯମୁନା; ହାଟକାଙ୍ଗୀ—ସୁବର୍ଣ୍ଣପରି ଗୌର ଅଙ୍ଗ ଯାହାର, ହଠେ—ବଳାତ୍କାରରେ, ପୁର—ପୂର୍ଣ୍ଣ କର ।

ମଣ୍ଡିନେ, ଯମୁନାବନେ, କ୍ଷପାକରକରେ ଖେଳୁଥିବା ଅଲଙ୍ଗନେ । ୧ ।
କ୍ଷୌଦ୍ରସାର ସମାନଭାଷୀ ସୁ-କୁନ୍ଦସୁନ୍ଦରହାସୀ ରେ, କ୍ଷ୍ୱେଡ଼ଭୂଷିତକଣ୍ଠ ପଦସରୋଜ ସେବନ୍ତ କାଶୀରେ, କ୍ଷୀବକୁଞ୍ଜରଗାମିନୀ ମୁଁ ଲଲାମ ଖୋସିଲି ତୋ ଶିରେ, କ୍ଷାଳିତ ହୋଇ ତୋ ପ୍ରେମପୀୟୂଷ ରାଶିରେ । ୨ । କ୍ଷୀରନୀର ସୁଧାଂଶୁ କୈରବ ବାରି ମୀନ ବରାବରେ, କ୍ଷେପିବା ପ୍ରତି ରାତି ବାସର କାମକେଳି ଦରୋଦରେ କ୍ଷୁଦ୍ରଘଣ୍ଟି ସମୂହ ନୂପୁର ହଂସକାଦି ନିନାଦରେ, କ୍ଷମେ ପୂଆଇବା ମାର ତାପକୁ ମୋଦରେ । ୩ । କ୍ଷୁବ୍ଧ ଦୁଗ୍ଧ ସମୁଦ୍ରବୀଚି ବିକୀର୍ଣ୍ଣବିନ୍ଦୁ ଶୁଚିସ୍ମିତେ, କ୍ଷମ କୋମଳ ହେମଚମ୍ପକ-ଗୌରବଗ୍ରହ-ମଣ୍ଡିତେ, କ୍ଷୋଦ ହିଙ୍ଗୁଳଲାଲ ଦନ୍ତ-ଦୁକୂଳଶୋଭନ୍ନ ପଣ୍ଡିତେ, କ୍ଷିତିସୁର କବିକଞ୍ଜବାନ୍ଧବବନ୍ଦିତେ । ୪ ।

---

୩୪ । ଟୀକା—ପୂର୍ଣ୍ଣକାମ ଶ୍ରୀକୃଷ୍ଣ ରାଧାଙ୍କୁ କହୁଅଛନ୍ତି:—କ୍ଷେମତନ୍ତୁ —ମଙ୍ଗଳସୂତ୍ର । କ୍ଷୋମରୂପିଣୀ—ଦୁକୂଳରୂପିଣୀ, ଚନ୍ଦ୍ରଗୃହମଚୌର୍ଯ୍ୟଧୂର୍ଯ୍ୟ-ତରାନନେ—ଚନ୍ଦ୍ରର ଗୃହୁଁ ଚୋର କରିବାରେ ଅତି ନିପୁଣ ଆନନ ଯାହାର, ଅର୍ଥାତ୍ ଯାହାର ମୁଖର ସୌନ୍ଦର୍ଯ୍ୟ ଚନ୍ଦ୍ରର ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକତର ମନୋହର । କ୍ଷୁଣ୍ଣବାସବ ନୀଳଗୃମର ଚୂର୍ଣ୍ଣକୁନ୍ତଳ ଶୋଭନେ—ଶାଣଦ୍ୱାରା ଘଷା ହୋଇଥିବା ଇନ୍ଦ୍ରନୀଳମଣି ଓ ଗୃମର ପରି ଚୂର୍ଣ୍ଣକୁନ୍ତଳଦ୍ୱାରା ପରିଶୋଭିତ । କ୍ଷୌଣୀଭୃଦ୍‌ବର—ପର୍ବତଶ୍ରେଷ୍ଠ, ପୀବର—ସ୍ଥୂଳ. କ୍ଷପାକରକରେ—ଚନ୍ଦ୍ର-କିରଣରେ, କ୍ଷୌଦ୍ରସାର ସମାନଭାଷୀ—ମଧୁର ସାରପରି ଭାଷା ଯାହାର, ମିଷ୍ଟଭାଷୀ; ସୁକୁନ୍ଦ ସୁନ୍ଦରହାସୀ—ସୁନ୍ଦର କୁନ୍ଦପୁଷ୍ପ ପରି ହସ ଯାହାର, କ୍ଷ୍ୱେଡ଼ଭୂଷିତ କଣ୍ଠ—ବିଷଦ୍ୱାରା ଭୂଷିତ କଣ୍ଠ ଯାହାର, ମହାଦେବ; ପଦସରୋଜ ସେବନ୍ତ କାଶୀରେ—ବାରାଣସୀରେ ମହାଦେବଙ୍କ ପାଦପଦ୍ମ ସେବା କରୁଥିବା ହେତୁରୁ; କ୍ଷୀବକୁଞ୍ଜର-ଗାମିନୀ—ମତ୍ତଗଜଗମନା, ଲଲାମ—ଭୂଷଣ; କ୍ଷାଳିତ—ଧୌତ, କୈରବ—କୁମୁଦ, ବରାବରେ—ସମାନରେ, ବାସର—ଦିନ; ଦରୋଦରେ—ପଶାଖେଳରେ, ହଂସକ—ପାଦର ଅଳଙ୍କାରବିଶେଷ; କ୍ଷମେ—ଉତ୍ତମରୂପେ; କ୍ଷୋଦ—ଚୂନା, ଦନ୍ତଦୁକୂଳ—ଅଧର, କ୍ଷିତିସୁର—ବ୍ରାହ୍ମଣ, କବିକଞ୍ଜବାନ୍ଧବ—କବିସୂର୍ଯ୍ୟ ।



# ସଙ୍ଗୀତ କଳ୍ପଲତା

( ୧ )

ରାଗ—କାମୋଦୀ

ଆଜ କେ ଶିଖାଇଲା ରୁଷାକୁ ରେ, ରାଜକୁରଙ୍ଗୀଶିଶୁଦୃଶାକୁ ରେ; ଲଜ-
ମିଳିତ ମନ୍ଦ ବିକାଶ ବାସକୁନ୍ଦରମ୍ୟହାସିନୀ ବରଯୋଷାକୁ ରେ । ଘୋଷା ।

ଶୁଦ୍ଧାନ୍ତୁ ମୁଁ ବାହାର          ହେଲେ ଦୃଷ୍ଟି ଯାହାର
ଦଉଡ଼େ ମୋ ବିହାର ଅଶାକୁ ରେ,
ଉଭା ହେଲି ସମୀପେ,          ନ ଚାହିଁଲା ଯେ କୋପେ
ବୋଲିବା ସିନା ଦୂଷ୍ଟଦଶାକୁ ରେ । ୧ ।
ବସି ତନାବୀ ପାଶେ,          ଅସିତକେଶା ତୋଷେ,
ହସି ଫୁଲାଇ ଗୃହୁ ନାସାକୁ ରେ,
ପୁଲକୁଥାଏ ପରି          ମୁଁ ଲପୁଥିଲେ ଧୀରି,
ଶୁଣି ମୋ ସାଧାରଣ ଭାଷାକୁ ରେ । ୨ ।
ଅଧରୁ ସୁଧାଝର,          ଦେଇ ଯେ ନାଶେ ମୋର
ବିଷମଶର-ଜ୍ୱର-ତୃଷାକୁ ରେ,
ଚନ୍ଦ୍ରାନ୍ତଶାନ୍ତ ହାସେ,          ସାବଧେଲା କି ଦୋଷେ,
ପରିବନ୍ତି କଟିକୃଶାକୁ ରେ । ୩ ।
ଯାହାକୁ ଅଧିକୃତ,          ଦେଇଥାଏ ସୁଦତୀ,
ଖୋସା ଉପର ଝରିଭୂଷାକୁ ରେ,
ଏହି ସିନା ବିଚାର,          କେହି ସେ ହେଲା ପାର,
ମୁହଁ ନ ଚାହିଁ ଭଲ ଘୋଷାକୁ ରେ । ୪ ।

---

୧ । ଟୀକା— ରାଜକୁରଙ୍ଗୀଶିଶୁଦୃଶା—ଛୁଆ ହରିଣୀଛୁଆର ଆଖି ପରି ଆଖି ଯାହାର, ଲଜମିଳିତ ମନ୍ଦବିକାଶ—ଲଜ୍ଜାହେତୁରୁ ଅଳ୍ପ ପରିମାଣରେ ଯାହା ପ୍ରକାଶିତ ହୁଏ, (ହାସର ବିଶେଷଣ); ବାସକୁନ୍ଦରମ୍ୟହାସିନୀ—ସୁବାସିତ କୁନ୍ଦଫୁଲ ପରି ମଧୁର ହାସ ଯାହାର, ଶୁଦ୍ଧାନ୍ତୁ—ଅନ୍ତଃପୁରରୁ, ଅଶା—ଦଗ, ମୋ

ଏବେହେଁ ଗୃହୁଁ ଭର୍ଗ- ମୋହନା ଅଷ୍ଟଦୁର୍ଗ-
ଧରାକପଟସ୍ୱର୍ଗ ବୃଷାକୁ ରେ,
ନ ରଚୁଁ ନଖେ ଏଣୀ- ଦୃଶାକୁ ପଦେ ବାଣୀ
ଖରଚୁ କହ ଧରାଭୂଷାକୁ ରେ । ୫ ।

( ୨ )

ରାଗ—ତୋଡ଼ିପରଜ

ରେ ସଙ୍ଗାତ, ରୁଷି ମୁଁ ବସିଲି ଗେଲେ, ମନ ମନସିଜ ଚକ୍ଷୁ ମୁଖ ଭୁଜ ଏମାନେ ମୋ ଶତ୍ରୁ ହେଲେ ରେ । ଘୋଷା ।

ଦେଲି ଯେ ଗୁମାନ ଲାଗି ତୁ ଚଞ୍ଚଳ ତୁହ ମନ ବୋଲି କହି, କେବେ ନ ଛୁଇଁଲି ସେ ବ୍ରଜ ଛଇଲା ଶୋଭା ସମ୍ପତ୍ତିରେ ରହି ରେ । ୧ । ରଖ ଧୃତ ମୋର ବୋଇଲି ଯେ ଯ୍ମର ମାରକୁ ପାଣି ପ୍ରସାରି, ବନ୍ଧ କୋଟି କୋଟି ବାଣ ନେଲି ହଟି ଦେଲି ମୋ ଅବୁର ସାର ରେ । ୨ । ତଳ କଲି ମଥା ଜାଣି ଚପଳତା-ସମ୍ପନ୍ନ ବୋଲି ମୋ ଡୋଳା, ନ ପଡ଼ି ଧରାରେ ମୁରଲୀଧରାରେ ରସି ରସି କଲି ଖେଳା ରେ । ୩ । ଏ ପାପ ଲପନ ଦଶୁ ଥାଏ ଅନ ବେଳେ ସାଭିମାନ ପର, ଜାଣି ସେହି କାଳ ରହିଲି କେବଳ ହାସ ଉଲ୍ଲାସରେ ପୂରି ରେ । ୪ । ଭିଡ଼ି ଯେ ରଖିଲି ତେବେ ଭୁଜବଲ୍ଲୀ ତାହାର ଅଶ୍ଳେଷେ ଠାକୁ, ଚେଇଁ ନେ ହୋଇଲି କାଳେ ନ ରହିଲି ସ୍ତନମୂଳ-ଚେଲ ବାନ୍ଧ ରେ । ୫ । ବୋଲେ ଶ୍ରୀମୁକୁନ୍ଦଦେବ ଅତ ଯତ୍ନେ ବୁଜିଲି ନୟନ ପୁଣି, ଜାଣେ କି ମନ୍ତର ହେଲି ମୋ ଅନ୍ତରଗତ ସେହି ନୀଳମଣି ॥

---

ଧହାରଅଶା—ମୁଁ ଯେଉଁ ଦଗକୁ ବୁଲିବାକୁ ଯାଇଥାଏ ତନାଗ୍ରୀ—(ଯାବନିକ) ଝଇକା, ଲପିବା—କହିବା, ବିଷମଶର—ପଞ୍ଚବାଣଧାରୀ କନ୍ଦର୍ପ, ଚନ୍ଦ୍ରାକୃଶାନୁ—ଚନ୍ଦ୍ରାରୂପ ଅଗ୍ନି, ଝାସ—ଅଗ୍ନିତାପ, କଟିକୃଶା—କ୍ଷୀଣକଟି, ଅଧିକୃତ—ଅଧିକାର, ସୁଦତୀ—ଉତ୍ତମ ଦନ୍ତ ଯାହାର, ଘୋଷା—(ଯାବନିକ) କୋଧ, ଭର୍ଗମୋହନା—ମହାଦେବଙ୍କୁ ଯେ ମୋହିତ କରି ପାରେ, ବୃଷା—ଇନ୍ଦ୍ର; ଏଣୀଦୃଶାକୁ କହ, ସେ ନଖରେ ଧରାଭୂଷାକୁ ନ ରଚୁଁ ପଦେ ବାଣୀ ଖରଚୁ ।

୨ । ଟୀକା—ମନସିଜ—କନ୍ଦର୍ପ, ମୁଁ ରୁଷି ବସିବାବେଳେ ମୋ ମନ, କନ୍ଦର୍ପ, ମୋ ଚକ୍ଷୁ, ମୁଖ ଓ ଭୁଜ—ଏହି ପାଞ୍ଚୋଟି ମୋର ଶତ୍ରୁ ହେଲେ ଅର୍ଥାତ୍ ମୋ ରୁଷି ବସିବା କାର୍ଯ୍ୟ ଏମାନେ ବ୍ୟର୍ଥ କରିଦେଲେ ( ତଳ ପାଞ୍ଚପଦରେ କ୍ରମାନ୍ୱୟରେ ଏମାନଙ୍କ କାର୍ଯ୍ୟ ବର୍ଣ୍ଣନା କରାଯାଉଅଛି ), ଅବୁର—ମହତ୍ତ୍ୱ; ମୁରଲୀଧରା—ଶ୍ରୀକୃଷ୍ଣ, ଲପନ—ମୁଖ, ସାଭିମାନ—ଅଭିମାନଯୁକ୍ତ, ଭୁଜବଲ୍ଲୀ—ବାହୁଲତା, ଅଶ୍ଳେଷ—ଆଲିଙ୍ଗନ, ଚେଲ—ବସ୍ତ୍ର ।

( ୩ )

ତାଳ—ଆଠତାଳି

ମାନ ସୁମନା, କର ଦେ ମାନସୁ ମନା ରେ । ଘୋଷା ।

ଗିରିସମ ଜାଇରେ, ସ୍ୱାମୀ, ଗିରିସମ ଜାଇ; ଦେଇ ମୁଁ ପାଇଛି ତୋତେ ଗିରୀଶ ମଣ୍ଡାଇ । ୧ । ନାଗରାଜଗତେ ରେ ସ୍ୱାମୀ, ନାଗରାଜଗତେ; ମୁଁ ତୋର ବୋଲି ବାଜୁଛି ନାଗରୀ ଜଗତେ । ୨ । ତୋର ପରିକର ରେ ସ୍ୱାମୀ, ତୋର ପରିକର; ଅଜ୍ଞ ସିନା ରତେ ମୋତେ ତୋର ପରି କର । ୩ । ଫୁଟିଲେ ନିଅଳି ରେ ସ୍ୱାମୀ, ଫୁଟିଲେ ନିଅଳି; ଜଳପି ଜଳପି ତୋତେ ଫୁଟିଲେଣି ଅଳି ରେ । ୪ । ରମ୍ଭୋରୁରୁ ବସି ରେ ସ୍ୱାମୀ ରମ୍ଭୋରୁରୁ ବସି; ଅଙ୍କେ ଥିଲେ ନ ଗଣେ ମୁଁ ରମ୍ଭା ଉରୁବଶୀ ରେ । ୫ । ନବ ସୁରସା ରେ ସ୍ୱାମୀ, ନବସୁରସା ରେ; ତୁ ପରି ମୋ ଅଙ୍କ ବିନା ନ ବସୁରସାରେ । ୬ । ହରିଚନ୍ଦନକୁ ରେ ସ୍ୱାମୀ, ହରିଚନ୍ଦନକୁ; ଘେନ ଯଥା ବସନ୍ତରେ ହରିଚନ୍ଦନକୁ । ୭ ।

( ୪ )

ରାଗ—ପୂରବୀ

ବଂଶୀଧାରୀ, ସହି ଯିବନି ଜୀବନେ କିଶୋରୀ ହେ । ଘୋଷା ।

ବିରହରେ ସଖୀ ହୋଇଛି କାତର, ସରୁ ସରିଲାଣି ସରୋଜ ପତର, ଦେଖିଲି ସଖୀର କଣ୍ଠରେ ମାତର, ଜୀବନକୁ ଅଛି ଧରି ହେ । ୧ । ଲାଗୁ ନ ଥିଲା ମୋ କରକୁ ନାଟିକା, ସଜନୀମାନେ ଦେଖି ହେଲେ ତାଟକା, ଧାଇଁ ଅଇଲି ନ ସହି ତାଙ୍କ ଡକା, ଥିବ କି ଯିବନି ସରି ହେ । ୨ ।

---

୩ । ଟୀକା—ହେ ସୁମନା, ମାନସରୁ ଅର୍ଥାତ୍ ମନରୁ ମାନକୁ ମନା କରି ଦେ, ଅର୍ଥାତ୍ ମନରେ ମାନ ରଖ ନା । ଗିରିସମ ଜାଇ—ପର୍ବତସମାନ ପ୍ରଚୁର ଜାଇଫୁଲ, ଗିରୀଶ ମଣ୍ଡାଇ—ମହାଦେବଙ୍କୁ ସନ୍ତୁଷ୍ଟ କରି, ନାଗରାଜଗତେ—ଶ୍ରେଷ୍ଠ ହାତୀ ପରି ଗତି ଯାହାର, ନାଗରୀ—ବାଦ୍ୟବିଶେଷ, ଜଗତେ—ସଂସାରରେ; ତୋର ପରିକର—ତୋ ଗୃହର, ନିଅଳି—ଫୁଲ ବିଶେଷ, ଫୁଟିଲେଣି—ବିକଶିତ ହେଲେଣି ଓ ଥକିଗଲେଣି, ଅଳି—ସଖୀ, ଜଳପିଜଳପି—କହି କହି, ରମ୍ଭୋରୁରୁ—ରମ୍ଭୋରୁ, କଦଳୀଗଛ ପରି ଉରୁ ଯାହାର, ରମ୍ଭାଉର୍ବଶୀ—ସ୍ୱର୍ଗବେଶ୍ୟା, ନବସୁରସା—ନୂଆରସିକା, ରସା—ପୃଥିବୀ, ହରିଚନ୍ଦନ—ଅଠଗଡ଼ର ରାଜା ଓ ଉତ୍କୃଷ୍ଟ ଚନ୍ଦନ ।

ନାସାଗ୍ରରେ ତୂଳା ଦେଲେ ଉଡ଼ିପର, ନ ଚଳିଲା ପର ଧୃଶିଲା ନାଗର,
ସଜନୀମାନେ ବସିଣ ସେହି ପୁର, ହା ରବରେ ଥିଲେ ପୂରି ହେ । ୩ ।
ତୁମ୍ଭ ଭଳି ଯେବେ ନୋହିଲା ପାତର, ପଗ୍ଚରୁଛି ଶ୍ୟାମ ନ ଦିଅ ଉତ୍ତର,
ଅନ୍ତର୍ଗତେ ଯେବେ ଥିଲାଟି ଅନ୍ତର, ଶତ୍ରୁ କପାଁ କଲି ଗୈର ହେ । ୪ ।
ଲଗିଥିଲେ ଜବାଧଗ୍ରର ସେବାରେ, ଅସ ହେ ରାଜୀବନେଣ୍ଡ ଯିବା ବାରେ,
ହୁଡି ବସିଅଛି ପରାଣ ନେବାରେ, ପାପୀ କାମ ଯମ ସରି ହେ । ୫ ।
ଦିନବନ୍ଧୁ ଥାଉଁ ବିରହ-ତୁଷାର, ନାଶ କଲେ ପଦ୍ମିନୀଙ୍କ ଏ ଅସାର,
ବୋଲେ କବିରବି ସାର କି ଅସାର, ହସିବେ ସିନା ଉଗାରି ହେ । ୬ ।

( ୫ )

ରାଗ—କାମୋଦୀ ଅଦତାଳ

କହିବାକୁ ଲଜ, ସଖି ଯାହା ହେଲା ଅଜ । ଘୋଷା ।

ପହୁଡ଼ି ଥିଲେ ଜଣା, ନ ଥିଲା ମୋତେ ବାଣା, ଆଳାପେ ଲଗାଇଲି ଗେଲେ ଲୟ, କାନ୍ତ ମୋ ଗଣ୍ଡେ ଅସି ଚୁମ୍ବିଲେ ପରଶଂସି ମରଣୁ ବଳିଗଲା ସେ ସମୟ । ୧ । ଖସି ପଡ଼ିଲା କରୁ, ବିପଞ୍ଚୀ ଧରୁ ଧରୁ, ମେରୁ-ଗରୁଅ ହେଲା ଗଭିଫୁଲ; ଟେକି ନୋହିଲା ମୁଖ, ତହିଁ ପଞ୍ଚବିଶିଖ, ଚଣ୍ଡାଳ କଲା କେତେ କଲବଲ । ୨ । ଚୁମ୍ବିଲେ ଅଙ୍ଗସୀମା, ଜାତ ପୁଲକରମା, ଶୀତ୍କାର ଉପୁଜିଲା ବାରମ୍ବାର; ନିବିଡ଼ ଭୁଜବନ୍ଧୁ, ଛାଡ଼ି ନ ଦେଲେ ବନ୍ଧୁ, ପଳାଇବାକୁ କାହିଁ ରାହା ମୋର । ୩ । କେତେ କଥାକୁ ଏତେ, ଦଶା ଲଭିଲି ଶତ୍ରେ, କି ନ କଲା ଏ ଲଜ ଘେନ ମନେ; କପରି ଗୋ ସଙ୍ଗାତ ବିପରୀତ ସୁରତ, ରସକୁ ରସୁଥାନ୍ତି ବାମାମାନେ । ୪ । ଗ୍ରୁଷଇ କଳନ୍ତର ଅବନୀ ପୁରନ୍ଦର ହେଲେ ହୋଇବ ଏକ ଗୁଣ ଲୋପ; ଅଜ ପାପ ସଙ୍ଗୀତ ବିଦ୍ୟାସଧରେ ଶତ୍ରୁ ନ ଦେବି ବୋଲି କଲି ସଂକଳପ । ୫ ।

---

୪ । ଟୀକା— ସରୁ ସରସିଣି ସରୋଜ ପତର—ବିରହତାପ ଶାନ୍ତ ନମିତ୍ତ ସାଧାରଣତଃ ପଦ୍ମପତ୍ରରେ ଶଯ୍ୟାଦି ରଚନା କରାଯାଏ, ତେଣୁ ପୋଖରୀରୁ ପଦ୍ମପତ୍ର ସବୁ ଗଲାଣି, ଦିନବନ୍ଧୁ—ସୂର୍ଯ୍ୟ, ଦୀନବନ୍ଧୁ—ଦୁଃଖୀର ସହାୟ ।

୫ । ଟୀକା—ବିପଞ୍ଚୀ—ବୀଣା, ପଞ୍ଚବିଶିଖ—କନ୍ଦର୍ପ, ଜାତପୁଲକରମା—ରୋମାଞ୍ଚଶୋଭା ଜାତ ହେଲା ।

( ୬ )

ରାଗ—କାମୋଦୀ । ତାଳ—ଏକତାଳୀ

ମନା ମୁଁ କରୁଥିଲି ଏହାକୁ ଗୋ; ଅନା ନା ବୋଲି ବନ ରହାକୁ ଗୋ,
ଅନାଦର ମୋ ଗିରେ, କଲ ଯେ ଏବେ ସ୍ମରେ,
ଲଭିଲ ଦୁଃଖ ହେଲି କାହାକୁ ଗୋ । ଘୋଷା ।

କୁଞ୍ଜ ସଞ୍ଚାରୀ ଶ୍ୟାମ, ଦେବତା ପରାକ୍ରମ, ଜାଣେ ବଳଇ ରତ-ନାହାକୁ ଗୋ; ସାହସୁଁ ସିନା ସଖୀ, କ ଯୋଗେ ଦେଲ ପୋଖି, ନବନୀତେ ଉପତ ଲହାକୁ ଗୋ । ୧ । ଯେବେ ଏ ଗୃହମୁହାଁ, ଶ୍ରବଣ ଦେଇ ନାହିଁ, ନାହୁଅ ଗୃହ ବଂଶୀକୁହାକୁ ଗୋ; ତେକ ହଁସୁଲିତୁଳି, କରନ୍ତା କ ସଞ୍ଚାଳି, ସଲଳସିଞ୍ଚା ସର୍ବଂସହାକୁ ଗୋ । ୨ । ଗହବ ଚମ୍ପା ଧଣ୍ଡା, ନିର୍ମିତ ଗଜଶୁଣ୍ଡା,-ଦଣ୍ଡକୁ ନନ୍ଦ ଗୃହିଁ ଯାହାକୁ ଗୋ; ବିଶେଷେ ବିସନାଳ ଦର୍ଶିଲଣି ପ୍ରଥୁଳ, ଅଢ଼ କାହିଁକି ସେହ ବାହାକୁ ଗୋ । ୩ । କଳାକେଶରୀ ବାଳୀ,-ଧୃତ-ଦନ୍ତୀକୁ ଦଳି, ଦେଲଣି ଅସି ମନୋଗୁହାକୁ ଗୋ; ଥରକେ ଯେବେ ଲୋକ, ନୋହିଲ ଜାଗରୂକ, କହିବା କେତେ ତୁହା ତୁହାକୁ ଗୋ । ୪ । କବି ମିହିର ରାୟ, ଗୁରୁ କହଇ ଭୟ, ଲାଗୁଛି ଦେଖି ଶତ୍ରେ ଏହାକୁ ଗୋ; ଜାଣି ପାରିଲେ କଂସ, ପେଷି କରିବ ଧ୍ୱଂସ, ଜଟିଳାସୁତଘରବୁହାକୁ ଗୋ । ୫ ।

( ୭ )

ରାଗ—ଭୈରବ, ଆଠତାଳି

ପ୍ରିୟସହି, ଏତେବେଳୁ ଥାଅ ମୋତେ କହି ରେ,
ତହିଁରେ ମୁଁ ନାହିଁ ଅବଗାହି ରେ । ଘୋଷା ।

ପ୍ରଥମେ ପ୍ରବେଶକାଳେ, ଅଚ୍ଛାଦ ଅଙ୍ଗ ଦୁକୂଳେ, ଜାଣି ହେବ ସିନା ତଳେ, କେଳି ତଳପକୁ ବଳେ, ଘେନିଯିବେ, ସେହି ସ୍ନେହ ବହି ରେ । ୧ । ମାର ମନେ ଖେଳୁଥିବ, ପ୍ରଦୀପ ଯେ ଜଳୁଥିବ, ବିବେକ ତ ଟଳୁଥିବ,

---

୬ । ଟୀକା—ରହା—ପଥ, ହଂସୁଲି ତୁଳି—କୋମଳଶଯ୍ୟା, ସର୍ବଂସହା—ପୃଥିବୀ, ଗହବ—ଗହଳିଆ, ଗଜଶୁଣ୍ଡାଦଣ୍ଡ—ଚମ୍ପାଫୁଲରେ ନିର୍ମିତ ଗଜଶୁଣ୍ଡାକୃତ ପୁଷ୍ପରଚନା ବିଶେଷ, ବିସନାଳ—ମୃଣାଳ ।

୭ । ଟୀକା—ଦୁକୂଳ—ପାଟଶାଢ଼ୀ, ତଳପ (ତଳ୍ପ)—ଶଯ୍ୟା, କରରୁହ—ନଖ, ଶିବା—ପାର୍ବତୀ, ତାହି—ତାହାହିଁ, ସେହି କଥା ।

ଲଜ ତ ପ୍ରବଳୁଥିବ, ତାଙ୍କ ମୁଖ, ଅନାଇବି କେହ୍ନେ ରେ । ୨ । ମଦନ-ମଦ ଅମଳେ, ଚେତା ନ ଥିବାରୁ ଭଳେ, ଲୋଭବଶୁଁ ଅବା ଗେଲେ, ପୁନଃ ପୁନଃ ଚୁମ୍ବ ଦେଲେ, ସ୍ଥିର ହୋଇ, ରହି କି ନ ରହି ରେ । ୩ । ବୋଲି ଯେ ଅଛି ବିଧାନ, ବାଜି କରୁଛି ମନ, ଦେହରେ ନ ରଖି ସ୍ଥାନ, ପୁଣି ଗାଢ଼େ ଅଲିଙ୍ଗନ, ଏତେ ଦାଉ, ପାରିବି କି ସହି ରେ । ୪ । ବିନତ ହୋଇ କହିଲେ, ଏତେ ଅବା ହେବ ହେଲେ, କି କରିବି ମାବା ଛୁଲେ, ହଠକୁ ପ୍ରିୟ ରଖିଲେ, ସହିବାର, ପଡ଼ଇ କି ତାହି ରେ । ୫ । ଅଷ୍ଟଦୁର୍ଗନାଥ ଭଣେ, ତୋଷ ଗୋ ସଖି ଜଣାଣେ, ମଣ୍ଡି ମଣି ଅଭରଣେ, ବନ୍ଦିବା ଶିବାଚରଣେ, ଅସିଲେ ମୁଁ, ଲୋକହସା ହୋଇ ରେ । ୬ ।

( ୮ )

ରାଗ—କାମୋଦୀ । ତାଳ—ଝୁଲା

ଅଲଙ୍ଘ୍ୟ ହେବାରୁ ମୋ ରାଣ ପରାଣ ବନ୍ଧୁ ଯାହା ଦିନେ ଦିନେ, ସହଜେ ଦୟାଳୁ ଗୁଣ ପରିପାଳୁ ମୋହପରି ନିଧୁବନେ ରେ, କିଶୋରି, ସେ କାଳେ ଯେଉଁ ସମ୍ପତ୍ତି, ତଳପ ଦୀପ ମୋ ମନ ନେନି ନିଶା ଏମାନେ କିଛି ଜାଣନ୍ତି ରେ । ୧ । ଶ୍ରୀହସ୍ତ କଞ୍ଜଚରଣ ଅଭରଣନିବହ ହେବାରୁ ମୂକ, ରତନମେଖଳା କ୍ଷୁଦ୍ର ଘଣ୍ଟିମାଳା, ହୁଏ ମହା ବାବଦୂକ ରେ, କିଶୋରି, ପକାଇ ନିପଟା ତାଳ, ଅଧୋମୁଖସୁନା କଳସ ଉପରେ ନଗ୍ରୁଈ ନକ୍ଷତ୍ରମାଳ ରେ । ୨ । ମଣିମୟ ନଥ ନାଚୁଅଛି ତାହାକୁ ବିବାଦେ ଜିଣିମା ପାଇଁ, କମ୍ବୁକଣ୍ଠିରେ ମାର ଦରପଣ ରଖି, ତହିଁ ତିଳଫୁଲ ନାଚେ ରେ, କିଶୋରି, କି ମୋଦେ ଲଜ୍ଜାନାଗରୀ, ଦେଖୁଥାଇ ନାଠ ତା ପଶ୍ଚକବାଟ ଅଡ଼ ଅଡ଼ ପେଲି କରି । ୩ । ନୀଳମେଘୀ ଶାଢ଼ୀ ଗଲା ପରି ଭଙ୍ଗି ଖସାଇ ଲହସା ଖୋସା, ରଜତ ମୁଦ୍ରିକା ବାଝିଦେଲା ପରି ସେ ସମୟ ମନ୍ଦହସା ରେ, କିଶୋରି, ରତି ମନମଥ ଦୁହେଁ, ପମୀର ପିଚିକା ଖେଳୁଥିଲା ପ୍ରାୟେ ସ୍ୱେଦ

---

୮ । ଟୀକା—ନିଧୁବନ—କାମକ୍ରୀଡ଼ା, ତଳପ—ଶଯ୍ୟା, ବାବଦୂକ—ବହୁଭାଷୀ, ମାନ ଏଠାରେ ଶବ୍ଦାୟମାନ, କମ୍ବୁ—ଶଙ୍ଖ, ପମୀର—ସୁବାସିତଜଳ, ଅଲେଖ—ଅନିର୍ବଚନୀୟ, ଘନସାର—କର୍ପୂର, ଚନ୍ଦନ; ଲୁଲିତ—ମ୍ଳାନ ହୋଇ ଯାଇଥିବା; ବନିଛ—ଢିଅରି ହୋଇଛି, କୁଳଣ—ବକ୍ର, ରଜତମୁଦ୍ରିକା—ରୌପ୍ୟମୁଦ୍ରା, ଟଙ୍କା ପ୍ରଭୃତି ।

ବାନ୍ଦୁ ଦଶେ ଦେହେ ରେ ।୪। ବେଳକୁ ବେଳ ବ୍ୟାକୁଳ କରବାରେ ନାହିରେ ପଞ୍ଚ ବିଶିଖ, ଅଲେଖ ସୁଖ ଆସ୍ୱାଦନେ କମାଇ ଦେଲ ବେଳେ ଚନ୍ଦ୍ରମୁଖ ରେ, କଶୋର, ମୁକୁତା ଜାଲ ଛାଡ଼ଙ୍କ, ଦୋହଲବା ଦେଖି ଦୂର ହୁଏ ଅଖି-ପୂର୍ବର ଦୁରିତପଙ୍କ ରେ । ୫ । ଚୁମ୍ବାଇ ଚୁମ୍ବି ମୋ ଅଧର ବଦନେ ପୀଡ଼ ନେଦକଞ୍ଜ ଖୋସି, ଅତୁଲ୍ୟ ଅମୂଲ୍ୟ ଝଲ ଝଲମଲ ଗଣ୍ଡକୁ ମୋ ଗଣ୍ଡେ ଘଷି ରେ, କଶୋର, ଯାହା ଭୃଷ୍ଟ ମଲ ଇଷି, ଅଖଣ୍ଡପ୍ରମୋଦ ପ୍ରଦାହେ ମୋ ହୃଦ ଅନାୟାସେ ଯାଏ ଭାସି । ୬ । ଘନସାର ବାସ ପ୍ରଖର ନିଃଶ୍ୱାସ ଶରମ-ଭରୁ ପ୍ରସରେ, ନିଦାଘେ ଲୂଲାଲ ନବୀନ ମଞ୍ଜରୀ ପରି ଜମି ମୋର ଉରେ ରେ, କଶୋର, ଦେଇଅଛୁ ସୁଖ ଯେତେ, ତୋ ପଦରାଜୀବେ ଅଲତା ହେଲେ ମୁଁ ସୁଝିବ ଅବା କଅଁତେ ରେ । ୭ । ଏପରି ସମ୍ପତ୍ତି ଗ୍ଲାନ୍ତି ଅସି ଖିତ ବନଧର ନଦୀ ଦେଶେ, ମୋ ହୃଦୟ ଫାଟି ନ ଗଲ ଯାହାଟି ବନିଲୁ ନିଶ୍ଚେଁ କୁଳଟେ ରେ, କଶୋର, ଲେଉଟିଲେ ଅଙ୍କ ଦେବ, ବ୍ରଜ ବରଜାଲ ଦନ୍ତ ସେ ଗଲଣି କହେ ଶ୍ରୀମୁକୁନ୍ଦଦେବ ରେ । ୮ ।

( ୯ )

ରାଗ—ପୁରବୀ । ତାଳ—ଅଠତାଳ

ତୁହି ପରା, ମୋ ହୃଦୟ ମଣିମୟହାର ରେ । ଘୋଷା ।

ସହି ତୁ ମୋହର ସକଳ ସମ୍ପଦ, ମଦନ-ଫଣୀ-ରଦନ-ବିଷଗଦ,
ଅଖିଳ ବିଭବ ଅଖଣ୍ଡଳ ପଦ, ଅଗ୍ରେହଣପରମ୍ପରା ରେ । ୧ ।
ରସିକରାଜ ମସ୍ତକ ଅଲଙ୍କାର, ବିଦ୍ରୁମ ନବପଲ୍ଲବ ଗର୍ବହର,
ତୋ ପୟର ଲାଷା-ରଞ୍ଜକ ଦାସ ମୁଁ ବିରହଦୁଃଖପାସୋରା ରେ । ୨ ।
କହୁଥିବେ ସଖୀ ଜାଣି ବା ନ ଜାଣି, ମଣିଲୁ କି ସତ ଶୁଣି ତାଙ୍କ ବାଣୀ,
ଧରିଛୁ ବିରସ ବିବେକମାଶେଣୀ,-ମସ୍ତକମଣ୍ଡନହୀରା ରେ । ୩ ।
ନ ମଣ୍ଡିବୁ ଯିନା ମୋର ବକ୍ଷସ୍ଥଳ, ହୃଦୟରୁ ଯିବୁ କର କେଉଁ କଳ,
ମୋ ମନ-ଗଗନ ତଟ ସମୁଜ୍ଜ୍ୱଳ ଉଦୟ ନିର୍ମଳ ତାରା ରେ । ୪ ।
ସଜନି ଗୋ ନବସୁରତ-ବିଭବ, ପାସୋର ଯିବ କି ମନୁ ଥିଲେ ଜୀବ,
ଦୀନ କବିରବି ଚାତକର ନବ ଘନରସ ଜଳଧାରାରେ । ୫ ।

---

୯ । ଟୀକା— ଫଣୀ—ସର୍ପ, ଅଖଣ୍ଡଳପଦ—ଇନ୍ଦ୍ରପଦ, ଅଗ୍ରେହଣପରମ୍ପରା —ପାହାଚସବୁ, ବିଦ୍ରୁମ—ପୋହଳା ।

( ୧୦ )

ରାଗ—ଡୋଢ଼ ପରଜ

ରେ ସଙ୍ଗାତ, ସେ ସିନା ବସିବ ରୁଷି;
ଯେ ଶିଖଣ୍ଡଚୂଳ ନୟନ-କୁନ୍ତରେ ଧନେ ନୋହିଥିବ ଭୂଷି । ପଦ ।
ତରଣିଜା ତଟ, ଶରଣୀରେ ଭେଟ, ଯେ ରମଣୀ ହୋଇ ନାହିଁ;
ନୀଳ ବାରି-ବାହ-ଦଳନ ବିଗ୍ରହ ଅଳପ ନ ଥିବ ଗୁହିଁ ରେ । ୧ । ରସିକା-ବୃନ୍ଦରେ, ବସି ଅନନ୍ଦରେ, ବସି ଶ୍ୟାମ ପ୍ରେମ ଗୁଣ; ଯେ ଶୁଣି ନ ଥିବ, ବସୁଧାରେ ଥିବ, ପଶୁରୁ ହୋଇ ଅଜାଣ ରେ । ୨ । ବସାଇଣ ପାଶେ, ରସାଇ ହରଷେ, ହସାଇ ଜସ୍ତୁକ ମନେ; ପୀଡ଼ାଇ ଓଷ୍ଠକୁ, ଭିଡ଼ାଇ ଅଙ୍ଗକୁ, ଜଡ଼ାଇ ନ ଥିବ ଧନେ ରେ । ୩ । ବସନ ଲୁଟିଅ, ରସବିନୋଦିଅ, ରସରେ ନ ଥିଲେ ବସି; ଦୂରରୁ ଦୁର୍ଲ୍ଲଭ, ମୁରଲୀର ରବ, ଶ୍ରବଣେ ନ ଥିଲେ ପଶି ରେ । ୪ । ଜଳନ୍ତର ଇନ୍ଦ୍ର ନୃପ ରାମଚନ୍ଦ୍ର, ସ୍ନେହରସ ରସେ ଭଣି; ସ୍ମର-ତରୁଅର ଧାରରେ ଶରୀର ଥରେ ନୋହିଥିଲେ ହାଣି ରେ । ୫ ।

( ୧୧ )

ରାଗ—ପଞ୍ଚମବରାଢ଼ି, ତାଳ—ତ୍ରିପୁଟ

ଧନ୍ୟ ହେ ନବକିଶୋର, ସତୀ-ଧୃତିଧନଚୋର, ନିଖିଳ ନାଗର ଶିରୋମଣି; ତୁମ୍ଭ ସଦୟ ମାନସ, କୁଳଶରୁ କରକଶ, ବୋଲି ନ ଥିବାରୁ ଅମ୍ଭେ ଜାଣି ହେ, ଶ୍ୟାମବନ୍ଧୁ, ଅମ୍ଭ ସଖି ଲଭିଲା କି ଦଶା, ଦମ୍ଭେ ଜିଇ ହେବା ନାହିଁ ଅଶା, ଦେଲେ ତରୁଣ କେଶରୀ, କୋଳେ କୁରଙ୍ଗୀ କିଶୋରୀ, ଦଶଇ କି ବଞ୍ଚିବା ଭରସା ହେ । ୧ । ଭୁଲି ତଳପ ଶେଯାଇ, ଦେବାର କୋମଳ ଛାଇ, ଦଳ ଯାହା ଅଙ୍ଗେ ବସେ ବୁଡ଼ି; ମରକତ ଅରଗଳ ବଳିଷ୍ଠ ବାହୁ ଯୁଗଳ, ଲଗାଇ କେଡ଼େ ନିବିଡ଼େ ଭିଡ଼ି ହେ, ଶ୍ୟାମବନ୍ଧୁ, କି ଚଞ୍ଚଳ ଭାବ ଥିଲା କାଲି, ବାଳି ତୁମ୍ଭ ଅଙ୍ଗ ସଙ୍ଗଭାଲି, ଭଗ୍ନଚକ୍ର ମନମଥ ବିଜୟୀ ମଙ୍ଗଳ ରଥ, ଗତଗାତ୍ର ହୋଇଗଲା ଗୃହି ହେ । ୨ । ଯେଉଁ ଅଧର

---

୧୦ । ଟୀକା— ତରଣିଜା—ଯମୁନା, ସରଣି—ବାଟ, ନୀଳବାରିବାହ-ଦଳନ ବିଗ୍ରହ—ଯାହାର ଦେହଶୋଭା ନୀଳମେଘର ଶୋଭାଠାରୁ ମନୋହର, ତରୁଅର—ଖଣ୍ଡା ।

ପଲ୍ଲବେ, ଲେଖାଇ ନ ଦଏ ଲବେ, ମୃଗମଦପଙ୍କେ ଲୀଳାଭୃଙ୍ଗୀ; ତୁମ୍ଭ ମହିମାରୁ ଅଙ୍ଗୀକାର କରିଛି ଶୁଭାଙ୍ଗୀ, ତହିଁ ଶୁଅଙ୍ଗିଆ ବାମ୍ଭ ଭଙ୍ଗୀ ହେ, ଶ୍ୟାମବନ୍ଧୁ, କିଶୋରୀଙ୍କ କର କଳବଳ, ତୁମ୍ଭ ସୁଶ ତୁମ୍ଭେ ଯୋଡ଼ା କଲ, ହେମ ନବନୀତ ବଲ୍ଲୀ, କେହି ସହିବଟି ବୋଲି, ହୃଦୟରେ ଦୟା ନ ବହିଲ ହେ । ୩ । ମହାମହୀଧର ଧର, କଲ ଆତପତ୍ର ପର, ଯେଉଁ କର-ସେ ମୃଦୁ ବୟସେ; ସେ କରରେ ଯେବେ ଘନ-କେଶୀ ସମର୍ପିଲା ସ୍ତନ, କି ବଚନ ଦଳାଦଳି ରସେ ହେ, ଶ୍ୟାମବନ୍ଧୁ, ଫିଟି ତୁଟି ଯାଇଛି କାଞ୍ଚଲି, ସଞ୍ଚଣର ଚଞ୍ଚୁପୁଟ ଗଲି, ଲୁଳିଯିବା ଚକ୍ରବାକ-ମିଥୁନମାଧୁରୀଯାକ, ବାଳା ପୟୋଧରେ କରେ କେଳି ହେ । ୪ । ଅନ୍ୟାୟ୍ୟ ତମିର ହଂସ, ଭୋଜବଂଶ ଅବତଂସ, କଂସ ଶାସୁଅଛି ବସୁମତୀ; ତୁମ୍ଭେ ଧନବନ୍ତ ଘର କୁମର ହୋଇ ତୁମ୍ଭର, ମାନସେ ନୋହିଲା ଲବେ ଭୀତ ହେ, ଶ୍ୟାମବନ୍ଧୁ, କିଶୋରୀଙ୍କ କର ବଢ଼ାବଟି, ଅସମ୍ଭବ ଭାବେ ହଟାହଟି, ଫିଟାଇ ନୀଳମ୍ବପେଟୀ, ନୀବଡ଼ ନୀବିକବାଟି, ମଦନମନ୍ଦିର କଲ ଲୁଟି ହେ । ୫ । ଥରକେ ତ ଜଣାଗଲା, ଏଣିକି କି ରୂପେ ଭଲା, ପାଇବ ମୋ ପ୍ରିୟସଖୀ ପାଣ; ବୁଝିବା ତୁମ୍ଭର ବଂଶୀ, କପଟ ବିବେକଧ୍ୱଂସୀ କେମନ୍ତ ମୋହନ ମନ୍ଦହାସ ହେ, ଶ୍ୟାମବନ୍ଧୁ, କେଡ଼େ ତୁମ୍ଭ ବିଚକ୍ଷଣ ଭାବ, ସବୁ ତ ଏଥର ଜଣାଯିବ, ବୋଲେ ମହୀ-ପତିଶ୍ରେଣୀ-ମୁକୁଟ ମସ୍ତକମଣି, ଗଜପତି ଶ୍ରୀମୁକୁନ୍ଦଦେବ ହେ । ୬ ।

( ୧୨ )

ରାଗ—କାମୋଦୀ, ତାଳ—ଅଦ

ବନ୍ଧୁ କଲ କି ଦୁର୍ବିଚାରକୁ ରେ, ବର୍ଜିଲ ଖଣ୍ଡ ଅର୍ଜି ଖାରକୁ ରେ ।
ଅକ୍ଷରେ ନ ଜାଣିବା ମୂରୁଖ ପରି ନିଜ ବକ୍ଷରେ ଲକ୍ଷ୍ୟ କଲ ଶରକୁ ରେ । ପଦ ।

ସମ୍ପାଦ ଗୁଞ୍ଜ ଆଣି, ମୁଁ ଫିଙ୍ଗିଦେଲି ପାଣି-ବନ୍ତ ବର୍ତ୍ତୁଳ ମୋତି ହାରକୁ ରେ; ଚଢ଼ାଇ ଦେଲ ଗୃହୁତର ଚନ୍ଦନତରୁମୂଳେ କର୍କଟୀଲଟୀ ଘରକୁ ରେ । ୧ । ଶ୍ୱପଚ ଗ୍ରାମ ମଝି, କୂପରେ ବୁଡ଼ି ବୁଡ଼ି, କଲ ସ୍ନାନାଦି ବ୍ୟବହାରକୁ ରେ; ନ କଲ ମନୋରଥ ପଥରେ ଭଗୀରଥ ନୃପନନ୍ଦନା-ନୀରଧାରକୁ ରେ । ୨ । ଟେକି ଠୁକୁଲ ଲୋଷ୍ଟ୍ର, ସର୍ବ ସୁପର୍ବ ଶ୍ରେଷ୍ଠ, ଚନ୍ଦ୍ରଚୂଳ

୧୧ । ଟୀକା—ତରୁଣକେଶରୀକୋଳରେ—ଯୁବକ ସିଂହ କୋଳରେ, ମରକତଅରଗଳ—ମରକତମଣିରେ ଛଅର ହୋଇଥିବା କିଳଣି, ଭଲ—ଅସ୍ତ୍ରବିଶେଷ ( ଭଲ୍ଲାସ୍ତ୍ର ), ମୃଗମଦ—କସ୍ତୁରୀ, ଆତପତ୍ର—ଛତା ।

ଦେଉଳ ଦ୍ୱାରକୁ ରେ; ଯବନ-ଜାତି-ଶବ ଭବନ ହେବା ଗ୍ରାବ-କୁଟ୍ଟକୁ କଲ ନମସ୍କାରକୁ ରେ । ୩ । ଅତି ଭାଗ୍ୟ ଅର୍ଜିତ, ଉର୍ବଶୀ ଉରୀକୃତ, ଅଶ୍ଳେଷ ଘୃଣ୍ଡ ଅଙ୍ଗୀକାରକୁ ରେ; ବାନରୀ ନେଇପ୍ରାନ୍ତ ବତାଇବା ସଙ୍କେତ ସ୍ଥଳକୁ କଲ ଅଭିସାରକୁ ରେ । ୪ । ଶିଳାଶଯ୍ୟା ଉର, ନ ଥିବା ଗଜଢ଼ର, ଜୀମନ୍ତେ ରଖି ତୁଳ ସାରକୁ ରେ; ଶିରୀଷସୁକୁମାର, ମହାରାଜକୁମର କନ୍ଦରେ ବୁହାଇଲ ଭାରକୁ ରେ । ୫ । ଚରଅଭ୍ୟସ୍ତ ଶସ୍ତ୍ର, ସଂସ୍କୃତ କର ଅସ୍ତ୍ର, ବସି ଘୋଷିଲ ଶଶୀଠାରକୁ ରେ; ନ ଭଜ ଚନ୍ଦ୍ରାଯୁଧ, ତରିବ ବୋଲି ସଧ କଲ ସଂସାର ଅକୂପାରକୁ ରେ । ୬ । କବିସିହ୍ନର ବୋଲେ ଏପରି ହେଲେ ହେଲେ, କ୍ଷମା ଉଚିତ ପରିଗ୍ରହକୁ ରେ; ଦୋଷ ମୁଁ କରିଅଛି ଲଙ୍ଘିଲି ଯେବେ କିଛି, ତୋତେ ପଣ୍ଡିତା ଅଗ୍ରଗାରକୁ ରେ । ୭ ।

( ୧୩ )

ହରିରାଣି କାହିଁକି ଏତେ, ଅଜ ହରିରାଣି ନ କର ମୋତେ । ଘୋଷା ।

ମୋଦେ ମୋଦେ ହସି ତୁମ୍ଭେ ପିବ ଖସି ମୋ ଦେହ ପୂରିବ କରଜ କ୍ଷତେ । ବୁକୁର ଶାଢ଼ୀ ତ ରଖି ଦେବ ନାହିଁ ମୁଁ କରତଳେ ଅଚ୍ଛାଦିବି କେତେ । ୧ । ଚିକୁର ବେଶତ ରଖି ଦେଉ ନାହଁ ମୁକୁରରେ ଦିଶୁନାହିଁକି ମୋତେ । ବ୍ରୀଡ଼ା ଜଳଧିରେ ବୁଡ଼ିବି ମୁଁ କେହୁ ଜଭା ହେବ ସଙ୍ଗିମାଙ୍କ ପୁରତେ । ୨ । ସଖୀଏ ମକରୀ ଗଣ୍ଡେ ଥିଲେ ଲିହ୍ନ ନ କର ତା ଅନୁରୋଧ କାହିଁତେ । ଖଣ୍ଡିକୁ ତ କେହୁ ସେପରି ନ କରେ, ଗଣ୍ଡିକୁ ମୋ ଯାହା କର ସୁରତେ । ୩ । ଅଜ ନ ପାରଇ ଭାଜିଛି ମୋ ବଳ ରାଜ କରାଜିଛ କାହିଁତେ ଚତ୍ତେ । ବାମଦେବପରିପନ୍ଥୀ ରଣ ଜୟ କାମ ନୋହୁଛି କି ଅଦ୍ଭୁତ ଫତେ । ୪ । ଠାକୁରାଣୀ ପ୍ରେମବାଣୀ ଶୁଣି ବଂଶୀପାଣି ପ୍ରେମମୟ ଅନ୍ତରଗତେ । ସବିନୟେ ପୁଣି କୋଳରେ ଆଣିଲେ କବି ଦିନମଣି ରଚିଲେ ଗୀତେ । ୫ ।

---

୧୨ । ଟୀକା—ଗୁଞ୍ଜ—କାଇଁଚ, ପାଣିବନ୍ତ—ଚଳଚଳ, କର୍କଟୀଲଟା—କାକୁଡ଼ିଲଇ, ଶ୍ୱପଚ—ଚଣ୍ଡାଳ, ହାଡ଼ି; ସୁପର୍ବା—ଦେବତା, ଚନ୍ଦ୍ରଚୂଳ—ଶିବ, ଗ୍ରାବକୁଟ୍ଟ—ପଥରଗଦା, ଉରୀକୃତ—ଅଙ୍ଗୀକୃତ, ଅଶ୍ଳେଷ—ଆଲିଙ୍ଗନ, ଶିରୀଷ-ସୁକୁମାର—ଶିରୀଷଫୁଲପରି କୋମଳ, ଶସ୍ତ—ଉତ୍କୃଷ୍ଟ, ଅକୂପାର—ସମୁଦ୍ର ।

୧୩ । ଟୀକା—କରଜକ୍ଷତ—ନଖକ୍ଷତ, ବୁକୁ—ବକ୍ଷ, ଚିକୁର—କେଶ, ବ୍ରୀଡ଼ା—ଲଜ୍ଜା, ବାମଦେବପରିପନ୍ଥୀ—ଶିବଶତ୍ରୁ, କନ୍ଦର୍ପ; କାମ—କାମନା ।

( ୧୪ )

ରାଗ—ଢୋଡ଼ି ପରଜ

ରେ ସଙ୍ଗାତ, ସରିଗଲା ଲାଜେ ଆଜ,

କରି ବିଲୋକନ କାଲି କେହି ଘନଶ୍ୟାମ ମୁଖ-ଦ୍ୱିଜରାଜ । ଘୋଷା ।

ସେ ଶୋଭା ଉଦୟ ସମ୍ଭୋଗରେ ଚିତ୍ତ ପୂରି ନ ଥିବାରୁ ମୋର; ରଜନୀ ରଥାଙ୍ଗୀ ଭଙ୍ଗୀ ସିନା ଅଙ୍ଗୀକାର କରେ ନିରନ୍ତର ରେ । ୧ । ନୀଳ ସୁଧାସିନ୍ଧୁ ପରି ତ ମୋ ବନ୍ଧୁ ଦିଶୁଥାନ୍ତି ଗୋଟିଯାକ; କେବଳ ଅଧର ଚୁମ୍ବିବାରୁ ମୋର ନ ରହିଲା ତ ବିବେକ ରେ । ୨ । ମୁଁ ରତିଭବନ ଭିତରେ ମୋହନ ମୂରତିକି ଯତ୍ନେ ଲେଖି; ଚୁମ୍ବୁଥିଲି ରଙ୍କ ପରି ହରିଣାଙ୍କ ତୁଲ୍ୟ ମୁଖେ ବୁଜି ଆଖି ରେ । ୩ । ମୋହିତ ହେବାରୁ ସେ ସୁଖ ଅମଳେ ନୋହିଥିଲି ସାବଧାନ; କେହି ଆସି ଶ୍ୟାମ ଚୁମ୍ବିଲେ ଚରମଦେଶେ ରହି ମୋ ବଦନ ରେ । ୪ । ଲେଖାରେ ହେଲେ ତ ଲେଖାମାନଙ୍କରେ ଲେଖାରେ ନୋହି ସେ ଠାଣି; ହଠ କରି ଅବା ଲଭିଲି ଦିଅନ୍ତି ଅଠକି ରହିଲା ପାଣି ରେ । ୫ । ଯାହା ହେଲା ମୋର ବାହାର ଭିତର ମନ୍ଦାକ୍ଷ ଭୟରେ ପୂରି; ଅଷ୍ଟାଦୁର୍ଗ ହରିହୟ ବୋଲେ ଗୌର-ଧରା ପଡ଼ିଗଲା ପରି ରେ । ୬ ।

( ୧୫ )

ରାଗ—କାମୋଦୀ, ତାଳ—ଏକତାଳି

ଚରଣାୟୁଧବୃନ୍ଦ ରଟିଲା ରେ ଅରବିନ୍ଦହିଁ ବନ୍ଧୁ ଫୁଟିଲା ରେ,

କରି କରୁଣା ବୋଲି ଯେତେ ଗୁହ୍ଠୁ ରଡ଼ିଲି

ଗୁମାନ ଗଣ୍ଠି ନ ଫିଟିଲା ରେ । ଘୋଷା ।

ଖରବଚ-ମୁଦ୍ଗର, ପ୍ରହାରି କେତେ ମୋର, ମୋଦପୀୟୂଷ ଘଟି ଫିଟିଲା ରେ; ପିଶାଚ ସ୍ମର ଆସି, ଦେବାରୁ ମୋତେ ତ୍ରାସି, ନିଶା ଚରମଦଶା ଘଟିଲା ରେ । ୧ । ରାତିତମିରତତି ଗଲେ ଯେ ପ୍ରୀତିପ୍ରତିବନ୍ଧକ ଅନ୍ଧକାର

---

୧୪ । ଟୀକା—ଦ୍ୱିଜରାଜ—ଚନ୍ଦ୍ର, ରଜନୀରଥାଙ୍ଗୀଭଙ୍ଗୀ—ରାତିରେ ଚକ୍ରବାକୀ ପରି ବ୍ୟାକୁଳ; ହରିଣାଙ୍କ—ଚନ୍ଦ୍ର, ଚରମଦେଶ—ପୃଷ୍ଠଭାଗ, ଲେଖାମାନଙ୍କରେ—ଦେବତାଙ୍କ ମଧ୍ୟରେ, ମନ୍ଦାକ୍ଷ—ଲଜ୍ଜା, ହରିହୟ—ଇନ୍ଦ୍ର; ଏଠାରେ ରାଜା ।

୧୫ । ଟୀକା— ଚରଣାୟୁଧ—କୁକୁଡ଼ା; ଅରବିନ୍ଦ—ପଦ୍ମ; ମୋଦ-ପୀୟୂଷଘଟି—ଆନନ୍ଦରୂପ ଅମୃତର କଳସ; ତତି—ସମୂହ, ଫୁଟି ହେଲେ

ଘଟିଲା ରେ; ନ ବୁଝିଲୁ ଗୁହାର, ତୋ ରୁଷା ଯେ ମୋହର, ପରାଣ ଲୁଟିବାକୁ ହଟିଲା ରେ । ୨ । ଲୋଚନରେ ଲୋଚନ, ସଙ୍ଗମେ ଯେଉଁ ଧନ, ରଚଇ ଅନ୍ତରାୟ ଜଟିଳା ରେ; ଝୁଟି ହେଲେ ବରଷୁଁ, ଏବେ ମୋର କି ଦୋଷୁଁ କୁଟିଳାକ୍ଷି ତୋ ସ୍ନେହ ତୁଟିଲା ରେ । ୩ । ଉରମରମ୍ୟଦେହା, ଚରମ ବଳୁ ଯାହା ଜାଣିଲି ମୋ କରମ ଫାଟିଲା ରେ; ସକାମ କର ମାର, ପକାନ୍ତୁ ସୁକୁମାରୀ, ନ କାଟନ୍ତୁ ଏ ଯେଡ଼େ କାଟିଲା ରେ । ୪ । କିଶୋରୀଙ୍କର ମନ-ମୀନକୁ ଏ ବଚନ-ମିଷ ବଡ଼ଶଲଟି ଘଟିଲା ରେ; ଅଷ୍ଟଦୁର୍ଗ ଭୂପତି, ମିଳିନ୍ଦ ସେ ଦମ୍ପତି ପଦାବ୍ଜ ମକରନ୍ଦ ଗୃଟିଲା ରେ । ୫ ।

( ୧୬ )

ରାଗ—କୁମ୍ଭକାମୋଦୀ, ତାଳ—ଅଧ

ପ୍ରିୟସଖି କରିବି କି ବୁଦ୍ଧି ଗୋ, ଗଲିଣି ମୁଁ ଲାଜେ ସଢ଼ି । କେଉଁ ଗୁଣେ ରସି ନିକୁଞ୍ଜବିଳାସୀ ମୋ ସ୍ନେହେ ଅଛନ୍ତି ବୁଡ଼ି । ଘୋଷା ।

ମୁଁ ତ ଯଉବନ ଗୁମାନେ ମଦନମନ୍ତ୍ରର ଗୃଳି ନ ଜାଣେ; ମୋତେ ଜଳକେଳିଅଳସୀ ମରାଳୀଗମନା ବୋଲନ୍ତି କେଣେ । ୧ । ବ୍ରଜେ କେତେ ବାମା ନାହାନ୍ତି ସୁଷମା ସମ୍ଭାରେ ରମ୍ଭାରୁ ବଳି; ସେ ଶିଖଣ୍ଡଚୂଳ ନୟନଅଞ୍ଚଳ ଆନେ ତ ନ କଲେ କେଳି । ୨ । ମୁଁ ଗୃହିଁ ନ ଜାଣେ ଲବେ ନେତ୍ରକୋଣେ ନରୁଁଇ ଭୂରୁକୁ ଗେଲେ; ତେବେ ପୀତପଟ ନଟ-ଖଞ୍ଜରୀଟ-ନୟନା ମୋ ନାମ ଦେଲେ । ୩ । ମନ ଜାଣିବାକୁ ଯେଉଁ ଧନ ଭଲେ ନ ମଜାଇ କଣ୍ଠଭୂଷା; ତ୍ରିଗୁଣ ନ ଘେନି ଦ୍ୱିଗୁଣ ସେ ଧନ କରନ୍ତି ଶୋଭା ପ୍ରଶଂସା । ୪ । ଏଥୁଁ ଅବା ଖେଦ ହେଉଛି କି ମୋଦ ନ ଜାଣନ୍ତି ଅନ ସଖୀ; ସିତପତବୃନ୍ଦମୁକୁଟ ମୁକୁନ୍ଦଦେବ କେବଳ ମୋ ସାକ୍ଷୀ । ୫ ।

---

ବରଷୁଁ—କ୍ଷଣକାଳ ବର୍ଷକ ପରି ହୁଏ, କର୍ମ—ସୁବର୍ଣ୍ଣ, ମନମୀନକୁ—ମନରୂପ ମାଛକୁ, ବଚନ-ମିଷ-ବଡ଼ଶ-ଲଟି—କଥାରୂପ ବନଶୀଖଡ଼ା; ମିଳିନ୍ଦ—ଭ୍ରମର ।

୧୬ । ଟୀକା—ନିକୁଞ୍ଜବିଳାସୀ—ଶ୍ରୀକୃଷ୍ଣ; ମନ୍ଥର—ଧୀର; ମରାଳୀ—ହଂସୀ; ସୁଷମା—ଶୋଭା; ରମ୍ଭା—ସ୍ୱର୍ବେଶ୍ୟା; ଶିଖଣ୍ଡଚୂଳ—ମୟୂରପୁଚ୍ଛଧାରୀ; ଖଞ୍ଜରୀଟନୟନା—ଖଞ୍ଜରୀଟ ପକ୍ଷୀପରି ଚଞ୍ଚଳ ନୟନ ଯାହାର ।

( ୧୭ )

ରାଗ—ମୁଖାରୀ, ତାଳ—ଅଠତାଳି

ମୁଁ ହାରିଲି ହେଜ ଏତିକି ଗୋ, ଜୁହାରିଲି ଶ୍ୟାମ ପ୍ରୀତିକି ଗୋ; ଗୁହାରି କରିବି କାହା ଆଗେ କେତେ ଲୂହାରେ ବନାଇ ସ୍ତୁତିକି ଗୋ । ଘୋଷା ।

ଦେହକୁ ସମରପି ପ୍ରାଣ ଭୁଲେ, ସ୍ନେହକୁ ସମ୍ପାଦିବା ସିନା ଭଲେ, ଏ ହଟହଟାରେ କେ ମରିବ କରି ସଙ୍ଗୀଲି ବିଶ୍ୱାସଘାତୀକି ଗୋ ।୧। ନିଯୁମ କରି ନ ପାଳଇ ଯାହା, କି ଅମଳଣିଆ କରଇ ତାହା, ଦିଅ ମୋତେ ଗାଳି ପଛେ ମୁଁ ନ ପାରେ ପରୁଷ ପୁରୁଷ ଜାତିକି ଗୋ । ୨ । ଦୁଅଗଲ୍ଲି ଶାଳୀବନେ କି ରଙ୍ଗ, ସୁଆଗ ନ ଥିବା ଜନେ କି ସଙ୍ଗ, ମୁଁ ଆଗ ବିବେକ ହୁଡ଼ି ହୃଦୟକୁ ସମର୍ପିଲି କାମକାତିକି ଗୋ । ୩ । ହଟିଲି ରାଧାର ଏ କଞ୍ଜ-ନେଇ, ଘଟିଲି ମୋ କର୍ମେ ଏ ଦଶା ମାଇ, ଜଟିଳା ଜାଣିଲେ ସଂସାରୁ ସରିବି ପାଇ ଘୋର ଅପଖ୍ୟାତିକି ଗୋ । ୪ । ଶତ ପଦରେ ପଦେ ନାହିଁ ସତ, ସତ ପରି ହୋଇବାରୁ ପ୍ରତୀତ, ଅତପଃଶୀଳା ମୁଁ ଅନୁଭବ କଲି ଏ ତପତ ତତପତିକି ଗୋ ।୫। ଶିଖଣ୍ଡଚୂଳଆର ଗୁଣ ଭୁଲେ, ଏ ଖଣ୍ଡ ଅଛୁ ବୋଲି ଜାଣିଥିଲେ, ଅଖଣ୍ଡ ବିଶ୍ୱାସ କରନ୍ତି କି ଭଲେ, ଜଗଦେବ ଏ ଭାରତୀକି ଗୋ । ୬ ।

( ୧୮ )

ରାଗ—କାମୋଦୀ, ତାଳ—ଏକତାଳି

କାହିଁରେ ମନ ସହି, ପ୍ରସନ୍ନ ହେଜ ନାହିଁ, ଏଥିକି କହ ମୋର ଗତିକି ରେ; କି କରି ଅରଜିବି, କା କରି ବରଜିବି, ସେ ନବ ଘନଶ୍ୟାମ ପ୍ରୀତିକି ରେ । ପଦ ।

ଯୁଗଠାରୁ ଅଧିକ ହୋଇଲାନି ପଲକ, କେମନ୍ତେ ସମ୍ଭାଳିବି ଧୃତିକି ରେ । ତ୍ରିଭୁବନମୋହନ ବିଷମ ବଂଶୀସ୍ୱନ କାହୁଁ ଚୁମ୍ବିଲି ମୋର ଶ୍ରୁତିକି ରେ । ୧ । ଇନ୍ଦ୍ରନୀଳକପାଟପୁଟରୁଚି ସେ ନଟବର ମୁକୁଟମଣି

---

୧୭ । ଟୀକା—ପରୁଷ—ନିଷ୍ଠୁର; ଦୁଅଗଲ୍ଲି—କଟା ହୋଇଥିବା; ସୁଆଗ—ସ୍ନେହ; ଅମଳ—ନିଶା; କାମକାତି—କନ୍ଦର୍ପର ଅସ୍ତ୍ର; ଅତପଃଶୀଳା—ଯେ ତପସ୍ୟା କରି ନାହିଁ, ଅପୁଣ୍ୟବତୀ; ତପତ—ଉତ୍ତାପ ।

୧୮ । ଟୀକା — ଇନ୍ଦ୍ରନୀଳକପାଟପୁଟରୁଚି—ଇନ୍ଦ୍ରନୀଳମଣିରେ ତିଆରି ହୋଇଥିବା କବାଟ ଅବରଣ ଶୋଭା; ରବିନନ୍ଦନା—ଯମୁନା; ଗରଳ—ବିଷ,

ଛାତକି ରେ । ମାନସେ ଭାବି ଭାବି କମେ କି ଛାଡ଼ି ଦେବି କୁଳବରତ ଜାତନୀତକି ଗୋ । ୨ । ଗରଳ ଗିଳି ଅବା ରବିନନ୍ଦନା ସେବା-ବାଧିରେ ବଳାଇବି ମତିକି ଗୋ । ଅବା ଶ୍ୟାମ ସଙ୍ଗତ ଲଭି ସୁଭାଗ୍ୟବତୀମଣ୍ଡଳେ ଟେକାଇବି ଛାତକି ଗୋ । ୩ । ନିକୁଞ୍ଜେ ସତେ ବେଳେ ଘେନି ବସିବି କୋଳେ ସେ ନବକିଶୋର ମୂରତିକି ଗୋ । ପରତେ ନାହିଁ ମୋର କରତେ ମଦନର ବସି ପାରିବି କି ବରତିକି ଗୋ । ୪ । କହେ ଶ୍ରୀ ଛୋଟରାୟ ନୃପତି କୁବଳୟନେନେ ଲପନ-ନିଶାପତିକି ଗୋ । ଦେଖାଇ ଦେଇ ଥରେ ଏବେ ଭାଗ୍ୟପଥରେ ପକାଇ ନେବେ ଅନାବତିକି ଗୋ । ୫ ।

( ୧୯ )

ରାଗ—ବେଗୁପ୍ତ, ତାଳ—ଅଠତାଳି

ଜଣାଥିଲା କି ମୋତେ ଏ ରୀତ ଗୋ, ଛଣାସୁଧା ସରପଣାରୁ ମଧୁର ଲାଗୁଥିଲା ଶ୍ୟାମପ୍ରୀତ ଗୋ । ଘୋଷା ।

ଲୁଣି ମଣିଲିଣି ମଧୁହରକୁ, ଶୁଣି ତା ବିଷମ ବଂଶୀସ୍ୱରକୁ, କି ବାଇ ହୋଇଲି ନିଭିଇବି ବୋଲି ସ୍ମର-ଧନଞ୍ଜୟ-ହେତି ଗୋ । ୧ । ମହୀତଳେ ଯେତେ ଧୂର୍ତ୍ତ ପୁରୁଷେ, ସହି ସବୁର ପରମଗୁରୁ ସେ, ଦୂରୁ 'ସେ ସ୍ନେହକୁ ଜୁହାର ମୁଁ ହାରି ରହିଅଛି ଲଭି ଭୀତ ଗୋ । ୨ । ତାରତମ୍ୟ ସେ ନ ଜାଣେ ନିପଟ, ତାର ତନୁ ଗୋଟିଯାକ କପଟ, କଳାବତୀକୁଳ ମାରଣେ କେବଳ କରିଅଛି ପରଚିତ ଗୋ । ୩ । ଅସିବି ମୁଁ ବୋଲି ଦେଇ ଭଷାକୁ, ବାସି କଲା ଯେ ମୋ ଫୁଲଭୂଷାକୁ, ତୁ ହେଲେ ପହିଲୁ ଥରେ ନ କହିଲୁ ସେ କିତବର ଅନୀତ ଗୋ । ୪ । ନିଚୋଳରେ ହେଲାନି ମୋ ଅରୁଚ, ପୀତପଟ ସେ କାହିଁକି ଧରୁଛି, ତାହାର ସଦୃଶ ପିନ୍ଧୁଥାଇ ବାସ ଯା ଭୁଲେ ମାତୁଛି ନିତ ଗୋ । ୫ । ଶୁଣି ଏପରି ସନ୍ତୋଷ ଗିରକୁ, ନିଜ ନୟନେ ଥକାଇ ନୀରକୁ, ଅଳି ପ୍ରବୋଧିଲେ କିଶୋରୀକି ବୋଲେ ଅଷ୍ଟଦୁର୍ଗ ଧରାପତି ଗୋ । ୬ ।

---

କରତେ—କରତନାମକ ଅସ୍ତ୍ରରେ, କୁବଳୟ—ନୀଳ ପଦ୍ମ, ଲପନ—ମୁଖ, ଲପନନିଶାପତିକି—ମୁଖଚନ୍ଦ୍ରକୁ ।

୧୯ । ଟୀକା—ସ୍ମରଧନଞ୍ଜୟହେତି—କନ୍ଦର୍ପରୂପ ଅଗ୍ନିର ଶିଖା, ପରଚିତ—ପରିଚୟ, କିତବ—କପଟୀ, ନିଚୋଳ—ପ୍ରଚ୍ଛଦପଟ, ଘୋଡ଼ହେବା ଲୁଗା; ଅଳି—ସଖୀ ।

( ୨୦ )

ରାଗ—ସାବେରୀ, ତାଳ—ଅଦ

କର କ୍ଷମା ରେ, ରତି ପ୍ରତିମା ତୁ କର କ୍ଷମା ରେ,
ନ ଥିଲି ମାଜଣା, ବୋଲି ମୋତେ ଜଣା । ଘୋଷା ।

କେଉଁ ପ୍ରତିହାରଣୀକି ଦାସୀ, କହିଥାନ୍ତା ଯେବେ ଧାଇଁ ଅସି, ତା ନ ମାନି ପଶିଥିଲେ ହାସି, ମାନ କରିତ ମୋଠାରେ ତନୁମଧ୍ୟମା ରେ । ୧ । ବାର ପାର ନାହିଁ ରେ ସୁକେଶି, ବାର ମଧ୍ୟେ ତୁ ଥିଲୁ ବଳସି, ଗୃହପାଶେ ଘେରଥିଲେ ଦାସୀ, ଭୁବ ନିତମ୍ବ ସ୍ତନ-ଜଘନ-ସୁଷମା ରେ । ୨ । ଭଙ୍ଗ ରଦନେ ବସନାଞ୍ଚଳ, ତଡ଼ିଲ୍ଲତାରୁ ହୋଇ ଚଞ୍ଚଳ, ବଳାଶିଞ୍ଜିତ କରି ପ୍ରବଳ, ପଳାଇ ଯା ମଣ୍ଡିଦେଲୁ ମଣ୍ଡପସୀମା ରେ । ୩ । ଦାଣ୍ଡ ପାଇ ମୁଁ ହେଜିଲି ଏବେ, ଆଉ ଏପରି କରିବି ଯେବେ, ସାର ଦେବୁ ମୋତେ ପରାଭବେ, ବାରକାକ୍ଷୀ ପୀନସ୍ତନେ ଅଜକ ଜମା ରେ । ୪ । ଶୁଣି ଶ୍ରୀକୃଷ୍ଣ ବିନୟ ବାଣୀ, ହରଷରେ ସେ ରମଣୀମଣି, ନିଧୁବନ ରଚିଲେ ସେକ୍ଷଣି, ବୋଲେ ବସୁଦୁର୍ଗ ବସୁନ୍ଧରା-ସୁନାମା ରେ । ୫ ।

( ୨୧ )

ରାଗ—ଜୌନପୁର ତୋଡ଼ି, ତାଳ—ଆଠତାଳି

ଜଣା ପଡ଼ିଲା ରେ, ବଣାମୃଗାକ୍ଷି ତୋ ଗୃହ;
ଅଣାଇ କପଟେ ବଣା କରି ବାଟେ ଖଣାକୁ ଦେବାରେ ପେଲି । ଘୋଷା ।

ଚରମ କରିବା କ୍ଷଣେ ଜନମାଉ ମୋର ମନେ ଘୋର ବ୍ୟଥା, ପରମ ଦୟାକୁ ପତାକା ଟେକାଇ ଧରମ ନିକ୍ଷ ଏ କଥା । ୧ । ସତ୍ତୁର ସଂଖ୍ୟା ଦୁର୍ଗୁଣ ଘେନି ହେଉ ଫଡୁରାଖୋରଙ୍କୁ ସାହା, ଚତୁରା ହୋଇ ବିଶ୍ୱାସି-ଜନ-କଣ୍ଠେ କତୁରୀ ଚଳାଉ ଯାହା । ୨ । ଶିରୀଷଦେହା ଯା ବକ୍ଷରେ ବହିଛୁ ଗିରିସମ ଶୋଭା ସ୍ତନ, ଗୁରୁ ସଦ୍ଗୁଣ ସେ ଶିଖାଇଛୁ ପରା ପୁରୁଷମାରଣ-

୨୦ । ଟୀକା— ମାଜଣା—ସ୍ନାନ, ପ୍ରତିହାରଣୀ—ସ୍ତ୍ରୀ ଦ୍ୱାରୀ; ତନୁ-ମଧ୍ୟମା —କ୍ଷୀଣକଟୀ, ଶିଞ୍ଜିତ—ଅଳଙ୍କାରଧ୍ୱନି, ରଦନ—ଦନ୍ତ, ବସନାଞ୍ଚଳ—ଲୁଗାକାନି, ପୀନସ୍ତନେ—ସ୍ଥୂଳ ସ୍ତନରେ, ଜମା—ରଖ, ନିଧୁବନ—ରତି-କ୍ରୀଡ଼ା, ସୁନାମା—ଇନ୍ଦ୍ର ।

୨୧ । ଟୀକା— ଖଣା—ଖଣି, ଖାତ; ଚରମ—ପିଠି, ସୁଧାକଳସ—ଅମୃତକୁମ୍ଭ, ଉତ୍ସଙ୍ଗ—କୋଳ, ପୀୟୂଷ—ଅମୃତ ।

* ପାଠାନ୍ତର—'ଜଣା ନ ଥିଲା ମାଜଣା, ହେବେ ବୋଲି ଯେମା' ।

ନ୍ତମ । ୩ । ରଖାଇ ଅନେକ ଧନ ଜୀବପବାସେ ଦେଖାଇ ସୁଧା କଳସ, ନ ଖାଇଲେ ମଲ୍ ମଲ୍ ବୋଲୁଥାଉ ଚଖାଇ ନ ଦେଉ ଲେଶ । ୪ । ହସନ୍ତୁ ଭଗାରି ବୋଲି କପଁା ମୋର ଅସନ୍ତୁଷ୍ଟ କରୁ ରାଜା, ବସନ୍ତୁ ଭସ୍ତେଙ୍ଗେ ମୋର ଥରେ ଭଲ୍ କଷନ୍ତୁ ସିନା ମରଜା । ୫ । ଝରଇ ପୀୟୂଷ ଯେଉଁ ବଚନରୁ ହରାଇ ପ୍ରାଣ ସେ ଗେଲେ, କରଇ ମୁଁ ଶଙ୍କା ଏଣୁ କୃଷ୍ଣଚନ୍ଦ୍ର ନରଇନ୍ଦ୍ର ଦେବ ବୋଲେ । ୬ ।

( ୨୨ )

ରାଗ—କାମୋଦୀ, ତାଳ—ଏକତାଳି

ନିରତେ ମୁଁ ଅଟକୁ ଅଟକୁ ଗୋ, ଗିର ନ ଦେଇ ଶ୍ରୁତିତଟକୁ ଗୋ, କି ରସ ଲୋଭେ ଇନ୍ଦୀବରନେତ୍ରା କାଳନ୍ଦୀ ତଟକୁ ଧାଉଁଥାଏ ହଟକୁ ଗୋ । ଘୋଷା ।

ଛଇଳାକୁ ପୁଚ୍ଛ ତ, ଅପଣେ ପରି ଶତପୁଟହାଟକୁ ବଳି ଝଟକୁ ଗୋ, କି ଦଶିଲଣି ତନ୍ତୁ ନ ମାନି ଗଲ ଦନ୍ତୁ ବଂଶୀବଟ ନିକଟ ଭେଟକୁ ଗୋ ।୧। କେ କହୁଅଛୁ ଧାଇଁ ଭୁଟି ଅସୁ ତ ଯାଇ ଗୋପ ମଥୁରି ବେନି ହାଟକୁ ଗୋ, କେଉଁ କଶୋରୀ ଭଲ ହେଲାନି ଗୃହିଁ ଝଲମଲ-ଚନ୍ଦ୍ରକଚୁରୁ-ନାଟକୁ ଗୋ । ୨ । କପଟେ କଳି କରୁଥାଏ ଏ କରଭୋରୁ ଶ୍ୟାମଗୁଣ କହିବା ଭାଟକୁ ଗୋ, ଭଜୁଥାଏ ତା ଦେହସଙ୍ଗୀ ସମୀର ସ୍ନେହବଶରୁ ବାତାୟନ ତଟକୁ ଗୋ । ୩ । ଇଚ୍ଛା ନ କଲ ରାଜହଂସତୁଲତୁଲ ଶେଯ ବଛଣାପଡ଼ା ଦନ୍ତଖଟକୁ ଗୋ, ଗୁପତେ ଫରମାସୀ ଅଣାଉଛୁ ସୁକେଶୀ, କମଳକଶଳୟ କୁଟକୁ ଗୋ । ୪ । ଏବେ ହେଲେ ଏ ଭୀରୁ ନ ନିବର୍ତ୍ତିଲେ ଊରୁ-ସ୍ତମ୍ଭେ ବନ୍ଧାଇ ପୀତପଟକୁ ଗୋ, ହେଉ ଅକ୍ରୁର ଧ୍ୱଂସ ଦେଖାଇ ଦେବା କଂସକଟକୁ ଅସିବାର ଭାଟକୁ ଗୋ । ୫ । ଏହା ଚରଣକଞ୍ଜ ଚୁମ୍ବି ଜାଣିଛୁ କୁଞ୍ଜ ମନ୍ଦିରେ ସେ ବଟମୁକୁଟକୁ ଗୋ, ଲଗାଇ ଦେଇଥିବ ଏଣିକି ତ ମୁଁ କବିତପନ ମନମଧୁଲିଟକୁ ଗୋ । ୬ ।

---

୨୨ । ଟୀକା—ଅଟକୁ ଅଟକୁ—ଅଟକାଉଁ ଅଟକାଉଁ, ବନ୍ଦ କରୁଁ କରୁଁ; କାଳନ୍ଦୀତଟକୁ—ଯମୁନାକୂଳକୁ, ଶତପୁଟହାଟକୁ—ଅତି ଉଜ୍ଜ୍ୱଳ ସୁବର୍ଣ୍ଣକୁ, ରାଜ-ହଂସତୁଲ ତୁଲ ଶେଯ—ରାଜଭୋଗଯୋଗ୍ୟ ସୁକୋମଳ ତୁଳାଗଦି, ବାତାୟନ—ଝରକା, ଦନ୍ତଖଟ— ହାତୀଦାନ୍ତରେ ନିର୍ମିତ ଖଟ, କମଳକଶଳୟକୁଟ—ନୂଆ ପଦ୍ମପତ୍ରସମୂହ, ଅକ୍ରୁର—ମହତ୍ତ୍ୱ ।

( ୨୩ )

ରାଗ—କାମୋଦୀ, ତାଳ—ଅଠତାଳ

ଆଜ କି ସହ୍ମି ସହି କରିବ ଗୋ, କହି ମହତ ସିନା ସରିବ ଗୋ । ଘୋଷା ।

ଶ୍ୟାମଗୁଣ ପରଖି, ଚିତ୍ତ ଭିତରେ ସଖି, ରଖିଲଣି କପଟ ଭାରିବ ଗୋ; ମିଶି ଗଲଣି କ୍ଷୀର,—ଭାଣ୍ଡରେ ଯେବେ ଖାର, ଶୁଣି କେ ସ୍ୱାଦୁ ବାର ପାରିବ ଗୋ । ୧ । ବୁଝିଲଣି ମରଜ, ଆଜ କି ହୋଇ ରାଜ, କୁଞ୍ଜେ ତୋ ସଙ୍ଗେ ବିହରିବ ଗୋ; ସୁଧାରେ ବିଷ ଦେଇ ଯତ୍ନେ ଗୁଣିଲେ ନେଇ, ତହୁଁ କି ମଧୁ ଆଜ ଝରିବ ଗୋ । ୨ । ଦେଲଣି ସ୍ନେହ ଭାଙ୍ଗି ତୋଠାରୁ ସେ ଶୁଭାଙ୍ଗୀ ଆଜ କି ତୋ ବୋଲ ସେ କରିବ ଗୋ; ଛେଦି ପାଦପମୂଳ, ସିଞ୍ଚିଲେ ନେଇ ଜଳ, ସେ କି ନବପଲ୍ଲବ ଧରିବ ଗୋ । ୩ । ଅଷ୍ଟଦୁର୍ଗ ଅବନୀ-ପତି ଭଣେ ସଜନି ଆଜ କି ତୋ ଦୁଃଖ ସେ ହେରିବ ଗୋ; ପରଖଦେବା ଲାଗି, କଲଣି ଯେବେ ପାଞ୍ଚି, ପଞ୍ଚବାଣକୁ ସେ କି ଡରିବ ଗୋ । ୪ ।

( ୨୪ )

ରାଗ—ଭୈରବୀ, ତାଳ—ଅଠତାଳ

ଶ୍ୟାମସମ କମନୀୟ ନାହିଁ ଅଉ,

ତା ବାହୁଭିଡ଼ାରେ ମୋର ଦିନ ଯାଉ । ଘୋଷା ।

କି ସୁନ୍ଦର ପୀତପଟ, ତ୍ରିଭଙ୍ଗ ମୁରଲୀନଟ, ତା ଶିର ମୁକୁଟ ଦିଶେ ଦାଉ ଦାଉ । ୧ । ଅଳି ମଙ୍ଗଳାଙ୍କୁ ଜଣା, ଥିଲେ ନ ଥିଲେ କରୁଣା, ନୟନସମ୍ପତ୍ତି ମୋର ଜୀଇଥାଉ । ୨ । ପଡ଼ିଗଲେ ତା ନଜରେ, ମଦନ ମାଦକ ଶରେ, ନାରୀ ହୃଦୟରୁ ଖସି ପଡ଼େ ହାଉ । ୩ । ନନ୍ଦଲେ ନନ୍ଦନନ୍ଦନେ, ତା ପଛେ ମୁଁ ବନେ ବନେ, ଶିରେ ଧେନ ବୁଲୁଥିବ ତା କଠାଉ । ୪ । କବିରତ୍ନ ଭଣେ ରସେ, ମନମଥ ରତିହାସେ, ତା ପ୍ରେମ-ସାଗରେ ଚିତ୍ତ ବୁଡ଼ିଯାଉ । ୫ ।

( ୨୫ )

ରାଗ—ତୋଡ଼ିପରଜ, ତାଳ ଏକତାଳ

ପରାଣ ଗ୍ଲୁର କି ଲୋଡ଼ା ରେ ସଙ୍ଗାତ,

ପ୍ରିୟଜନ-ପ୍ରୀତି ପୀଯୂଷ-ପ୍ରବାହ ହୁଅଇ ଯେବେ ଖଦଡ଼ା ରେ । ଘୋଷା ।

ପାସୋରେ ହୃଦୟ ଭିତରୁ ସଦୟ ପଣ ପରମ ମୁହାଁସ; ପେଟଯାକ ପୁରିଥିବ ଯେବେ କୁଟ ମୁଖେ ଥିବ ମନ୍ଦହାସ ରେ । ୧ । ଛଳପୂର୍ଣ୍ଣ କର

୨୫ । ଟୀକା—ମୁହାଁସ—ଗନ୍ଧ, କୁଟ—କପଟ, ଝସ—ଜଳପାନବିଶେଷ ।

ମୃଦୁ ବାଣୀ ଝଙ୍କ ବିରହ ହୃଦେ ଢାଳିବା; ନିଦାଘେ ତାପିତ ବନଲତା ହିତ ହାତଠେକା ଜଳ ଦେଲା ରେ । ୨ । ପ୍ରଣୟ ପରଖ କରି ଲକ୍ଷ ଲକ୍ଷ ସବୁ ବୁଝି ଅନୁଭବେ; ପ୍ରୀତିଠାରୁ ବଡ଼ କେହି ନାହିଁ ବୋଲି ବିବେଚନା ନାହିଁ ଯେବେ ରେ । ୩ । କବି ଦିନକର ରାମଗୁରୁ ବୋଲେ ଏବେ ସବୁ ଜଣାଗଲା; ପକାଇ ପବିତ୍ର ସ୍ଥଳେ ସ୍ଥୂଳ ଗାତ୍ର ପରମ ପଦକୁ ଚଲି ରେ । ୪ ।

( ୨୬ )

ରାଗ—କେଦାର, ତାଳ-ସରିମାନ

ଖଳ ବଚନକୁ ସତ ମଣି କି ରେ । ଘୋଷା ।

ଅଦରଶେ ଥିବା ବାଙ୍କ, ଗଙ୍ଗାଜଳେ ଅଛି ପଙ୍କ, ରବିବିମ୍ବରେ କଳଙ୍କ ଭଣିକି ରେ । ୧ । ଭୃତ୍ୟର ବିଶ୍ୱାସ ଦେଖି, କରିଥାଇ ଯେବେ ସୁଖୀ, କାଳେ ତା ଶତ୍ରୁରେ ରଖି ଠାଣିକି ରେ । ୨ । ମଦନ ଅମଳ ବଶେ, କ୍ଷତ ଯେବେ ଦନ୍ତବାସେ, ଦଶଇ ଏ ଦୋଷ ଦୋଷେ ଗଣି କି ରେ । ୩ । ଯେବେ ପ୍ରଭୁପଣ କରି, ପାରିବୁ ହିରଣ୍ୟଗୋରି, ଜାଣି ଯିବି କରେ ଧରି ଫଣୀକି ରେ । ୪ । ଲଭିବାରୁ ମୁଁ ପଣ୍ଡିତା, ବର ତୋ ପରଗୃହତା, ଲକ୍ଷ୍ୟ ନ କରେଁଟି ଶନ୍ତାମଣିକି ରେ । ୫ । ଏଣିକି ତୋ ଅନୁଗ୍ରହ, ନୋହିଲେ ମୋ ରିପୁବ୍ୟୂହ, କହିବ ମୋ ପାଇଁ ଦେହପଣିକି ରେ । ୬ । ଅଗଣିତ ଅନ ମନ, ଅନାଅ ବିରଜ ମାନ, ରାମଗୁରୁ କବିଦିନମଣିକି ରେ । ୭ ।

( ୨୭ )

ରାଗ—ମଲ୍ଲୁଅ

ଅଜ ଏ କି ଗୁମାନ ରେ (ଚନ୍ଦ୍ରାନନା)

ଦେଖି ନାହିଁ ସ୍ୱପନରେ । ପଦ ।

ସୁନ୍ଦର ବଦବାସ, ମନ୍ଦାରଦଳେ ହାସ,-କୁନ୍ଦକୁ ପରକାଶ, କୁନ୍ଦନାଙ୍ଗି ମୋ ଧନ, ( ପଢ଼ ) ତୁ ଯିନା ମୋର ପ୍ରାଣ, ରମଣୀଗଣ ରାଣ, ରାଣ

---

୨୬ । ଟୀକା— ଅଦର୍ଶ—ଦର୍ପଣ, ଦନ୍ତବାସ—ଅଧର, ପରଗୃହତା— ଭୃତ୍ୟତ୍ୱ, ଶନ୍ତାମଣି—ଅଭୀଷ୍ଟପ୍ରଦ ମଣି, ଦେହପଣିକି—ଶରୀରପଣି ( ଟିକସ୍ ) ପାଇଁ, ଅନ—ରାଣ, ରିପୁବ୍ୟୂହ—ଶତ୍ରୁସମୂହ ।

ଅଛୁଟି ମାଣ,-ବକ ମୃଗାକ୍ଷୀ ଜାଣ, ଦାରୁଣ ସ୍ମରବାଣ, ଶାଣଦିଅ ଭୀଷଣ, ବାଣଗଣରେ ନଷ୍ଟେଁ ନେବଟି ଏ ପରାଣ । ୧ । ଗୃହୁ ଚମ୍ପକ-ଦେହା ରେ, ଚନ୍ଦ୍ରାନନା, କାହୁଁ ଶିଖିଲୁ ଏହା ରେ, ଅଶ୍ରୁ ପ୍ରସରଦ୍ୱାର, ମଲ୍ଲୀକ ଶରବାର, ଅଜନ୍ମ ପରସ୍ତର, ସଂସାର ସାରଦ୍ୱାର । ୨ । ମର୍ମ ଗଲାଟି ଫାଟି ରେ, ଚନ୍ଦ୍ରାନନା, ମାରମାର୍ଗଣଧାଟୀରେ, ବନ୍ଧୁଅ ସବଲ୍‌ଟି, ତୋ କାନ୍ତି ପରିପାଟୀ, ଘେନିବାର ଲତାଟି, ମୂଳୁ ନ ପକା କାଟି । ୩ । ଦୋଷ ଦେଖି ତୁ ଦଣ୍ଡ ରେ, ଚନ୍ଦ୍ରାନନା, ମଣ୍ଡନା କର ଗଣ୍ଡରେ, ବାହୁପାଶେ ନିତାନ୍ତେ, ବାନ୍ଧିବା ବସନାନ୍ତେ, ଓଷ୍ଠ ବିଦାର ଦନ୍ତେ, ଭୂଷ କରଜ-କୁନ୍ତେ । ୪ । ଅରମ୍ଭିଲେ ତୁ ରୁଷା ରେ, ଚନ୍ଦ୍ରାନନା, ଭରସା କେ ମୋ ରସାରେ, ତେଜିଲେ ତୁ ମୋ କୋଳ, କେତେ ମୋ ଧୃତ ବଳ, ସହେ କି କରବାଳ, କେଳି-କମଳ ଦଳ । ୫ । ଶ୍ୟାମ ବିନୟଭାଷାରେ, ଚନ୍ଦ୍ରାନନା, ମନ୍ଦ ମଧୁରହସା ରେ, ଭାଷିଲେ ପ୍ରିୟବାଣୀ, ରସେ ସେ ସୁଲକ୍ଷଣୀ, ରସିଲେ ମନ ଜାଣି, ଶ୍ରୀ ଗୋଷ୍ଠରାୟ ଭଣି । ୬ ।

( ୨୮ )

ରାଗ—ସୁରଟ, ତାଳ—ଝୁଲା

ମଲ୍ଲୀମଣ୍ଡନା ତୁ ନ ମାର ମାରରେ । ପଦ ।

ଘେନ ତୋ ଅବଧାନେ, ରସିଲି ମୁଁ କି ଅନେ, ତୁ ଥାଉଁ ଥାଉଁ ଏ ସଂସାରସାର ରେ । ୧ । ବରଜ ମଣିପୁଞ୍ଜ, ଅବଜବାଲୁ ଗୁଞ୍ଜ, ଶିରୀଷ-ଅଙ୍ଗି, ଅଙ୍ଗୀକାର କାର ରେ । ୨ । କିସ ମାନସେ ଭାଳି, କରଜ କଳୀ ଗୃଳ ଭରତ କଲୁଣି ଅଗାର ଗାରରେ । ୩ । କେଳି ଚଞ୍ଚଳତର ନେଣ ଖଞ୍ଜନ୍ତୁ ମାର, ବହେ କାହିଁକି ଅହା ଧାର ଧାର ରେ । ୪ । ଅରେ ରତିପ୍ରତିମା, ଅଚର ଏବେ କ୍ଷମା, ବହିବ ତୋ ହୁକୁମ ଭାର ଭାର ରେ ॥

---

୨୭ । ଟୀକା—ରମଣୀଗଣରାଣ—ନାରୀମାନଙ୍କ ମଧ୍ୟରେ ଶ୍ରେଷ୍ଠ, ରଦବାସ-ମନ୍ଦାରଦଳେ—ଓଷ୍ଠରୂପ ମନ୍ଦାରଫୁଲରେ, ହାସକୁନ୍ଦକୁ—ହାସ-ରୂପ କୁନ୍ଦଫୁଲକୁ, କୁନ୍ଦନାଙ୍ଗି—ସ୍ୱର୍ଣ୍ଣାଙ୍ଗି, ମାଣବକ—ଶିଶୁ, ରାଣ—ରାଜା, ପରସ୍ତର—ନିକର, ମାରମାର୍ଗଣଧାଟୀ—କନ୍ଦର୍ପଶରସମୂହ, ରସା—ପୃଥିବୀ, କେଳି-କମଳ-ଦଳ—ପ୍ରୀତିପଦ୍ମପାଖୁଡ଼ା, କରବାଳ—ଖଣ୍ଡା ।

୨୮ । ଟୀକା—ଗୁଞ୍ଜ—କାଇଁଚ, କାର—କାହାର ? କରଜ—ନଖ, ଅଗାର—ଗୃହ, ଅରପାର—ଅସ୍ତବ୍ୟସ୍ତ, ସପତ—ରାଣ, ଶପଥ ।

ମୋ ଧନ ହୁଅ ରଜ, ମଦନବାଣ ବାଜ, ହେଲଣି ମୋ ହୃଦୟ ଅର-
ପାର ରେ । ୬ । ମୋ ସପତଟି ମଥା, ଟେକ ଭୂପ ତୁ କଥା, କହେ
ଶ୍ରୀ ଜଗଦ୍ଦେବ ବାରବାର ରେ । ୭ ।

( ୨୯ )

ରାଗ—ତୋଡ଼ିପରଜ

ରେ ମୋ ବନ୍ଧୁ, ଶିଶୁବଣାମୃଗଦୃଶା ।

ଦଶୁଥାଉ କୃପାମୟ, ପୁଣି ଯାହା ରୁଷ୍ଟ ସେ କେମନ୍ତ ରୁଷା । ଘୋଷା ।

ବସୁଥାଉ ଥାଉ କୋଳୁ ମୋର ପୁଣି ଖସି ମଣ୍ଡୁ ବସୁମତୀ; ବସୁ
ମୁଖଚନ୍ଦ୍ର ନୁଅଇଁ ଯାହାଟି କଷ୍ଟୁଥାଉ କ ମୋ ଧୃତି । ୧ । ହସୁଥାଉ
କୋଳେ ଖେଳ ଯେତେବେଳେ ବସୁ କୋଟି ଦେଉ ଗଣି; ନ ଶୁଣୁ ଗୃହୁ
ଶତକୁ କାହିଁକି ମୋ ଅସୁ ଘେନିବାକୁ ପୁଣି । ୨ । ଠେସୁଥାଉ ଉରେ
ଉରୋଜକୁ ସମୁଚ୍ଛାସୁଥାଉ ସ୍ମିତେ ଗଣ୍ଡ; କି ଶୁଣି କାଟି ଦେଉ ସେ ସୁଖସ୍ୱର୍ଗ
ନିଃଶ୍ରେଣୀକି ଏ କି ଦଣ୍ଡ । ୩ । ମିଶୁଥାଉ ସ୍ନେହେ ନିମଜ୍ଜି ମୋ ଦେହେ
କି ସୁଖେ ପୁଣି କି କୋପୁଁ; ହିଶୂଳମଣ୍ଡିତକରପରପନ୍ଥୀ-ଇଷୁ ମୁଖେ
ସମରପୁ । ୪ । ପଶୁପ-ମହେନ୍ଦ୍ର ନନ୍ଦନ ଭାରତୀ ରସୁଁ ରାଧା ସଙ୍କୋଚଲେ;
ବସୁଦୁର୍ଗ ସ୍ୱର୍ଗପୁରନ୍ଦର ଭାବବଶୁଁ ଏ ଗୀତ ରଚଲେ । ୫ ।

( ୩୦ )

ରାଗ—କେଦାର, ତାଳ—ଆଡ଼ତାଳ

ସବୁ ଗଲା ଯେ ଲାଜେ,

ରହି ନ ପାରେ ସହୀସମାଜେ । ଘୋଷା ।

ନଗତଳକଉରୋଜାଏ ଅଛନ୍ତି ଅଗଣିତେ ଅନୁସର ହେ । ଜଗତୀ-
ଲଲମ ଚମାଙ୍କର ନାମ ଯୋଗ୍ୟ କି ଏକା କିଶୋର ହେ । ୧ । ଘେନାଇ
କହିଲେ ହେଲେ ନେଜାଅଁଲେ ଅନାଇ ତ ସେ ନ ଜାଣେ ହେ । ତାକୁ
ନଟ-ଖଞ୍ଜରାଟ-ନେଜା ବୋଲି ଡାକୁଥାଅ ତୁମ୍ଭେ କେଣେ ହେ । ୨ ।
ତୁମ୍ଭ ଉରେ ସ୍ତନକୁମ୍ଭ ନତ-ଉନ୍ନତା ଯେ ମଣ୍ଡାଏ ନାହିଁ ହେ । ବହି-
ଯିବ ବୋଲି ଶୋଭା ପୀୟୂଷ କି ରହିଥାଅ ଏକା ଗୃହିଁ ହେ । ୩ । ତାରୁଣ୍ୟ
ଗଉରବେ ବାଳା ସେ ତ କେବେ ଗୃଲିକି ନ କରେ ଗୃରୁ ହେ । ସଜୁଅଛୁ

୨୯ । ଟୀକା—ବସୁକୋଟି—ଅସଂଖ୍ୟ ରତ୍ନ; ହିଶୂଳମଣ୍ଡିତକରପରପନ୍ଥୀ—
ମହାଦେବଙ୍କ ଶତ୍ରୁ ଅର୍ଥାତ୍ କନ୍ଦର୍ପ; ଇଷୁ—ବାଣ; ପଶୁପ-ମହେନ୍ଦ୍ର—ଗଉଡ଼ଙ୍କ
ରାଜା ଅର୍ଥାତ୍ ନନ୍ଦ ।

କେଲ ଲ୍ଲସୀ ମସ୍ଳୀଗଡ ବୋଲ୍ ଡାକ୍କବାରୁ ହେ । ୪ । ଅଧର ମାଧୁସ୍ୟ-ଅଭ୍ମାନେ ପୁର୍ କେତେ ନାଗସ୍ୱ ନାହାନ୍ତ ହେ । ତା ଦଶନ ଅଙ୍କ ଥିବା ପାନରଙ୍କ ପର୍ ମାଗିବାର ନାନ୍ତ ହେ । ୫ । ପ୍ରେମାଦରେ ଅବା ପ୍ରମାଦରେ ବାଣୀ ଶୁଣିବା ଶତ୍ତ୍ କାହିଁକ ହେ । ସରସଶ୍ଲେଷମଦକଳକୋକଲବଚନା ବୋଲ୍ ନାହିଁକ ହେ । ୬ । ଜଗଦ୍ଦେବ ବନ୍ଧ ଜଣାଇଲେ ଇନ୍ଦୀବର ଶ୍ୟାମ ବଂଶୀପାଣି ହେ । ତୁମ୍ଭେ ସେ ତରୁଣୀ ଗୃହ୍ଲବା ସରଣୀପସ୍ୱଗେ ଗଢ଼ିବା ଜାଣି ହେ । ୭ ।

( ୩୧ )

ସ୍ୱଗ—ବେଗଡ଼ା

ଏହ୍ ସେହ୍ କ ମୋ ସହ୍ ସତ କହନ୍ତି । ପଦ ।

କହ୍ବାକୁ ଜହ୍ନାଞ୍ଚଳ କରୁ କରୁ ତୁ ଚଞ୍ଚଳ, ସ୍ମରସର୍ପ କଳନ ରସନା ଲହଲହନ୍ତି । ୧ । ଅନନ୍ତୁଲ ଏ ଦ୍ୟୁତ, ଅନାଇ ସେ କେଉଁ ସତୀ, ଠକ୍ବର ନଜ୍କର କର୍ବାରେ ନ ହନ୍ତି । ୨ । ଏହା କର୍ କ ଗୋ ଯଣଃ,-କୁସୁମମାନଙ୍କ ବାସ, ବାସବନବାସ ଯାଏ ଯାଉଥାଏ ଚହନ୍ତି । ୩ । ଏଠାରେ ନନ୍ତେଁ ସଞ୍ଚିତ ହୋଇଚ୍ଛ ରେ ପ୍ରାଣମିତ, ଅଳ୍ପକଳ୍ପନ ସେ ଅବଗ୍ରହ ରବଗ୍ରହନ୍ତି । ୪ । କବରବ ସ୍ୱସ୍ଥଗୁରୁ, କହୁଥାନ୍ତ ରେ ରମ୍ଭୋରୁ, ଏହାଙ୍କ ଭଜନ୍ତ ଅନ ନାହିଁ ସୁଖାବହନ୍ତି । ୫ ।

( ୩୨ )

ସ୍ୱଗ—କାମୋଦୀ, ତାଳ—ଝୁମ୍ପା

ସଞ୍ଚାରଣୀ ପାଞ୍ଚାଳକା କାଞ୍ଚନମଯ୍ୟୀ ରେ ପ୍ରଲମ୍ବ କୁଞ୍ଚିତକେଶା,
ଯୋଗି-ସମାଧିଖଣ୍ଡନବଧିଚତୁରଗୃଢ଼ବେଶା;
ପଦପଙ୍କଜନ୍ୟାସପବ୍ୱିତୀକୃତ ଧରଣୀଦେଶା,
କେ ତୁ ମୋହନ,-ହେତୁ ମନର, ସେତୁ ବଳାସମିଷବନର
ନରଲୋକରେ କୃତବାଗୀଶଶିଳ୍ପବିଶେଷ ଶେଷା । ଘୋଷା ।

---

୩୦ । ଟୀକା— ନଗତଳକଢ଼ରକାଏ—ବଡ଼ ପର୍ବତ ପର୍ କୁଚ ଯେଉଁ-ମାନଙ୍କର, ଲଲାମ—ଭୂଷଣ, ଗୃରୁ—ସୁନ୍ଦର, ତାରୁଣ୍ୟ—ଯୌବନ, ଦଶନ-ଅଙ୍କ—ଦନ୍ତଚିହ୍ନ, ସରଣୀପସ୍ୱଗେ—ବାଟଧୂଳରେ ।

୩୧ । ଟୀକା—ଅନନୁକୂଳ—ଅତୁଳନୀୟ, ବାସବନବାସ—ଅମରାବତୀ ।

ପଦରୁ ଊଣା ପର ତ ଜଣା ପଡ଼ୁଛୁ କେହି ଏଡ଼େ ପ୍ରବୀଣା ହେଲୁ ରେ, ଛଣାର୍ପି ଯୂଥ ଜଣା ବାଣୀ, ସୁଧାଗରଳମିଶା ତରଳ ବିଲକ୍ଷଣ ଗୃହିଣୀ; ଜଗତୀଯୋଷାରତନକୋଷାଭୂଷା ଶ୍ରୀଅଙ୍ଗଠାଣି; ଜନନୟନ-ନୀଳେନ୍ଦୀବର-ଚନ୍ଦ୍ରିକା-ପରମ୍ପରା କି ବରବରନା ତୁହି ନିଷ୍ଠୟୁ ତୋର ବୁଦ୍ଧି ନ ପାରେ ଜାଣି ରେ । ୧ । କରିଛୁ ଖର୍ବ ସୁପର୍ବପର୍ବସୁଧାଂଶୁମୁଖୀଗଣଙ୍କ ଗର୍ବ ସର୍ବଂସହାରେ କେ ରହିବ ମାନି, ଲଜର ବାସଗୃହ ତୁ ରସରାଜର ରାଜଧାନୀ, ଗତିଲବଣ୍ୟ ମାତଙ୍ଗ ବନ୍ୟହାତୀରୁ ବଳିଲୁନି, ଧନ ଯାହାର ମୁକୁତାହାର ହେବୁ ତୁ ଶ୍ରୀଗ୍ରୀବକୁ ତାହାର ସୁକୃତ ତୁଲେ ମୋର କୁହାର ହେଉ ମହତ୍ତ୍ୱ ହାନି । ୨ । ଉଦ୍ଦଣ୍ଡରତ ପାଣ୍ଡିତ୍ୟବତୀ ବୋଲାଇ ଚେଙ୍କାଇବୁ କି ଛତ ଏବେ ତ ଯତମୋହନା ଷିତମଣ୍ଡୁ, ଖଣ୍ଡିବୁ ଚଣ୍ଡ ଫୁଲ୍ କୋଦଣ୍ଡ ବୀରଦୋର୍ଦ୍ଦଣ୍ଡ କଣ୍ଡ, ତୁମ୍ଭେ ଯେ ଜୁର ନେବ ମକର ତୋର ସୁନ୍ଦର ଗଣ୍ଡୁ, ସେ ବଡ଼ ଗିରିଶରୁ ଅମରନାଥରୁ ପାଶକରୁ କୁବେର ଠାରୁ ନଳିନନନ୍ଦନରୁ ମୀନସ୍ୟନ୍ଦନରୁ ମାର୍ତ୍ତଣ୍ଡୁ । ୩ । କହନ୍ତି ଅଷ୍ଟ-ଦୁର୍ଗସାମନ୍ତ ଶ୍ରୀକୃଷ୍ଣଚନ୍ଦ୍ର ମୁଖୁଁ ଏମନ୍ତ ସରସବାଣୀ ଶ୍ରୀ ଠାକୁରାଣୀ ଶୁଣି ଲଭିଲେ ଲାଜ, ସ୍ଫୁରିଲ କୁନ୍ଦ ମଧୁନିଃସ୍ୟନ୍ଦ ମନ୍ଦ ହସିତ ବ୍ୟାଜ, ଗୁଳି ଚରଣ କଲେ ଶରଣ ଅଳିଜନ ସମାଜ, ମିଳନ୍ତେ ଦିନେ ଏକାନ୍ତ-ସୀମା ଏପରି ପରିଣତ ଚନ୍ଦ୍ରମା-ବଦନା ଶ୍ୟାମ ଦୁହିଙ୍କ ପ୍ରେମ ହେଲା ନିବିଡ଼େ ନ୍ୟାଜ । ୪ ।

( ୩୩ )

ରାଗ—ତୋଡ଼ିପରଜ, ତାଳ—ରୂପକ

ରେ ସଙ୍ଗାତ, ତୋ ବୋଲେ ବସନ୍ତ ମାନେ,
ଶିଖଣ୍ଡଶେଖର ସ୍ନେହୁଁ ଅଶା ମୋର ତୁଟାଇ ପାରନ୍ତୁ ଧାନେ । ପଦ ।

---

୩୨ । ଟୀକା—ସଞ୍ଚାରିଣୀ ପାଞ୍ଚାଳିକା କାଞ୍ଚନମୟୀ—ଗମନ କରୁଥିବା ସୁବର୍ଣ୍ଣ ପ୍ରତିମା, ସେତୁ ବଳାସମିଷବନର—ବଳାସରୂପ ଜଳପାର ହେବାର ସେତୁ ଅର୍ଥାତ୍ ପୋଲ, ବାଗୀଶ—ବ୍ରହ୍ମା, ସୁପର୍ବ—ଦେବତା, ପର୍ବସୁଧାଂଶୁ—ପୂର୍ଣ୍ଣଚନ୍ଦ୍ର, ସର୍ବଂସହା—ପୃଥ୍ୱୀ, ରସରାଜ—ରସିକଶ୍ରେଷ୍ଠ ( କନ୍ଦର୍ପ ), ମାତଙ୍ଗ ବନ୍ୟହାତୀ—ମତ୍ତ ବନ୍ୟ ହସ୍ତୀ, ଧନ—ସମ୍ବୋଧନ ପଦ, ଫୁଲକୋଦଣ୍ଡ—କନ୍ଦର୍ପ, ଦୋର୍ଦ୍ଦଣ୍ଡ—ବାହୁବଳ, ଜୁରି ନେବ—ଜୁର କରି ନେବ, ମକର—ମକର ଚିହ୍ନ, ସେ ଗିରିଶରୁ ( ଶିବଙ୍କଠାରୁ ); ଅମରନାଥରୁ ( ଇନ୍ଦ୍ରଙ୍କଠାରୁ ), ପାଶକରୁ—(ବରୁଣଙ୍କଠାରୁ), କୁବେରଙ୍କଠାରୁ, ନଳିନନନ୍ଦନରୁ (ବ୍ରହ୍ମାଙ୍କଠାରୁ), ମୀନସ୍ୟନ୍ଦନରୁ (କନ୍ଦର୍ପଠାରୁ) ଓ ମାର୍ତ୍ତଣ୍ଡୁ (ସୂର୍ଯ୍ୟଙ୍କଠାରୁ) ବଡ଼ । ନ୍ୟାଜ—ବିବେଚନା ।

ଖଳଜନବାଣୀ ସତ୍ୟ ପର ମଣି ନ ଗୃହ୍ଣିଲେ ହେଲେ ମୋତେ, ଘେନ ଗୃରୁତର ମୁଖ-କଳାକର ମୁଁ ନ ଗ୍ରହିବ କେମନ୍ତେ । ୧ । ଜାଣିଅଛୁ ଧ୍ରୁବ ମୋଠାରେ ପୂରୁବ ପର ନାହିଁ ହରି ସ୍ନେହ, ହେଲେ ହେଲେ ଯେବେ ମୁରଲୀରବରେ ପୁଲକନ୍ତା ନାହିଁ ଦେହ । ୨ । ଚନ୍ଦ୍ରକ ଲଲାମେ ଦେଖଇ ମୁଁ ପଛେ ଅନ୍ୟ ପଦ ଲାକ୍ଷା ରାଗ, ଇନ୍ଦ୍ରନୀଳମଣିମୟ ନ ଦିଶନ୍ତା ଯେବେ ମୋତେ ପ୍ରତିଦରାଗ । ୩ । ଆହାର ବିହାର ନିଦ୍ରା ବେଶ ବିଷ ହେଉ ତାକୁ ମୁଁ ନ ଗଣେ, ତା ଦରଶନେ ଅନାଦର ବହିଲେ ଅରୁଣ ନ୍ଦହନ୍ତା ପ୍ରାଣେ । ୪ । କାମୋଦୟ ଘନେ ଅମୋଦ ବର୍ଦ୍ଧନେ ତା ମୋହନ ମୃଦୁ ହାସ, ବଶ ନ କରାଇ ଯେବେ ଠଉରାଇ ଦିଅନ୍ତା ଧୈର୍ଯ୍ୟ ଲେଶ । ୫ । କେ କହୁଛି ତୋତେ ହୋଇଛି ନିକୁଞ୍ଜ ନିଳୟ ଦୁଆର ମନା, କେ କହେ ତୁ ବେଣୁପାଣି ପ୍ରାଣ ଏଣୁ ନିଷ୍ଠୟ ଜାଣିଲେ ସିନା । ୬ । ଅଷ୍ଟଦୁର୍ଗଧରାନାଥ କହନ୍ତ ସେ ଚତୁରମାନଙ୍କ ରଜା, ସରଣୀ ତାର କଳିଲେ ସିନା ହେବ ଧରଣୀନ୍ୟସ୍ତ କରଜା । ୭ ।

( ୩୪ )

ରାଗ—ତୋଡ଼ି ପରଜ

ମୋ ବନ୍ଧୁଟି ବାଇ ହୋଇଯାଏ ସିନା,
ପାଇଯାଏ ଯେବେ ମୋର ଅଚରଣ ପ୍ରଶଂସା ଫୁଲବାସନା । ଘୋଷା ।

ନ ରୁଚିଲା ପର ବ୍ୟାଜେ କରେ ମୁଖ ସୁରୁଚିର ଶରଦାନ୍ଦୁ, ଚୁମ୍ବିଲେ ଶ୍ରବଣସୀମାକୁ ମୋ ଗୁଣ ପୀୟୂଷରୁ ଏକ ବିନ୍ଦୁ । ୧ । ବଳୟାବଳି ଅଙ୍ଗଦ ମଣିଚୁଡ଼ି ଶଙ୍ଖ ଚୁଡ଼ି ରହେ ଦେହେ, ଏପରି ସେ ପରଣତ ବିମ୍ବାଧରୀ ସଖୀକି ଭଜଇ ସ୍ନେହେ । ୨ । ଜାଣି ବାରି ବାର ବାରଣେନ୍ଦ୍ର-କର ଗରବ ଦଳିବା ଊରୁ, ମୃଦୁ ଇଷି ଇଷି ଊଠାରେ ପ୍ରେୟସୀ ତରୁଣୀ ସୁଗୁଣଗୁରୁ । ୩ । ମୋହର ପ୍ରବେଶ ପ୍ରତୀତିରୁ ବେଶ-ରସିକା ପଡ଼େ

---

୩୩ । ଟୀକା—ଧାନେ—ଅଳ୍ପପରିମାଣରେ, ମୁଖ-କଳାକର—ମୁଖଚନ୍ଦ୍ର, ଧ୍ରୁବ—ନିଶ୍ଚିତ, ମୁରଲୀରବରେ—ବଂଶୀଧ୍ୱନିରେ, ଚନ୍ଦ୍ରକଲଲାମେ—ମୟୂରପୁଚ୍ଛ ଭୂଷଣରେ ।

୩୪ । ଟୀକା—ଅଚରଣପ୍ରଶଂସାଫୁଲବାସନା—ବ୍ୟବହାର ଓ ପ୍ରଶଂସାରୂପ ଫୁଲ ବାସନା, ବ୍ୟାଜେ—ଛଳରେ, ମୁଖ-ସୁରୁଚିର-ଶରଦନ୍ଦୁ—ମୁଖରୂପ ସୁନ୍ଦର

ଚମକ, ସେ ସମୟେ ରାକା ପ୍ରଦୋଷ ଜଳଧି ହେବ ତା ହୃଦସମ କି । ୪ । ଶତ୍ରୁକେ ଚନ୍ଦନ ଶ୍ରବଣେ ଅଞ୍ଜନ କଣ୍ଠେ କରେ ଲକ୍ଷା ବୋଲ, ବ୍ୟସ୍ତ କର କମ ଭ୍ରାସର ବିଭ୍ରମ,-ସିନ୍ଧୁ କଲ୍ଲୋଳେ କେବଳ । ୫ । ବୋଲେ ଅଷ୍ଟଦୁର୍ଗ-ଧର ଦମ୍ଭ ସ୍ୱର୍ଗପୁର ପୁରନ୍ଦର ଗୀତେ, କଶୋରୀଙ୍କ ପ୍ରେମ ଘେନ ଘନଶ୍ୟାମ ପ୍ରମୁଦିତ ହେଲେ ଚିତ୍ତେ । ୬ ।

( ୩୫ )

ରାଗ—ବଳାହୋର, ତାଳ—ଏକତାଳି

ଖଞ୍ଜରୀଟନୟନା ଅଳପ ଚାହାଁ ରେ । ପଦ ।

ଅଞ୍ଜନରୁଚି ମଦଗଞ୍ଜନକେଶୀ, କଞ୍ଜସୁନ୍ଦର ମୁଖ ରଞ୍ଜନବେଶୀ, ସଞ୍ଜ କୁମୁଦସମହାସବିଳାସୀ, ତୁ ସିନା ସାହା ରେ । ୧ । ଦନ୍ତ ବସନ ରୁଚି ସନ୍ତତ ଚାଖି, ସନ୍ତତ ତବ ତନୁ କାନ୍ତିରେ ଲାଖି, କାହିଁ ଭରସି ରସି ନାହିଁ ମୋ ଅଖି, ତୋହର ବାହାରେ । ୨ । ବାରଣବରଗମନା ରସ-କାରୀ, ପରଶତ ରଣରଣ ଧରଣୀବିହାରୀ, ରଚ ବଚନାମୃତ ନିର୍ଗତ ଧାରୀ ମିଶ ହୃଦ ହାରେ । ୩ । ଚଣ୍ଡ ମଦନ କର ଦାରୁଣ ବାଣେ, ଦଣ୍ଡକୁ ସମୁଚିତ ବୁହଇ ମୁଁ ଟାଣେ, ମଣ୍ଡ ଗଳକୁ କହେଁ ଅଗଣିତ ରାଣେ, ମୃଦୁଳ-ବାହା ରେ । ୪ । ମଗ୍ନ ମୁଁ ତୋର ରସନିର୍ଝରକୂପେ, ତନୁ ରୁଚି ନିର୍ଧୂତ ହାଟକରୂପେ, ସକରୁଣ ହୁଅ ହରଚନ୍ଦନ ଭୂପେ, ମୋ ସୁଖ ରାହା ରେ । ୫ ।

( ୩୬ )

ଅରେ ପ୍ରାଣସଙ୍ଗି,

ମନମୋହନ ମନ୍ତ୍ରର ତୋର ଭଙ୍ଗୀ । ପଦ ।

କୃପାରେ ମାନସ ରଖାଇଲୁ, ଭୁଜେ ଭୁଜବନ୍ଧା ଶିଖାଇଲୁ, ଅଳପ ଅଳପ ବଖାଇଣ ବିମ୍ବଅଧରରୁ ମଧୁ ଚଖାଇଲୁ । ୧ । ବ୍ରହ୍ମଜ୍ଞାନୀ ଯୋଗୀ

---

ଶରଚନ୍ଦ୍ର । ପରଣତବିମ୍ବାଧର—ପାଚିଲା କଇଁଖିକାକୁଢ଼ ପର ଅଧର ଯାହାର, ବାରବାର—ଥରକୁ ଥର, ବାରଣେନ୍ଦ୍ରକରଗରବଦଳକା ଉରୁ—ହାତୀ ଶୁଣ୍ଢଠାରୁ ମନୋହର ଜଙ୍ଘ । ରାକାପ୍ରଦୋଷ ଜଳଧି—ପୂର୍ଣ୍ଣିମା ସନ୍ଧ୍ୟାର ସମୁଦ୍ର ।

୩୫ । ଟୀକା—ଖଞ୍ଜରୀଟ—କଜଳପାତି, ଦନ୍ତବସନରୁଚି—ଅଧର ମାଧୁରୀ, ରଣରଣ—କନ୍ଦର୍ପ, ହାଟକ—ସୁନା, ସଞ୍ଜକୁମୁଦ—ସନ୍ଧ୍ୟା ସମୟରେ ଫୁଟିଥିବା କଇଁଫୁଲ, କଞ୍ଜସୁନ୍ଦର—ପଦ୍ମପର ମନୋହର ।

ଯୋଗଭୂଲ, ତିଳସୁମନସ ନାସାଙ୍କୁଲ, ପଦ ପଦାଙ୍କରେ ଯାଚ ଦେଉଥାଏ ଶଙ୍କପଦ ମଣିନଥିଙ୍କୁଲ । ୨ । ସନ୍ତାପ-ସହିତ ଶୁଖାଇଲ, କରେ ପୟୋଧର ରଖାଇଲ, ହେମ ପଣାସାର ପଲ୍ଲବପାଲିରେ, ପରୁଇବା ରୀତି ଶିଖାଇଲ ॥ ଅଷ୍ଟଦୁର୍ଗପତି ଭୂପେ ଭୋଟଲେ, ଚକ୍ରବର୍ତ୍ତୀ କଲ ଯୁବାକୁଳେ, ଦାମୀ ହୋଇ ଅଳ୍ପ ମାମୀ ହେଲ କାନ୍ତପଣଚନ୍ତେ ପବନ ଯେତେଛତେଲେ । ୪ ।

( ୩୭ )

ରାଗ—ମୁଖାରି

ସେ କି ସାଗ୍ରସାର ଜାଣେ,
ପ୍ରୀତି ରୀତି ନ ପାଲେ ଯେ ଅଣୁ ପରମାଣେ । ପଦ ।

ରାଜମାର୍ଗ ଛାଡ଼ି କଠେ ଅବାଟ ଉଠାଣେ, ଦ୍ୱିଜସଙ୍ଗ ବର୍ଜି ଯେ ମିଶଇ ପଠାଣେ । ୧ । ଶୁକସାରୀ ମାରି ପଳ ଯେ ଧଏ ସଆଣେ, ଯେ କୁନ୍ଦନେ ଖଞ୍ଜେ ମଣି ନ ବସାଇ ଶାଣେ । ୨ । ଫଳ ବିନା ଅତି ଲୋଭ ରଖି ଛାର ପ୍ରାଣେ, ଜଳଧିରେ ଯେ ନ ପଡ଼େ ପ୍ରିୟଜନ ଗୁଣେ । ୩ । ତାହାକୁ କି କଳାବତୀ ନଜରକୁ ଅଣେ, ବନ୍ଧା ହୋଇ ନାହିଁ ଥରେ ଯେ କୁସୁମ-ବାଣେ । ୪ । କନକ ବନ୍ଦିବ ବୋଲି ରୀତି କି ରସାଣେ, ସତ୍ୟବୁଦ୍ଧି କରୁଥାଏ ଯେ ଶଶ-ବିଷାଣେ । ୫ । ଯେ ବାମା ଅଧର ମଧୁ ବସନରେ ଛାଣେ, ମୃଦୁଳ ମାଳତୀମାଳା ଗ୍ରୀବମୂଳେ ହାଣେ । ୬ । ଯେ ଲେଖି ସୁରଙ୍ଗପଟ ସମରପେ କାଣେ, ମାଗିବା ଲୋକର କରେ ନ ଧରଇ ମାଣେ । ୭ । କନକ କୁଡ଼ୁଆ ଥାଉ ଯେ ପିଏ ପିହାଣେ, ଜାଇ ଥାଉଁ ଗିରିମଲ୍ଲୀ ଯେ ଲଗାଏ ଘ୍ରାଣେ । ୮ । କର୍ଣ୍ଣ ଯେ ସମର୍ପି ନାହିଁ ଭ୍ରମରେ ପୁରାଣେ, ହରିଙ୍କି ଯେ କରି ନାହିଁ ସ୍ଥୂଳ ପରିମାଣେ । ୯ । କହେ ଜଗଦ୍ଦେବ ଶିକ୍ଷା ହେଲେ ହେଲେ ଟାଣେ, କେ କାହା ସ୍ୱଭାବ ଛାଡ଼େ ପରାଣ ପ୍ରୟାଣେ । ୧୦ ।

( ୩୮ )

ରାଗ—ତୋଡ଼ିପରଜ, ଏକତାଳି

ରେ ନୀରଦ ଗରଜ ମରୁଛୁ କେତେ,
ଅରଜ ନାହୁଁ ତ ମୋ ବକୁଳଲତ ଭାବ ବିଭବୁଁ କହୁଁତେ । ଘୋଷା ।

---

୩୭ । ଟୀକା—ପଳ—ମାଂସ, କୁନ୍ଦନ—ସ୍ୱର୍ଣ୍ଣ, ରୀତି—ପିତ୍ତଳ, କନକ—ସୁନା, କାଣେ—ଅନ୍ଧକୁ, ଶଶବିଷାଣ—ଠେକୁଆ ଶୃଙ୍ଗ ( ଅସମ୍ଭବ ବସ୍ତୁ ) ।

୩୮ । ଟୀକା—ନୀରଦ—ମେଘ, ପୟୋଧର—କୁଚ, ଧରାଧର—ପର୍ବତ, ଇନ୍ଦ୍ରକୋଦଣ୍ଡ—ଇନ୍ଦ୍ରଧନୁ, କ୍ଷଣପ୍ରଭା—ବିଜୁଳି, ନୀଳଚେଲାଞ୍ଚଳ—ନେଳିଆ

ଦେଖୁଛୁ ତ ମୋର ବାଳା ପୟୋଧର ଉପରେ ମୁକୁତାହାର, କେଉଁ ବୁଝିବଲେ ଧରାଧରତୁଲେ ଲମ୍ବାଉ ସଲଲଧାର । ୧ । ତ୍ରିଭୁବନେ ସର ଅଛୁ କ କଣୋଗ୍ରି ଭୂରୁ ଖେଳବା ଦଣ୍ଡକୁ, ଫୁଲୁଅଛୁ କେତେ ଦେଖାଇ ନିରତେ ଇନ୍ଦ୍ରକୋଦଣ୍ଡ ଖଣ୍ଡକୁ । ୨ । କ୍ଷଣପ୍ରଭା କେଲ ଗ୍ଧରକୁ ସଙ୍ଗାଳି କରି ଫୁଲୁଅଛୁ ଯାହା, ନୀଳଲୋଚନା ବାଳା ଅପଘନ ଛବିକ ଅଳପ ଗୁହାଁ । ୩ । କରିଅଛୁ କେଡ଼େ ଭରସା ନିବିଡ଼ କରକାବଳି ବରଷା, ଦେଖୁଛୁ ତ କୁନ୍ଦଦରହାସୀ ମନ୍ଦ ସୁନ୍ଦର ମଧୁର ହସା । ୪ । ଅସିତ ଗୁଣରେ ମିଶିତ ମୋ ତୁଲ୍ୟ କେହି ନୋହେ କ ବଗୁରୁ, ମୋ ଧନ କୁନ୍ତଳପାଶ ଇନ୍ଦ୍ରନୀଳମୟ ଚାମରରୁ ଗୁରୁ । ୫ । ମୁଁ ବଡ଼ ଶୀତଳ ବୋଲି ଏବେ ସ୍ଥୂଳ ଗରବ ଅଣିଛୁ କହୁଁ; ବୋଲେ ବାଲୁକେଶ ଶରଣନରେଶ ବନ୍ଧୁଗୁଣ ଶୁଣି ନାହୁଁ । ୬ ।

( ୩୯ )

ରାଗ—ଝିଁଝୋଟି, ତାଳ—ଆଠତାଳି

ବାରିଜାକ୍ଷି ମନରୁ ମାନ ବାରି ଦେ ରେ,
ଦେଖ କାଳ ହେଲେ କଳା ବାଉଦେ ରେ । ପଦ ।

ଦାସ ନାଶରେ ମାନସ, ବଳୁଛୁ ଯେବେ ନାଗ୍ରଶ, କରଜନାରାଚ ମାରି ଶରି ଦେ ରେ । ୧ । ତୋ ଚରଣ ସେବା ଭଳି, ନୋହିଲି ଯେବେ ରେ ଅଳି, ଗାଳି ଦଅଇ ମହତ ସାରି ଦେ ରେ । ୨ । ଏବେ ବନ୍ଧୁ ଅନାଥରେ, ଦୟା ଥିଲେ ଅନା ଥରେ, କରୁଣା କଟାକ୍ଷ ନେଜେ ଠାରି ଦେ ରେ । ୩ । ମହିଳାମଣି ଜଗତେ, ତୋ ବିନା ସାହା କେ ମୋତେ, ମାରି ମୁଣ୍ଡ ବଞ୍ଚାଇବି ଗାରି ଦେ ରେ । ୪ । ଦ୍ୱିଜ କବିରବି ବାଣୀ, ଶୁଣି ସେ ରମଣୀମଣି, ସ୍ନେହେ ଦ୍ରବି ବହିଗଲା ବାଉଦେରେ । ୫ ।

( ୪୦ )

ରାଗ—ତୋଡ଼ି, ଏକତାଳି

ଅନାଦୃତ ସରସମନା ମୋ ଧନ କ୍ଷସ ମନାସି ପରିଜନେ ରୁଷିଲା ରେ, ନିଶାରମଣଜୟୀ ଶାରଦବଦନେ ନବାରୁଣ ସଦୃଶ ଦିଶିଲା ରେ । ଘୋଷା ।

---

ଲୁଗାଦ୍ୱାରା ଅବୃତ, ଅପଘନ—ଦେହ, କରକାବଳି—କୁଅପଥର, ଅସିତ ଗୁଣ—କୃଷ୍ଣତା, କୁନ୍ତଳପାଶ—କେଶଗୁଚ୍ଛ, ଶରଣନରେଶ—ଆଠଗଡ଼ ରାଜା ।

୩୯ । ଟୀକା—କଳାବାଉଦେ—ନୀଳମେଘସବୁ; କରଜନାରାଚ—ନଖରୂପ ଶସ୍ତ୍ର; ଗାରି ଦେ—କଷ୍ଟସୂ କରି ଲେଖି ଦେ; ବାଉଦେରେ—ପାଣିପରି ।

ବଳାହକ ଗରବ,-ଦଳାକୁନ୍ତଳେ ନବ, କଳାପ ସୁମୁଖି ନ ଖୋସିଲ୍ଲ ରେ, ଉଳାଗୁଣ ମୋହନ, ଚଳାଚଳ ନୟନ,-ଦଳାନ୍ତରୁତ ବଳ ଖସିଲ୍ଲ ରେ ॥ ଘୋଷଯାକ ଭିତରେ, ମୋ ସଙ୍ଗମ ଇତରେ, ଅଛୁ କି ନାହିଁ ତ ନ କହିଲ୍ଲ ରେ, ଦୋଷ ବିନା ଏପରି ରୋଷ କଲେ କି ପରଜନ ବଞ୍ଚିବ ଘେନି ସୁଶୀଳା ରେ । ୨ । ଯେଉଁ ଦିନୁ ମୋତେ ସେ କଳଉତ୍ତିକାମୀ ରସେ ନେଇବାନ୍ତ ବରଚ୍ଛରେ ଭୂଷିଲ୍ଲ ରେ, ପଙ୍କରୁଷ ମୋହର ନଇକର ତାହାର ଚରଣ ମାଜିବାର ସୁଶୀଳା ରେ । ୩ । ଦିବା ସମୟେ ଦିନେ ବିବାସ କଲି ମନେ କିବା ସତତ ତାହିଁ ଘୋଷିଲ୍ଲ ରେ, କାହିଁକି ଟି ଧରଣୀ, ଗୃହିଁ କଣୋଗ୍ରମଣି, ଗୁମାନକୁ ମାନସେ ପୋଷିଲ୍ଲ ରେ । ୪ । କହେ ବସୁ ଦୁର୍ଗେଶ ଅହେତୁକ ତା ରୋଷ, ଶହେ ଗୁଣରେ ସମୁଲ୍ଲାସିଲ୍ଲ ରେ, ପ୍ରାଣ ନେବାକୁ ମୋର, ବାଣ ମୀନରଥର ଶାଣରେ ନିରନ୍ତର କଷିଲ୍ଲ ରେ । ୫ ।

( ୪୧ )

ରାଗ—ବେହାରଡ଼ା, ଝୁଲ

ସୁନାଗୋରି ତୁ ଏକା ସିନା,

ସୁନାଗସ୍ତ୍ରୀ ଶିର ଫୁଲବାସନା । ଘୋଷା ।

ଏ ଜଗତୀ ଭିତରେ କେହି, ଗଜଗତି ତୋ ସମ ନାହିଁ, ରାଜା ନାରୀମଣ୍ଡଳେ ତୁହି, ସୁନ୍ଦରକୁନ୍ଦରଦନହସନା । ୧ । ପଦନଖ କୋଣ କଣକୁ, ରସବତୀ ମଣି ପଣକୁ, ସାଧାରଣେତର ଗୁଣକୁ, ବରନି ପାରବେ ନାହିଁ ଉଶନା । ୨ । ଗିରିବର ଶିଖରେ ତପ, କରଥିଲି କେତେ କଳପ, ବାଳାବର ମୋତେ ଅଳପ, ସୁଲଭ ହୋଇଛୁ ତୋ ଉପାସନା । ୩ । ପୟୋଧରେ ହାର ନଗ୍ନଇ, ମୋ ସୁକୃତ ଫଳ ପଗୁଇ, ମାରଶ୍ୱଗ ଡର

---

୪୦ । ଟୀକା—ଅନାରତ—ସର୍ବଦା; ପରଜନ—ଭୃତ୍ୟ; କଶାଙ୍କମଣ—ଜୟବିଶାରଦବଦନ—ଚନ୍ଦ୍ରକୁ ଜୟକରିବାରେ ଯେଉଁ ମୁଖ ନିପୁଣ; ନବାରୁଣ—ବାଳସୂର୍ଯ୍ୟ; ବଳାହକଗର୍ବଦଳା—ମେଘର ଗର୍ବ ଧ୍ୱଂସକାରୀ, ଅର୍ଥାତ୍ ଅଳକଲା; କଳାପ—ମୟୂର ପୁଚ୍ଛ; ଘୋଷ—ଗଉଡ଼ ଗାଁ; ବରଚ୍ଛ—ବର୍ଚ୍ଛା; ମୀନରଥ—କନ୍ଦର୍ପ ।

୪୧ । ଟୀକା—ସୁନାଗୋରି—ସୁନା ପରି ଗୌର ଅଙ୍ଗ ଯାହାର; ସୁନାଗସ୍ତ୍ରୀ—ଶ୍ରେଷ୍ଠା ସ୍ତ୍ରୀ; ସାଧାରଣେତର—ଅସାଧାରଣ; ଉଶନା—ଶୁକ୍ରାଚାର୍ଯ୍ୟ; ମାରଶୁଗ—କନ୍ଦର୍ପବାଣ; ରସନା—ଚନ୍ଦ୍ରହାର ।

ଘୁଞ୍ଚାଇ, ବଜାଇ ଦେବୁ କି ଥରେ ରସନା । ବାଲ୍ୟବେଶ ନୃପତିମଣି, ଭଣେ ଶ୍ୟାମ ଭାରତୀ ଶୁଣି, ଲଜ୍ଜେ ହସି ବରତରୁଣୀ, ହେଲେ ମୁଖ-ବିନିହିତବସନା । ୫ ।

( ୪୨ )

ରାଗ—ପୂରବୀ

ଗୋ ରସନାଟି, କୃଷ୍ଣନାମ ଛାଡ଼ି ଆନେ ରସ ନା ଟି । ଘୋଷା ।

ଅଟକି ନ ରହି ଅଳସରେ, ରଟ ରଟ ଚଳ ବିଳାସରେ । କୃଷ୍ଣ କେଶବ କେଶି,-କଂସ-ଦଳନ ବଲ୍ଲବୀଜନବଲ୍ଲଭ ହରେ । ୧ । ଉପଳ ଶାକର ରସଫେଣୀ, ମଧୁ ମଧୁରସା ସରପଣୀ, ସୁଧା ତାମରସ-ନେତ୍ରା ରଦବାସ, ଏ ସବୁ ଶ୍ୟାମ ନାମରୁ ଊଣା । ୨ । ମକରନ୍ଦ ପକ୍ୱ ଚୂତ ରସ, ପ୍ରବାହେ ନ ରଖି ତୁ ତରସ, ବିଲକ୍ଷଣି ହରିନାମଙ୍କ ମାଧୁରୀ, ଇତର ସକଳ ଗତରସ । ୩ । ବୃନ୍ଦାବନବ୍ୟୋମ କଳାକର, ବିରାଜଧ୍ୱଜ ହେ ବିଶ୍ୱମ୍ଭର । ଅଜ ବାସୁଦେବ ମୁକୁନ୍ଦ ମାଧବ, ଗୋବିନ୍ଦ ବୋଲି କୀର୍ତ୍ତନ କର । ୪ । ଖଣ୍ଡ ମରିଚ କର୍ପୂର ଚୂର, ଦେଲେହେଁ ସୁରଭୀ-କ୍ଷୀରେ ଭର, ଶ୍ୟାମ ରମଣୀୟ ମୋହନବିଗ୍ରହ, ନାମର କଳାକୁ ନୋହେ ସର । ୫ । ବୋଲ ବୋଲ କଂସନିସୂଦନ, ଜୟ ଜୟ ଦେବ ଜନାର୍ଦ୍ଦନ, ଅଷ୍ଟ-ଦୁର୍ଗପତି କହିବା ଭାରତୀ ଇଷ୍ଟ ସୁଧାରସ ପରି ଘେନ । ୬ ।

( ୪୩ )

ରାଗ—କାମୋଦୀ

ଶିଖଣ୍ଡମଣ୍ଡନ କି ବହିଲେ ଗୋ, ଅଖଣ୍ଡ ଦଣ୍ଡକୁ ଯେ ସହିଲେ ଗୋ ।
ଏ ଖଣ୍ଡ ଏଥେ ପୂରି ରହିଛୁ ବୋଲି କରି
ଜଣା ନ ଥିଲା ପରି ପହିଲେ ଗୋ । ଘୋଷା ।

ଛାମୁକୁ ନିତି ଯାଇ ତେତେ ଯେ ସମଝାଇ ଶୁଣି ସଂଯତ ଲବେ ନୋହିଲେ ଗୋ, ଜାଉଦଳକୁ ସହି ନ କରି ଏବେ କେହି ମହୀଧ୍ରବର-

---

୪୨ । ଟୀକା—ରସନା—ଜିଭ; ବଲ୍ଲବୀ—ଗୋପୀ; ଉପଳ—ଏକପ୍ରକାର ଫଣୀ; ତାମରସନେତ୍ରାରଦବାସ—ପଦ୍ମଲୋଚନା ସ୍ତ୍ରୀର ଅଧର; ତରସ—ପୂର୍ଣ୍ଣଇଚ୍ଛା, ଅଭିଳାଷ; କଳାକର—ଚନ୍ଦ୍ର; ବିରାଜଧ୍ୱଜ—ବିଷ୍ଣୁ; ସୁରଭୀକ୍ଷୀର—କାମଧେନୁର ଦୁଧ ।

୪୩ । ଟୀକା—ଶିଖଣ୍ଡମଣ୍ଡନ—ମୟୂରପୁଚ୍ଛ ଭୂଷଣଧାରୀ ଶ୍ରୀକୃଷ୍ଣ; ସହି ନ କରି—ନ ସହି (ପ୍ରାଚୀନ ପ୍ରୟୋଗ); ମହୀଧ୍ରବର—ବଡ଼ ପର୍ବତ; ସୁଖବଲ୍ଲୀ—ସୁଖରୂପ

ଭର ବହିଲେ ଗୋ । ୧ । ନବୀନ ସୁକୁମାର ସୁଖବଲ୍ଲୀ କି ସ୍ମର ଖେଳ-ଖେଳନାନଳେ ଦହିଲେ ଗୋ, ଏତେ ସବୁ ବିପଦେ ପୁଣି ଘେନାଇ ପଦେ କହିବା ଯାଏ ନିଜ ରହିଲେ ଗୋ । ୨ । ବରଜ ଅଖଣ୍ଡଳଧେନୁକୁ ସ୍ମରଗରଳ ଚମକୁ ଚିର ବୋଲି ଦୁହିଁଲେ ଗୋ, ରଣିତୁ-ବୀଣାବାଣୀ ମୋହନ-ବିଦ୍ୟା ଜାଣି କାହାକୁ ସେ କିଶୋର ମୋହିଲେ ଗୋ । ୩ । ଶଙ୍କରଙ୍କର ଜାଇମାଳା ଧୁନୀରୁ ଯାଇ ପଙ୍କିଳପୂରେ ଅବଗାହିଲେ ଗୋ, ସିନ୍ଧୁରେ ଅନାଦର ରଚି ଶ୍ୟାମସୁନ୍ଦର ଅନ୍ଧୁରେ ପରି ତରି ବାହିଲେ ଗୋ । ୪ । ନନ୍ଦନନ୍ଦନ ଦେହ ଦେଇ ଯେ ଥିବ ଦାହ ଚନ୍ଦନ ପ୍ରଭଞ୍ଜନ ବହିଲେ ଗୋ, ଏ ରସେ ଅଷ୍ଟଦୁର୍ଗ ଧରିବଳଯୁସ୍ୱର୍ଗ,-ମଣ୍ଡଳ ଆଖଣ୍ଡଳ କହିଲେ ଗୋ । ୫ ।

( ୪୪ )

ରାଗ—ମୁଖାରୀ, ତାଳ—ଆଠତାଳ

ବିମ୍ବାଧରି ରେ, ବିଶ୍ୱମ୍ଭରି ଦେବୀ ଚମ୍ପାଝରି ରେ ।

ବନ୍ଧୁ ତୁ ମୋ ସ୍ମିତ ବିଭୂଷଣ ମୋତିସୋର କି ଦୁଃଖପାସୋରି ରେ । ପଦ ।

ବଳାରାତି ବଇଜୟନ୍ତ ପ୍ରାସାଦ ବିଳାସିନୀମାନେ ତାରି ରେ, ବେଶ-ସୁରସିକା ତୁ ଶରଦରାକା-ରଜନୀ ଚନ୍ଦ୍ରମା ପରି ରେ । ୧ । ବିଳୋକି ଯା ମୋତେ ଉଠି ଲାଜସିଞ୍ଚିତେ ହେଇ ରମ୍ୟରଦାମ୍ବରି ରେ, ବିଶେଷରେ ପୂତ କରୁ କି ରେ ମିତ ମୋ ମାର୍ଗକୁ ସୁଧାଛରି ରେ । ୨ । ବିଧିରେ ଗିରିଜାରମଣଙ୍କ ପୂଜା କର ଚମ୍ପାପରମ୍ପରି ରେ, ବୋଲଏ ମୁଁ ବରବରନାପ୍ରବର ତୋ କରପଇଠ ଧରି ରେ । ୩ । ବୀଣା-ବାଦନ-ପ୍ରବୀଣା ପଣରେ ତୋ ଗଣନା ପ୍ରଥମ ଗିରି ରେ, ବିଶ୍ୱବିମୋହନ ଗୁଣେ ତୁ ମୋ ଧନ ଧୀରଙ୍କ ଲଲାମ ହୀରି ରେ । ୪ । ବୋଲେ ଜଗଦ୍ଦେବ

---

ଲତା; ଅଖଣ୍ଡଳଧେନୁ—କାମଧେନୁ; ଶଙ୍କରଙ୍କର ଜାଇମାଳାଧୁନୀ—ମହାଦେବଙ୍କ ମସ୍ତକରେ ଜାଈମାଳ ପରି ହୋଇଥିବା ନଦୀ, ଗଙ୍ଗା; ପଙ୍କିଳପୁରେ—ପଙ୍କୁଆ ପାଣିରେ; ଅନ୍ଧୁ—କୂଅ ।

୪୪ । ଟୀକା—ବିଶ୍ୱମ୍ଭରି—ପୃଥିବୀ; ଚମ୍ପାଝରି—ଚମ୍ପାଫୁଲର ଗୁଚ୍ଛ; ମୋତିସୋର—ମୋତିହାର; ବଳାରାତି—ଇନ୍ଦ୍ର; ବର—ଶ୍ରେଷ୍ଠ; ବଇଜୟନ୍ତ—ବୈଜୟନ୍ତ ବା ଇନ୍ଦ୍ରପୁରୀ; ରାକା—ପୂର୍ଣ୍ଣମୀ; ରମ୍ୟରଦାମ୍ବରି—ସୁନ୍ଦର ଅଧର-ବିଶିଷ୍ଟା; ସୁଧାଛରି—ଅମୃତ ସେଚନ; ଚମ୍ପାପରମ୍ପରିରେ—ଚମ୍ପାଫୁଲ ସମୂହ ଦ୍ୱାରା; କର ପଇଠ—ହାତ ଭର ।

ସଙ୍କୋଚନ୍ତେ ବାଳା କିଶୋରଙ୍କର ପଚାରିରେ, ବିକେ ହେଉ ବଳ୍ଲୀ-ମନ୍ଦିରକୁ ବୋଲି ଅଳୀ କହେ ଅଙ୍ଗଁଠାରିରେ ।୫ ।

( ୪୫ )

ରାଗ—ମୁଖାରୀ, ତାଳ—ଅଠତାଳ

ଅନା ଅନା ରେ ମୋତେ, ବସୁଧାକୁ ଅନାଅ ନା ରେ ।
କେଉଁ ଖଳ ଜନ କହିଛି କି ମନମୋହନା କିଛି ମୋହ ନାଁ ରେ । ପଦ ।

ଖଳବଞ୍ଚିତକୁ, ସରସ ଚିତ୍ତକୁ, ଅଣିବୁ ନାହିଁ ନବୀନା ରେ; ଯେନ ତ କ୍ଷିତିରେ କେ ରସେ ରୀତିରେ ସୁନ୍ଦର କୁନ୍ଦନ ବିନା ରେ ।୧। ମୋ ଅଙ୍କ ପର୍ଯ୍ୟଙ୍କ ଛାଡ଼ି ହରିଣାଙ୍କ-ବଦନା ତଳେ ବସ ନା ରେ; ଇନ୍ଦୁକର-କାନ୍ତ ପନ୍ତଲୀ ନିନ୍ଦକ କୁନ୍ଦକଳିକାଦଶନା ରେ ।୨। ଅଳଏ ଥିବାରେ ଗ୍ଳଳଦେଲି ଯାହା ଦଶନାମ୍ବରେ ରସନାରେ; କ୍ଷିତକ୍ଷ କରଜେ ମୋ ବନ୍ଧୁ ଚିରୁ ଯେ ଏତିକି ମୋ ଦୋଷ ସିନା ରେ ।୩। ପରଙ୍ଖ ଦେବାର ଦୋଷୀକି ସୁନ୍ଦର ନ ରଙ୍ଗ ମନେ କୁହନା ରେ; ଅସ୍ତ କର ବୃଥା ସଉଭାଗ୍ୟ କଥା ମସ୍ତକ ପୋଡ ରହନା ରେ ।୪। ଅଦର ଗୃଦରପର ପରିଜନେ ଅଦର ଓଣା କର ନା ରେ; କମ୍ବୁକଉତୁକ ଝଲକାମଣ୍ଡନା ଚମ୍ପକ ବର-ବରନା ରେ ।୫। ହର ଗୃହୁ ଯେନି ହେଲେ ଅମାନିନୀ ପରିଣତ-ଚନ୍ଦ୍ରାନନା ରେ । ଅଷ୍ଟଦୁର୍ଗଲେଖାଧିପ ହେଲେ ଲେଖା ତୁଷ୍ଟ ପ୍ରମୁଦିତ-ମନା ରେ ।୬।

( ୪୬ )

ରାଗ—କେଦାର, ତାଳ ଅଡ଼ତାଳ

ବନ୍ଧୁ ଅଛୁ କି ଲେଉଡ଼ା, ନୂଆ ନିଅଳୀନିର୍ମିତ ଚୂଡ଼ାରେ । ପଦ ।

ପରମାଧିକାରେ ଫରମାସୁ ଥିବୁ ମୋଠାରୁ ବରଜ ବ୍ରୀଡ଼ା ରେ । ମନ ଥାଇ ଲାଜଭରବଶୁଁ ବ୍ୟାଜଛନ୍ଦ କଲେ ବଡ଼ ପୀଡ଼ା ରେ ।୧। ନ ପାଇବା

---

୪୫ । ଟୀକା—ବସୁଧାକୁ ଅନାଅ ନା ରେ—ପୃଥିବୀକୁ ଚାହଁ ନା, ଯେନତ କ୍ଷିତି··ବିନାରେ—ସୁନ୍ଦର ସୁବର୍ଣ୍ଣ ଛଡ଼ା ଏ ପୃଥିବୀରେ କିଏ ରୀତିରେ ଅର୍ଥାତ୍ ପିଞ୍ଜଳରେ ରସିପାରେ କି ? ଇନ୍ଦୁକର···ଦଶନାରେ—ଚନ୍ଦ୍ରକିରଣ ଅପେକ୍ଷା ମନୋହର ଓ କୁନ୍ଦଫୁଲର କଢ଼ି ପରି ଦଶନ ଯାହାର, ହରିଣାଙ୍କ ବଦନା —ଚନ୍ଦ୍ରମୁଖୀ, କରଜ—ନଖ, କୁହନା—କୋପ, କମ୍ବୁକଉତୁକଝଲକମଣ୍ଡନା —ମନୋହର ସଚଳ କଣ୍ଠଭୂଷଣ ଭୂଷଣ ଯାହାର, ପରିଣତଚନ୍ଦ୍ରାନନା—ପୂର୍ଣ୍ଣଚନ୍ଦ୍ରବଦନା ।

ସୁଖ ମୋ ଅଗେ ଶ୍ରୀମୁଖ ନୋହିଲେ ସଂକୋଚ ଛଡ଼ା ରେ । ଚଳେ ଥାଉ ମୁଁ ତୋ ସଙ୍ଗୀତ ଜଗତବାହୁଡ଼ା ବଜେ ପାହାଡ଼ା ରେ । ୨ । ଇଚ୍ଛା ମାଫିକେ ତୋ ବଛଣି ବନାଇ ଦିଆଇବ ହୋଇ ଛୁଡ଼ା ରେ । ଅଣା ଅଚ୍ଛୁ ବହୁତ ବାସନ୍ତିକ ବାସ କୁସୁମପାଖୁଡ଼ା ରେ । ୩ । ସଇରିନ୍ଧ୍ରୀକାକୁ ସହୁ କହୁ ଥା ତୁ ଆଜ ହୋଇବ ନିବାଡ଼ା ରେ । ଅଂସ ଅବତଂସ ଲହସା ଖୋସାକ କ ବେଣୀ ଲୋଟଣୀ ଜୁଡ଼ା ରେ । ୪ । ଅଲପକେ ଯେ ହେଉଥାଏ ତରୁଣ ତରୁଣୀଙ୍କ ଘରବୁଡ଼ା ରେ । ଧନ ଚନ୍ଦ୍ରଲେ ଅମ୍ଭର ବଶଂବଦ ହେବ ସେ ସ୍ମର ବାପୁଡା ରେ । ୫ । ନ ମାନିବ ଯେବେ ଦାଣ୍ଡକେ ମହତ୍ତ୍ୱ ବନାଇ ଦେବା ଦକଡ଼ା ରେ । ଜଗଦ୍ଦେବ ଗୀତେ ବୋଲେ କର ମୋତେ ଅଲପ ଭଲପଗଡ଼ା ରେ । ୬ ।

( ୪୭ )

ରାଗ—କେଦାର, ତାଳ—ଏକତାଳ

ଯେବେ ନବଘନ ଶ୍ୟାମ ବଂଶୀସ୍ୱନ କାଶୀଥରେ ଥରେ ଶୁଣାଯିବ ।
ସଖି ସୁଖେ ବନେ ମୋଦମୟ ମନେ ବିହରିବୁ ତୋର ଊଣା ଯିବ । ଘୋଷା ।

ପ୍ରସରିବ ମତ୍ତ ମିଳିନ୍ଦ ସଙ୍ଗୀତ କଳପିକରୁତ ମଳୟମରୁତ; ଚରାଚର ଲୋକ ଧରାରେ ପୁଲକ ପରାନନ୍ଦ ବୀଜ ବୁଣାଯିବ । ୧ । କଳିନ୍ଦଜାକୂଳ ବିପିନ ବକୁଳ ମଞ୍ଜୁଳମଞ୍ଜରୀ ନିଳୟେ ବଳୟେ ଗୋ, ସୁରଭି ସୁଷମ ବିବିଧ କୁସୁମମୟ ଚନ୍ଦ୍ରାତପ ଟଣାଯିବ । ୨ । ଅମ୍ଭେମାନେ ଘେରିଥିବୁଁ ପରଗୃହୀ ଜନ ପର ଗୃହିଦାରେ ତୋହର, ଲକୁଚକୁଞ୍ଜରେ ନୃପ ଉପଗୃହରେ ଏ ପଦ ପହଣ୍ଡ ମଣାଯିବ । ୩ । ହେବ ସ୍ମରବଳଜନ୍ୟ ମହୋତ୍କଳ, ଶୃଙ୍ଗାର ମଙ୍ଗଳମୟ ବନସ୍ଥଳ, କଳାବନ୍ତୀ କୁଳବ୍ରତତରୁମୂଳ ଜଟାତଟୀ-

---

୪୬ । ଟୀକା—ବ୍ୟାଜ—କପଟ, ବ୍ୟାଜଛଳ କଲେ ମନ—ମନକୁ କପଟଭାବ ଅବୃତ କଲେ, ପାହାଡ଼ା—ଗଡ଼ପଥର ଅଚ୍ଛାଦନ, ସୈରିନ୍ଧ୍ରୀକା—ବେଶକାରଣୀ, ଅଂସ—କାନ୍ଧ, ବାପୁଡ଼ା—ନଗଣ୍ୟ, ବଶଂବଦ—ଅଧୀନ ।

୪୭ । ଟୀକା—ଊଣା—ଅଲ୍ପତା, ହୀନତା; ମିଳିନ୍ଦ—ଭ୍ରମର, କଳପିକ-ରୁତ—କୋଇଲିର ମଧୁର ଗୀତ, କଳିନ୍ଦଜାକୂଳ···ନିଳୟବଳୟେ—ଯମୁନା କୂଳବର୍ତ୍ତୀ ବକୁଳବୃକ୍ଷମାନଙ୍କର ମନୋହର ଲତାସମୂହରେ, ସୁରଭି ସୁଷମା—ସୌରଭପୂର୍ଣ୍ଣ, ଚନ୍ଦ୍ରାତପ—ଚାନ୍ଦୁଆ, ପରଗୃହୀଜନପର—ଭୃତ୍ୟପରି, ଲକୁଚ—ଜେଉଟ, ଜଟା—ବୃକ୍ଷର ଅବରୋହ, ତଟୀ—ତୀର, ମୂଳ; ବ୍ରଜବରାରୋହା···

ଠାରୁ ହଣାଯିବ । ୪ । କିଶୋର ଅରୁଣ ପଙ୍କଜ ଚରଣ ସ୍ତନେ ଲଗାଇବା ତା ତୁଲେ ଗାଇବା, ବ୍ରଜବରବରେହା ସମୁଦାୟ ମହାଧନ୍ୟ ମୂର୍ଦ୍ଧନ୍ୟରେ ଗଣାଯିବା । ୫ । ଅଷ୍ଟଦୁର୍ଗପତି କହେ ଗୋ ସୁଦନ୍ତି ଦୁଇ ହୃଦସ୍ନେହ ପୀୟୂଷପ୍ରବାହ, ବଇଶାଖ ରାକାରଜନୀରେ ଏକା ଛଣା ଗଲ ପର ଜଣାଯିବ । ୬ ।

( ୪୮ )

ରାଗ—ତୋଡ଼ି, ଝୁଲ

କେଳିପ୍ରବୀଣା, କେବଳ ତୋତେ ସିନା ଜଣା ରେ,
ପ୍ରଣୟ ଧନେ ପ୍ରାଣ କିଣା ରେ । ପଦ ।

ନେବାନ୍ତ ଖେଳଯୁକ୍ତ, କରାଇ ମିତସ୍ମିତ, ବିବେକ କର ଦେଉ ବଣା ରେ । ୧ । ଦରଶନ ଆରମ୍ଭେ, ସରସ ଗିର ଦମ୍ଭେ, ପରଷିବାର ସରପଣା ରେ । ୨ । ଦରକଣ୍ଠି ସୁନ୍ଦର, ଦରହାସ ମଧୁର, ସରସ ଗିର ପଦେ ଶୁଣା ରେ । ୩ । କରୁଣାମୟ ଚତୈ, ଅରୁଣାଧର ମୋତେ, ତୋ ଦାସୀ-ଗଣନାରେ ଗଣା ରେ । ୪ । ମୁଁ ଏହି ଅଭିଳାଷେ, ଶିବ ଶିବାଙ୍କ ପାଶେ, କରୁଥାଏଟି ଜଣାମଣା ରେ । ୫ । ଗୁଣେ ଲବଣ୍ୟବତୀ, ପାଶେ ଭାରତୀ ରତି, ଦୁହେଁ ତୋ ଠାରୁ କିଛି ଊଣା ରେ । ୬ । ବୋଲେ ଶ୍ରୀଜଗଦ୍ଦେବ, ତୋ ସ୍ନେହୁଁ ମନୋଭବ-ମସ୍ତକେ ମାର ପାରେ ଠଣା ରେ । ୭ ।

( ୪୯ )

ସଜ ହୋଇ ଥା ରେ, ଗଜରାଜଗତି ଅଜ
ରଜନୀ ଅସିବେ ସଜନୀଳୋତ୍ପଳଶ୍ୟାମ ବ୍ରଜଯୁବରାଜ । ପଦ ।

ସୁନା ଲତକାରେ ମୀନା ପର କଲା ଝିନ ଶାଢ଼ୀ ଯତ୍ନେ ପିନ୍ଧ; ବଲା-ପଦ୍ମମଣି ନୀଲ କୁନ୍ତଳରେ କଳାପ କମର ବାନ୍ଧ । ୧ । ପୁଣ୍ଡରୀକବର-

---

ଗଣାଯିବା—ବ୍ରଜନାରୀମଣ୍ଡଳୀ ମଧ୍ୟରେ ଅତି ଧନ୍ୟ ବୋଲି ପ୍ରଥମେ ପରିଗଣିତ ହେବା । ସୁଦନ୍ତି—(ସମ୍ବୋଧନ) ସୁନ୍ଦରଦନ୍ତପଂକ୍ତି ଯାହାର, ରାକା—ପୂର୍ଣ୍ଣିମା ।

୪୮ । ଟୀକା—ମିତସ୍ମିତ—ଈଷଦ୍ଧାସ୍ୟ, ସରସଗିରଦମ୍ଭେ—ସରସବାକ୍ୟ ଛଳନାରେ, ଦରକଣ୍ଠି—କମ୍ବୁକଣ୍ଠି, ଜଣାମଣା—ପ୍ରାର୍ଥନା, ଭାରତୀ—ସରସ୍ୱତୀ, ଠଣା—ଅଘାତ ।

୪୯ । ଟୀକା—ମୀନା—ସୁନା ଅଲଙ୍କାରରେ ସୂକ୍ଷ୍ମକାର୍ଯ୍ୟ, ଝିନ—ସୂକ୍ଷ୍ମ, ବଲାପଦ୍ମମଣି—ଇନ୍ଦ୍ରମଣି, କଳାପ—କାଞ୍ଚୀଦାମ, ପୁଣ୍ଡରୀକ—ଶ୍ୱେତପଦ୍ମ,

ଯୁଗେ ଇନ୍ଦୀବର ଯୁଗଳୀ ଲଢ଼ାଇବାକୁ; ମର୍ଦ୍ଦିବା ଲକ୍ଷ୍ମିନ ତାପିଞ୍ଛେ କନକ-ମଞ୍ଜରୀ ମିଳାଇବାକୁ । ୨ । ମସାରମଣି ହେମସାରସମୂହ ମିଣିବାର ବୁଝିବାକୁ; ବରତ୍ତୁଳ ପୟୋଧରେ ରତିବର ତୁଲେ ଥରେ ଯୁଝିବାକୁ । ୩ । କୁଞ୍ଜାଳୟ ଝଷଧ୍ୱଜ କେଳିରସ ଭୁଞ୍ଜାଇ ଭୁଞ୍ଜିବୁ ପରୀ; କଞ୍ଜାୟତାକ୍ଷିରେ ଖଞ୍ଜାଇ ଲଲାମ ତା ପରେ ପୁନ୍ନାଗଝରୀ । ୪ । ଦେଖି ସେ ଉତ୍ସବ ନେବେ ଅମ୍ଭେ-ମାନେ ସୁଖୀ ହୋଇ ଜୀଇବାକୁ; ଦୁହେଁ ତ ଦୁହିଙ୍କ ଜୀବ, ଜୀବବନ୍ଧୁ ପିବ ମଧୁ ପିଇବାକୁ । ୫ । ଶ୍ରୀ ଲଳିତାଙ୍କ ଲୀଳା ତାମରସ ଉଣ୍ଢାଇଲେ ଦେବୀ ସ୍ନେହେ; ସେ ସମୟେ କର ବନ୍ଦନକୁ ହରିଚନ୍ଦନ ଭୂନାଥ କହେ । ୬ ।

( ୫୦ )

ରାଗ—କାମୋଦୀ

ଡେଣ୍ଟାରେ ଜାଣି ଜାଣି ପଡ଼ିଲି ରେ, ଘଣ୍ଟାରବ ପଥ ମୁଁ ଛାଡ଼ିଲି ରେ । କଣ୍ଟା ନିରୁଦ୍ଧ ଘାଟୀ, ସଞ୍ଚାର କ୍ଳେଶ-ଧାଟୀ, ବଣ୍ଟା ନେବ ମୁଁ ବୋଲି ଅଡ଼ିଲି ରେ । ପଦ ।

ମରିଚ ଘନସାର, ଉପଳ କ୍ଷୀର ସର, ବିନା ତ ପିଚୁମର୍ଦ୍ଦ ଲୋଡ଼ିଲି ରେ, ହଟ୍ଟକୁଟ୍ଟିମସୂର୍ଦ୍ଧସ୍ଥଳ-ଖେଳ-ଝଣ୍ଡିକ, ନୋହି ଦୁର୍ଗନ୍ଧ ଗର୍ତ୍ତେ ବୁଡ଼ିଲି ରେ । ୧ । ଦେବପ୍ରାସାଦମଣ୍ଡ ଜନମିବାରୁ ନିତ, ବଲ୍ମୀକ ଦେଖି କର ଯୋଡ଼ିଲି ରେ, କର୍ମଠ ଧର୍ମଦକ୍ଷ ସାକ୍ଷର ବିପ୍ରମୁଖ୍ୟ ନିତ୍ୟନିବାସ ଦେଶ ପୋଡ଼ିଲି ରେ । ୨ । ଜମ୍ଭାହିତପ୍ରେରିତ ଦମ୍ଭୋଳି ଦୃଢ଼ାଘାତ ବଞ୍ଚାଇବାକୁ ଛାତି ଅଡ଼ିଲି ରେ, ସମ୍ଭାଳିବାକୁ ବଳ ନୋହିବାରୁ କେବଳ କରତଳେ କପାଳ ତାଡ଼ିଲି ରେ ।୩। ହଂସୁଲି ତୁଳିତଳ୍ପ ପାସୋରି ଦେଇ ଅଳ୍ପ ଲୋକଙ୍କ ପରି ତଳେ ଗଡ଼ିଲି ରେ, ରାଧାରମଣ ଘନଶ୍ୟାମ ବୋଲିବା ଜନ ଦେଖି ସଙ୍କୋଚେ ଦନ୍ତ ଭିଡ଼ିଲି ରେ । ୪ । ସମ୍ଭାଷଣ ନ କଲି ରମ୍ଭାସଦୃଶବଲ୍ଲୀ-

---

ଇନ୍ଦୀବର—ନୀଳକଇଁ, ତାପିଞ୍ଛ—ତମାଳ, ମସାର—ଇନ୍ଦ୍ରନୀଳମଣି, ବରତ୍ତୁଳ (ବର୍ତ୍ତୁଳ)—ଗୋଲ, ରତିବର—କନ୍ଦର୍ପ, କୁଞ୍ଜାଳୟ—କୁଞ୍ଜଗୃହ, ଝଷଧ୍ୱଜ—କନ୍ଦର୍ପ, କଞ୍ଜାୟତାକ୍ଷୀ—ପଦ୍ମପରି ବିସ୍ତୃତ ଲୋଚନ ଯାହାର, ଲଲାମ—ଭୂଷଣ, ଝରୀ—ପୁଷ୍ପଗୁଚ୍ଛ ।

୫୦ । ଟୀକା—ଡେଣ୍ଟା—ଜଞ୍ଜାଳ; ଘଣ୍ଟାରବପଥ—ରାଜମାର୍ଗ; ଘାଟୀ—ପାର୍ବତୀୟ ପଥ; ସଞ୍ଚାରକ୍ଳେଶଧାଟୀ—ବୁଲିବା କ୍ଳେଶସମୂହ; ଘନସାର—କର୍ପୂର; ଉପଳ—ପଣା; ପିଚୁମର୍ଦ୍ଦ—ନିମ୍ବ; ହଟ୍ଟକୁଟ୍ଟିମସୂର୍ଦ୍ଧସ୍ଥଳଖେଳଝଣ୍ଡିକନୋହି—ପ୍ରସ୍ତରବଦ୍ଧ ସୁପ୍ରଶସ୍ତ ବିହାରସ୍ଥଳରେ କ୍ରୀଡ଼ା କରିବାକୁ ଅଭିଳାଷ ନ କରି;

ଦେହାକୁ ଦୂରୁଁ ଦେଖି ଡରିଲ ରେ, ଗୃହ୍ନୁଗିରେ ଆଶ୍ୱାସି ଜରଜ ବର୍ହିର୍ଦାସୀ-ମାନଙ୍କ ଅଙ୍କସ୍ଥଳେ ଚଢ଼ିଲ ରେ । ୫ । ବନ୍ଧୁ କ୍ଷମାସରସୀ ହୋଇ ଅନ୍ୟା-ଭିଳାଷୀ ଅରଣ୍ୟରେ ପଶି ମୁଁ ରହିଲ ରେ, କହେ କବିଅର୍ଯ୍ୟମା ମୁଁ ଦୋଷ କଲେ କ୍ଷମା ହେବ ନାହିଁ କି ବୋଲି ବହିଲ ରେ । ୬ ।

( ୫୧ )

ରାଗ—ପୂରବୀ

ଅରଜଥିବାର ପ୍ରୀତି, ବରଜ ଦଅନ୍ତି ମନ୍ଦ କେହି ରୂପେ ପରୁଷ ପୁରୁଷଜାତି । ପଦ ।

ମନ୍ଦ ସରିଯିବା ଯାଏ ଗୃହ୍ନୁବାଣୀ ଭଣି ଦୁଟୀପାଣି ଧରି, ତନୁ ସରି-ଯାଏ ଭଜିବା ଆଶାରେ ଅନୁସରି ଅନୁସରି । ୧ । ମୁରଲୀ ବଜାଇ ନିତି ନିତି ଯାଇ ସଉଧକୁ ଲାଗି ଲାଗି, ବେଶ ହୋଇ ନଟ ନଦୀତଟବଟବନବାଟ ଜଗି ଜଗି । ୨ । ଗୃହ୍ନୁଯିବା ମାର୍ଗ ଚରଣଲଗ୍ନିନ ବାଲି ଗଜରବେ ତୋଳି, ଦେଇ ଶତ ଚୁମ୍ବ ପୁଲକାବଲମ୍ବ ହୋଇ ଶିରେ ବୋଳି ବୋଳି । ୩ । ତୋତେ ତ ଗୋଚର ପେଷି ଶିଶୁଚର ଯେତେରୂପେ ମନଧରି, କରେ ଦେଇ ମଞ୍ଜୁ କୁସୁମପୁଞ୍ଜରେ ସଜାଡ଼ି ସଜାଡ଼ି ହରି । ୪ । ପରସନ ହେବା ନୋହିବା ସନ୍ଦେହୁଁ ପରଗନ ଦେଖି ଦେଖି, ଅମ୍ଳାନ କେତକୀପ୍ରସୁନ ଦଳରେ ପ୍ରେମଲେଖ ଲେଖି ଲେଖି । ୫ । ଦେବୀବାଣୀ ଶୁଣି କହିଲେ ମିତଣୀ ଅଷ୍ଟଦୁର୍ଗ ନାଥ ବୋଲେ, ହେଲେ ହେଲେ ବାମ ଶ୍ରମ ଲଭି ପ୍ରେମ ଜଗତେ ସେ ଶ୍ୟାମ ତୁଲେ । ୬ ।

---

ପ୍ରାସାଦ—ମନ୍ଦିର; ବଲ୍ମୀକ—ହୁଙ୍କା; ସାକ୍ଷର—ବେଦଜ୍ଞ, ବିଦ୍ୱାନ୍; କର୍ମଠ—କର୍ମକାଣ୍ଡନିପୁଣ; ବେଶ୍ମ—ଗୃହ; ଜମ୍ଭାହିତ—ଇନ୍ଦ୍ର; ଦମ୍ଭୋଳି—ବଜ୍ର; ବଲ୍ଲୀଦେହା—କୋମଳାଙ୍ଗୀ; ଜରତୀ—ବୃଦ୍ଧା; ବହିର୍ଦାସୀ—ରକ୍ଷକରଣୀ; ଅର୍ଯ୍ୟମା—ସୂର୍ଯ୍ୟ ।

୫୧ । ଟୀକା—ପରୁଷ ପୁରୁଷଜାତି—ନିଷ୍ଠୁର ପୁରୁଷଜାତି; ତନୁ ସରି-ଯାଏ—ଦେହଶୁଖିଯାଏ; ସୌଧ—କୋଠାଘର; ଚରଣଲଗ୍ନିନ ବାଲି—ପାଦଚିହ୍ନ ଲାଗିଥିବା ଧୂଳି; ପୁଲକାବଲମ୍ବ—ରୋମାଞ୍ଚାବଲମ୍ବୀ ଅର୍ଥାତ୍ ରୋମାଞ୍ଚିତ; ମଞ୍ଜୁକୁସୁମ-ପୁଞ୍ଜରେ ସଜାଡ଼ି ସଜାଡ଼ି ହରି—ସୁନ୍ଦର ଫୁଲମାନଙ୍କଦ୍ୱାରା ଫୁଲତୋଡ଼ା ସଜାଡ଼ି; ପରଗନ ଦେଖି ଦେଖି—ପ୍ରଶ୍ନ ଦେଖି ଅର୍ଥାତ୍ ଜ୍ୟୋତିଷିକ ଗଣନା କରି କରି; ପ୍ରସୁନ—ଫୁଲ; ବାମ—ପ୍ରତିକୂଳ ।

( ୫୨ )

ରାଗ—ପୂରବୀ

ରେ ସଙ୍ଗାତ, ସମ୍ଭାଳ ନ ପାରେ ଅଙ୍ଗ,
ଅମ୍ଭୋରୁହାକ୍ଷର ଖେଳା କଟାକ୍ଷର ଦମ୍ଭୋଳରୁ ବଡ଼ ଦାଗ । ଘୋଷା ।

ଦୂରରୁ ପଡ଼ି ବୁଡ଼ଯାଏ ହୃଦରେ ଲେଉଟିଲେ ନ ଦଶେ ଅଙ୍ଗ, ମରମରେ ପଶି ଦରମରା କରେ ସରସ ସୁରସ ନୋହୁ । ୧ । ଶବଦ ନ ଥାଇ ସ୍ତବଧ କରାଇ ସେ କି ରତି-ରଣ-ସାହୁ, ମିଥ୍ୟା ଚାଲିଲ୍ଲି ପିଅଦା ପରାଏ ମାର ଝିଙ୍କେ ଅସୁ ଯାଉ । ୨ । ନବଘନ ଅଙ୍ଗ ବିଶେଷ ତରଙ୍ଗ ରଙ୍ଗ ଦଶେ ଦାଉ ଦାଉ, ସୁଦନ କୁଦନ କରାଏ ଦୁର୍ଦ୍ଦିନ ଥରେ ଅନାଉଁ ଅନାଉଁ । ୩ । ଗଲେ ହେଲେ ଜାତି ମହତ୍ତ୍ୱ ସମ୍ପତ୍ତି ଫିଟି ତୁଟି ଲୁଟିଯାଉ, ଗଜପତି ଭଣି ହୁଅ ତାଙ୍କ ଦାସୀ ପିଣ୍ଡେ ପ୍ରାଣ ଥାଉଁ ଥାଉଁ । ୪ ।

( ୫୩ )

ରାଗ—ତୋଡ଼ି ପରଜ

ହେ ସରସେ, ମଉଳଗଲେହେଁ ଜୀବ ।
ମଉଳ ନ ଯିବା ଜବାଅଧରାକୁ ଅଭୋଗରେ କେ ତେଜିବ । ଘୋଷା ।

ସେହି ନାକ ଯୁବା ତା ଜୀବନ ଯିବା ଉଚିତ ଜନ ଧିକ୍କାରେ, ଯା ଭୋଗୁଁ ସୁହାସୀ ନୁହଇଟି ବାସି କୁସୁମମାଳା ପ୍ରକାରେ । ୧ । କୁବେର-କୁମରଦ୍ୱୟ ସୁରପୁର ଗଣିକାକୁ ପର ଧର, ରସବଶ ହେଲ୍ଲି ଜନ ସିନା ଭଲ୍ଲି ଦଶବଦନର ପର । ୨ । ଚନ୍ଦ୍ରରୁହାଁ ସୁଖ ବଡ଼ କି ତା ମୁଖ ଦେଖା ବଡ଼ ବଡ଼ୁ ବଡ଼ୁ, ମଧୁର ଅଧର ପିଇ ପୟୋଧର ଢରେ ଦେଇ ଭଡ଼ୁ ଭଡ଼ୁ । ୩ । ଅର୍ଭକ ଗର୍ଭକ କେତକୀ ଦଳରେ ପ୍ରେମଲେଖ ଚଳୁଚଳୁ, ହେଉ ପଛେ ବାଧ ସେ ଥିବା ସଉଧ ଗବାକ୍ଷରେ ଗଳୁ ଗଳୁ । ୪ । ଅଷ୍ଟଦୁର୍ଗ ନାଥ ବୋଲେ ମନୋରଥ ତା ବିନା ଅନେ କାହାରେ, ତାଠାରୁ ନିରାଶ ନ ଲଭି କି ନାଶ ଯାଇ ମାର ତରୁଅରେ । ୫ ।

---

୫୨ । ଟୀକା—ଅମ୍ଭୋରୁହାକ୍ଷ—ପଦ୍ମନେତ୍ର, ଦମ୍ଭୋଳି—ବଜ୍ର, ଅଙ୍ଗ-ବିଶେଷ ତରଙ୍ଗ ରଙ୍ଗ—ଅଙ୍ଗର ବିଶେଷ ଲାବଣ୍ୟ ମାଧୁରୀ ।

୫୩ । ଟୀକା—ମଉଳ ନ ଯିବା ଜବା ଅଧରା—ଅମ୍ଳାନ ଜବାଫୁଲ ପରି ଅଧର ଯାହାର, ଅର୍ଭକ—ଶିଶୁ, ତରୁଅର—ଖଣ୍ଡା ।

( ୫୪ )

ବୃତ୍ତ—ସିନ୍ଧୁକାମୋଦୀ

ଗୁଣନିଧି ଲବଣୀଲହରୀ ରେ, ମୋ ବାଣୀଟି କହି କହ,
ଯଦ୍ୟପି ଅବଧାନେ ଯେବେ ହେଲେ ଧ୍ୟାନେ ଅଛୁ ମୋରେ ଅନୁଗ୍ରହ । ପଦ ।

ଲୀଳା ସଉଧରେ ଆରମ୍ଭି ଥିଲ ତ ବିଳାସ ମଧୁର ଗାନ, ହରିଣାଙ୍କ ବିମ୍ବ ଗୃହିଁ କପାଁ ବିମ୍ବଅଧରୀ ହେଲ ମଉନ । ୧ । ଶଶାଙ୍କନିବାସ ଗୁଡ଼ି କରି ଶଶ କଲେ ଶ୍ରୀମୁଖ ଆଶ୍ରୟ, ବିମଳ ବଦନ ହେବ ସଲାଞ୍ଛନ, ବୋଲି ଲଭିଲ କି ଭୟ । ୨ । ପଲଙ୍କେ ପଲଙ୍କେ ମୁଁ ପ୍ରିୟଙ୍କ ଅଙ୍କେ ନିଷ୍ଠି ନୋହିଥିଲେ ସ୍ଥିତ, ଏହି ନିଶାଚର ପିଅଇ ରୁଧିର ବୋଲି ହେଲ କି ଚକିତ । ୩ । କରକଶତର ଅକର୍ମ ପଥର ଦ୍ରବାଏ ମୋ କଣ୍ଠଧ୍ୱନି, ପୀୟୂଷ-ମୃଦୁଳ ବିଧୁର କି ବଳ ବିଗୁରି ହେଲ କି ତୁନୀ । ୪ । ଅଷ୍ଟଦୁର୍ଗ-ପତି ବୋଲେ ଗଜଗତି ନ କରି କପଟ ଲେଶ, କରି ଚନ୍ଦ୍ରାଲୋକ ତୁ ହେବାରୁ ମୂକ ହୁଏ ସନ୍ଦେହ ଅଶେଷ । ୫ ।

( ୫୫ )

ରାଗ—ଏମନ କଲ୍ୟାଣ, ତାଳ—ଅଡ଼ତାଳ

ଗଜଗତେ ଏ ଜଗତେ ତୁ କାହାର ଉପମା ହେବୁ ରେ । ପଦ ।

ନୟନ ମୋର ଏ ଭୂଲୋକରେ, ମନ ନାଗ ନାକ ତ୍ରିଲୋକରେ, ବୁଲୁଛି ଯେ, ଭୁଲୁଛି ଯେ, ନାହିଁ ନାହିଁ ତୋହ ପରି ରେ । ୧ । କି ତପ କରିଛି କେତେ ଯୁଗ, ଜାତପଙ୍କଜ ତୋ ପଦଯୁଗ, ସୁହାସି ରେ, ଯାହା ଶିରେ, ଧରିଅଛି ବସୁନ୍ଧରୀ ରେ । ୨ । ମୁଖ ସିତପଞ୍ଚଦଶୀପତି, ଲାବଣ୍ୟ ନାକୁରମ୍ବର ଶୁକ୍ତି, ଶେଷ କହି, ଶେଷ ନୋହି, ହୋଇଅଛି ତ ଅଧୁରୀ ରେ । ୩ । ସୁରଭିଖରଗରବଗ୍ରେର, ଭରସିଜକୁମ୍ଭ ବାଳା ତୋର, ନବତନୁ, ନବତନୁ, ଲତା ଭଜି ଯିବ ପରି ରେ । ୪ । ବନ୍ଧୁଜୀବ-ବନ୍ଧୁ ଦନ୍ତବାସ, ବନ୍ଧୁ ହେବାବେଳେ ମନ୍ଦହାସ, ପୀୟୂଷର, ସରସାର, ସ୍ୱାଦୁ

---

୫୪ । ଟୀକା—ହରିଣାଙ୍କବିମ୍ବ—ଚନ୍ଦ୍ରମଣ୍ଡଳ, ସଲାଞ୍ଛନ—କଳଙ୍କଯୁକ୍ତ, ପୀୟୂଷମୃଦୁଳ—ଅମୃତ ଥିବା ହେତୁରୁ ଅତି କୋମଳ, ଚନ୍ଦ୍ରାଲୋକ କରି—ଚନ୍ଦ୍ର ଦର୍ଶନ କରି ।

୫୫ । ଟୀକା—ଗଜଗତେ—ଗଜଗମନେ, ନାଗଲୋକ—ପାତାଳ, ନାକ—ସ୍ୱର୍ଗ, ସିତପଞ୍ଚଦଶୀପତି—ପୂର୍ଣ୍ଣଚନ୍ଦ୍ର, ନାକୁରମ୍ବ—ସମୁଦ୍ର, ଅଧୁରୀ—ଅକ୍ଷମ,

ପାଇ ଯାଏ ଧରାରେ । ୫ । ଏ ଶୋଭା ଦେଖିଛୁ ଯେଉଁ ଅଙ୍ଗ, ସେହୁ ସେହୁ ସିନା ତହିଁ ସାକ୍ଷୀ, ଗିରେ କିସ, କହୁ ଶେଷ, ହେବ ମୋ ଦୁଃଖ-ପାସୋରା ରେ । ୬ । ଅଷ୍ଟଦୁର୍ଗେନ୍ଦ୍ର ସେକାଳେ ଭକେ, ଶ୍ୟାମ ଗିରେ ସପ୍ରଣୟୁ ଲକେ, ବସି ମଥା, ପୋଡ କଥା, ନ କହୁଲେ ବମ୍ଭାଧରା ରେ । ୭ ।

( ୫୬ )

ରାଗ—ଏମନ କଲ୍ୟାଣ, ଅଡ଼ତାଳ

ଦୋଷ ବିନା ମୋ ନବୀନା ରୋଷ କିପାଇଁ ବହୁଲା ରେ । ପଦ ।

ଗେଲ୍ଲଇ ନାଗରୀ ମେଳେ, ଗଜରାଜଗତି ଗଲାବେଳେ, ମୋ ଅଡ଼କୁ ଫେରି ଥରେ ହେଲେ ମୋତେ ନ ଗୃହିଁଲା ରେ । ୧ । ମନୋହର ବେଶ ପାଇଁ, ସୁମନସ ଖୋଜି ଦେଲି ନେଇ, ତା ନ ଘେନି ଜୀବଧନୀ ମଥାପୋଡ ଭହୁଲା ରେ । ୨ । ଧନେ ବସି ସଖୀ ସଙ୍ଗେ, ହରୁଥିଲା କାଳ ନାନା ରଙ୍ଗେ, ସେ ସମୟେ ମୋତେ ଦେଖି ହସି ଉଭା ତ ନୋହୁଲା ରେ । ୩ । ତା ପ୍ରୀତି ଲଭିବା ଦନ୍ତୁ, ଲବେ ନ ମାନଇ ଫୁଲଧନ୍ତୁ, ସେ କପଣ ସହ ବୋଲି ବହୁ ଏହା କି ଲହୁଲା ରେ । ୪ । ନ ସହୁ ମୋର ତ ଶିରୀ, କି ବାଗୃର ସେ ତ କୋପକରି, ମୋତେ ପଞ୍ଚଶରେ ରଚି ତାକୁ କି ଅବା କହୁଲା ରେ । ୫ । ବୋଲେ ଅଷ୍ଟଦୁର୍ଗନାଥ, କି କରବ ନ ଦଶଇ ପଥ, ଗୃହୁଁ ଗୃହୁଁ ଦଶଦଶ କାମ ଅନ୍ଧାର ପିହୁଲା ରେ । ୬ ।

( ୫୭ )

ରାଗ—ତୋଡ଼ି

ଅରେ କୁରଙ୍ଗୀଦୃଶା, ଅଜ ନିଶି କି ହେବ ତୋ ଦଶା ରେ । ପଦ ।

ଲଲି ପଙ୍କୁ ରୁ ପହୁଡ଼ିଲେ ମୃଦୁଲ ତୂଳୀ ତଳପରେ କ୍ଷଣେ, ପ୍ରବୃଷ ତୁଲେ କି ଖେଳିବୁ ହଂସାବଗୁରୁ ସମରପ୍ରାଙ୍ଗଣେ ।୧। ନୂତନବୟସୀ ଜଣିବ ଯତନ ରୁ ତ ନ ଜାଣୁ ପହୁଲେ, ଫଗୁଅ ହେବୁ କି ସେ କାମ ଅମଳ ମତୁଆଳ ଯୁବା ତୁଲେ । ୨ । ଶରୀରଲତା ତୋ ନ ଜାଣେ ଜନମୁ ପରରମୃଜାତ ପୀଡ଼ା, ବରଗିଲେ ଲମ୍ବି ସହୁବୁ 'କେହୁ ସେ ଅରଗଲ ଭୁଜ-

---

ସୁରଶିଖରୀ—ସ୍ୱର୍ଣ୍ଣାଦ୍ରି, ନବତନ୍ତୁ—ହେ ନୂତନାଙ୍ଗି, ଦନ୍ତବାସ—ଅଧର, ବନ୍ଧୁଜୀବବନ୍ଧୁ—ବଧୁଲିଫୁଲ ସଦୃଶ ।

୫୬ । ଟୀକା—ସୁମନସ—ଫୁଲ, ଫୁଲଧନୁ—କନ୍ଦର୍ପ, ପିହୁଲା—ଅଚ୍ଛାଦନ କଲା ।

ଭଡ଼ା । ୩ । କୋଟିଏ ସବଡ ଅଳଙ୍କର ହେଲେ ଗୋଟିଏ ନ ଘେନୁ ଚୁମ୍ବ, ପୀବରସ୍ତନାରେ କ୍ଷଣେ ଏବେ ପୂର ଯିବ ରଦବାସ ବିମ୍ବ । ୪ । ବଧୂବଦନା ତୋ ଲାଜ ବଳିଯିବ ନିଧୁବନ ପରିରମ୍ଭୁଁ, ରାଜୀବ ଚରଣ ଝୁଲିଲେ ନୂପୁର ବାଜିବ ଯେ ଝୁମୁ ଝୁମୁ । ୫ । ଭରତ କର ସମସ୍ତ ମନୋରଥ ବଢ଼ିତ ଅସିବୁ କେହ୍ନ, ଶ୍ରୀର ରାମଚନ୍ଦ୍ର ଦେବ ବୋଲେ ମୋର ନିରନ୍ତର ଚିନ୍ତା ଏହୁ । ୬ ।

( ୫୮ )

ରାଗ—କାଫି

ଭସିଲଟି ଅସି ଦରହାସି ଥରେ ରଖ ରେ । ପଦ ।

ନିଧୁବନବିଚକ୍ଷଣୀ, ଜାଣି ତୋ କରୁଣା ଗୁଣୀ, ମାର ଗିରୀଶାରି ମୋତେ ସାରିଦେଲା ଦେଖ ରେ । ୧ । ଶରଣ ତୁହ୍ନଟି ବୋଲି, ଚରଣକଞ୍ଜ ଧଇଲି, ଗୃହିଁଲ ଯା ନାହିଁ ଧନ କାହିଁକି ଏ ଦୁଃଖରେ । ୨ । ନ ଶୁଣି ମୋ ଗୃହ୍ଣବାଣୀ, ଗଣ୍ଡଦେଶେ ମଣ୍ଡି ପାଣି, ଭୀରୁ କି ମଉରୁ ମହୀ ଚିରୁଅଛୁ ନଖରେ । ୩ । ଧରୁଛୁ ପଲ୍ଲବ କର, ଏବେ କୃପା ଲବ କର, ହାସ ସମୁଲ୍ଲାସ ପରକାଶ ବଧୂମୁଖରେ । ୪ । ଅରେ ନବୀନ ବନିତା, ଲଗାଇଣ ପ୍ରୀତିଲତା, କାଟିପକା ନାହିଁ ସେ ଏକାଠି ସବୁ ସୁଖ ରେ । ୫ । ଅଷ୍ଟଦୁର୍ଗ ନାଥ ଶିରେ, କଷ୍ଟନାଶି ହସି ଦରେ, ଧରାଣିରହୀର ଅସି ବିରାଜିଲା ପାଶରେ । ୬ ।

( ୫୯ )

ରାଗ—ଗୁଜ୍ଜରୀ

ବନ୍ଧୁ ଅଦୋଷେ, ରସ ନା ରୋଷେ, ଧରୁଛୁ ପଙ୍କଜପାଣି । ଘୋଷା ।

ଜନମନ୍ତ୍ର ବୀଣାବଚନୀ ମୁଁ ଗୁଣୀ, ଜନ କି ନ ଜାଣୁ ତାହା ରେ; ସ୍ମର-ଶର ଧାରେ, ସରଳଟି ବାରେ, ଧନ ତୁ ନ ବୋଲୁ ଅହା ରେ । ୧ । କରିଥିଲୁ ପରା, ମୋତେ କବାଧରା, ଜଣେ ତୋ ଚରଣ ଦାସୀ ରେ; ଟିକିଏ

---

୫୭ । ଟୀକା—ଲୁଳପତ୍ରୁ—କ୍ଲାନ୍ତ ସହକାରେ ଲମ୍ବ ହୋଇଯାଇ, ଫଗୁଅ—ହଠହଠା, ଅମଳ—ଜଣା, ଜନମୁ—ଜନ୍ମରୁ, ପରିରମ୍ଭ—ଆଲିଙ୍ଗନ, ସବଡ—ରାଣ, ପୀବର—ସ୍ଥୂଳ, ରଦବାସବିମ୍ବ—ଅଧରବିମ୍ବ, ନିଧୁବନ—କାମକୀଡ଼ା ।

୫୮ । ଟୀକା—ନିଧୁବନବିଚକ୍ଷଣୀ—ରତିପଣ୍ଡିତା, ଗିରୀଶାରି—କନ୍ଦର୍ପ, ଭୀରୁ—ହେ ଭୟାଳୁ, ହାସସମୁଲ୍ଲାସ—ହାସବିଳାସ, ହସିଦରେ—ଅଳ୍ପହସି ।

ବିକଳା, ହେଉ ନାହୁଁ କଳାକୁନ୍ତଳା ନୁଅବୟସୀ ରେ । ୨ । ଅରଜନ୍ତି ତୋତେ, ବନ୍ଧୁ କେତେ କେତେ, ଜନ୍ମେ ତପ କରି କାଶୀରେ; ତୁ ଚିତ୍ତ ପଥର, କଲେ ତ ଏଥର, ଭଗାରିଏ ଦେବେ ହସି ରେ । ୩ । ସଖୀବନ୍ଧା ବେଣୀ, ଫେଡ଼ି କୋଳେ ଅଣି, ନ ଦେଲେ ମୁଁ ଖୋସା ଖୋସି ରେ; କୃପା ଥାଉଁ ଚିତ୍ତେ, ତୁହି ପରି ମୋତେ, ଗେଲେ ବସୁଥାଉ ରୁଷି ରେ । ୪ । ତେତେଢ଼େ ବଢ଼ ସ୍ନେହ, କି ଦୋଷରୁ କହ, ତୋ ମନୁ ଯାଉଛି ଖସି ରେ; ଜଗଦ୍ଦେବ ବୋଲେ, ଶ୍ୟାମ ଜଣାଇଲେ, ପଡ଼ି ଦୁଃଖ ଜଳରାଶିରେ । ୫ ।

( ୬୦ )

ରାଗ—ଅଶାବରୀ

ଚନ୍ଦ୍ରନିଶାରେ, ଦେଲା ସୁନ୍ଦରୀମଣି ମହେନ୍ଦ୍ରଭୁକ୍ତ ମୋରେ । ପଦ ।

ଫୁଲବନେ କେଳିସରକୂଳେ, ନବ ସଙ୍କେତ କଙ୍କେଲିମୂଳେ, ଶେଯ ସାଜି ନାନା ପୁଷ୍ପଦଳେ, ବସିଥିଲି ସେ ରମ୍ଭୋରୁ ସମ୍ଭୋଗ ଅଶାରେ । ୧ । ଏ ସମୟେ ମୋ ଜୀବନଧନ, ଘେନି ଘନ ସର୍ବାଙ୍ଗଚନ୍ଦନ, ତେଜି ବାଜବା ମଣ୍ଡନମାନ, ବିଜେ କଲା ମଲ୍ଲୀଗର୍ଭ ଭୂଷିତ ଖୋସାରେ । ୨ । ଶଙ୍ଖକଣ୍ଠୀଙ୍କି ମୁଁ ଦେଖି କରି, ରଙ୍କ ରତନ ଲଭିଲା ପରି, ଅଙ୍କପର୍ଯ୍ୟଙ୍କେ ବସନ୍ତେ ଧରି, ଗଲା ଅଙ୍ଗ ଅନଙ୍ଗ ମର୍ଦ୍ଦିବା ଦୁର୍ଦ୍ଦଶା ରେ । ୩ । ଉରେ ଜମାଇ ଉରୋଜ କୁମ୍ଭ, କରୁ କରୁ ଗାଢ଼େ ପରିରମ୍ଭ, କଲି ସହସ୍ର ଚୁମ୍ବ ଆରମ୍ଭ, ମନ ବଳିଲା ନାହିଁ ପୀୟୂଷ ପ୍ରଶଂସାରେ । ୪ । ଫେଡ଼ୁ ଫେଡ଼ୁ ବାଳାବର ନୀବି, ଯେତେ ଭାବ ତା କି ବରଣିବି, ବିବସନ କାଳେ ଯେଉଁ ଛବି, ଅଖି ଦେଖିଲା କେଉଁ ଭାଗ୍ୟରୁ ଏ ରସାରେ । ୫ । ଝୁମି ଝୁମି କାମମଦଭରେ, ଝୁଲି ଝୁଲି ନାସାଭୂଷା ଲୋଳେ, ଝଲ ଝଲ ଝଟକିଲାବେଳେ, ଝିଙ୍କି ନେଲା ସ୍ୱର୍ଗସୁଖ ମାର୍ଗକୁ ସୁସାରେ । ୬ । କହେ ଅଷ୍ଟଦୁର୍ଗ ହରିହୟ, ପରସ୍ପର ପ୍ରେମରସମୟ, ଜାତ ହେଲା ଯାହା ସେ ସମୟ, ଝରଝର ଅପୂରବ ରସ ବରଷାରେ । ୭ ।

---

୫୯ । ଟୀକା—ବୀଣାବଚନୀ (ସ୍ତ୍ରୀ)—ମଧୁରଭାଷିଣୀ; ସ୍ମର ଶର ଧାରେ—କନ୍ଦର୍ପ ବାଣର ଧାରରେ; ଜବାଧରୀ—ଜବାଫୁଲ ପରି ଅଧର ଯାହାର ।

୬୦ । ଟୀକା—ମହେନ୍ଦ୍ରଭୁକ୍ତ—ଇନ୍ଦ୍ରସମ୍ପତ୍ତି, କଙ୍କେଲି—ଅଶୋକବୃକ୍ଷ, ମଣ୍ଡନ—ଅଲଙ୍କାର, ପୀୟୂଷ—ଅମୃତ, ନୀବି—କଟିର ବସ୍ତ୍ରବନ୍ଧ; ହରିହୟ—ଇନ୍ଦ୍ର ।

( ୭୧ )

ରାଗ—କରୁଣ ଶ୍ରୀ

ବନ୍ଧୁ ରୁଷିଲା, ଅମ୍ବୁଦର ପରି ପୁସି ଦଶିଲା,
ରାମା ରୁଷିଲା, କାମାନଳମୟ ସବୁ ଦଶିଲା,
ବାଳା ରୁଷିଲା, ହାଳାହଳ ଜ୍ୱାଳାମୟ ଦଶିଲା । ଘୋଷା ।

କି କଲା ଅହା ସୁଶ୍ରୋଣି, ମୋ ପରମ ସୁଖଶ୍ରେଣୀ, ସ୍ୱର୍ଗ ବଡ଼ଭୀ ନିଃଶ୍ରେଣୀ ଖସିଲା ରେ । ୧ । ଅନଙ୍ଗ ବାଣ ବରଷା ସଙ୍ଗେ ତ କୁରଙ୍ଗଦୃଶା, ସରୋଷ ଅପାଙ୍ଗଭୂଷା ମିଶିଲା ରେ । ୨ । ତାର ନିଗ୍ରହ ମୁଁ ପରି,-ବାରକୁ ଡରି ଜୁହାରି,-ବାର ମାରସ ଭଗାରି ହସିଲା ରେ । ୩ । ଦେଖି ନ ଥାଇ ଏ ଭୂତ, ଶିଖାଇ ଦୁର୍ନୀତି ନିତ, କେଉଁ ପିଶୁନ ମୋ ଧୃତ କଷିଲା ରେ ।୪। ସନ୍ତାପ-ସିନ୍ଧୁକୁ ନବ, ବିଳାସିନୀ ସିନା ପ୍ଲବ, ଶ୍ରୀ ବାଲୁକେଶ୍ୱର ଦେବ ଭୃଷିଲା ରେ । ୫ ।

( ୭୨ )

ରାଗ—ତୋଡ଼ି ପରଜ

ରେ କିଶୋରି, ରୁଷିବାରି ସିନା ଜାଣୁ,
ରସ-ଜଳଧିରେ ଅବଗାହି ଧୀରେ, ତହୁଁ ତ ସାର ନ ଘେନୁ ରେ । ଘୋଷା ।

ରମଣୀୟ ଜାଣି, ରସି ଯହିଁ ପ୍ରାଣି, ନ ଡରି ପରିବାଦକୁ; ରୋଷ ଅଙ୍ଗୀକାର କରି କି ତାହାର ଅଳପ କଥା ପଦକୁ । ୧ । ରକ୍ତ ତ ମୃଦୁଳ, ନୋହେ ତାକୁ ଅଳଙ୍କାରକୁ ନିକି ନ ଅଣି; ରସିକାଙ୍କ ଶିଖାମଣି ଯେଣୁ ଶିଖା ଶିଖି ତୁହି କାହୁଁ ଶୁଣି ରେ । ୨ । ରଜତ ବ୍ୟକତ, ହେଲେ ଯଦି କ୍ଷତ, ହୁଅଇ ଅସେଚନକ; ରଦାଗ୍ର ସ୍ମରଣ ଅବା କେଡ଼େ ଦୋଷ ନ କରି ରାତ୍ରେ ବିବେକ । ୩ । ରତିଈଶରଣ ଯାହାର ଶରଣ ଦେଖିଥିଲେ ତାକୁ ନେନେ; ରହନ୍ତି କି ଲଜ ଫୋପେ ଜମି ଅଜ ଭୁଜେ ଭିଡ଼ି ଦେବା ମାନେ । ୪ । ରଙ୍କରତନ ଲଭିକୁ ପରି ଏବେ ରତି ଯତନକୁ ଭଲେ; ରମ୍ୟ ଶ୍ୟାମଛବି କିଶୋରବେ କବିରବି ରାୟଗୁରୁ ବୋଲେ । ୫ ।

---

୭୧ । ଟୀକା—ଅମ୍ବୁଦର—କୁଅଭିତର, ହାଳାହଳ—ବିଷ, ସୁଶ୍ରୋଣି—ନିତମ୍ବବତୀ, ବଡ଼ଭୀ—ଚନ୍ଦ୍ରଶାଳା, ନିଃଶ୍ରେଣୀ—ନିଶୁଣି, ପିଶୁନ—ନିଷ୍ଠୁର, ପ୍ଲବ—ନାହା, ପରିବାର—ଭୃତ୍ୟ ।

୭୨ । ଟୀକା—ଅସେଚନକ—ତୃପ୍ତିକାରକ, ରଦାଗ୍ର—ଦାନ୍ତ ଅଗ ।

( ୭୩ )

ପଗ୍ଭର କେ ଅଣିଛୁ ଗଜଗତିଙ୍କୁ ସେ ମୋ ଏ ଜଗତୀକୁ । ଘୋଷା ।

କି ସୁନ୍ଦର ଦରହସିତ, ଶୀତକରକର ଲଳିତ, ଦଶନବସନ ନବ ଜବାସୁନ ଉପରେ କେ ରଖି ଦେଲା ମୋହକ । ୧ । ଅହା ତାହା ଗ୍ରୀହାଣି ଠାଣି, ବଣାମ୍ଭଗ ନ ପାରେ ଅଣି, ମଳିନ କୋହ୍ୱବା ନଳିନ ଯୁଗଳେ ଅଳି କରୁଥିଲା ଚଳି ରତିକୁ । ୨ । ସ୍ଫୁଟ ତିଳକୁସୁମ ନାସା, ସ୍ଫୁଟ ଫୁଲ୍ଲ ସରସ ଭାଷା, ଅଳୀକ ଅଳାପି ଗ୍ଭଳି ଦେଉଥିଲା ପ୍ରତି ପଦରେ କେଲିତ-ପତିକୁ । ୩ । ହେମରମ୍ଭା ତରୁ ଊରୁକୁ, ପ୍ରେମରଙ୍ଗ ନଟ ଭୁରୁକୁ, ରୁଚକ ରୁଚିର କୁଚକଳଶକୁ ଗ୍ଭହିଁ ହଜାଇବେ ଯତି ମତିକୁ । ୪ । ଇଷ୍ଟତମା ସଖିଙ୍କି ରସେ, ଅଷ୍ଟାଦୁର୍ଗ ମହେନ୍ଦ୍ର ଭୂପେ, ମୋଦେ କୋଳେ ବସି ପଦେ କହୁ ହସି ମୋ ସବତଟି ସେ ରସବତୀକୁ । ୫ ।

( ୭୪ )

ଗ୍ଭଗ—ପୂରବୀ

ରସନିଧି ଭଲି ଅଚରିଲି ମୋହ୍ୱପରି ବାଧି ରେ । ପଦ ।

କିଙ୍କିଣୀ ତାଳକୁ ରଚୁଥିଲା, ଝୁଲି ଝୁଲି ନଥ ନାଚୁଥିଲା, ନେତ୍ର ପୁଣ୍ୟଫଳ ପାଉଥିଲା, ମୋତେ ବ୍ରହ୍ମପଦ ସୁଖ ଯାଚୁଥିଲା । ୧ । ଅଧୋ-ମୁଖେ ରତ୍ନସାନୁ ଥିଲା, ତା ନିକଟେ ସୁଧାଭାନୁ ଥିଲା, ତହିଁ ତିଳଫୁଲ ତଳେ ଝଲମଲ ବୁଲାକ ଝୁଲି କି ମାନୁଥିଲା । ୨ । ଅନେ ତା ଗ୍ଭରୁକର ଲବ କାହିଁ, ବିବେକ ବାକ ରହିଲା ନାହିଁ, ବିନ୍ଦୁ ବିନ୍ଦୁ ଝାଳ ସୁନ୍ଦର କପୋଳ-ମୁକୁରେ ମକଗ୍ଭଲିଲା ଗ୍ଭହିଁ । ୩ । ବନ୍ଧୁ ମୋ କି ଲଜ ଭଜୁଥିଲା, ଥରେ ଥରେ ନେତ୍ର ବୁଜୁଥିଲା, ଥରେ ଥରେ ଗ୍ଭହିଁଦେଇ ଇନ୍ଦୀବରେ ମଦନଦେବକୁ ପୂଜୁଥିଲା । ୪ । ନୀଳକୁଞ୍ଚିତ କୁନ୍ତଳତତି, ଭଜୁଥିଲା ଅସ୍ତବ୍ୟସ୍ତ ଗତି, ମିଶୁଥିଲା ଗଭୀ-ଜମରେ ଖସିବା କୁସୁମ ଶ୍ରୀ ଜଗଦେବ ଧୃତି । ୫ ।

---

୭୩ । ଟୀକା—ଜଗତୀ—ପୃଥିବୀ; ଶୀତକରକରଲଳିତ—ଚନ୍ଦ୍ରକିରଣ ପରି ମନୋହର, ଦଶନବସନ—ଅଧର, ନବଜବାସୁନ—ନୂଆ ମନ୍ଦାରଫୁଲ, କେଲିତପତି—କନ୍ଦର୍ପ, ରୁଚକ—କଣ୍ଠାଭରଣ ହାର, ସବତ—ସ୍ୱର୍ଣ ।

୭୪ । ଟୀକା—ସାନୁ—ପର୍ବତଶିଖର ବା ଶୃଙ୍ଗ, ସୁଧାଭାନୁ—ଚନ୍ଦ୍ର, ଗ୍ଭରୁ—ଦୀପ୍ତି, କପୋଳମୁକୁର—ଗଣ୍ଡଦେଶରୂପ ଦର୍ପଣ, ବୁଲାକ—ନାସିକାର

( ୬୫ )

ରାଗ—କଳହଂସକେଦାର

ତାର ଗିରେ କି ବିଶ୍ୱାସ, ତାର ସ୍ନେହେ କି ବିଶ୍ୱାସ,
ତାର ପରେ କି ବିଶ୍ୱାସ, ଯାର ଜାରବିଳାସ ଗୋ । ପଦ ।

ବୋଲେ ଶତ ଥର ଶପଥରେ ମୋର ଆନେ ନାହିଁ ଅଭିଳାଷ, ହୋଇଥାଏ ବୋଲି ଚନ୍ଦ୍ରାବଳୀ କେଳିନିକୁଞ୍ଜ କୁସୁମବାସ ଗୋ । ୧ । ଦନ୍ତବାସେ ସତୀ ଯୁବତୀଙ୍କ ଜାତି ନେବା ଭଙ୍ଗୀମିଶା ହାସ, କଥାକୁ ଶାଶୁଙ୍କ ମଥାକୁ ଛୁଅଇଁ ଏପରି ଯାହା ସାହସ ଗୋ । ୨ । ପ୍ରତି ରାତି ନାରୀମଣିର ରମଣେତରେ ବଳାଏ ମୁହାଁସ, ପାରେଇ ଡେଇଁବା ଆପଦୁ ଯା ପଦଜଳଜ-ତଳ ପରାସ ଗୋ । ୩ । ହୁଏ କେଡ଼େ ପ୍ରିୟ ଗିରେ ସବିନୟ ପ୍ରକାଶି ମୋହନ ରସ, ମୁରଲୀ ବଜାଇ ଡାକେ ଯହୁଁ ଯାଇ ଅଟରେ ବଡ଼ ନିରାଶ ଗୋ । ୪ । ମୁଁ ନଗର ଯୁବରାଜ ବୋଲି ଅବଲେପରେ ବହେ ଉଲ୍ଲାସ, ଯେ ପୁଣି କପଟେ ଲୁଚି ନଦୀତଟେ ଲୁଟଇ ପାଲଟା ବାସ ଗୋ । ୫ । ତେବେ ହେଲେ ଏ କି ଚିନ ଧିକ ତାର ଧନ ଜୀବନ ନିବାସ, ଅଷ୍ଟଦୁର୍ଗ-ପୁରନ୍ଦର ବୋଲେ ଯାର ଗତି ନୁହେ ପୀତବାସ । ୬ ।

( ୬୬ )

ରାଗ—ଧନାଶ୍ରୀ

ଘେନ ଘେନ ମନ ଘନସମ ଶ୍ୟାମଳଅଙ୍କୁ,
ପିଲଟି ଦିନୁ ପୂତନା ପ୍ରାଣକବଳଅଙ୍କୁ । ପଦ ।

ବରଙ୍କ ଗୋପୀଙ୍କର ମକରକୁଣ୍ଡଳଅଙ୍କୁ, ଅଖଣ୍ଡଚନ୍ଦ୍ରସୁନ୍ଦର ମୁଖ-ମଣ୍ଡଳଅଙ୍କୁ । ୧ । ମଦଗଜଗମନକୁ କଦମ୍ବମୂଳଅଙ୍କୁ, ମଖଶାଳାଭିଖାରୀକୁ ଶିଖଣ୍ଡଚୂଳଅଙ୍କୁ । ୨ । ସମୁଦ୍ରକୁ କରୁଣାର ଯମୁନାକୂଳଅଙ୍କୁ, ଗୀତ ନଟ-

---

ଅଳଙ୍କାରବିଶେଷ, ମକରୀ—ଗଣ୍ଡଦେଶରେ ଅଙ୍କିତ ଚିତ୍ରବିଶେଷ, କୁନ୍ତଳତତି—କେଶସମୂହ, ଚୁଲ୍‌କ ଝୁଲ୍‌କ—ଦଣ୍ଡିର ଚୁଲ୍‌ବା ।

୬୫ । ଟୀକା—ଜାରବିଳାସ—ଉପପତି ରୂପେ ବିହାର, ଶପଥରେ—ରାଣରେ, ଦନ୍ତବାସ—ଅଧର, ମୁହାଁସ—ଅଭିମାନ, ରମଣେତରେ—ଅନ୍ୟ ପତିଠାରେ, ପାଦଜଳଜ—ପାଦପଦ୍ମ, ଅବଲେପ—ଗର୍ବ ।

୬୬ । ଟୀକା—ପୁରନ୍ଦରମଣି—ଇନ୍ଦ୍ରମଣି, ମକରନ୍ଦଲିଟ—ମଧୁଲୋଭୀ ଭ୍ରମର, ଧରାଧରଧରି କରେ—ଗୋବର୍ଦ୍ଧନପର୍ବତ ଧାରଣକାରୀ ହାତରେ ।

ଲମ୍ପଟକୁ ପୀତଦୁକୂଳଅଙ୍କୁ । ୩ । ବଲ୍ଲବେନ୍ଦ୍ରନନ୍ଦନକୁ ପଲ୍ଲବମାଳଅଙ୍କୁ, ଭଜେ କବିରବି ତାହାଙ୍କର ପାଦଜଳଅଙ୍କୁ । ୪ ।

( ୬୭ )

ରାଗ—ଶଙ୍କରାଭରଣ

ରାଧେ ରସିକାରାଜ, ତୋ ପ୍ରବୀଣାପଣ ଜଣାଯିବ ଅଜ,
ନନ୍ଦର ତନୟ ପୁରନ୍ଦର ମଣି ମକରନ୍ଦଲମ୍ପଟ ତୁ ଅରବିନ୍ଦଟି ସୁନ୍ଦର । ପଦ ।

ହେବା ଦନୁ ସ୍ତନ ପୀନ କରକଶ, ମଦଗତେ ବସୁନ୍ଧରା ମଣ୍ଡଳକ ମଣ୍ଡୁ ପରା, ଏବେ ଧରାଧରଧରା କରେ କସ । ୧ । ଭଲ ସଖୀ ଦେହେ ସ୍ନେହେ ଜଡ଼ିବାର, ଭଲ ସେ ଶିଖଣ୍ଡଚୂଳ ମରକତ ଅରଗଳ, ବଳୟ ବାହୁ ଯୁଗଳ ଭିଡ଼ିବାର । ୨ । ଅମ୍ଭେ ସିନା ପ୍ରଭୁ ବୋଲି କରୁ ଭ୍ରାନ୍ତ, ତୁ ଯାହା କଲେ ତା ସହୁ, କ୍ଷମା କରିବେ ସେ କାହୁଁ ବାମାଗର୍ବ-ଚନ୍ଦ୍ର ରାହୁ କଳାହାତୀ । ୩ । କି ହେବ ମନ୍ଦରେ ଲୁଚୁ ନଚୁଇଲେ, ଯଶ ହେବ ସେହୁ କାଳେ ନଟ-ମୁକୁଟକୁ କୋଳେ, ନଚୁଇ ସେ ରସେ ବଳେ ରୁଚୁଇଲେ ॥ ମୃଦୁ ତନୁ ବୋଲି କେ ଛାଡ଼ିବ ଅଜ, ଅଙ୍କେ ଯିବାଯାଏ ଶାନ୍ତ ହୋଇବ ନାହିଁ ଯେ ଦାନ୍ତ, କରରୁହ ପ୍ରାନ୍ତକୁନ୍ତ ଖେଳା ଦାଜ । ୫ । ବୋଲେ ଅଷ୍ଟ-ଦୁର୍ଗନାଥ ଜଗଦ୍ଦେବ, ସଖି ପରିହାସ ଶୁଣି ଲଜେ ହସି ଠାକୁରାଣୀ, ମନେ କଲେ ହେଲେ ପୁଣି ବୁଝାଯିବ । ୬ ।

( ୬୮ )

ରାଗ—ସିନ୍ଧୁକାମୋଦୀ

ପ୍ରାଣବନ୍ଧୁ, କର ଗରବ କାହିଁକି ରେ, ପରବ ଚନ୍ଦ୍ରମା ଚନ୍ଦ୍ରେ, ବଳଲନା କି ତୋ ଝଳ ଲବଣ୍ୟାଦ ଗୁଣଗଣରୁ କହିତେ । ଘୋଷା ।

ଜଳଧିର ପଙ୍କ କି ଅବା କଳଙ୍କ ଖଣ୍ଡେ ଶିରେ କର ଫୁଲେ, ନାହିଁକି ନଜର ରସାଳସା ତୋର ନେତ୍ର ଇନ୍ଦୀବର ଫୁଲେ । ୧ । ମୋ ସୁଧା ତୁଳରେ ବସୁଧା ତଳରେ କେ ଅଛୁ ବୋଲି ଯା ଭାବେ, କର୍ଣ୍ଣେ ନାହିଁ ଶୁଣି ତୋ ମୃଦୁଳ ବାଣୀବିଳାସକୁ ପରା ଲଭେ । ୨ । କରୁଛୁ କି ମନେ ଏ ତିନି ଭୁବନେ ମୁଁ ଏକା ରଜନୀକର, ଫୁଲଶେଯରତେ ତୋ ଚରଣ କେତେ ଲଗଇ ରଜନୀକର । ୩ । ଜଗତୀରେ ଏକା ମୋହର ଚନ୍ଦ୍ରିକା

୬୮ । ଟୀକା—ପରବଚନ୍ଦ୍ରମା—ପୂର୍ଣ୍ଣିମା ଚନ୍ଦ୍ର, ଝଳ—କାନ୍ତି, ଜଳଧିର—ସମୁଦ୍ରର, ରଜନୀକର—ଚନ୍ଦ୍ର ଓ ଧୂଳିସମୂହ ।

ରୁଚିର ବୋଲି ଯେ ବୋଲେ, କୁନ୍ଦକାଶକୁ ନିନ୍ଦିବା ହାସକୁ ଖେଳାଇ ଦେବୁଛି ଗେଲେ । ୪ । ଭ୍ରୁ ଅଛୁ ଶତେ ଭଜୁଛନ୍ତି ମୋତେ ଅନେକ ନକ୍ଷତ୍ରମାନେ, ଶ୍ରୀହସ୍ତ ଚରଣକଞ୍ଜ ନଖଗଣ ଶୋଭା ଗ୍ରହିଁ ନାହିଁ ଦିନେ । ୫ । ଚକୋରଦୃଅ ମୁଖ ଏ ଶୀତମୟୂଖଜିତ ହୋଇ ମରୁ ଚଳି, ନିତ ନିଧୁବନେ ଅନେକ ବିଧାନେ କେତେ ଚନ୍ଦ୍ର ଥାଇ ଗୃଳି । ୬ । ଚକୋର ଏହାର ବଡ଼ ଯରଗ୍ଭର ତୁ ସେବା ଦେଇଛୁ ମୋତେ, ଅଷ୍ଟଦୁର୍ଗଧିରାମଣ୍ଡଳୀ ଅମରାବତୀ-ଯତ ବୋଲେ ଗୀତେ । ୭ ।

( ୬୯ )

ରାଗ—ସୁରଟ

ମନ ଜମି ଯା, ସିନ୍ଧୁଜେମା ପ୍ରାଣଧନେ, ସିତପଙ୍କଜନୟନେ । ପଦ ।

ରମ୍ୟଯାନପଦକରେ, ମୁନି ହୃଦ ପଦକରେ । ୧ । ଶରଣାଗତ ବନ୍ଧୁରେ, କରୁଣା ସୁଧାସିନ୍ଧୁରେ । ୨ । ଦୀନଜନ ବିଭବରେ, ନୀଳାଦ୍ରି କଣ୍ଠୀରବରେ । ୩ । ଦଳିତ କଲ୍ମଷପୁଞ୍ଜେ, ଇନ୍ଦ୍ରବନ୍ଦ୍ୟ ପଦକଞ୍ଜେ । ୪ । ନିଗମ କୁଞ୍ଜ କୁଞ୍ଜରେ, ଭବ ଭୟାଳୁ ପୁଞ୍ଜରେ । ୫ । ଗ୍ଲୋଟରାୟ ଦେବ କହେ, ଦୁଃଖତମର ବିରହେ । ୬ ।

( ୭୦ )

ରାଗ—ମାଳବ

ସେ ମୋହନ ସ୍ନେହ ରେ, ସହଚର କି ପଦାର୍ଥ କହ ରେ । ପଦ ।

ନୋହେ ଅଭୟ ନ ରଖଇ ଦକ, ଅମଳ ନୋହେ ଅତି ଜନ୍ମାଦକ, ହୋଇ ହୃଦୟ ଅଦୃଶ୍ୟପଦକ, ହଜାଇ ଦିଅଇ ବିବେକଯାକ । ୧ । ନୋହେ ଘୂକନେତ୍ରଗୋଳକଜ୍ୱଳ, ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ, ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ, ବୁଡ଼ାଇ ଦିଅଇ ନୁହଇ ଜଳ । ୨ । ନୁହଇ ପରାଣ ନୁହଇ ଖଣ୍ଡ, ଅଟକଇ ପଦ ନୁହଇ ବେଣ୍ଡ, ବୃଷ୍ଟି ବାରଣ ଛତ୍ରକୁ ନ ଲୋଡ଼, ନ ମାନେ ନଭମାସନିଶା ଝଡ଼ । ୩ । ନୋହେ ସଂକଳପ ମାନସେ ରହେ, ହେଲା ନୋହେ ଯତ୍ନ ନ ରଖେ ଦେହେ, ଅନ୍ଧ ନୋହି ଶୀର୍ଣ୍ଣ କରେ ବିରହେ, ସଦେହେ ଶ୍ରୀମୁକୁନ୍ଦଦେବ କହେ । ୪ ।

---

୬୯ । ଟୀକା—ଜମି ଯା—ଏକୀଭୂତ ହୋଇ ଯା, ସିତ—ଶୁକ୍ଲ, ରମ୍ୟଯାନପଦକର—ଚକ୍ରଧାରଣକାରୀ ।

୭୦ । ଟୀକା—ଘୂକ—ପେଚକ, ଜଙ୍ଘାବଳ—ବେଗଗାମୀ ଦୂତ, ନଭମାସ—ଶ୍ରାବଣମାସ ।

( ୭୧ )

ରାଗ—ରଣବିଜେ

ବଳା ନା ସ୍ନେହ କଳାନାଗରେ, ସବିପିରୁଚି ରଜନୀ ଜାଗରେ । ଘୋଷା ।
ଦେଖୁଛୁ ତ ଗର୍ବ କୁଟିଳ ଗୁଲ୍, ଭୁଜଙ୍ଗପୁଙ୍ଗବ ମୁଁ ସିନା ବୋଲ୍ ।୧।
ତାହାର ଅତ ପ୍ରୀତ କଳାପୀରେ, ତହୁଁ ବହଇ ତା କଳାପ ଶିରେ । ୨ ।
ମୁରଲୀଧ୍ୱନି ଦମ୍ଭ ଗରଜନ, କେ ସହିବ ନୋହି ମୋହିତ ମନ । ୩ ।
କଲେ ତା ଭୋଗେ ଅଭିଳାଷ ଲବ, ଅଣ୍ଟିବ ନାହିଁଟି ବନପଲ୍ଲବ । ୪ ।
ଘାରି ହୋଇ ସରସିରୁ ସଦନେ, ବଂଶୀ ଦେବ ଯେବେ ବଂଶୀବଦନେ । ୫ ।
କବିମାଉିଣ୍ଡ ରାୟଗୁରୁ କହେ, ଗଜ ଚରମେ କାହା ସ୍ନେହ ନୋହେ । ୬ ।

( ୭୨ )

ରାଗ—ନାଟକୁରଙ୍ଗ

ଯାଉଛୁ ମା ଅଉ ନ ପାରେ ତାକୁ ଟାକି । ପଦ ।

ସଂବେଶ ବେଶ ଭୋଜନେ, ଲୋଡ଼ି ମୋତେ ଗୁରୁଜନେ, ଚଳି ହେଉଥିବେ ପରି ଡାକି । ୧ । ନିତ ଧରି ଦୂତୀ କର, ଯତନେ ଅରଜବାର, ଗ୍ଳେହ ପୀରତରେ ଏ କ ଗ୍ଳକ । ୨ । ହଜାର ହଜାର ଯାର, ପ୍ରଣୟବର୍ତୀ ବଜାର, ତହୁଁ କେହି ରଖିଥିବ ଜାକ । ୩ । ବ୍ରଜୁ ହୁଅନ୍ତେ ବାହାର, ତା ପଦପଙ୍କଜ ଛା'ର, କୁଗ୍ଳଚଲେ ରହିଥିବ ଠାକି । ୪ । ତୁଚ୍ଛାକୁ ତ ଶ୍ୟାମ-ପ୍ରୀତ,-ଲମ୍ପଟା ବୋଲି ମୋ ଖ୍ୟାତ, ନ ରହିବ ପୁଣି ସିନା ବାକି ।୫। ଅବଶ୍ୟ ତ ଜୀବ ଯିବ, ନେଲେ ନେବ ମନୋଭବ, ରଖିଲେ ରଖିବେ ଶ୍ରୀ ପିନାକୀ । ୬ । ଜଗଦ୍ଦେବ ଭାଷା ଶୁଣି, ଅଲି କହିଲେ ମୁଁ ଅଣି, ଏବେ ଭେଟାଇଲେ କି ହେଲା କି । ୭ ।

( ୭୩ )

ରାଗ—ଭାଟିଆରୀ

ରେ ମୋ ଜୀବନ, ମୁଁ କି ମୀନ ମୀନକେତନା ତୁ ମୋ ଜୀବନ ରେ,
ମୋର ମାନସ ବିହଗରାଜବନ । ଘୋଷା ।

---

୭୧ । ଟୀକା—ଭୁଜଙ୍ଗପୁଙ୍ଗବ—ସର୍ପଶ୍ରେଷ୍ଠ ଓ ବଟଶ୍ରେଷ୍ଠ, କଳାପି—ମୟୂର ଓ ବାରହଣୀ, ଗଜଚରମ—ହାତୀପିଠି ।

୭୨ । ଟୀକା—ସଂବେଶ—ନିଦ୍ରା, ଗ୍ଳକ—ଚତୁରତା, ଶ୍ରୀପିନାକୀ—ସ୍ମରହର ମହାଦେବ ।

ସାକରସାର ମଧୁରଭାଷୀ, କାକରକରକରଣହାସୀ, ନାକ-ରମଣୀକ ଠାକର ମାରୁଛୁ ତୋ କର ପଇଠ ଧରୁ ଦାସୀ ରେ । ୧ । କୁସୁମୋତ୍ସବ ବିଚ୍ଛେଦ ଯୁଗୁ, ଲାଗି ଉକାଇତ ଲାଗୁ ଲାଗୁ, ଲଳନାରତନ କଳନା ନ ପଡ଼ି କଳାନାଗବଲ୍ଲୀ ଗେଲେ ମାଗୁ ରେ । ୨ । ଘୁମୁରେ ଘୁଇ ନ ପଡ଼ୁ ବୋଲି, ଛଡ଼ା ହୋଇ ମୁଁ ଯେ ଛୁଡ଼ା ହେଲି, ଛୁଇଁଲି ଯେ ବୋଲି ଛଇଳ ହସି ମୋ ଘୁଙ୍ଗ ଉଦ୍ବେଗେ ଦେଇ ପେଲି ରେ । ୩ । ତୁ କାହା ଦୁଃଖପାସୋରି କି ବେ, ବୋଲି ମୁଁ ପଚାରେଁ ପ୍ରେମଗିରେ, ତୁମ୍ଭର ବୋଲିବା ଦମ୍ଭରେ ଦମ୍ଭୋଳି କରୁଛୁ ମୋ ଦୁଃଖଗିରି ଶିରେ । ୪ । ମେଲାଣି ହେବି କି ଯେବେ ବୋଲେ, ମୁଁ କି ଜାଣଇ ମା ଭାଷି ଗେଲେ, ମୋ ପିନ୍ଧାବାସ ଶେଷକୁ ଛନ୍ଦଥାଇ ଅଙ୍ଗୁଳି ଅଗ୍ର ଚମ୍ପାଫୁଲେ ରେ । ୫ । ସ୍ମିତ ସୁଧାବିନ୍ଦୁ ବଢ଼ୁଥାଇ, ରତିର ପ୍ରସଙ୍ଗ ବଢ଼ୁଥାଇ, ଚାରୁ ତୋ ଯହିଁ ଦାନ୍ତଡ଼ୁଥାଇ, ଗୃହୁ ଗୃହାଣିରୁ ଶଙ୍କା ପଡ଼ୁଥାଇ ରେ । ୬ । ପ୍ରତି ପ୍ରବନ୍ଧେ ମଙ୍କାଇ ମଙ୍କା, ନିତ ହେଉଛୁ ବାସକସଜ୍ଜା, ଗୋଟିକି ଗୋଟିଏ ବ୍ରଣ ଲଙ୍ଘି ନଖି ବୋଲି ଯେ କାହିଁକି ଏଡ଼େ ଲଜ୍ଜାରେ । ୭ । କ୍ଷଣକେ ମୋ ଦୋଷ ଦଶକୋଟି, କ୍ଷମା ନ କଲେ ମୁଁ ସରିଲିଟି, ଅଖଦଡ଼ି ଅବଧାନରୁ ଶ୍ରୀଅଙ୍ଗେ ନଖଦନ୍ତ କ୍ଷତ କରଇଟି ରେ । ୮ । ଏ ସ୍ନେହପୀୟୂଷ ବରଷାରୁ, ଏହି ଅନୁରାଗ ଭରସାରୁ, କର ସାରସଲୋଚନା କବିରବି ବଳାଇଛୁ ତୋତେ ଘରଷାରୁ । ୯ ।

( ୨୪ )

ରାଗ—କେଦାର

କରିବି କି ରାଜି, ଚନ୍ଦ୍ରାନନ୍ଦୀ ଆଜି, ମୋ ଅଙ୍କେ ବସାଜି ଖେଳିବାକୁ, ସମରେ ନ ଭାଜିବାରି ମାରି ପାଜି ମଙ୍କା ବଳ ରାଜି କଳିବାକୁ । ଘୋଷା ।

ମୋର ଅନଳପ ପୂରୁବର ତପକଳାପ-କଳପବଲ୍ଲୀରୁ ସେ ଗୋରୀ ରେ, ହେଲା କି ଏଥର ମୋ ମନୋରଥର ସମୁଚିତ ଫଳ ଫଳିବାକୁ । ୧ । ନବୀନ ବିଳାସବତୀ ସେ ତ ନିଃଶ୍ୱାସ ଲତା ଦୁଇ ପାଶ ମଧ୍ୟେ ତା ନିବାସ ରେ, ମୋହପର ପାଞ୍ଚିଅଛୁ ମୁଁ ଯେ କାଞ୍ଚି କିଙ୍କିଣୀ ନିଚୟ ଗୃଳିବାକୁ । ୨ । ଅଭିନବ କ୍ରୀଡ଼ା କାଳେ ଗାଢ଼ ଭିଡ଼ା ଅନୁଭବିବାରୁ ତ

---

୨୩ । ଟୀକା—ନଖି—ବ୍ରଣ ନ କାଟିବାପାଇଁ ଦୁଇ ନଖକୁ ଏକାଠ କରିବା ।

ଲଭୁଥିବ ବ୍ରୀଡ଼ା, ହେବ ଅନୁକୂଳ କ୍କ ଉରୁ ଦୁକୂଳ ତଳସ୍ଥଳେ ପାଣି ଗ୍ଭଳବାକୁ । ୩ । ଶିଶୁ-କଳାକର-ଚୂଡ଼ାମଣିପର ଅମଳରୁ ଲ୍ଲାନ ନ ଥିବ ମୋହର, ପାରିବ କି ବାରି ନିଜ ସୁକୁମାରୀ ଶ୍ରୀଅଙ୍ଗ ଲତାଟି ଲୁଲବାକୁ ।୪। ରଦନ-ବସନବିମ୍ବକୁ ଦଶନ ଅଞ୍ଚଳେ ପୀଡ଼ିତ ହେବ ସୁଧାସମ, କୁନ୍ଦ-ବିକଶନ ତା ମନ୍ଦହସନ ଦୁଇ ଶୋଭା ନେବେ ତୁଳିବାକୁ । ୫ । କହେ ବଳଦେବ କବିରବି ନବ ନଟବର ଚନ୍ଦ୍ର ପ୍ରିୟାସଙ୍ଗୋତ୍ସବ, ମିଳି ସଖୀ ବ୍ରଜେ ମୋଦେ କଲେ ବିଜେ କୁଞ୍ଜରୁ କୁସୁମ ତୋଳିବାକୁ । ୬ ।

( ୭୫ )

ରାଗ—ଅହାରୀ

ନିନ୍ଦା ନ ଲଭ ସଖୀ ରେ, ମଦାରଅଧରୀ ଧୀରୀ ଅଜନ୍ମସୁଖୀ ରେ । .

କୁନ୍ଦସୂନ ଶରଦିନ୍ଦୁ କିରଣଗଣ ସୁନ୍ଦରହସରୁଚିବୃନ୍ଦଲଳିତମୁଖି ରେ ॥

ଶିରକାଳରୁ ମୁଁ ତୋର, କୁଞ୍ଜ ମନ୍ଦିର, ମଣ୍ଡନପ୍ରିୟ କ୍କଙ୍କର, ରୋଷାବେଶେ ନିର୍ଭର, ଦୋଷା ମନେ ନ ଧର, ଯୋଷାମଣି ମସାର, କେଶାସାର ନ ସାର, ଭାଷ ଅତନୁ ବିଳାସ, ନିଧି ପରକାଶ, ରୁଚିର ବିକାଶ, ମନ୍ଦହରହାସ, ନବ ନବ କାଶ, ଯୁତ ରଦବାସବତୀ ନିଜ ଦାସ ସଦୃଶ ଜନେ । ୧ । ମଥା ନୁଆଁଇଁ ନ ବସ, ଦୁଃଖେ ନ ମଜ୍ଜି, ନ ଯାଉ ନିଶା ଦିବସ, ଅଲିଙ୍ଗନରେ ରସ, ନାଳିକନିଭବାସ, ଅଙ୍ଗିନୀ ନ ପ୍ରକାଶ, ଦାସନାଶ ଅଯଶ, ବାରିରୁହ ପରିହାସୀ ନୟନରୁ ଗ୍ଭର ପ୍ରହରେ ଯେ ବାରି ଜନମୁଚ୍ଛି ନାରୀମଣିକି ବିଶ୍ବର ସବୁ ସୁଖ ସାର ଥାଉ ହେବ ମୁଁ କେହୁ । ୨ । ତେତେ ଥିରିତ ପାସୋରି, କଶୋଦରିବର, ବିହ୍ୱଳ ଯା ଏତେ ସରି, ଦେନିଲି ପରି ପରି, ପାରୀନ୍ଦ୍ରମଧ୍ୟା ଗୋରୀ, ନାରୀନ୍ଦ୍ର ଧରି-ଶିରୀ, ଶିରୀଷ ସୁକୁମାରି, ତାଳ ପୃଥୁଳ ବିଶାଳ ରୁଚି ହରିତାଳ ସୁଘଟିତ ତାଳସ୍ତନୀ ରେ, କଷ୍ଟାଳ ନ କରଟି କାଳପୁରୁଷ କରାଳ ସ୍ମରକରବାଳ

୭୦ । ଟୀକା—ଅନଳପ ( ଅନଳ୍ପ )—ଅତ୍ୟଧିକ; ତପକଲାପ-କଳପବଲ୍ଲରୀ—ତପସ୍ୟାସମୂହରୂପ, କଳ୍ପଲତା; ଶିଶୁକଳାକର-ଚୂଡ଼ାମଣିପର—ଚନ୍ଦ୍ରଚୂଡ଼ଙ୍କ ଶତ୍ରୁ ଅର୍ଥାତ୍ କନ୍ଦର୍ପ ।

୭୫ । ଟୀକା—କୁନ୍ଦସୂନ—କୁନ୍ଦଫୁଲ; ଦୋଷା—କ୍ରୋଧ; ମସାରକେଶା—ଇନ୍ଦ୍ରନୀଳ ପରି କେଶ ଯାହାର; ନାଳିକ—ପଦ୍ମ; ବାରିରୁହପରିହାସୀ—ପଦ୍ମକୁ ପରାସ୍ତ କରୁଥିବା; ଥାଉ—ସ୍ଥିର; ପାରୀନ୍ଦ୍ର—ସିଂହ; କରବାଳ—ଖଡ୍ଗ;

ବଦନେ ଦେଇ । ୩ । ଶୁଣି ଶ୍ରୀମନ୍ତ୍ରୀ ହସିଲେ, ଜଗଦ୍ଦେବ ଧରଣୀନାଥ ଭାଷିଲେ, ଦେହେ ଦୁହେଁ ମିଶିଲେ, ଆନନ୍ଦ ବରଷିଲେ, ମାରଙ୍କୁ ଭରସିଲେ, ତାର ଶରେ ରସିଲେ, ଶମ୍ବରମଣି ଜାମ୍ବୁନଦ ବାଧୁ ବମ୍ବ, ଯୁଗ ଘନ ଚୁମ୍ବ ବାଭବରୁ ଶମ୍ବରପରକଳମ୍ବ ସମୁଦାୟ ଡମ୍ବର ଦଳିଲେ ଲମ୍ବ ଚକ୍ରବର୍ତ୍ତୀ । ୪ ।

( ୭୬ )

ରାଗ—ପଞ୍ଚମବରାଡ଼ି

କଳାବଳାହକତୁଳାଦଳିତମାଳକୁନ୍ତଳା ଚଳାଚଳାଗ୍ରତୁନେବାଞ୍ଚଳା । ବାଳାବଳୟିଇଚ୍ଛଳାଗଭସଦୃଶୀ ମଞ୍ଜୁଳା ଦଳା ଗୋରୋଚନାଙ୍ଗୀ କୋମଳା ରେ, କଳାବତି, କଳାନିଧି ଶ୍ରୀମୁଖମଣ୍ଡଳା, ଛଳା ନେନେ କର ମୋ ସଙ୍ଗଳା, ବାଳାହଳାହଳଗିଳାଚୁଲାଭରଣକୋମଳା ଜଳାତ ନିର୍ମିଳାତ-ବତ୍ସଳା ରେ । ୧ ।

କ ମାନିବା ସୀମା ଦେଖି ପ୍ରମାଦ ମାର୍ଗ ଉପେକ୍ଷି ରମା ସମାଜମାନଙ୍କୁ ହର । ସମାନ ବିମ୍ବ ଚନ୍ଦ୍ରମାମୁହିଁ ତୋ କୁନ୍ତଳେ ଜମା ହେଲା ତମାଳ-ମାଳ ମାଧୁରୀ ରେ, କ୍ଷମାନିଧି, ଗୁମାନ ମାନ ନ ଧର ମୋରେ, ଜମାଅ ମାଗୁଛି ପୟୋଧରେ, ରମା ଜମା ତୁରଙ୍ଗମା ସମାନସାଧ ମଧ୍ୟମା ଗମାରୁ ମାର ମାରୁ ନାଶରେ ରେ । ୨ ।

ତୁଷାରସାମ୍ୟସୁପ୍ରହସାନନା ତୁ ମୋ ଶୁଭ-ଦଶାର ସାରୁ ସାମଗ୍ରୀବର । ତୁ ସାରସାକ୍ଷୀକି ହେଜ ପ୍ରାସାଦ ସାମ୍ରାଜ୍ୟ ତେଜ ତୁଷା-ତୁଷାରୁ ସାମର୍ଥ୍ୟ ମୋର ରେ, ରସାଳସା, ମୁଁ ସାରସ ଚରଣରେ ପଶି, ଅସାର ସଙ୍ଗରେ ନାହିଁ ବସି, ତୁ ସାରସାରବିବେକ ଭୂଷା ତୁ ସାକ୍ଷୀ ତହିଁକି ରସାଅ ସାର୍ଥରେ ଥରେ ହସି ରେ । ୩ ।

ହରାପରାଧୀ ଦୁର୍ଜର ନାଗଜରାଜରେ ମୋର ପରାଭବ ଏକା କଲେ ଫନ୍ଦା । ଧରାଧରାଧିପସ୍ତନା ଚରାଚରାନ୍ତେ ତୋ ବିନା ପରାଭବ କାହିଁ ହେବ

---

ଶମ୍ବରମଣି—ଇନ୍ଦ୍ରମଣି; ଜାମ୍ବୁନଦ—ସୁବର୍ଣ୍ଣ; ଶମ୍ବରପର—କନ୍ଦର୍ପ; କଳମ୍ବ—ଶର ।

୭୬ । ଟୀକା—କଳାବଳାହକ—କଳାମେଘ, ଜଳାତ ( ଜଳାତ୍ୟୟ ଶବ୍ଦଜ )—ଶରତ୍କାଳ, ଧରାଧରାଧିପ—ପର୍ବତରାଜ ।

ନିନ୍ଦା ରେ, ଧର ହର, ଅରତ ନୁହଇ ମୁଁ ସୁକେଶା, ଖେଦପ ନ କର ଏଡ଼େ ଅଶା, ସୁରତୁର ଜଳନ୍ତରଧର୍ମରବତୀସୁର ପରାଣ ପାଇଲେ ଟି ପ୍ରଶଂସା ରେ । ୪ ।

( ୭୭ )

ରାଗ—ମୁଖାବରୀ

ବାଳାବର ରେ ଶଙ୍ଖକଣ୍ଠି ତୁ ସଙ୍ଗାଳି ମୋର ରେ । ନ ଥାଇ ତୁ କୋଳେ କି ସମ୍ଭଭିବଲେ ଇନ୍ଦ୍ର ହେଲେ ସୁରେଶ୍ୱର ରେ । ଘୋଷା ।

ଚନ୍ଦ୍ରମା ଚନ୍ଦନ କଳକଣ୍ଠ ସ୍ୱନ ମିଳନ୍ଦବୃନ୍ଦ ଝଙ୍କାର ରେ । ଏବେ ମୁଁ କଟାକ୍ଷ ଫିଙ୍ଗୁ ନାହିଁ ପକ୍ଷ ହେବାରୁ ତୁ ଅହଙ୍କାର ରେ । ୧ । ସୁରଭି ଋତୁ ତା ମରୁତ ମରୁ ତ ଜାତ ତ ସେ ମୋ କଙ୍କର ରେ । ତରୁଣୀ ତୋତେ ମୋ ଧନ କଲେ ଯହୁଁ କରୁଣାନିଧି ଶଙ୍କର ରେ । ୨ । ଅସୁର ସୁରଙ୍କ ରମ୍ୟ ଦ୍ରବ୍ୟ ରଙ୍କ ପଣ ଶୁଣି ସିନ୍ଧୁ ଜୁର ରେ । ମୋ ପାଇଁ ତୁ ଲୁକ୍କ ଯତନେ ଥିଲୁ କି ଲବଣ୍ୟ ପୀୟୂଷପୁର ରେ । ୩ । ସୁଲକ୍ଷଣ ବଧୂମାନଙ୍କର ମଧୁ ଥାଏ ଜାଣି ରଦାମ୍ବର ରେ । ପୂର୍ବଅଚ୍ଛୁ ତୋର ପ୍ରପଦୁଁ ଚକୁରପାଶ ଯାଏ ସୁଧାକର ରେ । ୪ । ଫୁଲ୍ଲ ମନମଥ ଗୁଲ୍ମରୁ ମୋର ଏଣିକ ଅଉ କି ଡର ରେ । ଝୁଲ୍ଲ ମଞ୍ଜୁଳ ତୋ ଲଲାମ ଛବି କି ସଲାମ ସହସ୍ରେ ଥର ରେ ।୫। ଏପରି ପ୍ରଶଂସାମୃତ ସ୍ଫୂର୍ତ୍ତ କଂସାହୃତ ମୁଖଶଶଧର ରେ । ଅଷ୍ଟାଦୁର୍ଗପତି ରଚିଲେ ଶ୍ରୀମତୀ ସଙ୍କୁଚିଲେ ଲଜ୍ଜାଭରରେ । ୬ ।

( ୭୮ )

ରାଗ—ବଙ୍ଗଳାଶ୍ରୀ

ଟମକ ବାଜଇ ଜଗତୀଯାକେ ତୁ ନ ଜାଣୁ ବୋଲି କପଟ; ଟଭ୍ରୀ ପୀନସ୍ତନା ସେ ଗୁଣକୁ ମନା କର ଦେଲୁ କି ନିପଟ । ୧ । ଟଳିଗଲା ଅନୁରାଗ ଯେ ତୋ ମନୁ କି ଦୋଷୁ କର ପ୍ରକଟ; ଟପ ଟପ ନୀର ବରଷୁ ଅଛୁ ଯେ ତୋ ନୟନ ଖଞ୍ଜରୀଟ । ୨ । ଟେକ କର ତୋର ରୁଷା ଅଜଗର

---

୭୭ । ଟୀକା—କଳକଣ୍ଠସ୍ୱନ—କୋକିଳଶବ୍ଦ, ମିଳନ୍ଦବୃନ୍ଦ—ଭ୍ରମର ସମୂହ, ସୁରଭିଋତୁ—ବସନ୍ତକାଳ, କଙ୍କର—ଗୃହକର, ପୀୟୂଷପୁର—ଅମୃତ ପ୍ରବାହ, ରଦାମ୍ବର—ଅଧର, କଂସାହୃତ—ଶ୍ରୀକୃଷ୍ଣ, ଶଶଧର—ଚନ୍ଦ୍ର ।

୭୮ । ଟୀକା—ସୁଖସଂପୁଟ—ସୁଖରୂପ ଫରୁଆ, ଟେଣକପଣ—ଟାଣପଣ ।

ଗଲାଣ ସୁଖସମ୍ପତ୍ତି; ତାଣି ପଛେ ପଦେ ବୋଲନ୍ତୁ କାହିଁକି ମନ କଲୁ ସ୍ନେହ ତୁଟି । ୩ । ଏସବୁ ମିଶାଇ ଦେଲେ ନାକି ଅଛି ପସନ୍ଦ ଦାଶଇ ପାଟି; ଏଣିକି ପଣିକ ଉଠୁଣି ଦେଲୁ କହେ ଅଷ୍ଟାଦୁର୍ଗ ଧରାପତି ।

( ୭୯ )

ରାଗ—ଆନନ୍ଦଭୈରବ

ବନ୍ଧୁଅ ତୁ ମୋ ସବୁ ଭରସା, ନ କର ଦରପଣାନଭରସା । ପଦ ।

ଭୂଷ ପଛେ ମୁନେ କରରୁହର, ଏ ଗୁମାନ ପଦ୍ମକରରୁ ହର । ୧ । ଶ୍ରୀମୁଖ ପରବ-ତୁହିନକର, ଅରୁଣଭାବକୁ ତୁହି ନ କର । ୨ । ବାଅର୍ଥ ଏ ଚନ୍ଦ୍ର କ୍ଷଣଦା ସରେ, ଖେଳା ଚଞ୍ଚଳ ଈକ୍ଷଣ ଦାସରେ । ୩ । ମୁଁ ସାଧ ନୋହିଲେ ଛଅରଣରେ, ମାର ମଦନ ହଟିଅ ରଣରେ । ୪ । ସବୁଲଟି ଅଷ୍ଟାଦୁର୍ଗନାଥରେ, ଅନା ଅନା ସୁନାବରନା ଥରେ । ୫ ।

( ୮୦ )

ରାଗ—କେଦାର

ଚନ୍ଦ୍ରସୁନ୍ଦରମୁଖି ରେ,

ବୃନ୍ଦ ବୃନ୍ଦ କନ୍ଦର୍ପ ଶରମସ୍ତୁ ସର୍ପ ନ ଦାଏ ମୋ ଦର୍ପ ରଖି ରେ । ପଦ ।

ରସାଇ ସାରସଦୃଶା ଲସା ମୋ ଦୁର୍ଦ୍ଦଶାରେ, ଦଶାରେ ତୋ ଲଭି ମୋ ଭରସା ରସାଳସା ରେ । ନାଶାରମଣିକର, ବିଶାଳମଦହର, ହସା ବିଭବଭର, ମିଶା ମଧୁରତର, ପ୍ରସାଦ ପବିହର, ରୁଷାରୁତ ନ କର, ତୃଷା ମୋହର ହର, କୃଶାନୁବର ରେ । ୧ । ବଳାହକବିଜୟିକୁନ୍ତଳା ଲୀଳାବତୀ ରେ, ଝଳାଅ କୁଞ୍ଜରକୁମ୍ଭସ୍ଥଳାକୃତି ସ୍ତନ ରେ, ଗଳା ନବରତନ, କଳାପ ଅନୁଦାନ, ଚଳାଚଳ ନୟନ, ଢଳା ରସକୁ ମନ, ବଳାଅ ରେ ମଦନ, କଳାନିଧି ବଦନ, ବଳାପହକଦନ, ପଳାଇ ଧନ ରେ । ୨ । ଚରାଚର ବିଭୂଷଣୀ ଧରାଧରସ୍ତନୀ ରେ, ପରାଣ ଅଛୁ ତୁ ଦେବା କରାରନ୍ତୁ ସିନା ରେ,

---

୭୯ । ଟୀକା—ନାଭ—ତୁଲ୍ୟ, କରରୁହ—ନଖ,ପଦ୍ମକରରୁ—ଗୃହଠାରୁ, କ୍ଷଣଦା—ରାତ୍ରି, ଛଅରଣ—ଗାଳି ।

୮୦ । ଟୀକା—ହେ ସାରସଦୃଶା, ତୋ ଲଭି ଦଶାରେ ମୋ ଦୁର୍ଦ୍ଦଶାକୁ ଲସା ଅର୍ଥାତ୍ ଦୂର କର । ବଳାହକବିଜୟିକୁନ୍ତଳା—ମେଘ ଅପେକ୍ଷା କାଳତର କୁନ୍ତଳ ଯାହାର, କଳାନିଧିବଦନବଳାପହକଦନ—ଶିବ ଶତ୍ରୁ ଅର୍ଥାତ୍ ମଦନର କଷ୍ଟ, କରାର—କଣ୍ଠ, ଅଙ୍ଗଲଭ୍ୟ—ବାକ୍ୟର୍ଗହଣୀ ।

ଧରି ତଳେ ମୋ ଗତ, ପରି ତୁ ଗଜଗତ, ହସିବଶରେ ନାଉ, ମରିଇ ଅଙ୍କାରତ, ପରାଗରେ ଜଗତ, କରିଜନ୍ମୁ ଭରତ, ଅବାଲଭୁଳୁତତ, ଝିରି ସୁଦାଭ ରେ । ୩ । କହେ ଅଷ୍ଟଦୁର୍ଗ ନାଥ ସ୍ନେହେ ତୁ ଅଧୀନା ରେ, ଅହେତୁକ ପ୍ରେମ ଗୁଢ଼ ମହେଶମୋହନା ରେ, ବହେ ଅନବରତ, ଦହେ ମୃଦୁ ମରୁତ, ସହେମ ମରକତ, ଗୃହେ ହୋଇ ମିଳତ, ତୁ ହେବୁ ରସ ରତ, ଦୁହେଁ ହେବା ସଙ୍ଗତ, ମୁଁ ହେବ ମହାଗତ, ମହେନ୍ଦ୍ରବତ ରେ । ୪ ।

( ୮୧ )

ରାଗ—ମୋହନା, ଅଦତାଳ

କୁଞ୍ଜନୀଳୟଭୂଷା, ଅଞ୍ଜନପୁଞ୍ଜ ମସାର ଘନକେଶା,
କଞ୍ଜଚନ୍ଦ୍ରମଦଗଞ୍ଜନାସ୍ୟରୁଚି, କୁଞ୍ଜର-ଗତି ମନୋରଞ୍ଜନବେଶା । ପଦ ।

ଆସ ମୋ କୋଳରେ ବସିଜ, ଦାସର ସରଙ୍କ କର କ ଲାଜ ବାସକୁ ପରକର ଆଜ, ନାଶ ଦୁଃଖ ସମାଜ, ଧନ ମୋତେ ବାସବାଦ ପରିହାସ ଚତୁର କର, ବରବରନାବର ନାଗସ୍ୱରାଜ । ୧ । କୁନ୍ଦ ସୁନ୍ଦର ଦଶନାଳ ସୁନ୍ଦରୀ ମଣି ତୁ ମୋର ସଙ୍ଖାଳ, ଚନ୍ଦନ ସଜଳଭପାଳୀ, କୁନ୍ଦନମୟମାଳ, ବୃଷରବନନ୍ଦନୀଚନ୍ଦ୍ରମଣି ମଞ୍ଜୁଭୁଜଗଭୁରୁ, ଚଳ ନୟନାଞ୍ଚଳ ଦେ ଥରେ ତାଳ । ୨ । ମାର ରଖିଛୁ ଶର ଶାଣି, ତାର ତ ଚରିତ ଅଛୁ ପରି ଜାଣି, ସାରକୁ ଘେନିପିବ ଛାଣି, କାର ସେ ରଖେ ଠାଣି, ମୋର ହୃଦୟ ଛାର ହାର ହୁଅ ଆରେ ସୁଗୁଣବତୀ ରତିଚତୁରୀ ନବପଲ୍ଲବପାଣି । ୩ । କାଞ୍ଚନ-ଗଜରି ବଗୃର, ବଞ୍ଚନବଧିକ ବଚରବାର, ମୁଖ ଧନ ମୁଁ ପରଗୃର, ମଞ୍ଚରେ ତ ତୁ ସାର, ଅବିରତ ପଞ୍ଚବାଣ ରଣକୌଶଳ ପରିଚୟ କର ସୁରସାକର ସାର୍ଥରେ ମୋର । ୪ । ଏପରି ନବଘନଶ୍ୟାମ, ଗୃହେ ବରଚ ଲଭୁ ବିରାମ, ସସ୍ମିତ ତରୁଣୀ ଲଲାମ, ପୂରିଲେ ହରକାମ, ନୃପ ଜଗଦେବ ସେ ସମୟ ବେଶ ଲଲିତ ପଦଯୁଗ ଯୁଗଳୀକଳଜାବଳୀଦାମ । ୫ ।

( ୮୨ )

ରାଗ—ମୋହନା, ଆଡ଼ତାଳ

ଗୃହେଁ କି ନାହିଁ କେହୁ ମୋହନ ହାସ ଗୋ କେହୁ ତା ମନ୍ଦହାସ,
କାହିଁକି ଏକା ମୋତେ ଏ ପରିହାସ । ପଦ ।

---

୮୧ । ଟୀକା—ମସାର—ଇନ୍ଦ୍ରମଣି, କଞ୍ଜ—ପଦ୍ମ, କୁଞ୍ଜର—ହାତୀ, ବୃଷରବନନ୍ଦନୀ—ବୃଷଭାନୁକନ୍ୟା ।

କେଉଁ ସଖୀ ସେ ପୁଟ, ଭେଦନେ ଅଛୁ ନଟବର ସ୍ନେହୁଁ କପଟ ହୋଇ କବାଶ । ୧ । ଡାକ ତ ସେ ଯୋଷାକୁ, କହୁ କାହା ନାସାକୁ, ବାଜ ନାହିଁ ସେ ବନମାଳକା ବାସ । ୨ । ଲେଢ଼ ଶ୍ୟାମ ପ୍ରୀତକ, ଘଟକ-ଯୁବତୀକ, କେ କହୁ ନାହିଁ ଧର ଦଶନେ ଘାସ । ୩ । ତୋ ସ୍ନେହୁଁ କଶୀଥରେ, ବନଦୁର୍ଗପଥରେ, ଗତାଗତରୁ ଥିବ ପଦେ ପରସ । ୪ । ତାକୁଁ ଯାହା ମୁରଲୀ, ସ୍ୱାମୀକ ପେଲି ଠେଲି, ଧାବନବଶେ ଗସେ କତମ୍ବ ବାସ । ୫ । ଶ୍ରୀ ଜଗଦ୍ଦେବ ଭଣେ, ରାଧାବାଣୀ ଶ୍ରବଣେ, ଆଳିଏ ହସି ଦେଲେ ଅଙ୍କ କବାସ । ୬ ।

( ୮୩ )

ରାଗ—ଢୋଡ଼ିବଙ୍ଗଳା, ଅଡ଼ତାଳି

ଯା ଯା ମୋ ପାଶରୁ

ସେ ଶ୍ୟାମନାଗର ନଟ ନାମ ନ ଧର ମୋ ଆଗେ ଲୋ । ଘୋଷା ।

ଯେନ ତୋ ଉପଦେଶ ହେବାରୁ ବୁଦ୍ଧିନାଶ ପଡ଼ିଥିଲି ଥରେ ତା ଭାଗେ ଲୋ । ୧ । ତ୍ରିଜଗତୀରେ ଗତ ନ ଥିବାର ଯୁବତୀ ବୁଡ଼ିବ ତାର ଅନୁରାଗେ ଲୋ । ୨ । ସଞ୍ଜବେଳରୁ କଞ୍ଜ ଫୁଟିବାଯାଏ କୁଞ୍ଜଗୃହେ ତୋ ଭୁଲେ ପରି ଲଗେ ଲୋ । ୩ । ସେ ଧୂର୍ତ୍ତ ପୀତପଟ ପେଟେ ଯେତେ କପଟ କ୍ଷପ ନ ଥିବ ତେତେ ନାଗେ ଲୋ । ୪ । ମୋ ପରି ଲାଜହୀନ ନୋହିବା ନାରୀଜନ ଗରି ଗିଳନ୍ତା ସେହି ଲଗେ ଲୋ । ୫ । ଅଷ୍ଟଦୁର୍ଗଭୂପତି ବୋଲେ ହେବ ଭରତି କେ ବୃଥା ଅକୀରତି ଦାଗେ ଲୋ । ୬ ।

( ୮୪ )

ରାଗ—ଶ୍ୟାମ କଲ୍ୟାଣ, ଅଡ଼ତାଳ

କହ କି ହେଲି, ସହି କି ହେଲି, କପଟରୁପାରେ । ପଦ ।

ନ ଗୁହିଁ ପୁଣି ତାଙ୍କ, ଶ୍ରୀମୁଖହରଣାଙ୍କ, ସଙ୍ଗି ଅଙ୍ଗି ରଖିଲି ରସାରେ ।୧।
ଛମ୍ବ ନଜର ମଣି,-ମନ୍ଥ ମନ୍ତ୍ରନଶ୍ରେଣୀ, ବୁଣି ଦେଲି ପୁଣି ମୃଗଦୃଶା ରେ ।୨।
ଚରଣେ ପୁଣି ଦଳ ପକାଇ ଦେଲି ଚଳି ତୁ ସୁନ୍ଦରି କୁସୁମ ଭୂଷା ରେ ।୩।

---

୮୨ । ଟୀକା—ପୁଟଭେଦନ—ନଗର, କଶୀଥରେ—ଅର୍ଦ୍ଧରାତ୍ରରେ, କତମ୍ବ—କଟିର ପଶ୍ଚାଦ୍‌ଭାଗ ।

୮୩ । ଟୀକା—ତ୍ରିଜଗତୀ—ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; କଞ୍ଜଫୁଟିବାଯାଏ—ସକାଳଯାଏ; ନାଗେ—ଗୋଖର ସର୍ପରେ ।

ଦେଖି ତୋ ରୁଷା ସ୍ୱତ ଗିରଧରଙ୍କ ଧୃତ ଥିଲା କି ହୋଇଲା ଅତ କୃଶାରେ ॥ ମୃଦୁ ଶ୍ୟାମଳ ଗୋରା ଝାଉଁଳିଗଲେ ପରା ହରପରଶରଜ୍ୱର ତୃଷାରେ ॥ କରୁ ଏହୁ କଠୋଳ ମଣ୍ଡିଦେଲୁ କି କାଳ ପୂର୍ବଦିଗ ପର୍ବତକୁ ପୂଷା ରେ ।୭। ଶ୍ରୀ ଜଗଦ୍ଦେବ ବୋଲେ ତେବେ କଲୁ କି ହେଲେ ବେଳେ ଧରି କୋଳେ ତାଙ୍କୁ ସୁସାରେ । ୭ ।

( ୮୫ )

ରାଗ—ଇମନ କଲ୍ୟାଣ, ଅଡ଼ତାଳ

ପର ମଣି ତ ରମଣି ଦେଲୁ କରମଣି ଛାଡ଼ି ରେ । ଘୋଷା ।

ମୋ ଜୀବନ କାହିଁ ହଜାଇଲୁ, ଖୋଜ ଆଣି ଦିଅ ଅଳି ବୋଲୁ, ଜଳପୃଚ୍ଛୁ, ବଳପୃଚ୍ଛୁ, ଏବେ ଢ଼ରେ କର ଛାଡ଼ି ରେ । ୧ । ଜାଣି ତୋହର ମାନସ ବ୍ୟଥା, ଅଣିଥିଲୁଁ ଭଲି କେତେ କଥା, ଘନପୁଲ୍ପ ସୁନଗଭା, ଅତ ଯତନେ ସଜାଡ଼ି ରେ । ୨ । ବମ୍ବ ରଦନାମ୍ବରେ ଧନ, ନାମ୍ବଦଳ ଦ୍ରବେ ଦେଇ ମନ, ସୁଧାଧାରା, ମୁଧା ଧରା-ତଳେ ଦେଲୁ ତ ଅଜାଡ଼ି ରେ । ୩ । ଗୋପ ଯୁବରାଜ ଶିରୋମଣି, ତୋ ପଦକଞ୍ଜ ଚୁମ୍ବିଲା ପୁଣି, ଭୁଜେ ଧରି, ତୁ ଯେ ହରିଣାକ୍ଷୀ ନ ରଖିଲୁ ଭିଡ଼ି ରେ । ୪ । ଯାହା ପାଇଁ ଶିବ ପୁଜୁଥାଇ, ତାହାଙ୍କ ପ୍ରିୟାଙ୍କୁ ଭଜୁଥାଇ, ତାଙ୍କ ଦୁଃଖ କରି ସୁଖ, ମୂଳ ଦେଲୁ ତ ଉପାଡ଼ି ରେ । ୫ । ବୋଧି କହେ ଅଷ୍ଟଦୁର୍ଗନାହା, ବୁଦ୍ଧି ହୁଡ଼ରୁ ତ ହେଲା ଏହା, ଏବେ ଗଲା, ନଦାଇଲା, ମନ୍ତୁ ମାନ ଦେବା ଝାଡ଼ି ଗୋ । ୬ ।

( ୮୬ )

ଶ୍ୟାମ କେଡ଼େ ଅବୁଝାଣ, ତା ଲାଗି ଯିବ ଏ ପ୍ରାଣ ଗୋ । ପଦ ।

ଗ୍ରେଉପଣେ ଆସି ମୋର ପାଶେ ବସି ଘୋର ଆଚରଇ ଟାଣ ଗୋ; ସ୍ମର ମରଦଇ ତା ବଚନ ପାଇ ବିଷମ ଶର ପଠାଣ ଗୋ । ୧ । ପୂରାଇ ଦେବାକୁ ଅଭିଳାଷ ଫଳ ନଗ୍ରୁଇ ଭ୍ରୂଲ୍ଲ କମାଣ ଗୋ; ଫିଟାଇ ଦିଅଇ ଧୃତକୁ ପ୍ରହାରି କଟାକ୍ଷ କପଟବାଣ ଗୋ । ୨ । ଗୋଟିଏ ଗୋଟିଏ ଅଳପ

---

୮୪ । ଟୀକା—ଶ୍ରୀମୁଖହରିଣାଙ୍କ—ଶ୍ରୀମୁଖଚନ୍ଦ୍ର; ରସା—ପୃଥିବୀ; ଗିରଧର—ଶ୍ରୀକୃଷ୍ଣ; ହରପରଶର—କନ୍ଦର୍ପଶର; ପୂଷା—ସୂର୍ଯ୍ୟ ।

୮୫ । ଟୀକା—କରମଣି—ହସ୍ତସ୍ଥିତ ମଣି; ଜଳପୃଚ୍ଛୁ—ବୃଥା ଅନେକ କଥା କହୁଅଛୁ; ବଳପୃଚ୍ଛୁ—କାନ୍ଦୁଛୁ; ଢ଼ରେ—ବକ୍ଷରେ; ସୁନ—ଫୁଲ; ମୁଧା—ବୃଥା; ତାହାଙ୍କ ପ୍ରିୟା—ଶିବଙ୍କର ପ୍ରିୟା, ପାର୍ବତୀ ।

କଥାକୁ କୋଟିଏ ପକାଏ ଗଣ ଗୋ; ସରେ ସେହି ଅବସରେ ସବୁ ସହି କରେ ଯେତେ ହୋଇଗଣ ଗୋ । ୩ । ଜମି ରହେ ମନ ତା ଭଙ୍ଗୀରେ କାହିଁ ନ ମିଳଇ ପରମାଣ ଗୋ; ଲାଜ-ବିହଙ୍ଗକୁ ବାନ୍ଧଇ ତା ଶୋଭାଦମ୍ଭ-ଚପଳ ସନ୍ଧାଣ ଗୋ । ୪ । ଜଣାଇଲେ ସଖୀ ଧୂର୍ତ୍ତି ସେ ଭୁଜଙ୍ଗଫଣା-ନାଟୁଆ ପ୍ରମାଣ ଗୋ; ଜଗଦ୍ଦେବ କହେ ତା ସ୍ନେହ ବରହେ ପବିପାତ ଭଲି ଜାଣ ଗୋ । ୫ ।

( ୮୭ )

ରାଗ—କାମୋଦୀ, ଏକତାଳି

ଫୁଲ ମଲ୍ଲୀହାସି ରେ, ସତେ ତୁ କି ସାହସୀ । ପଦ ।

ଶୁଣିଥିବୁ ନୂତନା ଗରସ୍ତନା ପୁତନା, ଲଭିଲା ଅବସ୍ଥାରେ ସୁଖ ଯେତେ; ତାକୁ ସୁଧା ମଧୁର ଗୁଣବନ୍ତ ଅଧର, ପିଅଇବାକୁ କମ୍ପି ବାଞ୍ଛା ଏତେ । ୧ । ସାତ ବରଷ୍ଟୁ ଯାର, ଅଣ୍ଟିଲା ନାହିଁ କର,-କମଳ କନିଷ୍ଠକୁ ଗୋବର୍ଦ୍ଧନ; ପଣ୍ଡୁରୁ ତା ହାରୁତେ, ପୁଣି କାହିଁକି ଏତେ, କାନ୍ତକୁ ଗର୍ବ ପଙ୍କେ ଅଭିମାନ । ୨ । ଶିରବଜ୍ରରୁ ପେଟ, ହେବାକାଳେ ଶକଟ, ହେଲାଟି ଯାହା ସେ ବଳେଲ ମୃଦୁ; ନ ଥିଲା କଛୁ ଜଣା, ଏବେ ଯାଉଛୁ ଶୁଣା, ତୁ ପୁଣି ଚୁମ୍ବି ତହିଁ ସ୍ତନେ ଲଦୁ । ୪ । ଚମରୁନେତ୍ରା ଶତ, ଚେଳ ଚୋର ପଣ୍ଡିତ, ବୋଲି ପ୍ରସରୁଅଛି ଯାହା ନାମ; ଏକାକମୀ ଅବଳା, ଚେଳହରଣ ଲୀଳା, କି ଶଙ୍କ ଶିକ୍ଷିଲେ ସେ ଘନଶ୍ୟାମ । ୪ । ହରଣାକ୍ଷି ରେ ନାନା ହର ଗନ୍ଧକୁ ଯା ନା, ବୋଲି ଯେ କହୁଥାଉଁ ବାରବାର; ତନୁମଧ୍ୟ କେଶୋରୀ, ମନୁ ଦେଇ ପାସୋର, ସେ ସ୍ନେହ ସମାଦୁଛୁ ଭାର ଭାର । ୫ । କହିଲେ ବସୁଦୁର୍ଗ, ବସୁଧାଚନ୍ଦ୍ର ସ୍ୱର୍ଗ, ମହେନ୍ଦ୍ର ସଖୀ ମୁଖୁଁ ଶୁଣି ଏହା; ରତି ସବ୍ରୀଡ଼ ହାସ, ଶ୍ରବଣଅବତଂସ, ଡରାଇ ଜଣାଇଲେ ଚମ୍ପାଦେହା । ୬ ।

( ୮୮ )

ରାଗ—ତୋଡ଼ି ପରଜ । ତାଳ—ରୂପକ

ରେ ସଙ୍ଗାତ, ଦାରଦ୍ରାନାଥଙ୍କ ଦୂତ,

ଦେଖୁଥିଲେ ଦେଖୁଥିବାକୁ ମୋ ମନ ଧାଉଁଥାଏ ନିତ ନିତ । ଘୋଷା ।

---

୮୬ । ଟୀକା—ଭୂରୁକମାଣ—ଭ୍ରୂଲତାରୂପ ଧନୁ, ଭୁଜଙ୍ଗଫଣାନାଟୁଆ—କାଳିୟ ଫଣା ଉପରେ ନୃତ୍ୟକାରୀ, ପବି—ବଜ୍ର ।

୮୭ । ଟୀକା—ଗରସ୍ତନା—ବିଷପୂର୍ଣ୍ଣ ସ୍ତନ ଯାହାର, ଚମରୁନେତ୍ରା—ମୃଗନୟନା ।

ଦଶନ ବସନ ପଲ୍ଲବରେ ମଲ୍ଲୀ ରଙ୍ଗି ଦରସ୍ମିତ ଛଳେ; ଦଣ୍ଡକୁ ଦ୍ୟୁମଣି ଅସ୍ତ ହେବା ଜାଣି ବନ୍ଧୁ ବାହୁଡ଼ିବା ବେଳେ । ୧ । ଦକ୍ଷ କରେ ଧରି ମୋହନ ଗୁଣ୍ଠୁଣୀ ବିଶାରଦ ବେଣୁଦଣ୍ଡ; ଦକ୍ଷେତର ପଦପଙ୍କେରୁହ-ଯୁଗେ ମଣ୍ଡିଦେଲ କାଳେ ଦାଣ୍ଡ । ୨ । ଦେଇ ସାନ୍ଦୀପନି ମୁନୀନ୍ଦ୍ର ନନ୍ଦନେ ତା ଦକ୍ଷ କରି ସାହସ; କୁତୁକେ ଶ୍ରୀଦାମ ପରିହାସକ୍ରମ କରିବାବେଳେ ପ୍ରକାଶ । ୩ । ଦଳିତ ଲଳିତ ହରିତାଳଦେହା ସଙ୍ଗେ ଧଇଁ ତନାବି ଗୁହିଁ; ଦୁର୍ମଦ ବିଳାସେ ନାଚିବା ଲୀଳା ସେ ଲୋକନୟେ ନାହିଁ ନାହିଁ । ୪ । ଦକ୍ଷିଣ ଦୁଇଟା ନୟନକୁ କେତେ ମାଧୁରୀ ମୁଖଗୁନ୍ଦର; ଦମ୍ୟଖୁରଜଡ଼ା ଭୂପରାଗରୁଡ଼ା ଶ୍ରୀଅଙ୍ଗଟି କି ସୁନ୍ଦର । ୫ । ଦଶପୁର ଘେର ଗୃହ୍ଳନ୍ତି ବାଛୁରି ବଲ୍ଲବବାଳକ ଜନ; ଦେଖିବାକୁ ସେ ସମୟ ବାଲୁକେଶ ଜଗଦ୍ଧେବ କରେ ମନ । ୬ ।

( ୮୯ )

ରାଗ—ଖଣ୍ଡକାମୋଦୀ

ଗଲ ସବୁ ସରି ରେ, ନବକିଶୋର । ପଦ ।

ଯାହା ଶ୍ୟାମ ଅଙ୍ଗ ଚୁମ୍ବି ଆସିବା ସମୀର, ଛୁଇଁଲେ କେବଳ ହୋଇ ରସ ଜରଜର, ପୁଲକେ ଭରିତ କରୁ ମୃଦୁ କଳେବର, ସେ ଯେବେ ହୋଇଲେ ପର । ୧ । ଯାହା ବେଣୁ ଶୁଣି ଏକା ଧାଇଁ ନୀଶୀଥରେ, ବୋଲି ନାହୁଁ ଦିନେ ଆସ ଯିବା ମିଶି ଥରେ, ହୃଦ ମଦନ ବିଭବ ସମୁଲ୍ଲସି ଥରେ, ବିରହ ତାହା ସାଥରେ । ୨ । ଦୂତୀ କର ଧରି କହୁ ଘେନାଇ ଘେନାଇ, ନୀପ ନିକୁଞ୍ଜ ପୁଞ୍ଜକୁ ଅନାଇ ଅନାଇ, ଦିନ ହରୁ ସୁମସ୍ତରି ବନାଇ ବନାଇ, ମୀନ ନେତ୍ରା ଯାହା ପାଇଁ । ୩ । ସ୍ତନେ ଲଦି ଚୁମ୍ବିବାର ଯା ପାଦ-କମଳେ, ମନେ ବାଞ୍ଛିବା କୁବେରବାମାଙ୍କୁ ନ ମିଳେ, ଚୁମ୍ବିଲେ ସେ ତୋ ପଦ ଚନ୍ଦ୍ରକଚୁଳାଞ୍ଚଳେ, ଗୁହିଁ ଦେଲୁ ନାହିଁ ହେଳେ । ୪ । ରସବତୀ ଭଲ ନୋହୁ ଏ ଅପସନ୍ଦର, ଆସ ଏବେ ଯିବା କେଳିମଞ୍ଜରୀ ମନ୍ଦର, ବନ୍ଦନ

---

୮୮ । ଟୀକା—ଦ୍ୟୁମଣି—ସୂର୍ଯ୍ୟ, ଦକ୍ଷକର—ଡାହାଣ ହାତ, ପଙ୍କେରୁହ—ପଦ୍ମ, ତନାବି—ଝରକା, ଦମ୍ୟ—ବାଛୁରି, ବଲ୍ଲବ—ଗଉଡ଼, ଭୂପରାଗ—ପୃଥିବୀଧୂଳି ।

୮୯ । ଟୀକା—ପୁଲକ—ରୋମାଞ୍ଚ; ଥରେ—କମ୍ପେ; ବିରହ—ବିବାଦ; ସୁମ—କୁସୁମ, ଫୁଲ ।

କରଇ ମୃଦୁ ପଦାରବିନ୍ଦର, ତୋଷ ଶ୍ୟାମଳସୁନ୍ଦର । ୫ । ଅଷ୍ଟଦୁର୍ଗନାଥ କହେ ହୋଇ ଅଭିଳାଷୀ, ମିଳଣୀ କଥିତ ବଚନରେ ଶ୍ରୁତପାଶୀ, ଲମ୍ପଟ ହେବାକୁ ହୋଇ ଦରସ୍ପୃହାଶୀ, ବିଜେ କଲେ ବୀଣାଭାଷୀ । ୬ ।

( ୯୦ )

ରାଗ—ପୂରବୀ

ନୂଆ ରସିକା ରେ ଗୁଆଁ ର ମୋ ସମ କାହିଁ ।

ତୁ ଅଚଳୁ ଥାଉ ଗୁମାନ ବୋଲି ଯା ମୁଁ ଅବସ୍ଥିଥାଏ ତାହିଁ । ପଦ ।

ନବଲତା ଲୋଳ ଶାଖେ ନିକ୍ଷେପିଲେ ଲଭି ସମୀରଣ ସଙ୍ଗ; ମକରନ୍ଦ ପାନ ଉତ୍ସବରେ ମନ ନ କରଇ ନିକି ଭୃଙ୍ଗ । ୧ । ରସବନ୍ତ ଘେନ ତେଜିଲେ ଜୀବନ ଝଂଷ ବରତିବ କେହୁ; ମଣି କରକଶ ବୋଲି ବରଜିବା ବଣିକର ଭାଗ୍ୟ କାହିଁ । ୨ । ଅଗତିଙ୍କ ମୁହିଁ ବୋଲି ତ ଜାଣଇ ଜଗତୀତଳେ ତୋ ବିନା; ଚରଣକଞ୍ଜେ ତୁ ପେଲି ଦେଲେ ହେଲେ ଶରଣ ବୋଲିବି ସିନା । ୩ । ଯାହା ପାଦେ ଲକ୍ଷ୍ମୀ ଲେଖୁଥିଲେ ଶଚୀନାହା-ପଦ ତୁଚ୍ଛ କରି; ତାହା ପରି ରମ୍ୟ ପଦାର୍ଥକୁ ଯାହା ପର ପରିଭବ ସରି । ୪ । ଅଷ୍ଟଦୁର୍ଗନାଥ ବୋଲେ ଜାଣୁ ଜାଣୁ କଷ୍ଟଦ କାମ ଚରିତ; କମ୍ବାଳ ଲାଗିଲା ବୋଲି ବରଜିଲି ବିମ୍ବାଧରୀ ମରକତ । ୫ ।

( ୯୧ )

ରାଗ—କାମୋଦୀ

ଧନ ଘନ ରସ ବରଷିଲା ରେ, ଚଞ୍ଚଳା କେ୍ୟାତ ପ୍ରକାଶି,

ତୁରିତେ ଉକ୍ରଣ୍ଠ ସରିତ ବଢ଼ିଲା ଦମ୍ଭ ଦ୍ରୁମ ଗଲା ଭାସି । ପଦ ।

ପୁଲକକଦମ୍ବ ପ୍ରଫୁଲ୍ଲ ହୋଇଲା ନାଚିଲା ବେଣୀ ମୟୂରୀ, ଛୁଡ଼ି ମୋତିମାଳ ଦିଶେ କି ଚଞ୍ଚଳ କି ସେ ବକପନ୍ତି ପରି । ୧ । ଖରଶ୍ୱାସ ଝଞ୍ଜା ପବନ ପ୍ରସରି ଜନ୍ମାଏ ବଚନେ ମଲ୍ଲି, ଅଙ୍ଗ ଅମୋଦ ମାଳତୀ ବିକାଶିଲି କି ପ୍ରସନ୍ନ ରସବଲ୍ଲୀ । ୨ । ନଖକ୍ଷତ ରକ୍ତ ଇନ୍ଦ୍ରଗୋପ ବ୍ୟକ୍ତ ଦିଶିଲା

---

୯୦ । ଟୀକା—ଜୀବନ—ଜଳ, ଝଂଷ—ମାଛ, କମ୍ବାଳ—କାଦୁଅ ।

୯୧ । ଟୀକା—ରସ—ଜଳ, ଚଞ୍ଚଳା—ବିଜୁଳି, ପୁଲକକଦମ୍ବ—ରୋମାଞ୍ଚରୂପ କଦମ୍ବଫୁଲ, ନଖକ୍ଷତରକ୍ତ ଇନ୍ଦ୍ରଗୋପ—ନଖକ୍ଷତରୂପ ସାଧବାଣୀ ପୋକ, କେ୍ୟାତିରଙ୍ଗଣ—ଜୁଳୁଜୁଳା ପୋକ, ହାରକକରଙ୍କ ତାଟଙ୍କ—ଯେଉଁ କାନଫୁଲ ମୁଣ୍ଡରେ ହୀରା ଲାଗିଥାଏ, ଶିଲୀନ୍ଧ୍ରକୁସୁମ—ଛତୁ ।

ଅତ୍ୟନ୍ତ ଜ୍ୱର, ସ୍ୱେଦବିନ୍ଦୁଛଳେ କରକା ନିପାତ ବୃଷ୍ଟି ଜଳଧାରା ପରା । ୩ । କଟିଘଣ୍ଟି ଭେକ ପ୍ରକଟି ରଟିଲେ ଚଳେ ପୀନପୟୋଧର, ଭୂଷଣ ରତନକିରଣେ କି ଜ୍ୟୋତିରିଙ୍ଗଣଗଣ ପ୍ରଚୁର । ୪ । ହାରକ-କରଙ୍କ ତାଟଙ୍କ ଅଟଙ୍କ ନ ରହି କର୍ଣ୍ଣରୁ ଗଲା, ଅବନୀରେ ପଡ଼ି ଶିଲୀନ୍ଧ୍ର-କୁସୁମ ଫୁଟିଲା ପରାଏ ହେଲା । ୫ । ନୀଳ ପୀତ ରକ୍ତ ମିଶ୍ରିତ କୁସୁମ ପ୍ରାୟୁ ନିଶ୍ଚେ ଇନ୍ଦ୍ରଧନୁ, ବୋଲେ କବିସୂର୍ଯ୍ୟ ଅନଙ୍ଗ ଅନଳ ଲିଭାଇଲା ହୃଦବନୁ । ୬ ।

## ( ୯୨ )

### ରାଗ—କାମୋଦୀ

କହିବାକୁ ସଙ୍ଗିନୀ ତୋ ଅଗେ ଲୋ ଲଜେ ଟଳିଲା ନୁହେ ମଥା । ସାଧିବାକୁ ମନ ଥିଲେହେଁ ପ୍ରାଣକୁ ବାଧିବା ଯାଏ କି କଥା । ଘୋଷା ।

ଦେଖୁଛୁ ତ ମିତ ଚୁମ୍ବିବାର ମତ୍ତ ମିଳିନ୍ଦ ସୁନସମାଜ, ପିଏ କି ବଲ୍ଲରୀ ଗୋଟିଯାକ ଧରି ଘେନ ତ କି ଲୋକଲାଜ । ୧ । ଜଳି ଯାଇଥିବା ଦେବତାଟା ଅବା ଅଳି କରୁଥାଏ କେତେ, ବଳି ଦେବାକୁ କି ତାକୁ ଏତେ ସବୁ ଦଳି ଦେଉଥାନ୍ତି ମୋତେ । ୨ । କଞ୍ଜ ମଞ୍ଜରୀରେ କୁଞ୍ଜରବର ହେଲେ କିଛୁ ଅନୁରାଗ ଥିବ, ଅଞ୍ଜନନିଭର କୁଞ୍ଜ କଳଭର ଶତେ ନାହିଁ କୃପା ଲବ । ୩ । ରଖ ରଖ ବୋଲି ବୋଲି କି ଗର ସେ ନଖର ଶିଖର କେଳି, ନୁହଇ ମୋ ଦେହ ଅଳପ ତଳପ ଡାଳକୁ ଛୁଇଁବା ଭଳି । ୪ । ଯା ଚରଣ ଧରି ଜଣାଉ ଏପରି ଅଚରଣ ପରିପାକ, ପୁଣି କି ଭଙ୍ଗୀରେ ନବନୀତାଙ୍ଗୀ ରେ ବୋଲି ପଡ଼ୁଥାଏ ଡାକ । ୫ । କହି ଏରୂପରେ ପ୍ରଣୟ କୋପରେ ପୁରାଇ ସୁଖ ସୁକେଶୀ, ଛପି ଶୁଣୁଥିଲେ ତାପିଞ୍ଛ-ଶ୍ୟାମଳଛବି-ଦେଲେ ଜଣେ ହସି । ୬ । ସେ ସରସ ପଳାଶୀ ବେଳ ବଳାକଳାପ-କଙ୍କିଣୀ ରବ, ଧ୍ୟାନେ ଜ୍ଞାନେ ସେବି କି ସୁଖାନୁଭବୀ ହେବେ ନୃପ ଜଗଦ୍ଦେବ । ୭ ।

---

୯୨ । ଟୀକା—ମିଳିନ୍ଦ—ଭ୍ରମର; ସୁନସମାଜ—ପୁଷ୍ପସମୂହ; ବଲ୍ଲରୀ—ଲତା; କଞ୍ଜମଞ୍ଜରୀ—ପଦ୍ମକଢ଼ି; କୁଞ୍ଜର—ହାତୀ; ନଖର—ନଖ; ତାପିଞ୍ଛ ଶ୍ୟାମଳ—ତମାଳ ପରି ଶ୍ୟାମବର୍ଣ୍ଣ ଶ୍ରୀକୃଷ୍ଣ ।

( ୯୩ )

ରାଗ—ସାବେରୀ, ଏକତାଳି

ବିଧାତା ରେ, କି କାଳେ କି ଦଣ୍ଡ ଦେଲୁ ଅଣି,
ମୁଁ ଯିବି ବୋଲି ବିଦେଶ ବନ୍ଧୁ ସ୍ଥମ୍ଭରୁ ନିଦେଶ ନେବାକୁ କହିବି କେଉଁ
ବାଣୀ । ଘୋଷା ।

ଯେବେ ମୁଁ ପ୍ରବଳ ଦୁଃଖ,-ଭରରୁ ଶୁଖାଇ ମୁଖ, ମାନସ ଯୋଡ଼ିବି ଜାଣି ପାଣି, ପଲକେ ଜୀବନ ଧରି ପାରିବ କି ସେ କିଶୋରୀ ସୀମନ୍ତ-ମଣିଙ୍କ ସାମନ୍ତାଣୀ । ୧ । ପ୍ରଳୟ ସମୟ ଭୟ, କମ୍ପାଇ ଦେବ ହୃଦୟ, କି ବଞ୍ଚିବ ତେତେ ମୃଦୁ ପ୍ରାଣୀ, ସେହିକ୍ଷଣି ଯିବ ଭଜି, ରୋହିଣୀରମଣ-ରାଜି, ରାଜୀବାକ୍ଷୀ କିଣା ମୁଖ ଠାଣି । ୨ । ଥରାଇ ଓଷ୍ଠପଲ୍ଲବ, ଚରଣ ନଖେ ଖରିବ, ଧରଣୀ ବରଷି ନେତ୍ରୁଁ ପାଣି, ମାନସ ସରରୁ ତାର, ସନ୍ତାପଧୀବର ବର ଧୈର୍ଯ୍ୟ ହଂସକୁ ନେବ ଘେନି । ୩ । ଅତରୁ ଏହା ଯା ମନ୍ଦ, ଏଥିରୁ ବଡ଼ ପସନ୍ଦ, କରେ କରି କୃପାଣକୁ ଖଣି, ନ ଥାଉ ଥାଉ ବା ଦୋଷ, ଲଭୁ ବା ଯଶ ଅଯଶ ଦେବାର ଶିରକୁ ମୋର ହାଣି ॥ ପଞ୍ଚାର୍ଦ୍ଧାଧିକ ମୋହର, ଠାରୁ ତ ବଳେ ମୋହର, ପ୍ରାଣପ୍ରିୟା ବୋଲି ଜାଣି ଜାଣି, ଦେହେ ପ୍ରାଣ ବହି ରହି, ତା ସ୍ଥମ୍ଭ ଛାଡ଼ିବି କେହି, କହେ ଜଗଦ୍ଦେବ ଭୂପମଣି । ୫ ।

( ୯୪ )

ରାଗ—କେଦାର, ଅଠତାଳି

କେତେ କଉତୁକୀ କଳାଗୃନ୍ଦ ଲୋ । ପଦ ।

କେଉଁ ଯୁବତୀଙ୍କ ନେତ୍ର ନାହିଁ ଛିଙ୍କି ତା ନୟନ ଫାନ୍ଦ ଲୋ । ୧ । କୁଟେ ଥାଏ କରି ବଦନେ ମଧୁର ହସିତ ଶୁଣିଲ କାନ୍ଦ ଲୋ । ୨ । କର୍ଣ୍ଣ-କୁବଳୟ ଭଙ୍ଗାଇ ପ୍ରଣୟ କୋପୁଟି କେତେ ପସନ୍ଦ ଲୋ । ୩ । କା ମନ ନ ମୋହେ ସେ କିଶୋର ନୁହେ ଶୃଙ୍ଗାରଭୂରୁହ କନ୍ଦ ଲୋ । ୪ । କମନୀୟ କେଳୀ ଝାଲିରଅ ସେ କି ଜଗତୀ ନୟନାନନ୍ଦ ଲୋ । ୫ । ଅଷ୍ଟଦୁର୍ଗନାଥ ତାଙ୍କ ପାଦପାଥରୁହ ମରନ୍ଦ ମିଳନ୍ଦ ଲୋ । ୬ ।

---

୯୩ । ଟୀକା—ହଂସ—ମାଛ, କୃପାଣ—ଖଡ଼ଗ, ମୋହର—ସ୍ୱର୍ଣ୍ଣମୁଦ୍ରା ।

୯୪ । ଟୀକା—ପାଥରୁହ—ପଦ୍ମ, ମରନ୍ଦ—ମକରନ୍ଦ, ମିଳନ୍ଦ—ଭ୍ରମର ।

( ୯୫ )

ରାଗ—ତୋଡ଼ି

ଅନା ଅନା ସୁନୟନା କାହ୍ନୁଙ୍କ କୃପାରେ । ପଦ ।

ତୋଷ ମୋତେ ଅନୁକମ୍ପାହାତୀ ଶିରୁପାରେ, ନ ହସି ମୋ ଭଗାରିଏ ସଢ଼ନ୍ତୁ ତ୍ରପାରେ । ୧ । କେତେ କେତେ ଜନ୍ମେ ଧନ ମୁଁ ଜଳଜପାରେ, ଲେଖିଛୁ ଅଳତା ଚନ୍ଦ ତୋ ଜଳଜ ପାରେ । ୨ । ନ ଫିଙ୍ଗେ ଦୃଷ୍ଟି ତୋ ବିନା ଅନ ସ୍ବରୂପାରେ, ଚିନ୍ତାମଣି ଥାଉଁ ଥାଉଁ କେ ରସେ ରୂପାରେ । ୩ । ଭାସିଲିଟି ଡାକକଟି ସ୍ମର ଅକୂପାରେ, ତରୁଣି ତରଣୀ ହୋଇ ଲଗାଅ ତୁ ପାରେ । ୪ । ଜଳନ୍ତର ପୁରନ୍ଦର ଗୃହୁଁ ଜଳପାରେ, ରସିଲ ରସିକା ରସ କୁତୁହଳପାରେ । ୫ ।

( ୯୬ )

ରାଗ—କୁମ୍ଭକାମୋଦୀ

ମିତ ହିତ ଯେତେ ତୁ କହିଲୁ ଗୋ, ଚିତ୍ତ ତା ନ ମଣେ ସୁଖ, ପରମପଦବୀ ଲଭିଲେହେଁ ଯେବେ କରମରେ ଅଛୁ ଦୁଃଖ । ପଦ ।

ମୋହନ ମନ୍ତ୍ର ଜାଣୁ ତୁ ଅନ୍ତର ମୋ ମନ କରୁ ବଶ, ସର ତ ଗଲ ହରଣାକ୍ଷୀବୃନ୍ଦରୁ ଶ୍ୟାମ ସଙ୍ଗଭାଗୀ ଯଶ । ୧ । ବାଷରେ ମୀତୃଷ୍ଣା ବୁଦ୍ଧି କରିବାର ଫଳ ହେଲା ଏତେ ସବୁ, ପିଶାଚ ସ୍ମର ବଦନେ ପଡ଼ି ହେଲି ନିଶା ଚକବାକୀ ପରି । ୨ । ଝଳ ମୋର ମରଜରେ ପୁଣି କେତେ ବଳଅଇ କହୁଥାଉ, ଗୁଆଦଣ୍ଡି ଲୁଅଁ ଖରାପ କ୍ଷୀରରେ ସୁଆଦ ଥାଏ କାଅଉ । ୩ । ଅପ୍ରିୟ ହେଲେ ତାହାର ବୋଲାଇବା ଅଶା ସିନା ପରିବାଣ, କହିବାରୁ ଏହା ସହି ରହିଥାଏ ନାକ ସେହି ଦ୍ରୋହୀ ପ୍ରାଣ । ୪ । କହେ ଅଷ୍ଟଦୁର୍ଗ ମହୀଦମ୍ଭ ସ୍ବର୍ଗ ମହେନ୍ଦ୍ର ଶ୍ରୀଜଗଦ୍ଦେବ, ଯିବା ଶମନପୁରକୁ ଯେବେ ନାକନିବାସରୁ କସ ହେବ । ୫ ।

---

୯୫ । ଟୀକା—ଅନୁକମ୍ପା ହାତୀ ( ସମ୍ବୋଧନ ), ଶିରୁପାରେ—ମସ୍ତକରୁ ପାଦଯାଏ, ତ୍ରପା—ଲଜ୍ଜା, ଜଳଜପାରେ—ପାଣିରେ ରହି ମନ୍ତ୍ରାଦି ଜପିବାରେ, ଜଳଜ ପାରେ—ପଦ୍ମପାଦରେ, ଡାକକଟି—କ୍ଷୀଣକଟି, ସ୍ମରଅକୂପାରେ—କାମସାଗରରେ, ଜଳପାରେ—କଥାରେ, କୁତୁହଳପାରେ—କୌତୁକ ଶେଷ ସୀମାରେ ।

( ୯୭ )

ରାଗ—କାନଡ଼ା, ଝୁଲ

ନଛୁଇଲ୍ଲ ଯାହା ସେ, ଭ୍ରୂକୁଟୀରୂପ ଚପଳ ଚମରୀଦୃଶା । ପଦ ।

ମୋ ଧଇର୍ଯ୍ୟ ମୃଗକୁ ପାଇଁ ନୟନାନ୍ତ ବରଛି ଅସ୍ତ୍ର, ବନ୍ଧୁଆ ବନ୍ଧୁକ ବନ୍ଧୁ ଅଧରରେ ବନ୍ଧ କରି କୁନ୍ଦ ପସନ୍ଦହସା । ୧ । ମୁନିଜନମାନସଭୁଲ୍ଲ, ଭୁଲ୍ଲ ମୋତି ଝଲକଝୁଲ୍ଲ, ବାସବରତନ ନଥ ନରତନ ରସିକା ନାସିକା-ପୃଷ୍ଠ ଉଲ୍ଲସା । ୨ । ଧନ୍ୟ କାମ ଅମୋଘ ଶର, ମନ-କାରୀଭଙ୍ଗୀ ତାହାର, କନକାଚଳ ତ ଛନକା ହୋଇବ ସ୍ତନକାନ୍ତି ଦେଖି କାହା ଭରସା । ୩ । ଅଳଂକୃତ ନିତମ୍ବ ଫର, ଶୋଭା ଲୋଭେ ଅଳପ ଫେର, ଅନାଇଲାବେଳେ ବିବେକ ଦଳିଲା କି ବେକତଳିଆ ଲହସା ଖୋସା । ୪ । ଛଣାସୁଧା ବାଣୀ ବିଭ୍ରମ, କଣା କଲା ସେ ସବୁ କ୍ରମ, ଏଣିକି ଚରମେ ବେଣୀକି ଫଣୀକି ପରି ଖେଳାଇବ ବରସାରସା । ୫ । ଅଷ୍ଟଦୁର୍ଗ ମହେନ୍ଦ୍ର ଭଣେ, କିଶୋରୀଙ୍କ ଶୋଭା ବାଖଣେ, ଅଖଣ୍ଡ ଶିଖଣ୍ଡମଣ୍ଡନ ମଦନପଦନଦେ ହସି କଲେ ପ୍ରଶଂସା । ୬ ।

( ୯୮ )

ରାଗ—କୋଳାହଳ

ଜୀବବାନ୍ଧବୀ ରେ, ପ୍ରାଣବାନ୍ଧବୀ ରେ,
ତୋ ବିନା ମୋତେ ନ ଦିଶେ ଆନ । ଘୋଷା ।

ଜଗତେ ନାଗରୀମାନଙ୍କ ମାଧୁରୀ କରୁଥାଏ ମୁଁ ଯେ ଅନୁମାନ, ଗୋଟିଏ ଗୁଣରେ ତୋ ନଖ କୋଣରେ ତୁଳିବାକୁ ନ ବଳଇ ମନ । ୧ । ପୂର୍ବ ତପବଳେ କରିବ ଯେ ବଳେ ତୋ ମଧୁର ରଦଚ୍ଛଦ ପାନ, ସୁଧା ନିର୍ଝରୀକି ମଧୁର କରି କି ଲେଖିବ ନ ଧରି ଅଭିମାନ । ୨ । ତରୁଣୀ ତୋ ବାଣୀ ମୃଦୁ ମୃଦୁ ଠାଣି ଶୁଣିଥିବ ପୁଣି ଯାହା କାନ, ସେ କି ଗଉରବ-ଯୋଗ୍ୟ ବିଚାରିବ ଶୁକ ପିକ ବେଣୁ ବୀଣା ଗାନ । ୩ । ଥରେ ଯାହା ଉର କରିଥିବ ତୋର ଘନ ପୀନସ୍ତନ ଆଲିଙ୍ଗନ, କୁମ୍ଭି-କୁମ୍ଭସ୍ଥଳ ଯୁଗଳକୁ ସ୍ଥୂଳ ମଣିବ କି ନ ବିଚାରି ନ୍ୟୂନ । ୪ । ମଧ୍ୟ ଥିଲେ ସିନା ତୋର ସୁଦର୍ଶନା

---

୯୭ । ଟୀକା—ବନ୍ଧୁକବନ୍ଧୁ ଅଧର—ରକ୍ତବର୍ଣ୍ଣ ବନ୍ଧୁକ ପୁଷ୍ପ ସଦୃଶ ଓଷ୍ଠ ।

୯୮ । ଟୀକା—ରଦଚ୍ଛଦ—ଅଧର, କୁମ୍ଭୀ—ହସ୍ତୀ, ହରିକଟି—ସିଂହକଟି, ଡାକ ଡମରୁ ଶେଷ—ଅନନ୍ତମୁଖଧାରୀ ଶେଷନାଗ ।

ଘଟନା କରନ୍ତି ଉପମାନ, ହରକଟି ତାଙ୍କ ବେଦୀ ମଧ୍ୟରେ କି କୃତାର୍ଥ କରନ୍ତେ ରୁପମାନ । ୫ । ହେଲେ ଯେ ମନ୍ଦରସ୍ତନୀ ତୋ ସୁନ୍ଦର ଗୃଲରେ କରିବ ଦୃଷ୍ଟିଦାନ, ଯେବେ ଥିବ ଲଜ ରୁଚିବ କି ରାଜହଂସ ଗଜରାଜ ଲୀଳାଯାନ । ୬ । ଜଣାଇବ କିସ ଶେଷ ମୁଖେ ଶେଷ ହେବାର ଅଯ୍ୟାସ ଯେ ବଧାନ, କହେ ଜଳନ୍ତରମହୀପୁରନ୍ଦର ଥିବ ମାନ କରନ୍ତୁ ଅବଧାନ । ୭ ।

( ୯୯ )

ରାଗ—କେଦାର

ପ୍ରାଣନାଥ ବିଜେ ବେଳ ବଳିଲି ରେ । ପଦ ।

ସଖି ହେଲି କି ପାପ, ଦେଖ ଏ ଚନ୍ଦ୍ରାତପ, ବନ୍ଧା କୁସୁମ ଥୋପ ଅଙ୍ଗି ଲିଳିଲି ରେ । ୧ । ତୁଠିଲାନି ମୋ ହୃଦପୁଟେ ଥିଲି ପ୍ରମୋଦ ମଥାପରୁ କୁମୁଦବନ୍ଧୁ ଟଳିଲି ରେ । ୨ । ଦେଲି ଅହା କି ଫଳ, ଭଲି ତ ମୋ କପାଳ, ଲଗାଇଲେ-ରସାଳ ନିମ୍ବ ଫଳିଲି ରେ । ୩ । ମଣ୍ଡାଇଲି ନିବାସ, କପାଁ ହେଲି ଏ ବେଶ, ଅନେ ଯେବେ ଜୀବେଶ ମନ ବଳିଲି ରେ । ୪ । ଶ୍ରେଷ୍ଠରାୟ ନୃପତ, ବିଜେ କଲେ ଏ ରାତ, ଜାଣ ସବୁ ସମ୍ପତ୍ତି ମୋତେ ମିଳିଲି ରେ । ୫ ।

( ୧୦୦ )

ରାଗ—କାମୋଦୀ

ଗୃହିଁରୁ ଯେବେ ଶ୍ୟାମ ଦୂଂତକି ରେ, କାହିଁ ହଜାଇ ଦେବୁ ମତକି ରେ । ନାହିଁ ବୋଲିବା କଥା, ଜାଣିବୁ କି ସର୍ବଥା, ଅଜ କି ସମ୍ଭାଳିବୁ ଧୃତକି ରେ । ଘୋଷା ।

ଏ ନଗରେ ଏଣିକି, ଭ୍ରମେ ଚୁମ୍ବିବ ନିକି, 'ସତୀ' ଏ ଦୁଇବର୍ଣ୍ଣ ଶ୍ରୁତକି ରେ, ସତେ ପ୍ରାଣମିତରେ ତା ସେବାରୁ ଇତରେ ଯୁବତୀଜନମଙ୍କୁ ଗତକି ରେ । ୧ । ଯେବେ ସେ ହେବ କୋଳେ, କଳାବତୀମଣ୍ଡଳେ, ନ ଟେକିବୁ କି ଶ୍ୱେତ ଛତକି ରେ, ଚୁମ୍ବିଲେ ତା ବଦନ-କଞ୍ଜଟି ଗୁରୁଜନ ଗଞ୍ଜନ ଲଭିଲେ ହେଁ କ୍ଷତ କି ରେ । ୨ । ଭବନ ମଣି ବାସ, ସେ ନବ ଯୁବା ପାଶ, ରବିନନ୍ଦନୀତୀର ସ୍ଥିତକି ରେ, କି ସୁଖ ଇନ୍ଦ୍ର ଅଙ୍କେ, ନନ୍ଦନରେ ନିଃଶଙ୍କେ ଆରୋହିଲେ ଅଭ୍ରମୁପତକି ରେ । ୩ । ଅବା ତା ପଥେ ଯିବା, ଜାଣି କଳପି ଥିବା, ତା ପଛେ ଯେତେ ପରାଭୂତକି ରେ, ମୋହନସ୍ମିତ ଅବଲୋକେ

୧୦୦ । ଟୀକା—ରବିନନ୍ଦନୀ—ଯମୁନା, ଅଭ୍ରମୁପତ—ଐରାବତ ହାତୀ ।

ଯାସୋର ଯିବ, ନ ଅଚରବି'କ ବନତକ ରେ । ୪ । ଶୁଣି ଶ୍ରୀଠାକୁରାଣୀ, ଶଙ୍କ ମଣିଲେ ଜାଣି, ନ ଥିଲା ପର ହରପ୍ରୀତକ ରେ, ସେ କାଳେ ଦୁଇ ସଖୀ, କୃପା କଲେ ସୁମୁଖୀ, ମୁକୁନ୍ଦଦେବ ଗଜପତିଙ୍କ ରେ । ୫ ।

( ୧୦୧ )

ଗୃହିଁ ରେ, ନିଧୁବନ କେଳିକୁଶଳାକୁ । ଘୋଷା ।

କୋମଳପାଦ ସରୋରୁହ ଯାବକ ଶଙ୍ଖଶଳାକାଧରାକୁ, ତା ମଧୁରାଧର ଲାଲ-ଜବା-ମକରନ୍ଦଝୁରୀ ଭ୍ରମରାକୁ । ୧ । ନିର୍ଜିତଶୋଣସରୋଜକରେ କରୁ ଯା ସଜଡ଼ା ବଢ଼ଅଳୁ, ସ୍ମିତକ-କୈରବ-କାଶ-ସୁଧାକର-ହାସ ବିଳାସିନି ତାକୁ । ୨ । ଗୃହୁ ସୁନୀଳ ଚଳାଚଳ ଲୋଚନ କୋଣ ନିଦେଶକରୀକୁ, ଗୃମର ବାତଭରେ ରତି-କୌତୁକ-ସମ୍ଭବ-ଖେଦହରୀକୁ । ୩ । ଶୈଳସହୋଦର ପୀନପୟୋଧର ଚନ୍ଦନ ଭୋଗଦଅଳୁ, ମଞ୍ଜୁଳମାଚଳ କକ୍ଷତଳେ ନଖକେଳିକଳା ହଟିଅଳୁ । ୪ । ବାନ୍ଧବ ! ଯଦ୍ୟପି ମାନସରେ ଅଛୁ ଲେଶ କୃପା କବିବାକୁ, ବ୍ରଜକଦମ୍ବ-କିରୀଟ ଜଳନ୍ଧରନାଥ ମହା-ମଧବାକୁ । ୫ ।

( ୧୦୨ )

ରାଗ—କେଦାର, ତାଳ—ସରମାନ୍

ମିତ ଅମ୍ଭ ଶ୍ୟାମବନ୍ଧୁ ଗୃଲ୍ କ ରସେ ଗୋ । ଘୋଷା ।

ଅଖଣ୍ଡ ଶୋଭାମଞ୍ଜୁଳ, ଶିଖଣ୍ଡମଣ୍ଡନ ଚୂଳ, ଖଞ୍ଜେ କି ଜନ-ନେହକୁ ପରଶେ ଗୋ । ୧ । ରସପୀୟୂଷଲହରୀ, ପର ତା ବାଣୀ ନିର୍ଝରୀ ଜଗତୀ ମନୋମଞ୍ଜରୀ କୀର ସେ ଗୋ । ୨ । ନୋହେ କୁସୁମ କମାଣ, ତା ନେହ ବାରଜ କୋଣ, ମାର ମାରଗଣଗଣ ବରଷେ ଗୋ । ୩ । ତା ମୋହନ ସ୍ମିତ ଶିରୀ, ଭୁଲେ ସୁର ଚଳ ପରି, କୁଳର ସୁନ୍ଦରପଣ କରଷେ ଗୋ । ୪ । ଶରଦ ରଜନୀ ଈଶ ମୋହେ ତା ମୁଖ ନିବାସ, ସେ ତ ଲଭୁ ଅଛୁ ନାଶ ଦରଶେ ଗୋ । ୫ । କୃପାମୟ ଅବତାର, ରମା ଇଷ୍ଟ ଦେବତାର, ହେଲେ

---

୧୦୧ । ଟୀକା—ନିର୍ଜିତ ଶୋଣ ସରୋଜକର— ରକ୍ତପଦ୍ମଠାରୁ ଅଧିକ ମନୋହର ହସ୍ତ, କୈରବ—କଇଁ, କୁମୁଦ; ମଞ୍ଜୁଳମାଚଳ—ସୌନ୍ଦର୍ଯ୍ୟପୂର୍ଣ୍ଣ ପର୍ବତସ୍ୱରୂପ, କଦମ୍ବ—ସମୂହ, କିରୀଟ—ମୁକୁଟ ।

୧୦୨ । ଟୀକା—କମାଣ—ଧନୁ, ମାରଗଣ—ମାର୍ଗଣ ବା ଶର, ତରସ—ଉଦ୍‌ବେଗ ।

ଧନ ନେବ ତାର ସ୍ମରଣେ ଗୋ । ୬ । ଲଭ ହେଉ ନୋହୁ ଅବା,
ଅବସର ପୁହାଇବା, ତା ପଦତଳ ଚୁମ୍ବିବା ଭରସେ ଗୋ । ୭ । କହଇ
କବିତପନ, ଯାଉଥିଲେ ତା ଲପନ, ସ୍ୱର୍ଗସୁଖେ ତ ମୋ ମନ ନ ରସେ
ଗୋ । ୮ ।

( ୧୦୩ )

ରାଗ—ବଙ୍ଗଳାଶ୍ରୀ

ମାନ ଅବା ଲଜ, ନ ଜାଣିଲି ଆଜ, ମୁଖଚନ୍ଦ୍ର ନୁଆଇଲି ।
ଆନ ପକାଇଲି ଅନେକ ମୋ ଗିର କାନପାଖକୁ ନ ନେଲି ରେ । ୧ ।
ଦୋଷ ଦେଖି ଯେବେ ନେଣେ ତେବେ ସିନା ରୋଷ ଅଙ୍ଗୀକାର କର,
କ ସକାଶରୁଟି ମୋ ସକଳ ଭାଗ୍ୟ ମୋଷ ରଖିଲି ଚତୁରୀ ରେ । ୨ ।
ପିଆଇ ନ ଦେଲି ଅଧର, ଉରଜେ ଦଆଇ ନ ଦେଲି ପାଣି,
ଫିଆଇ ବାସ ମଦନମୁଁ ମୋତେ ଜୀଆଇବୁ କେହୁ ପୁଣି ରେ । ୩ ।
ଛକାଇ ସନ୍ଧକ ସନ୍ଧରେ ନିବଢ଼େ ଜକାଇ ନ ଦେଲି ଦେହ,
ଧକାଇଲି ନାହିଁ କେଳିରୁ ପଛକୁ ପକାଇ ଦେଲି ମୋ ସ୍ନେହ ରେ । ୪ ।
ଗଂଗ୍ରାଶ-ପର-ଦଣ୍ଡରୁ ରେ କେତକୀଗୋର ସରଲି ମୁଁ ସିନା,
ଶିରୀଷ ସର ଶରୀର ଉଡ଼ାଇଲି ପୁରୁଷଘାତନୀବାନା ରେ । ୫ ।
ମଦନମୋହନ ବଚନେ ଶ୍ରୀମତୀ ସଦୟ ହାସ ରଚିଲେ,
ସେ ସମୟ ଛବି ଭାବି ଭାବି କବିରବି ରାୟଗୁରୁ ବୋଲେ ରେ । ୬ ।

( ୧୦୪ )

ରାଗ—ତୋଡ଼ି ପରଜ, ଆଦିତାଳ

ରେ କିଶୋର, ପଛେ ଛୁଇଁବୁ ମୋ ତନୁ,
ପାସୋର ପକାଅ ନୀପଅନାଉଣି ସୁଆଗ ତୁ ଅଗ ମନୁ । ଘୋଷା ।
ମାତଲି ନିକୁଞ୍ଜେ ଜଣାଯାଇ କୁଞ୍ଜେ ବୋଲି ହେଉଛନ୍ତି ଖବର,
ନୋହୁ ମନ୍ଦାଦର ଏ ଅପବାଦର ଅପାୟ ଉପାୟ କର ରେ । ୧ ।
ହିତକୁ ଛାଡ଼ି ମୁଁ ନ କହେ ମୋ ପ୍ରାଣମିତକୁ କଦାପି ଆନ,
ଚିତ୍ତକୁ ନ ଆସୁ ଆସୁ ତା ମୁରଲୀ ଗୀତକୁ ନ ଦଅ କାନ ରେ । ୨ ।
ନ ଜାଣିଲି ପର ଇନ୍ଦୀବରାଧରୀ ଚୁମ୍ବୁ ଯେ ଅନବରତ,
ହର ତୋତେ କୃପା କରନ୍ତୁ ମଦନକରତ ମୁଖୁଁ ବରତ ରେ । ୩ ।

---

୧୦୪ । ଟୀକା— ନିଅଜ—ଅନୁମାନ, ତାଡ଼ି—ଫିଙ୍ଗିଦେଇ, ଘୋପାଡ଼ି ।

ଧନ ମାନରେ ତୋ ଅଙ୍ଗେ ଯେ ପୂରିଛି ବନମାଳିଙ୍କ ବାସନା,
ଘୃଣିବି ମୁଁ ଆଜ ଏ କଥା ନାଆଜ ପଢ଼ିଲେ କହିଲେ ସିନା ରେ । ୪ ।
କାହିଁକି ହେଲଣି ଏପରି ପଲ୍ଲବ ତଳପରେ ସଢ଼ି ଦେହ,
ଜନେ ଯେ ପୁଚ୍ଛିବେ ତହିଁକି ଜବାବ କଳପ ଅଳପ ରହ ରେ । ୫ ।
ସହଚରୀ ପରିହାସୁ ହସି ଗୋରୀ ତାଡ଼ି ଅବତଂସଫୁଲେ,
ସେ ସମସ୍ତ ଛବି ଚିତ୍ତ ଚିତ୍ତେ କବିରବି ରାସ୍ତୁଗୁରୁ ବୋଲେ ରେ । ୬ ।

( ୧୦୫ )

କି ନ କରେ ପ୍ରେମଗୀତ ରେ, ସଜନି !
ସେ ଶ୍ୟାମ ଅନୁସରଣେ ସଖି ମୋର ହେଉଛି ଯେତେ ଅମାତ ରେ
। ଘୋଷା ।

ଶିରୀଷ କୁସୁମ ତାଡ଼ନରେ ସହି ମେଲେ ଯେ ମୋହକୁ ଯାଇ,
ସେ କରକାମିଶା ପ୍ରଖର ବରଷା ସହି ତୋରି ତୋରି ଯାଇ । ୧ ।
ହଠେ ଯେ ସଜନୀ କରେ କର ଦେଇ ଦେହଳି ଲଙ୍ଘିବାପାଇଁ,
ସେ କଣ୍ଟା ଅବାଟ ନିଗଡ଼ ନାପଟ ନ ମାନି ସଙ୍କେତେ ଯାଇ । ୨ ।
ଦିବସେ ଯେ ଡରେ ସହଚରୀ ମେଳେ ତମଧାମେ ନ ପଶଇ,
ସେ ବିଜୁଳୀ ଦେଖା ହୋଇଣ ଅଶାଖା ନିତ ବୃନ୍ଦାବନେ ଧାଇଁ । ୩ ।
ଭିତ୍ତିରେ ଚିତ୍ରରେ ଲେଖା ଉରଗରେ ଭସ୍ମେ ଯେ ନ ଦିଏ ପାଣି,
ସେ ଶାଢ଼ୀ ଶେଷରେ ତନୁ ଛପାଉଛି ଫଣିମଣି ତେଜ ଜାଣି ରେ । ୪ ।
କବିରବି ବୋଲେ ସେ ମୋହନଛବି ଯେ ଦେଖେ ନୟନ ଭୁଲେ,
କହିଲେ କି ବାଳୀ ମାନିବ ଏ କଥା ବୃଥା ହେବ କଥା ତୁଲେ । ୫ ।

( ୧୦୬ )

ରାଗ ମୁଲତାନ—ଆଡ଼ତାଳି

ଆଜ ଏ ରୁଷାରେ, ପାଳିଲି ନାହିଁ କି ତୋର ହୁକୁମ ସୁଷାରେ । ପଦ ।
ହେଲୁ ଯେ ଗଣ୍ଡମଣ୍ଡିତ-କର ସାରସାରେ, ତୋ ବିନା ଅଛି କେ ମୋର ଭରସା ରସାରେ । ୧ । ଚିନ୍ତାମଣି ପରି ତୁ ମୋ ଚିତ୍ତ ଘରଷାରେ, ଭିଜାଅ ନା କୁଚକୁମ୍ଭ ଅଶ୍ରୁ ବରଷାରେ । ୨ । ସହି ସରଳଟି ହର-

୧୦୫ । ଟୀକା—କରକା—କୁଆପଥର, ଦେହଳି—ଏରୁଣ୍ଡିବନ୍ଧ, ଦ୍ୱାରବନ୍ଧ ।
୧୦୬ । ଟୀକା—(ଶେଷ ପଦ)—କୃଷ୍ଣଙ୍କ ଵନସ୍ୱରୂପ ହିମସ୍ପର୍ଶରେ ଦେବୀଙ୍କ ମାନ ପଦ୍ମ ଅବସ୍ଥାକୁ ପ୍ରାପ୍ତ ହେଲା ଅର୍ଥାତ୍ ମାନ ସଙ୍କୁଚିତ ହୋଇଗଲା ।

ଅହ୍ନିତ ତ୍ରୁଷାରେ, ବନ୍ଦ ପଦ୍ମ ସ୍ମିତ ମକରନ୍ଦ ପରଷା ରେ । ୩ । ଗୁଣାମୃଧି ଥରେ ସ୍ୱର ସମରେ ରସା ରେ, ଭଣାଯାଉ ତୋର ଗଣା ନ ଯା ନ୍ନିରଶା ରେ । ୪ । ଜଗଦ୍ଦେବ ବୋଲେ ଶ୍ୟାମ ବ୍ରିନଯ୍ନ ତ୍ରୁଷାରେ, ଶଙ୍କିଲ ଦେବୀଙ୍କ ମାନ ପଙ୍କଜ ଦଶା ରେ । ୫ ।

( ୧୦୭ )

ହରିତୁଲେ କରିରୁ ଯେ ପ୍ରୀତି, ମୋ ଅଭିନ୍ନା ରେ
ଧରିଛୁ କପଟ କହ ଧୃତି । ପଦ ।

ଥୋଇ ଯତନେ ସେ ଶ୍ୟାମଲ ଗାତ୍ର, ମୋ ସଙ୍ଗିନି ରେ, ସାଁଇଁ ପାରିବୁ କି ଦୁଇ ନେତ୍ର; ନିତ ତ ସେ ବହ୍ନି ପଛେ ଚଳିବ, ନିମିଷ ତ ଶତଯୁଗୁଁ ବଳିବ, କାମାନଳ ତୋ ହୃଦେ ଜଳିବ, ମୋ ଦାଅଣା ରେ, ନେତ୍ରୁ ନୀର ନିରନ୍ତେ ଗଳିବ । ୧ । ପରପୁରୁଷର ସ୍ନେହଭୂତ, ମୋ ସଜନୀ ରେ, ହରବର କରଇ ବହୁତ; ଲଗେ ପରେ ସ୍ନେହ ପରବଧୁର, ଗୃହୁ ସୁଧାଧାରି-ଠାରୁ ମଧୁର, ଇପ୍ସିତରେ କରଇ ବିଧୁର, ମୋ ବଳ୍ଲ ରେ, ବିଷ ହୁଏ କିରଣ ବିଧୁର । ୨ । ବାରେ ଶ୍ୟାମଠାରେ ନେତ୍ରାଞ୍ଚିଲ, ମୋ ଦ୍ୱିତୀୟା ରେ, ସନ୍ଧିଲେ କଲି ମୁଁ ଚଞ୍ଚଳ; ଥାଉ ଅଳ୍ପ ବଡ଼ ସୁଖ ବିଭବ, ଯାଉ ଯାଉ କଣ୍ଠେ ରହିଲା ଜୀବ, ତାହା ଜାଣେ ଏକା ମୋ ମନୋଭବ, ମୋ ସଙ୍ଗାତ ରେ, ଯାହା ହୋଇଛି ମୋ ଅନୁଭବ । ୩ । ନୁଆ ଭୁଅସୁଣୀ ନୀପଟ, ମୋ ମିତଣି ରେ, ଗୃହିଁ ଗୃହିଁ କେଲି ଚଟପଟ; ଅରିଷ୍ଟେ ଯେହେତୁ ବକୀବଧର, ଅଙ୍ଗୁଳିଶିଖେ ଯେ ଧରିଲା ଧର, କି ସେ ରଖିବ ନବ ପୟୋଧର, ମୋ କେତକି ରେ, ଖଣ୍ଡିପରି ଖଣ୍ଡିବ ଅଧର । ୪ । ନିଶି ନିଦ ନ ଜାଣିବ ଅକ୍ଷି, ମୋ ମରୁଆ ରେ, ବସିନୀଦଳରେ ଯିବୁ ଲକ୍ଷି; ନବନୀତରୁ ଯେହୁ ସୁକୁମାର, ବନ୍ଧିବ କି ଦଶ ଇଷୁକୁ ମାର, ହସୁଥିବ ଯଶୋଦା ସୁକୁମାର, ମୋ ମୋହନା ରେ, ନାଚ ତଟେ ଅର୍କମା-ଜେମାର । ୫ । ଚଉକୁ ଯେ ଅସିବ କର, ମୋ ନିଅଳି ରେ, ଅଳି ଅଳି ହେଲେ ମୁଁ ଗୃହର; ଫଳଗଲା ନିକ ବାଞ୍ଛା ସତେ, କଳବାକୁ ଭାବ ପଗ୍ରୁଛ ମତେ, ତୋ ତରସ ପୁରୁ ଶ୍ୟାମରତେ, ମୋ ସଙ୍ଗିନୀ ରେ, ଅଷ୍ଟଦୁର୍ଗପତି ବୋଲେ ଗୀତେ । ୬ ।

୧୦୭ । ଟୀକା—ବିଧୁର—ବିକଳ, ବିଧୁର—ଚନ୍ଦ୍ରର, ଅରିଷ୍ଟ—ଅରୁଡ଼ଶାଳ, ବକୀ—ପୁତନା, ଧର—ପର୍ବତ, ଦଶ ଇଷୁକୁ—ଦଶବାଣକୁ, ମାର—କନ୍ଦର୍ପ, ଅର୍କମାଜେମା—ଯମୁନା, ତରସ—ଅଭିଳାଷ ।

( ୧୦୮ )

ମୋହିଲ ରେ ବରମହିଳା ରେ । ପଦ ।

ନୂଆ ମୃଦୁ ଜଳପ,-ବଢାଉସଙ୍କଳପ,-ବଲ୍ଲୀ କି ସଂକଳପ, କରି ଗ୍ରହିଁ ଅଳପ । ୧ । କରି ଭ୍ରୂରୁ ନଭିନ, ନ ଗୃହୁଁ ସଖୀଜନ, ସ୍ନେହମୟ ମୋହନ ହାସେ ଧନ ମୋ ଧନ । ୨ । ପୂରୁବେ ମହାବ୍ରତେ, ଶିବା ଶିବଙ୍କୁ କେତେ, ସେବିଥିଲି କି ସତେ, କି ସ୍ନେହେ ବାଳା ମତେ । ୩ । କେବଳ ମୋ ଶବେଦ, ହର ନାହିଁ ସେ ପିକ-ବାଣୀର କଉତୁକ, ଜଗତି ଗୋଟିଯାକ । ୪ । ସତେ କି ବନ୍ଧୁ ସଞ୍ଜ-ବେଳେ ମଣ୍ଡିବ କୁଞ୍ଜ, ବଣି ଅବଣୀ କଞ୍ଜ,-ନେହାର ଛବିପୁଞ୍ଜ । ୫ । ଅଷ୍ଟଦୁର୍ଗେଶ ଭାଷେ, କିଶୋରଙ୍କ ଶୋଭା ସେ, କିଶୋରୀ ଦେଖି ତୋଷେ ଭାବିଲେ ସଙ୍ଗ ଆଶେ । ୬ ।

( ୧୦୯ )

ରାଗ—ସାରଙ୍ଗ, ଆଦିତାଳ

ଚନ୍ଦନବାସି କୁନ୍ଦବରହାସି ରେ । ପଦ ।

କରୁଣାମୟୀ ବରୁଣାଳୟ ହୃଦୟା ଘନକେଶୀ ରେ, ପରାପର ତୁ ମତେ, ହେଲୁ ପରା ନିରତେ ହରାଙ୍ଘ୍ରିଭଜନରୁ କାଶୀରେ । ୧ । ଶରଣାଙ୍କିତ ଅରୁଣାମ୍ବୁଜଚରଣା ମୃଦୁଭାଷି ରେ, ଧରା ତରୁଣୀ ଶିର, ହିରା ରତନ ମତେ କରା ଅଜ ତୋ ନିଜ ଦାସୀ ରେ । ୨ । ମଦନେଷୁଜକଦନେ ଗଲି ଭାସି ରେ, ତରା ପର ଅଙ୍କରେ, କର ନିବଡ଼ତରେ ପହିରମ୍ଭରେ ରଖ ଆସି ରେ । ୩ । ଲଳନାବର ତୁଲନା ପରକଳନା ଗୁଣରାଶି ରେ, ଅନା ଅନା ଚପଳା, ନୟନାନ୍ତରେ ତୁ ମଦନାହବକୁ ଫେରମାସି ରେ । ୪ । କରି ବନ୍ଦନ ହରିଚନ୍ଦନ କହେ କୁଞ୍ଜବିଳାସି ରେ, ଲୁଷା ବରଜ ମୃଗଦୃଶା ପଡ଼ିଲେ ମୃଦୁ ମସାରନିଭ ଭୁଜପାଶୀରେ । ୫ ।

( ୧୧୦ )

ରାଗ—ସନ୍ଧର

ବିପରୀତ ରତେ ଗୋ, କିପରି ତରୁଣୀଜନେ ପ୍ରବଳନ୍ତି ସତେ ଗୋ । ପଦ ।

ଏକା ପ୍ରଦୀପରୁ ଭୟ ଜନମି ଅମିତେ ଗୋ, ଠକର ଯେ ନୋହେ ପ୍ରାଣ ପ୍ରଣୟି-ପୁରତେ ଗୋ । ୧ । ତଳପକୁ ଧରି ନେବାବେଳେ

୧୦୮ । ଟୀକା—ହରାଙ୍ଘ୍ରି—ମହାଦେବଙ୍କ ପାଦ, ମଦନେଷୁଜକଦନ—କନ୍ଦର୍ପର ବାଣରୁ ଜାତ କଷ୍ଟ; ମସାରନିଭ—ଇନ୍ଦ୍ରନୀଳମଣି ସଦୃଶ ।

ଅସମ୍ଭବେ ଗୋ, ହର ହରଣୀଙ୍କ ନେଲ୍ଲ ହୁଅଇ ପରତେ ଗୋ । ୨ । ସମ୍ଭାଳି ନୋହୁଲେହେଁ ବିଜାର କଦାଚତେ ଗୋ, ଚୁମ୍ବାଇ ତୁହାଇ ମୁଖ ଚୁମ୍ବନ୍ତି କେମନ୍ତେ ଗୋ । ୩ । ମୁଁ ହେଲେ ରହୁଲ୍ଲ ପର ତୁହାଇ ଜୀବତେ ଗୋ, ଦୁକୂଳାଡ଼ମ୍ବର କଞ୍ଚୁ ମୁକୁଳା ହୁଅନ୍ତେ ଗୋ । ୪ । କଳାପ କିଙ୍କିଣୀ ସୁର ଉଣ୍ଡିମ ବିରତେ ଗୋ, ପଳାଏ କେ ଲଜ୍ଜେ କହେ ଜଗଦ୍ଦେବ ଗୀତେ ଗୋ । ୫ ।

( ୧୧୧ )

କଳାକୁଶଳା ରେ ସତେ କହୁଲ୍ଲ କି ସଖି,
ତୋ ବିନା ମୋ ସ୍ନେହ ଅନେ ଥିଲ୍ଲ ପର ଦେଖି । ପଦ ।

ନୂତନାମ୍ବୁଦମଣ୍ଡଳଙ୍କ କି ଗୃତକାଣ୍ଡଜ ତେଜଇ, ଭୂତଳେ ସରସୀଜଳେ କି ତା ତୃଷା ଭଜଇ । ସ୍ୱର୍ଣ୍ଣଦୀକୃତଲୀଳହଂସ କି କୂପକେଳିକି ସାଜଇ, ଏ କର କି ଅନ ନାରୀ ଚରୁକେ ବାଜଇ । ୧ । ତୋ କୃପାତରୁ ମୋ ମଦୋନ୍ନତ ଶାର୍ଙ୍ଗ-ମୌଳି ନମାଇଲ୍ଲ, କୌତୁକେ ରତିବାର ପାଠବ ମୋ ପରି ଜନ ମାଇଲ୍ଲ । ମାନସେ ଅନୁମାନ ସେ ପରିହାସିନୀ ଜନ ମାଇଲ୍ଲ, ପଙ୍କଜବାଣବେ ତ କଲଙ୍କ ଜନମାଇଁଲ୍ଲ । ୨ । ତଥ୍ୟ ମାନି ଅତଥ୍ୟ ଭିଷି ତ ପୋତ ନା ମୁଖ ମାନରେ, ବାହାକୁ ପ୍ରବଳାଇ ଦେ ପରରମ୍ଭବୈଭବ ଦାନରେ । ତୋଷ ମୋ ରସନାକୁ ତୋ ମଧୁରା-ଧରାମୃତ ପାନରେ, ରସ ଧନ ମଦନମର୍ଦ୍ଦନ ବିଧାନ ରେ । ୩ । ରାସରଙ୍ଗିଣୀ ଅସ ସୁନ୍ଦର ହାସକୁନ୍ଦ ବିକାଶ ରେ, ବାସବାଗ୍ରସୁ ବାସ ଭାଗ୍ୟ ବିଳାସ ଦେ ନ ବିନାଶ ରେ । ଭାସମାନ ଜବାଧରା କି ନିରାଶରେ ନିଜ ଦାସରେ, ଅନ୍ତରାସୁ ନ ରଚ ମୋ ସୁଖାଭିଳାଷରେ । ୪ । ଅଧିକାତର ନନ୍ଦନନ୍ଦନ ଗୃତୁପାଠବ ବାଣୀରେ, ରାଧିକା ସୁଗୁଣାଧିକା ସ୍ୱକପୋଳକୁ ନିଜ ପାଣିରେ, ଘୃଡ଼ଲେ ରଖିବାର . ମାନସମୋହନ ସ୍ମିତ ଠାଣିରେ, ବନ୍ଦେ ଅଷ୍ଟଦୁର୍ଗ ନାଥ ଲୁଠି ଧରଣୀରେ । ୫ ।

( ୧୧୨ )

ରାଗ—ଜୌନପୁର ତୋଡ଼ି । ତାଳ ଆଠତାଳି

କହୁ ନାହିଁ କିରେ ପହୁଲ୍ଲ ତୋତେ ମୋ ଗୃହିଲ୍ଲ,
ମହୀମହଲା ପର ମୋ ଦୋଷ ପ୍ରାଣସହ ସହନେବୁ ବୋଲି । ପଦ ।

୧୧୧ । ଟୀକା—ଗୃତକାଣ୍ଡଜ—ଗୃତକପକ୍ଷୀ; ନମାଇଲ୍ଲ—ନୁଆଇଁଲ୍ଲ ।

ନବ ଛଇଲାରେ ନାହିଁ କି ତୋ ଦିବ୍ୟ ଅବଧାନେ ତହୁଁ ଲବ,
ପରିରମ୍ଭକାଳେ ଜଣାଇଥିଲି ଯା ଧର ତୋ ପାଣିପଲ୍ଲବ । ୧ ।
ଛୁଆଇଁ ନ ଦେଇ ଯେ ଗୁରୁ ଶବ୍ଦକୁ ନୁଆଇଁ ବସିଛୁ ମଥା,
କି ବନଜନେତ୍ରା ନ ଜାଣୁ ଏ ତ ମୋ ଜୀବନ ଯୌବନ କଥା । ୨ ।
ଚୁମ୍ବାଇ ମୋତେ ତୋ ଶ୍ରୀମୁଖ ମୋ ମୁଖ ଚୁମ୍ବୁ ପରି ଅନୁରାଗେ,
ଅନା ଥରେ ଏବେ ସଢ଼ି ଗଲିଣି ଅନାଥ ପରି ତୋ ଆଗେ । ୩ ।
ବିଧୁବଦନାରେ ଏତେକ ମୋ ଦୋଷ କିଧୁବନେ ବାରମ୍ବାର,
ବସନ ନ ରଖି ସ୍ମିତ ଅଙ୍ଗ ଚୁମ୍ବି ଦଶନଅଙ୍କ ଦେବାର । ୪ ।
ମୋହ ହୋଇଯାଏ ଚେତନାର ବନ୍ଧୁ ତୋ ସଙ୍ଗମେ ମାର ମୋଦେ,
ସାରସରସାରେ ଯୌବନ ତ ମୁଁ ଜଗି ପାରଇ କି ସ୍ମିତ ପଦେ । ୫ ।
ସାଧାରଣେ ତେବେ ଶ୍ୟାମଚନ୍ଦ୍ର ଗିରେ ସୁଧା ପିଅନ୍ତେ ଶ୍ରବଣେ,
ଅଦ୍ଭୁତ ପରି ଆଲିଙ୍ଗନ କଲେ ଅଷ୍ଟଦୁର୍ଗନାଥ ଭଣେ । ୬ ।

( ୧୧୩ )

ସୁନାଗୋରି ରେ ନାଗରୀ ଏ କି ଅଳି । ପଦ ।

ଅସିଛୁ ଅଶାରେ, ଦାସୀ ପରିବାରେ, କୁସୁମଭୂଷାରେ ଦେଇ ବୋଲ ସାଜ । ୧ । ଧୀରି ମୋର କୋଳେ ବିରାଜ ଗୋ ଲୋଳେ ଦାଅଇ ପଦ୍ମାରେ ମୁଖଚନ୍ଦ୍ର ମାଜ । ୨ । ଦୋଷ ନାହିଁ ଲେଶେ, ରୋଷବୁଦ୍ଧି ବେଶେ, ବସାଇଛୁ ତୋତେ ବନ୍ଧୁ କେଉଁ ପାଜ । ୩ । ଏଡ଼ି ମନ୍ଥ ଦମ୍ଭ, ଭିଡ଼ି ପରିରମ୍ଭ, ଦେଇ ମୋତେ ରଖ ରାଜୀବାକ୍ଷିରାଜ । ୪ । କରୀନ୍ଦ୍ରଗମନା, ସରିଲିଣି ଅନା, ମଦନପଠାଣ ବାଣରାଜ ବାଜ । ୫ । ଅଷ୍ଟଦୁର୍ଗେଶ୍ୱର, କଷ୍ଟମିଶା ଗିର, ଶୁଣି ଗଲା ମହିଳାର ମାନ ଭାଜ । ୬ ।

( ୧୧୪ )

ରସିକାମଣ୍ଡଳୀ ମଥାଙ୍ଗରୀ ରେ, ବସିଛୁ ତ ରୁଷି ବସୁନ୍ଧରୀରେ,
ଖସି ପଡ଼ିଲାଣି ଦେଲା ପରି କାଟି ଧୂର୍ତ୍ତଲତକାଟି ମନ୍ଥ ଢ଼ିରୀରେ । ପଦ ।

କହୁଛି ଗ୍ଳାନିରେ କେ କି ଧୀରୀରେ, ମହୀରେ କରିଛୁ ନଖଗିରୀରେ, ଅହିତ ମୁଁ କୁହେ, ଅଦୋଷେ ନିଗ୍ରହେ ନ ଦଣ୍ଡ ତୁ କୃପାନିଧି ପରି ରେ । ୧ । ଦୁଃଖକୁ ମୋହର ତୁ ପାସୋରି ରେ, ମୁଖଚନ୍ଦ୍ର ଠେକ ବିମ୍ବାଧରୀ ରେ, ସୁଗ-କୁସୁମାଳି, ନ ଯାଉ ମଉଳି, ବନ୍ଧୁ ତୋ ଗୁମାନ ତୀବ୍ର ଖରୀରେ । ୨ । କ୍ଷଣା ମୃଗନେତ୍ରା ନାସିହାରି ରେ, ଗଣାଗଲିଣି ମୁଁ ତୃଷାତୁରୀ ରେ, ଛଣା

ରସଝର, ଥାଉ ଥାଉ ପୁର, ତୋ ଉରଜ ବ୍ୟାଜ ସୁନାଗରୀ ରେ । ୩ । ମଦନମଦୁଆ ଇଚ୍ଛ ଛୁରୀରେ, ମୋ ଧନ ମୁଁ ଯିବ ସିନା ମରି ରେ, କଦନ ବିଧ୍ୱଂସ ନ କଲେ ତୁ ହଂସବିଜୟିଗମନା ଶୋଭାକାରୀ ରେ । ୪ । ହରି ବନଭର ମନୋହରୀ ରେ, ପୁରୀରେ ରୋଷକୁ ହସି ଜରୀରେ, ହାରିଲେ କଷ୍ଟ ସିନ୍ଧୁ ତରିବା ଅଷ୍ଟାଦୁର୍ଗ ସ୍ୱର୍ଗରାଜା ମନ ପୁରୀ ରେ । ୫ ।

( ୧୧୫ )

ରୁଷା ବରଜ ମୃଦୁ କୃଶାଙ୍ଗୀ ଶିଶୁମୃଗଦୃଶାଟି ବିଚକିଳ ହସାଟି ରେ ।
ଭସାଇ ନ ଦିଅ ସରସ ପ୍ରବର ଅଭିରସା କଲେ ମୋ ଶୁଭ ଦଶାଟି ରେ । ପଦ ।
ପରିଭବକୁ ମୋତେ ଖରିବ ନ କର ରେ ଉରିବରମୁଣ୍ଡି ମୁଁ ତୋ ଶାଣ୍ଠୀରେ, ଧରିମାଣିକ୍ୟଝରି ମଦନ କରେ ମରିଇ ହେବୁ ଲୋକହସାଟି ରେ । ୧ । କ୍ଷମାଜଳଧି ଭଉଁ ଜମାଇ ଉରଜ ଭରମାଚଳରେ ନାଅ ନାଶାଟି ରେ, ଗୁମାନକୁ ନୁହଇ ସମାନ ମୁଁ ତୋହର ତମାଲ କଶଳୟ କେଶାଟି ରେ । ୨ । ମନା ନ କର ସୁନୟନା ସଦୟ ରସ ଅନାଜଣି କ ବର-ଯୋଷାଟି ରେ, ଅନାଥ ପରି ଦୀନମନା ହେଉଛୁ ଧନ ଅନାଇ ନତମୁଖି ବସାଟି ରେ । ୩ । ଅକାରଣେ ସନ୍ଦୁ୍ୟତ, ଚକା ଲପନ ପୋତ, ନ କାନ୍ଦ ବସୁମତୀ-ଭୂଷାଟି ରେ, ଜକାଜକ ଚୁମ୍ବନ, ସକାମେ ରଣ ଧନ, ପକାଅ ହର ମୋର ତୃଷାଟି ରେ । ୪ । ରସାଅ ରସରେ ତ ରସା ହେଉଛୁ ମଧୁରସା ସଦୃଶ ରସକଷାଟି ରେ, ରସାତଳଙ୍କ ହରିଚନ୍ଦନ ଦେବ ଘୋରି ତୋ ଚରଣ ଶରଣପଶାଟି ରେ । ୫ ।

( ୧୧୬ )

ମନ ବିନା, ତ ନବୀନା, ଅନ ସ୍ଥଳେ ନ ଖେଳିଲ ରେ । ପଦ ।
ମଞ୍ଜୀର ମଞ୍ଜୁ ଶିଞ୍ଜିତ କାଳେ ଥରୁଥିଲ ଝରି କ ଚଞ୍ଚଳେ
ମନମଥ, ରଣରଥ, ପରି ସିନା ସେ ଚଳିଲ ରେ । ୧ ।
କ୍ରୁଦ୍ଧମୋତ ଝୁମା କମ୍ପୁଥିଲ, ତାକୁ ନେହାଅିଲ ଝାମ୍ପୁଥିଲ
ଧରିଚକ, ମୋତେ ଶଙ୍କ —ରାଜଧାମାରୁ ବଳିଲ ରେ । ୨ ।
ମାନସରେ କି ସଙ୍କଳପିଲ, ହସି ଅଳକ କି ଅଳପିଲ
ମୋ ଅଙ୍ଗକୁ, ଶଅଙ୍ଗକୁ, ପରି କଟାକ୍ଷ ଗୃହିଲ ରେ । ୩ ।

---

୧୧୫ । ଟୀକା—ବିଚକିଳ—ମଲ୍ଲୀ ।

୧୧୬ । ଟୀକା—ଶଅଙ୍ଗ—ଶର, ବାଣ ।

ଜଗତ ଯୁବତୀ ତମୋଗଣ୍ଡୀ, ଜନନୟନମଣ୍ଡନ ଶୋଭୀ
କିଶୋରୀ ସେ, କି ସୌରଭେ, ହେଲେ ସ୍ମରଣ ଠେଲିଲି ମା । ୪ ।
ଅଧରଶ ସେ ସୁନ୍ଦରୀଙ୍କର, ତା ଦରଶନ ଲଭରୁ ମୋର
ମରମରେ, ମାର ମାରେ, ତହୁଁ ହୃଦୟ ଜଳିଲି ରେ । ୫ ।
ଜଗଦ୍ଦେବ ବୋଲେ ଶ୍ୟାମଚିତ୍ତ, ଜାଣି ଜଣାଇଲେ କେହି ମିତ
ତୁମ୍ଭ କାମ, ସ୍ମରଦ୍ରୁମ, କୃଷ୍ଣ ଅବଶ୍ୟ ଫଳିଲି ରେ । ୬ ।

( ୧୧୭ )

ରାଗ—ମାଳବ । ତାଳ ତ୍ରିପୁଟ

ପାହି ପାହିଅ । ପାହି ବ୍ରଜପୁର ଯୁବପୁରନ୍ଦର, ପାହି କରଧୃତ-ମନ୍ଦର, ପାହି କୃତ ଅଭିସାର କନ୍ଦର, ପାହି ନବଘନସୁନ୍ଦର । ୧ । ମତ୍ତବାରଣ-ଗର୍ବନାଶନ, ଗମନ ଜନମନରଞ୍ଜନ, ମୀନକେତନ ଝଂପନକେତନ, ଯାମଳାର୍ଜ୍ଜୁନଭଞ୍ଜନ । ୨ । ନନ୍ଦନନ୍ଦନ, ଜଗତବନ୍ଦନ, ମୁରଲୀଧର ବ୍ରଜନାଗର, କମଳଲୋଚନ, ଶୋକନାଶନ, ସକଳ ଗୁଣଗଣ ସାଗର । ୩ । କୋଟୀଶାରଦ-ଚନ୍ଦ୍ରମାମୁଦ, ବନଜରୁଚିମୁଖଶ୍ୟାମଳ, ଗଣ୍ଡସୁଶୋଭିତ ରତନସୁଜଡ଼ିତ, ମକରସୁରୁଚିର କୁଣ୍ଡଳ । ୪ । ନାଗରୀଜନ, ଚିତ୍ତମୋହନ, ବସନରୁଚିଜିତ କୁନ୍ଦନ, ନିତ୍ୟ ନବୀନ ଶରଣ ତବ ଦୀନବନ୍ଧୁ ରାଜ ହରିଚନ୍ଦନ । ୫ ।

( ୧୧୮ )

ରାଗ—ମୁଖାରୀ, ଅଠତାଳ

କୁନ୍ଦରଦନା ରସବତୀ, ରସବତୀ ରମା ରସବତୀ । ପଦ ।

ଗଲି ନାଣି ତାହା ସଙ୍ଗତେ ମାତ୍ତ, ଯେତେ ବନେ ହେଲା ସୁରତ, ରତରେ ମାତ ନ ହେଜାଲି ରାତ, ତାଳୁଥିଲି ତାର ନେବ ସମ୍ପତ୍ତି, ଭିଡ଼ିଲି ଦେଇ ଘାତକ ଘାତ । ୧ । ନାଚ କରୁଥିଲି ନାୟିକାମଣି, ଫିଟି ଚରଣେ ଲୋଟୁଥିଲି ବେଣୀ, ବାଜୁଥିଲି ତାର କଟି କିଙ୍କିଣୀ, ନେଉଥିଲି ମୋର ଚିତ୍ତକୁ କିଣି, ଭସିଲି ହୁଁ ହୁଁ ଶବଦବାଣୀ । ୨ । କରଜେ କରଜ ଗୁଳନ୍ତେ ନେଇ, ଚମକ ଇଷି ବୋଲଣ ଭାଷଇ, କହୁଥାଇ କେତେ ବିନୟ ହୋଇ, ଏଥକୁ ଆଜ ମୁହିଁ ନ ପାରଇ, ବୋଲଇ ଅଜ ପଢ଼ିଲି କାହିଁ । ୩ । ଯେତେବେଳ ଅନ୍ତେ ଜୀବଜୀବନ, ଅରମ୍ଭିଲ ବିପରୀତ ବନ୍ଧନ, ତେତେବେଳେ ଯାହା ହେଲା ମୋ ମନ, ତହିଁକି କେବଳ ସାକ୍ଷୀ

ମଦନ, ଗଣି ଦେଉଥିଲା ଚୁମ୍ବନ ଦାନ । ୪ । ଅଷ୍ଟଦୁର୍ଗପତ ବୋଲେ ଏ ରସ, ଏହା ଅଙ୍କା ମୋତେ ହେବ ଗିରସ, ଖଟିଥିବ ଅନବରତ ପାଶ, ବସି ଗୁହିଁଥିବ ମୁଖସାରସ, ଘେନି ବଞ୍ଚୁଥିବ, ଗ୍ରନିଦବସ । ୫ ।

( ୧୧୯ )

ରାଗ—ଦକ୍ଷିଣ ଗୁର୍ଜ୍ଜରୀ

ଶୁଣ ଶୁଣ ରେ ଜୀବର ଧନ ତୋ କରସାରଣୀ ରେ,
ତୁ ସିନା ଏକା ମୋ ସ୍ମରଶରକୁ ବାରଣୀ ରେ । ପଦ ।

ତୁ ଗୁହୁଁ ଗୁହୁଁ ମଦନଶରେ ନାଶ ଗଲି ରେ, ନ ଥିଲା ମୋ ମନେ ଏହା କରିବୁ ତୁ ବୋଲି ରେ, ମୋ ଶପଥଟି ରେ ରାମାବର, କରିଥିଲୁ କଣ୍ଠ-ରତନହାର, ଏବେ କେଉଁ ବୁଦ୍ଧି ଶୁଣି କାହାର, ଘେନିଲୁ ନାହିଁ ତୁ ସାର ଅସାର । ୧ । ଲଗାଇଥିଲେହେଁ ବିଷବୃକ୍ଷ ବିମ୍ବାଧର ରେ, କେତେବେଳେ ପ୍ରିୟେ ତାକୁ ବିନାଶ ନ କର ରେ, ଜାଣି ଜାଣି ତୁ ରେ ନବ ବନିତା, କିଛି ମନେ ନ କଲୁ ବିବେକତା, ସୁଖେ ରୋପଣ କରି ପ୍ରୀତିଲତା, ନିଜ କରେ ଉପାଡ଼ିଲୁ ଏବେ ତା । ୨ । କ୍ରମେ କ୍ରମେ ପ୍ରେମ ଦ୍ରୁମ ଘର ବଢ଼ାଇଲୁ ରେ, କି ବିଗୁରି ଏବେ ବିଳୁ ମୂଳ କାଟି ଦେଲୁ ରେ, ଦରିଦ୍ରକୁ ଦେଇ ଇନ୍ଦ୍ର ସମ୍ପତ୍ତି, ପୁଣି ନେବାକୁ ବଳାଇଲୁ ମତି, ପ୍ରୀତି ବିଚ୍ଛେଦରୁ ନାହିଁ ବିପତ୍ତି, ମରଣହିଁ ସିନା ପରମ ଗତି । ୩ । ମନ ନେଣ କର୍ଣ୍ଣ ଆଦି ଯେତେ ମୋ ଥିଲା ରେ, ମୋ କଥା ସେ ନ ଶୁଣି ତ ତୋତେ ଅଶ୍ରା-କଲା ରେ, ଏକା ମାତ୍ର ଦେହେ ଅଛି ଜୀବନ, ତୋର ସଙ୍ଗ ବିହୁନେ ଅତି ଖିନ୍ନ, ସେ ଏବେ ରହି ନ ପାରେ ବହନ, ଯିବାକୁ କରୁଛି କଣ୍ଠେ ପ୍ରସ୍ଥାନ । ୪ । ତୋ ନିମିଷ ଅନ୍ତର ଜଗତ ଶୂନ୍ୟ ମୋତେ ରେ, ବାଲ୍ୟତ କାଳରୁ ପ୍ରୀତ ଭାଙ୍ଗିବ କେମନ୍ତେ ରେ, ଏବେ କାହାଠାରୁ କି ବୁଦ୍ଧି ପାଇ, ସଦୟ ହୃଦୟ ନିର୍ଦ୍ଦୟ ହୋଇ, ମଦନ ନଦୀସ୍ରୋତ ମଧ୍ୟେ ନେଇ, କରେ କର ଧରି ଦେଲୁ ଭସାଇ । ୫ । ଶରଣଜନକୁ ନାଶି ଲଭିବୁ କି ଯଶ ରେ, ଦୋଷ ଥିଲେ କ୍ଷମା କର ମୁଁ ତୋ କଣା ଦାସ ରେ, ସେ ନବନାଗର ବଚନ ଶୁଣି, ତେଜି ମନୁ ମାନ ରମଣୀମଣି, ସୁପ୍ରେମରେ କଲା ଭଙ୍ଗୀ-ଗୁହାଣି, ଦୀନବନ୍ଧୁ ହରିଚନ୍ଦନ ଭଣି । ୬ ।

( ୧୨୦ )

ରାଗ—ତୋଡ଼ି ପରଜ

ରେ ସଙ୍ଗାତ, ଏତିକି ମୋ ସଙ୍କଳପ

କିଶୋର କିଶୋରୀ ଅନାଇବେ ଧରି ଅଧରେ ହାସ ଅଳପ । ପଦ ।

ମୁଁ କୋଟି କଳପ କରି ନାହିଁ ତପ, ଏ ଭରସା ହେବ କାହୁଁ, ଭଡ଼ିବ ସୁନ୍ଦରତର ପୁରନ୍ଦର ମଣିମାଳା ରମ୍ୟ ବାହୁ । ୧ । ଦେଇ ନାହିଁ ସର ସାଟ ପାଟବାର ତା ମଧୁରସା ହବନେ, ଚୁମ୍ବିବି ତାହାଙ୍କ ମୁଖ ହରଣାଙ୍କ ନିଜ ନିକୁଞ୍ଜଭୁବନେ । ୨ । ଶଙ୍କର ଗିରିଜା ପଙ୍କଜାଙ୍ଘ୍ରି ପୂଜା କରି ନାହିଁ ଗଙ୍ଗାକୂଳେ, ମରକତ ମାରି ମୂରତି ସୁନ୍ଦର ଖେଳିବ କେହୁ ମୋ କୋଳେ । ୩ । ଖଞ୍ଜି ନାହିଁ ମଣି ମାଳିକାଧରଣୀସୁରସୁନ୍ଦରୀଙ୍କ ଗଳେ, କିପାଁ କଞ୍ଜନେତ୍ର ମୃଗମଦଚିତ୍ର ହେବ ମୋ କୁଚ ଯୁଗଳେ । ୪ । ନ ଥିବାରୁ ଭାଗ୍ୟ ନୁହଇ ତ ଯୋଗ୍ୟ ଲୋଡ଼ିବି କି ଆନ କଥା, ମୋହନ ପଙ୍କଜ ପଦଚିହ୍ନ ରଜ ଚୁମ୍ବୁଥାଉ ମୋର ମଥା । ୫ । ବଢ଼ଭି ଡିନାରୀ ପାଶେ କରିଥିବି ରଜନୀ ବାସର ସ୍ଥାନ, ଚରଣମଣ୍ଡନ ମୁରଲିକା ସ୍ୱନସୁଧା ପିଉଥିବ କାନ । ୬ । କେଉଁରୂପେ ହେଲେ, ସେ କୃପା ନୋହିଲେ ତମାଳେ ଦେବି ଦଉଡ଼ି, ଜଳନ୍ଧର କ୍ଷିତିଚକ୍ରବଳାରାତି କହଇ ସନ୍ଦେହ ଛାଡ଼ି ରେ ।

( ୧୨୧ )

ରାଗ—ଚନ୍ଦ୍ରଭୈରବ

ସଜନି ଅଜ ରଜନୀରେ ନଇଲେ ବ୍ରଜମୋହନ

ମନ କେତେ ମୋହିଲ ରେ । ପଦ ।

ମୋ ଦେହେ ଦେଇ କର,-କମଳ ବାରମ୍ବାର ନିଯୁମ କରି କେତେ କହିଲ ରେ; କପଟ ମତି କରି, ସାହସେ ସେ କପଟ ଧରମ ତାକୁ ସହି ସହିଲ ରେ । ୧ । ଲଗାଇ ପ୍ରେମରସ, ମଧୁ କନ୍ଦାଇ ବଶ, ନୟନୁ ଅଶ୍ରୁ ବରଷାଇଲ ରେ; ଭଜ ମୁଁ ଜାଣି ଦବା, କି ଅପରାଧୁ ଅବା ମୋଠାରେ ଅବଧାନ ନୋହିଲ ରେ । ୨ । ଭାଙ୍ଗି ରଖିଛୁ ପାନ, କର୍ପୂରି ଶ୍ରୀ ଚନ୍ଦନ, ଏବେ ତ ବେଶ ବାସି ହୋଇଲ ରେ; କାହା ସୁରତେ ମାତି, ଅସି ହେଲ

---

୧୨୦ । ଟୀକା— ମଧୁରସା—ମିଷ୍ଟ ଖାଦ୍ୟବିଶେଷ, ହବନ—ଯଜ୍ଞ, ବଢ଼ଭି ଡିନାରୀ—କୋଠାଘର ଝରକା, ବଳାରାତି—ଇନ୍ଦ୍ର ।

ପାହାନ୍ତି, କୁକ୍କୁଟ କୁକୁରାବେ ରଟିଲା ରେ । ୩ । ଏ ପାପ କାମ ମୋତେ, ଦଣ୍ଡ ଦେଲଣି ଯେତେ, ପରାଣରୁଲେ ପିଣ୍ଡ ଦାହିଲା ରେ; କବି ମିହିର ଚିନ୍ତା, ଅହା ବ୍ରଜବନିତା, କପାଳେ ବାହି ଏହା ଲହିଲା ରେ । ୪ ।

( ୧୨୨ )

ରାଗ—ହୁସେନ୍, ଅଦ୍ଧତାଳ

ବରନାରି ! ଗୁମାନ ମନେ ଧର ନା ରେ । ପଦ ।

ଅମ୍ବୁଜ ନେତ୍ର ସାଞ୍ଜନ, ଅମ୍ବୁ ନ ବରଷ ଧନ, କମ୍ବୁ କଣ୍ଠି ଜାମ୍ବୁନଦ ବରନା ରେ । ୧ । ନ ଖେଳ ମୋ କୋଳେ ରସେ, ସଖେଦେ ମାନସରୋଷେ, ନଖେ ଧରା ଖିରବାର କର ନା ରେ । ୨ । କର ବଦନେ ପ୍ରକାଶ, ପରବା ଚନ୍ଦ୍ରିକା ହାସ, ଗରବ ଗିରିଙ୍କ ମୋର ଚୁର ନା ରେ । ୩ । କୀରାଧିପଭାଷୀ ଅସ, ବାରିକୁ କୁଞ୍ଜନିବାସ, ଧୀରା ମୋରେ ନିରାଶ ଅଚର ନା ରେ । ୪ । ଅନ୍ତର ରଙ୍ଗ ଭିଡ଼ିବ, ଯନ୍ତର ହୋଇ ଜଡ଼ିବ, ଦନ୍ତର ବ୍ରଣ ନୋହିବ ଡର ନା ରେ । ୫ । ଗାଳି ପଛେ ଦିଅ ପଦେ, ମାଳି ହୁଅ ତୁ ମୋ ହୃଦେ, କାଳନ୍ଦୀରେ ପଡ଼ିବାର କର ନା ରେ । ୬ । ରାଧାକୃଷ୍ଣ ପଦ ଭାବି, କରିଚଲେ କବିରବି, ନରନାଥ ଜଗଦେବଙ୍କର ନାଁ ରେ । ୭ ।

( ୧୨୩ )

ଅରଜିବି ପଛେ ଜନ ଅପଖ୍ୟାତିକି ଗୋ,
ବରଜିବି କେହି ଘନଶ୍ୟାମ ପ୍ରୀତିକି ଗୋ । ଘୋଷା ।

ତେଜି ଜାଇଦଳ ଶେଯ, ଘନସାର ମଳୟଜ, କରିବ କେ ରାଜୀବଦଳକୁ ଗତିକି ଗୋ । ୧ । ତା ସୁନ୍ଦର ମନ୍ଦ ହାସ, ରୁଚିର ଭ୍ରୂରୁବିଳାସ, ସ୍ମରି ଅଡ଼ିବ କେ ଫୁଲବାଣେ ସ୍ମୃତିକି ଗୋ । ୨ । ପଦକୁ ପୁରନ୍ଦରର, କରିଦେବି କର ସ୍ମର, ନିତି ନିତି ତା ସୁରତେ ମାତିକି ଗୋ । ୩ । ତେଜିଣ କୋଣ ଗୃହାଣି, ପୀୟୂଷ ମଧୁର ବାଣୀ, ସହିବ କେ କାମରାଜ ଝୁଲ କାତିକି ଗୋ । ୪ । କରି ଗାଢ଼େ ପରରମ୍ଭ, ତା ଅଧର ପକ୍ୱ ବିମ୍ବ, ପିଇଥିବ ପାହିଯିବା ଯାଏ ରାତିକି ଗୋ । ୫ । ବୋଲେ ବସୁଦୁର୍ଗପତି, ଧ୍ୟାନ କର ତା ମୂରତି, ନାମ ଭଜନରେ ହେବ ଯତି କି ଗୋ । ୬ ।

( ୧୨୪ )

କେହି ସର କି, ପ୍ରଭୁ ପଣେ ମାଳାଧ୍ର କେଶରୀ କି,
ଯା ଠାରେ ପୂରିଛୁ ଦୁଃଖୀଜନଦୟା ନଖଠାରୁ ଶିଖା ସର କି । ପଦ ।

କି କହିବା ଅଜ ତାଙ୍କ ଶ୍ରୀଚରଣ ଅନୁସରଣ ଗୃହସ୍ଥଙ୍କ, ବଜାଜ-ଛତ୍ର ବିଭୀଷଣ ଅଗରେ ଜଗତ ବିଜୟୀ ତୁଷ୍ଟଙ୍କ । ୧ । ସାନକୁ ବଡ଼ କରିବାରେ ଉଡ଼ାଇଅଛନ୍ତି ଧ୍ୱଜ ମଞ୍ଜସ୍ଥଙ୍କ, ଦେଖ ନାଗ ନର ଗନ୍ଧର୍ବ କିନ୍ନର ଉପରେ ଧ୍ରୁବ ନଗସ୍ଥଙ୍କ । ୨ । କି କହିବ ତାଙ୍କ ପୀରତି କରିବା କୀରତିଚନ୍ଦ୍ର ମାଧୁସ୍ଥଙ୍କ, ରଙ୍କ ବିପ୍ରପାଦ ଧୁଅଇ ଯା ଦେଲେ ରମା-କରେ ରତ୍ନହଂସଙ୍କ । ୩ । କ୍ଷମାସାଗର ଯେ ତାହାଙ୍କୁ ଭଜିଲେ କାଳ କିଙ୍କରଙ୍କୁ ଡରିକି, ବୋଲେ କବିସୂର୍ଯ୍ୟ ଆନ ଉପାୟକୁ ପେଲିଦିଅ ଗିରି-ଦସ୍ଥଙ୍କ । ୪ ।

( ୧୨୫ )

ରାଗ—ଇମନ କଲ୍ୟାଣ, ଅଠତାଳି

କାଳିନ୍ଦୀକୂଳକୁ ମୋର ସଙ୍ଗାଳି ନ ଯା ରେ । ପଦ ।

ଯା ଶିରେ ଚନ୍ଦ୍ରିକାଚୂଳ, ରଙ୍ଗସ୍ଥଳ ନୀପମୂଳ, ତା ନୟନ ଅଞ୍ଚଳଟି ଜ୍ଞାନହଜା ରେ । ୧ । ନବ ଯୁବତୀଙ୍କ ଜାତି, ନେବ ବୋଲି କେତେ ଜାତି, ସୁଅଗ ଜାଣଇ ସେ ନାହିଁଅ ରଜା ରେ । ୨ । ଜାମ୍ବୁନଦଘଟେ ବାରି, ଅଣନ୍ତୁ ତୋ ପରିବାରି, କୁମ୍ଭ ଉପକଣ୍ଠେ ଶ୍ରୀ ଅଙ୍ଗକୁ ମଜ୍ଜା ରେ । ୩ । ଏହି ପୁରେ ତୋ କାମନା, ଭରିତ ହୋଇବ ସିନା, ଶ୍ୟାମ ଅଙ୍ଗସଙ୍ଗ ଡର ଥିଲେ ମଜ୍ଜା ରେ । ୪ । ତା ବେଣୁନିସ୍ୱନ ଦୂରୁ, ଜନମାଉଛି ଦେହରୁ, ନୀପଫୁଲ ପରିରେ ପୁଲକଗଜା ରେ । ୫ । ନ ଛପାଅ ମନ ଥିଲେ, ବନ୍ଦ କବିରବି ବୋଲେ, ସୁଖେ ବ୍ରଜମଣ୍ଡଳେ ଇନ୍ଦ୍ରିମା ବଜା ରେ । ୬ ।

( ୧୨୬ )

ରାଗ—କେଦାର । ତାଳ ରୂପକ

କହ ରେ ଜୀବସଙ୍ଗିନି ! ତୋ ମନ ଘନଶ୍ୟାମରସେ ବଳିଲି କି ! ପଦେ ପଦେ ସୁଖ ଦେବା ପ୍ରେମ ଲେଖ ମିଳିଲି କି, ବାଞ୍ଛା ଫଳିଲି କି । ପଦ ।

ତରଣିଜାକୂଳ, ନୀପମୂଳସ୍ଥଳ, କୁତୂହଳରୋଳ, ଏ ତୋ ନେତ୍ରାଞ୍ଚଳ, ମୋହନ ବିଗହେ, ଅକପଟ ସ୍ନେହେ, ଚଳିଲି କି ଛଳ ଚଳିଲି କି । ୧ । ପୁରବଦଳନାରି ଅମଳେ ତୁ ଘରି ହେଉଥିଲୁ ନାରୀମଣି ମନୋହାରୀ, ଧୈର୍ଯ୍ୟ ସରୋଜ ବନମାଳ ଗଜ ଦଳିଲି କି ତହୁଁ ଲୁଳିଲି କି । ୨ । ଅବସର ଦଣ୍ଡକରେ ସେ ଶିଖଣ୍ଡ-ମଣ୍ଡନ ଅଖଣ୍ଡ ନୟନାନ୍ତ ଦଣ୍ଡ, ତୋ

ମରକ୍ତ ବନ୍ଦ ବସୁନ୍ଧରା ଚନ୍ଦ ନାଲାଲ ହିଁ ସବୁ କଲାଲ କି । ୩ । ଏ କି ଚମତ୍କାର, ସେ ତ ସୁକୁମାର, ଶୃଙ୍ଗାର ମଙ୍ଗଳମୂରତ କିଶୋର, ତାହା ମନ ମ୍ଲାନ ତୋ କଠିନ ସ୍ତନ ଗଲାଲ କି ଏଥିଁ ବଲାଲ କି । ୪ । ରଜତେ ରଜତ ଶାତକୁମ୍ଭେ ଶାତକୁମ୍ଭ ସିନା ଫଳେ ଜଗତେ ବିଦିତ, ଜମ୍ବୁନଦ-ସାର ତଳରେ ମସାର ଫଳାଲ କି ତାପ ଟଳାଲ କି । ୫ । ଜଗଦେବ ବାଲ୍ୟକେଶ ବସୁନ୍ଧରା,-ବଳୟ ଅମରପତି ବୋଲେ ଶ୍ରିଘ୍ର, ଖେଦ-ତମିରକୁ ମୁଦ କଉମୁଦୀ ଗିଳାଲ କି କାଳ ମିଳାଲ କି । ୬ ।

( ୧୨୭ )

ରାଗ—ତୋଡ଼ି, ଅଠତାଳ

ଗୃହିଁଛୁ ମାନ ଶିଖଣ୍ଡ ଲୋ, ସଖି ମୁଁ, ତୁଚ୍ଛ ଅପବାଦେ ଚମକ ପଡୁଛୁ ଏ ବ୍ରଜ ବଜାର ଦାଣ୍ଡ ଲୋ । ଚକ୍ରକଣ-ଶ୍ୟାମଳଚନ୍ଦ୍ର ନିକଟକୁ ଗୃଳି ନାହିଁଟି ପହଣ୍ଡ ଲୋ, ସଖୀ ମୁଁ । ପଦ ।

ଚପରାସିଚମ୍ଭ ପେଷି କଂସରାୟ ନିର୍ଦ୍ଦୋଷେ ନେବ କି ଦଣ୍ଡ ଲୋ । ୧ । ଚଳୁଅ ଯେ ବଡ଼ ମୋହର ଗଳଡ଼ ଶୁଣିଲେ ହେବ ପ୍ରଚଣ୍ଡ ଲୋ । ୨ । ସଖୀ ଥିଲେ ମୋର ପରଶନ୍ତେ ନୀର ତାଙ୍କ ଯୋଗୁଁ ଲଣ୍ଡଭଣ୍ଡ ଲୋ । ୩ । ଗ୍ରେହ ଯେବେ କରଥିଲ ମୁଁ ତାଙ୍କର ଚୁମ୍ବିଛୁ କି ଗୃରୁ ଗଣ୍ଡ ଲୋ । ୪ । ଅଷ୍ଟବର୍ଗ ଭଣି ଶୁଣ ଠାକୁରାଣୀ ଶ୍ୟାମ ପଦକଞ୍ଜେ ମଣ୍ଡ ଲୋ । ୫ ।

( ୧୨୮ )

ରାଗ—କାମୋଦୀ । ତାଳ ସରମାନ୍

କେଉଁ କାରଣ୍ ମୁଁ ତୋ ସେବାକୁ ଗୋ,
ମୋଠାରେ ଅବଧାନ ହେବାକୁ ଗୋ । ପଦ ।

ତୋ ଗୃରୁମୁଖ ମାଠି, ଯେଣୁ ତଳକ କାଠି, ଭ୍ରଳର ଭ୍ରଲେ ନିବେଶିବାକୁ ଗୋ, ଲାଗଇ ମନେ ଦୁଃଖ, କୋଟିସୁଧାମୟୂଖ ଦଳିବା ଫଳ ଛପି ଯିବାକୁ ଗୋ । ୧ । ମନୋହର କବରୀ, ସାଜ ପାରଇ ଗୋର ଜାଣି ତୋ ଚଣ୍ଡି ରସାଇବାକୁ ଗୋ; ଭରସା ନୋହେ ମୋର ସ୍ଥିର ନୀଲସ୍ତମର ଚଉଁର କେଶେ ମିଶାଇବାକୁ ଗୋ । ୨ । ତୋ ପୟୋଧର-

---

୧୨୬ । ଟୀକା—ପୁରନ୍ଦଲନାଥଅମଳେ—କନ୍ଦର୍ପଖେଳରେ, ନଳଗ୍ର—ନଳଦ୍ୱାର ମାପିଲ, ମସାର—ଇନ୍ଦ୍ରନୀଳମଣି, ଜମ୍ବୁନଦସାର—ସୁବର୍ଣ୍ଣ, ଶାତକୁମ୍ଭ—ସୁବର୍ଣ୍ଣ ।

'ହେମ ଦାମ ଛଡ଼ା କୁସୁମ ପର ମୋ ଗଳେ ଅଭୂଷିବାକୁ ଗୋ; ମରଣୁଁ ଲଜ ବଳେ ଗୃହୁଁ ଗୃହୁଁ ତ କଳେବରକୁ ଅଳଙ୍କାର ଦେବାକୁ ଗୋ । ୩ । ସାର ସକଳ ବେଶ ଦେଖାନ୍ତି ଆଦରଣ ହେବା ନୋହିବା ପଗ୍ରରିବାକୁ ଗୋ; କବି ସିହ୍ନର କହେ, ସତେ ଧନେ ତୋ ଦେହେ କେବଳ ଅନୁଗ୍ରହ ଥିବାକୁ ଗୋ । ୪ ।

( ୧୨୯ )

ରାଗ—ଭୈରବୀ, ଅଦତାଳ

ଗଲା ତ ଅନୁରାଗ ଜଣା ଯା ଯା ମୋହନ ଯା । ପଦ ।

ଯା ପଦ ଅଲକ୍ତକ ଶିଖଣ୍ଡ, ମଣ୍ଡି ସୁରତସୁଖ ଅଖଣ୍ଡ, ଦେଇଛୁ ସେ ବରତୁଲ ଭରଜାକୁ ତାକୁ ଭଜ ଯା । ୧ । ଯା ସଙ୍ଗେ ମାତ ରଜନୀଯାକ, ସେହି ରସକୁଶଳାକୁ ଡାକ, ମୋ ନାମରେ ବୋଲି ନୀଳଯୁ ମୁରଲୀ ବାଜା ନ ବଜା । ୨ । ଆଲି ନ ବାହ ବଂଶୀକିଶୋର, ଗାଲି ନ ଶୁଣ ବଦନୁ ମୋର, ଚରଣ ନ ଧର ତୁ ମଧୁନଗର ରାଜା ଭଣଜ୍ଞା । ୩ । ଭୁପରି କଳନ୍ତର ମହୀନ୍ଦ୍ର, ନନ୍ଦନାଳୟ ଗଗନଚନ୍ଦ୍ର, ବରଜ ସୁନୟ, କରୁ ଯେ ଅନୟ, ନାହିଁ କ ଲଜ୍ଜା । ୪ ।

( ୧୩୦ )

ରାଗ—ଅହାରି, ଅଠତାଳ

ମନ୍ଦମଳୟାନିଳ ବହିଲା, ଚନ୍ଦ୍ରବଦନା ଦୂରେ ରହିଲା । ପଦ ।

ଶୀଇ ନୂଆ ଚୂତ ବକୁଳକୁଳ, କଳକଣ୍ଠ କରେ ଯା କଳକଳ, କରି କଳକଳ ପ୍ରବାସୀ ବିକଳ କରିବ ବୋଲି ବୋଇଲା । ୧ । ଅଙ୍କଜଗତରେ ପଙ୍କଜମୁଖୀ, ପଛୁଡ଼ିଲେ ମୋର ହୁଏ ଯେ ସୁଖୀ, ମୃଦୁ ସରସିଜ କୁଶଳୟ ଶେଯ ଧନକୁ ଯୋଗ୍ୟ ହୋଇଲା । ୨ । ଅହା ତାହା ସାହା ବାରେ ମୋତେ, ନୟନରୁ ଚମ୍ପକମାଳା କହୁଁତେ, ମନମଥବଶେ ଏବେ ସେ ଅବଶେ ଦୁଃସହ ଦୁଃଖ ସହିଲା । ୩ । ପଲ୍ଲବକୁ ଦଣ୍ଡଧର ରସନା, ବଲ୍ଲୀରୁ କିଶୋରୀ ମଣିବ ସିନା, କଂଶୁକସ୍ତବକ ଅନଳଯାବକ ତୁଲ୍ୟ ତ ଦେହ ଦହିଲା । ୪ । ଭଣିଲେ ଅଷ୍ଟାଦୁର୍ଗ ପୁରୁହୂତ, ଦୁଃଖ ତେଜିଲେ ବ୍ରଜରାଜସୁତ, ମୃଦୁଳ କଦଳୀ ବଳେ ଦେଲେ ଦଳି ହେବାର ବାଧ ବହିଲା । ୫ ।

---

୧୩୦ । ଟୀକା—କଦଳୀ—କୂଇଁ କଦଳୀ, ପୁରୁହୂତ—ଇନ୍ଦ୍ର, ଦଣ୍ଡଧର—ଯମ, ଯାବକ—ଅଳତା ।

( ୧୩୧ )

ରାଗ—ତୋଡ଼ି ପରଜ

ରେ ରମଣୀ ଗୁରୁଜନେ ଯେବେ ଭୀତ,
ପୂର୍ବରୁ ନୀଳ ପରବଚନ୍ଦ୍ରରେ ବହଲ କାହିଁକି ପ୍ରୀତି । ପଦ ।

ସିନ୍ଧୁ ତ ଗଭୀର ଅଛନ୍ତି କୁମ୍ଭୀର ଅହି ମହାମୀନଶ୍ରେଣୀ, ତହୁଁ ତ ରତନ ଲଭନ୍ତି ଯତନ କରି କେହି କେହି ପୁଣି ରେ । ୧ । ମଳୟରେ ଅହିବଳୟ ତ ରହିଥିବାର ସକଳ ଜାଣି, କାହିଁକି ପଣ୍ଡିତେ ବସୁଥାନ୍ତି ସତେ ଗନ୍ଧସାରସାରେ ପୁଣି ରେ । ୨ । କଣ୍ଟକକନକଚୟ ସକାଶରୁ ଭୟ ଲଭେ ଯେବେ ଶିଳୀମୁଖୀ, କେତଜାଏ ସେ କି ବଗରେ କେତକୀ ଲତିକାର ପାଖ ପାଖ ରେ । ୩ । ହରିଚନ୍ଦଧାରା ପରାକ୍ରମୁଁ ପରା ହେଲେ ହେଲେ ଖଣ୍ଡ ଖଣ୍ଡ, ଛାଡ଼ନ୍ତି କି କହ ସୁଧାରୁ ଆଗ୍ରହ ବଧୂନ୍ତୁଦ ଗ୍ରହ ତୁଣ୍ଡ ରେ । ୪ । ମୋହନ ବିଷମ ପଦାର୍ଥରେ ପ୍ରେମ ନ ଛୁଅଁିବାର ଭଲ, ବଧୂ ବଶୁ କରି ଇତରରୁ ଡରିବାର ବଡ଼ କଲବଲ ରେ । ୫ । ବୁଡ଼ିଗଲେ ହେବ ଏକା ଶେଷଦେବ ଭୁବନକୁ ଅହିମୁଖ, 'କହେ ଜଳନ୍ଧର-ମଦ୍ଧୀ ପୁରନ୍ଦର ଓଁହୋଇଲେ କାହିଁ ସୁଖ ରେ । ୬ ।

( ୧୩୨ )

ରାଗ—ଆନନ୍ଦଭୈରବ

ପ୍ରାଣବନ୍ଧୁଆ, ଆଜ ତୋ ଅନାଇଣି ନୁଆ ରେ । ପଦ ।

ସ୍ମିତକାନ୍ତି ପ୍ରସରୁ, ସରୁମଧାରେ କରୁ, ବସୁଧା ସୁଧାରେ ଗାଧୁଆ ରେ । ୧ । ହୃଦୟଚୋରି ତଲ ମୋର, ସୁଅଦ ବଦାମ୍ବର, ପିଅଇ ଧନ ମୋତେ ଜୀଆ ରେ । ୨ । କେଶ ମରଦୁଅଛୁ, କି ସମଜୁଛୁ ଛୁ ଛୁ, ବିଷମ ବଣିଖ ମଦୁଆ ରେ । ୩ । ଅମଳ ମୃଦୁଦେହା, ଶ୍ୟାମଳ ଉରେ ଲୁହା, ଯାମଳ ପୀୟୂଷ-ମାଠିଆ ରେ । ୪ । ଶ୍ରୀ ଜଗଦ୍ଦେବ ଭାଷେ, ଦେବୀ ସବ୍ରୀଡ଼ ହାସେ, ଅଣିମାଦ ସୁଖକୁ ଦିଅ ରେ । ୫ ।

( ୧୩୩ )

ମାନସରୁ ମାନ ସରୁ ମାନସରୁ ମଧ୍ୟମା । ଘୋଷା ।

ହର ବର ଦୁଃଖ ମୋର, ହରବର ତୁ ନ କର, ହରବରରେ ମୁଁ ତୋର, ବର ବରବରନା । ୧ । ପରବତସ୍ତନୀ ମୋତେ, ପର ବତ-

---

୧୩୧ । ଟୀକା—ଶିଳୀମୁଖ—ଭ୍ରମର; ବଧୂନ୍ତୁଦ—ରାହୁ ।

କରୁ କେତେ, ପରବରତ ସୁରତେ, ପରସନେ ସୁମନା । ୨ । ତୁ ମୋ ଉରପଦକ ରେ, ଯେନ କଥା ପଦକ ରେ, ଧରୁଛୁ ତୋ ପଦ କରେ, ମୋଦକରେ ନବୀନା । ୩ । କବିସୂର୍ଯ୍ୟ ଦୀନବନ୍ଧୁ, ବୋଲି ଟହଲି ଦୀନବନ୍ଧୁ, ରଖ ବାରେ ଦନବନ୍ଧୁ-ବନ୍ଧୁଜତନୟନା । ୪ ।

( ୧୩୪ )

ମହୀରମାଗର୍ଭ ଧନ୍ୟ ଧନ୍ୟ ଶୋଭନଧିରେ ତୁହି କମୋ ସଙ୍ଗାଳି,
ଗୋଷ୍ଠୀ ପରମାଣୁମଧ୍ୟ ସିନା ଜାଣୁ ପ୍ରୀତ ପଦାର୍ଥକୁ ମରପାଳି । ପଦ ।

ନାକ ନାଗ ନରଲୋକେ ଅଳଙ୍କାର, ହୋଇଛନ୍ତି ଯେତେ ଲଳନାପ୍ରବର; ମଣୁଛୁ ମୋ ମନ ସେମାନେତି ଧନ, ତୋ ଚରଣତଳେ ନାଞ୍ଛିଳି । ୧ । ହତି ମୋ କୋଳକୁ ଅସିବାବେଳକୁ ନନ୍ଦ ଚନ୍ଦ୍ରମିଶା ଚନ୍ଦନବୋଳକୁ, ଘସି ଘସି ସ୍ତନ ହସି ହସି ତନ୍ତୁଲତାକୁ ମୋ ଅଙ୍କେ ଦେଇ ଢାଳି । ୨ । ଅଚେଷ୍ଟ ନନ୍ଦକୁ ଶସ୍ତ୍ରଭେଦକୁ ଇତର ଦମ୍ପତୀ ନିଷ୍ଠୁର ହୃଦକୁ, ନିମିଷ ଦିବସ ନିଷେଧ ପ୍ରବାସ ବାଧକ ଦିଅଇଥାଇ ଗାଳି । ୩ । ମୁଁ ତୋ ଚରଣର କହୁ ଭୂଷା ବରବରନା କହି ତୁ ବୋଲୁ ଏହି ଗିର, ଲୁଚେ କରତାଣ୍ଡ଼ି ରସନା କାମୋଡ଼ି ଦେଖାଇ କଣ୍ଠ ରତନମାଳି । ୪ । ସତ୍ୟ କହେ ଶିସ୍ତ୍ରୀ ଜଗଦେବ ହରିଚନ୍ଦନ ମହେନ୍ଦ୍ର ନବ କିଶୋରୀ ରେ; ତୋ ପ୍ରଣୟ ହୃଦେ ଯେନି ମହାମୋଦେ ଦୁଃଖେ ମୁଖେ ମୁଁ ଲଗାଇ କାଳି । ୫ ।

( ୧୩୫ )

କା ମନେ ଥିଲା ଏ କଥା ଗୋ,
ଶ୍ୟାମ ଅଙ୍ଗସଙ୍ଗ ହେବ ଅନ୍ୟଥା ଗୋ । ପଦ ।

ସ୍ୱପ୍ନ ହୋଇବ ଶିଖଣ୍ଡମଣ୍ଡନ, ନୋହିବ ନେତ୍ର ବାପଦଗଣ୍ଡନ ଗୋ । ୧ । ସସ୍ମିତ କୋମଳ ସରସ ଭାଷା, ଶୁଣିବେ ମଥୁରା ନଗର ଯୋଷା ଗୋ । ୨ । ପଙ୍କଜବାସିନୀ ପ୍ରିୟା ଯାର ସେ, ମଜ୍ଜିବ ବୋଲି କୁଜାନା

---

୧୩୩ । ଟୀକା—ମାନସରୁ—ମନମଧ୍ୟରୁ; ମାନ ସରୁ—ଅଭିମାନ ଶେଷ ହେଉ; ମାନସରୁମଧ୍ୟମା—( ସମ୍ବୋଧନ) ହେ ଅତିକ୍ଷୀଣ କଟି; ହରବରରେ —ଶିବଙ୍କ ଅନୁଗ୍ରହରୁ; ବର—ସ୍ୱାମୀ; ବରବରନା—ସୁନ୍ଦରବର୍ଣ୍ଣଶାଳିନୀ; ପରବରତ—ପ୍ରବର୍ତ୍ତିତ ହୁଅ; ଦନବନ୍ଧୁବନ୍ଧୁଜତନୟନା—ପଦ୍ମଠାରୁ ସୁନ୍ଦର ନେତ୍ର ଯାହାର ।

ପାଶେ ଗୋ । ୩ । ଭଜି ହେଉଥିବ କାମ ଦହନେ, ରାଜୀବ ପଦ ନ ଲଦବା ସ୍ତନେ ଗୋ । ୪ । କସ୍ତୁରୀମିଶା ନୀଳୋତ୍ପଳ ବାସ, ବ୍ରଜମଣ୍ଡଳେ ହେବ ଇତିହାସ ଗୋ । ୫ । ସ୍ମରଜ୍ୱର ଶୋଷେ ଜୀବନ ଯିବ, ମଧୁରାଧର ତୋକେ ନ ମିଳିବ ଗୋ । ୬ । କେ ଜାଣିଥିଲା ଏ ଦଣ୍ଡ ପଡ଼ିଲେ, ଅଷ୍ଟାଦୁର୍ଗ ନରନାଥ କହିଲେ ଗୋ । ୭ ।

( ୧୩୬ )

ରାଗ—କାମୋଦୀ, ତାଳ ଆଦି

କଣ୍ଠା ତ ଅଛୁ ମାନ ଏତିକି ରେ ।

ଗଣା ନ ଯିବା ଗୁଣବତୀଙ୍କ ରେ । ପଦ ।

ଉତ୍ତମ ଅଙ୍କଚ୍ଛେଦ, ଅନୁରାଗ ବିଚ୍ଛେଦ, ଦୁହିଁଙ୍କ ନେଲୁ ଯେ ନିକଟିକି ରେ; ଚୈକେଗଲା ପ୍ରଥମ, ଯହିଁ ତୁଟିବା ପ୍ରେମ, ଦ୍ୱିତୀୟ ଚୁମ୍ବଦେଲା ଷିତିକି ରେ । ୧ । ବଳ ପାଉଛୁ ମୋର, ସହି ପାରିବୁ ଘୋର, କଳପାନ୍ତର ଖରା ତାତିକି ରେ; ମଧୁରାଧରା ପ୍ରୀତି, ଅଧୁରା ହେବା କାତି, ସୁହାଇ ଜାଣି ନାହିଁ ଘୃତିକି ରେ । ୨ । ଅବଳାମଣି ଅବ-ଧାନିଆ ପଣେ ଯୁବ-ଚନ୍ଦ୍ରେ ଚୈତାଇଥିବ ଛତିକି ରେ; ଖର ବଚନ ଶୁଣି, ଧନବଦନ ମ୍ଳାନି, ସମୟେ ଥାଇ ଅଜ ଗତିକି ରେ । ୩ । ସୂଚକ ଅଗେ ସନ୍ଧି, କହିବାର ଲେସନ୍ଧି, ରୁଚଇ ନାହିଁ ମୋର ମତିକି ରେ; ରୁଚକପୟୋଧରୀ, ତୁ ଚତୁରୀଙ୍କ ଧୀରୀ, ବରୁର ପାଳିବୁ ମୋ ପ୍ରୀତିକି ରେ । ୪ । ସେବାରେ ତ ଫାବତି, ହେବାର ଯେବେ ସତି, ବାଣୀ କେ ଶୁଣାଇବ ଶ୍ରୁତିକି ରେ; କବିମିହିର ଗୀତେ, ବୋଲେ ପରାଣି ମୋତେ ସମର୍ପି ଦେବୁ ରତିପତିଙ୍କି ରେ । ୫ ।

( ୧୩୭ )

ରାଗ—କାନନଗୌଡ଼ା, ତାଳ—ତ୍ରିପୁଟା

ବିଧାତା କି ନ କରଇ ଗୋ,

ଏକେ ନବୀନ ପ୍ରୀତି, ତହିଁ ବିଦେଶେ ପତି

ଏ ତ ଘୋର ବିପତ୍ତି ଏଥି ମୋର କି ଗତି । ପଦ ।

ମନେ ଥିଲା ଯାହା ତାହା ନୋହିଲା ଗୋ, ଯାହା ନ ଥିଲା ତା ମନେ ହେଲା ଗୋ; ଏବେ ପିକବଚନ, ମନ୍ଦ ମଧୁ ପବନ, ମଧୁର ଭୃଙ୍ଗସ୍ୱନ ଦହୁଛନ୍ତି ଜୀବନ । ୧ । ଅଲିଙ୍ଗନେ ମୋର ଅନ୍ତର ଉରେ ଗୋ, ପ୍ରିୟ

---

୧୩୬ । ଟୀକା—ସୂଚକ—ଖଳ ଲୋକ, ରୁଚକ—କଣ୍ଠାଭରଣ ।

ନ ରଖନ୍ତି ଘରେ ହାର ଗୋ; ଏବେ ମଧୁରେ ପୁର, ରହିଲ ବନଗିର, ଅହା ମୋତେ ପାସୋର ରହିଲେ ମଧୁପୁରୀ । ୨ । ପ୍ରିୟ ଥିଲେ ଏ ମଧୁ ରଜନୀ ଗୋ, କେଉଁ ସୁଖ ନ ଦିଏ ସଜନି ଗୋ, କହ ମୋତେ ବଚନ କରନ୍ତେ ସେ ଗମନ ତାଙ୍କ ପଛେ ଦହନ, ନ ଗଲା ଏ ଜୀବନ । ୩ ।। ଯେବେ ହେଲେ ଏ ଜୀବନ ଯାଉ ରେ, ପ୍ରୀତଭଙ୍ଗ କଳଙ୍କ ନ ଥାଉ ରେ, ଚିନ୍ତ ଏବେ ସେ ସ୍ୱତ, ଫାଟି ଯାଉଛି ଚିତ୍ତ, ନ ସରେ ଦିବାଗତ ପ୍ରୀତ- ହେଲା ବିପତ୍ତି । ୪ । ଏହା କରମରେ ମୋର ଥିଲା ଗୋ, ପ୍ରୀତ ଏତେ- ସବୁଁକି ତ ଗଲା ଗୋ, ଏସନେ ସଖୀ ଶୁଣି, ଦୁଃଖେ କହନ୍ତି ବାଣୀ, ଅସିବେ- ବେଣୁପାଣି, ହରଚନ୍ଦନ ଭଣି । ୫ ।

( ୧୩୮ )

ରାଗ—କାଫି

ବନ୍ଧୁଅ ରେ ବାରେ ଅନା ରେ । ପଦ ।

ରଦନବାସ, ସଦରହାସ, କର କର ମାନକୁ ମନା ରେ ।୧। ଗଜେନ୍ଦ୍ରଗତ, ଗତ ଜଗତୀତଳେ ନାହିଁଟି ତୋହ ବିନା ରେ । ୨ । ନ ସହ ମୋତେ, କହୁ କେ କେତେ, ଧନ ମୁଁ ତୋ ଅଧୀନ ସିନା ରେ ।। ମୁଁ ତୋର ବୋଲି, ନ ଜାଣେ ଗୁଲି, ଅହା କି ସୁଖ କରୁଛୁ ଚୁନା ରେ ।୪। ଗୁରୁ ଶ୍ରୀମୁଖ ସୁଧାମୟୂଖ, ଥରେକ କରୁଣା କରୁ କି ନା ରେ ।୫। କବିଦୁର୍ମଣି, ଚିରେ ତରୁଣୀ, ହେଲା ଅଶ୍ଳେଷ-ସୁଖ ଘେନା ରେ । ୬ ।

( ୧୩୯ )

ଯୋଷାକୁ ରୁଷା କେ ଶିଖାଇଲା ରେ । ପଦ ।

ନିର୍ଦ୍ଦୋଷ ନିର୍ମଳ, ସୁଧାରେ ଗରଳ, ଗୋଳିଦେଇ ଖଳ କି ଖାଇଲା ରେ । ୧ । ମୋ ନୟନସୁଖ, ବର୍ଦ୍ଧନ ଶ୍ରୀମୁଖ, ପୀୟୂଷ ମୟୂଖ ଶୁଖାଇଲା ରେ । ୨ । ଇନ୍ଦୀବରୁ ନବ, କମଳ ସମ୍ଭବ, କମଳସମ୍ଭବ ଦେଖାଇଲା ରେ । ୩ । କି ରହିବ ଜୀବେ, ଚନ୍ଦ୍ରମାକୁ ଯେବେ, ଅରୁଣ ରାଜୀବେ ରଖାଇଲା ରେ । ୪ । ଦୋଷ ଥିଲେ ମୋର, ଦୟାବତୀବର, କାହିଁକି ଅଧର ଚଖାଇଲା ରେ । ୫ । ଏ ଘେନି ସବ୍ୟଥ, ଅଷ୍ଟଦୁର୍ଗନାଥ, ସୁଖ ମନୋରଥ ଭେଖାଇଲା ରେ । ୬ ।

---

୧୩୮ । ଟୀକା—ରଦନବାସ—ଅଧର, ସଦରହାସ—ଦରହାସଯୁକ୍ତ ।

( ୧୪୦ )

ରାଗ—ପଞ୍ଜାବୀ

ଯା ନ ଦେଖିଲି ସେ, ଗାନ ରସିକା ଆଜ ପାନ ମୋ କଲୁ ଦେହ ଦାସେ । ପଦ ।

ତନୁ ମଧ୍ୟମା ମୋ ସହି, ଅନୁକମ୍ପିଲୁ ନାହିଁ, ତନୁ କମ୍ପିଲା ତୁହି ତ୍ରାସେ । ୧ । ସଢ଼ିଗଲି କେବଳ, ପଡ଼ି ମୁଁ ଚନ୍ଦ୍ରଚୂଳ,-ପର-ଶର ଅନଳ ହ୍ରାସେ । ୨ । ତୋ କଞ୍ଜ ସୁନ୍ଦର, ପଣ ଜଣାଏ ମୋର, ଯଣ କଲା ଦୁସ୍ତର ମାସେ । ୩ । କେଉଁ ଦୁଃଖେ ଅଧର, ଲଭିଲି ବନ୍ଧୁଜୀବ, ମଳିନଗଲା ଖର ଶ୍ୱାସେ । ୪ । ଅକପଟରେ ମୋର, ନ କଲୁ ତୋଷଭର, ମନରେ ଚନ୍ଦ୍ର ଫରମାସେ । ୫ । ବଳ କରଣ ପ୍ରୀତି, ଫଳ ହେଲା ଏ ଗତି, ଜଳନ୍ତ୍ରର ଭୂନାଥ ଭାଷେ । ୬ ।

( ୧୪୧ )

ରାତ ପାହିଗଲା ହେ ହାତୀ, ହୁଅ ଅପହୁଡ଼ ଦେଜ ସୁପାତ । ପଦ ।

ହେମ ହେଲା ହରମୁକୁତା, ପାନକଳ ଲାଗିଲା ପିତା, କରଟ କୁମ୍ଭାଟ ଚମକ ରଟନ୍ତି ବାଜିଲା ଅରୁଣ କରଣ କାନ୍ତି । ୧ । ଛୁଇଁ ଗଙ୍ଗଶିଉଳ ବନ, ବହିଲାଣି ମୃଦୁ ପବନ, ରଥାଙ୍ଗ ଦମ୍ପତି, ହୃଦୟରୁ ଗଲା ଦୂର ହୋଇଲାଣି ବିରହ ତାତି । ୨ । ବିକସିଲେ କୁମୁଦ ନିଦ, ଅଳିକୁଳ ହେଲେ ପ୍ରମୋଦ, ଲାଗିଲାଣି ଭୟ, ସଙ୍ଗିନୀ ନିଶ୍ଚୟ, ଇଙ୍ଗିତରେ ଦେଖି ଯିବେ ମୋ ଜାତି । ୩ । ମନ ମୋର ଧୃତି ନ ଟଳୁ, ଧନ ମୋତେ ମେଲାଣି ମିଳୁ, ରାଧା ନନ୍ଦସୁତ ମାତଲେ ବୋଲି ତ ତୁମ୍ଭଙ୍କୁ ଏ ବ୍ରଜମଣ୍ଡଳେ ଖ୍ୟାତି । ୪ । ଜଳନ୍ତ୍ରର ଭୂପତି କହେ, ଅଙ୍ଗରାଗ ଅଛୁ ମୋ ଦେହେ, ଅତି ସେ ନଜରୁ ହେମ ଉଦ୍ରେକରୁ ଶିଥିଳାଇ ଦିଅ ଅଳପ ଗ୍ଲାନି । ୫ ।

( ୧୪୨ )

ରାଗ—କାଫି, ଏକତାଳି

ଅନା ଅନାଥରେ ଥରେ ରସି ରସିକା ରେ । ପଦ ।

ଇନ୍ଦିରାକୁ ନିନ୍ଦ ଇନ୍ଦୀବର ବନିକାରେ, ବନ୍ଦଇ ମୁଁ ନୀଳଜଳ ଜନମ ଧିକ୍କାରେ । ୧ । ମୀନମାନେ ଜାଲେ ମର ସରନ୍ତୁ ବିକାରେ, ସଞ୍ଚରୁ ତୋ ନେତ୍ର ଚଞ୍ଚଳ ଶିକ୍ଷିକାରେ । ୨ । ଭ୍ରମରମଣ୍ଡଳୀ ସରୁ ଝଙ୍କାର ଉକାରେ, ଷଡ଼ାଙ୍ଗୁରା ପଦାଛନ୍ତି ସ୍ୱରକୁ ଟେକା ରେ । ୩ । ଅସ ମୁଁ ମଣ୍ଡିବ

---

୧୪୧ । ଟୀକା—କରଟ—କୁଅ, ସୁପାତ—ଶେଯ ।

ଗଣ୍ଡ ସୁମ କରବାରେ, ସ୍ତନ କନକ କଲଶ ମୂଳ କରକା ରେ । ୪ । ହରି-ଗିରେ ହରିଣାକ୍ଷୀ ଲାଜେ ଧାଡବାରେ, ଛପିଗଲେ ଜଗଦେବ ଚାନ୍ଦ ଲଭବାରେ । ୫ ।

( ୧୪୩ )

ରାଗ—ତୋଡ଼ି ପରଜ, ଏକତାଳ

ରେ ସଜନି ଅଜ ତୋର ଏ କ ରୀତ

ଗର୍ଭଫୁଲ ପାଦେ ମରଦାଲେ ମଦେ ଲଭି ସିନା ଅଙ୍ଗୀକୃତ ରେ । ପଦ ।

ଯାହା ପାଇଁ ତପ, କ୍ଳେଶରେ ପ୍ରତପ,-ଚନ୍ଦ୍ରପରି ମ୍ଳାନ ହେଉ, ଏବେ ସେ ଶରଣ; ପଶିଲେ ଚରଣ,-କମଳେ ତ ପେଲି ଦେଉ ରେ । ୧ । ଥରେ ଯା କଟାକ୍ଷ ଲକ୍ଷ୍ୟ ହେଲେ ଲକ୍ଷ ଇନ୍ଦ୍ରପଦ ମଣୁ ଉଣା, ତାହାକୁ ନିଷେଧୁ କେଉଁ ଅପରାଧୁ ନ ବହ ଲବେ କରୁଣା । ୨ । ଲୋଡ଼ି ଯାହା ପ୍ରୀତି ଧରୁଥାଉ ଦୂତି କର ବଡ଼ପଣ ଛାଡ଼ି, ବିନୟେ ସେ ପୁଣି ଧରୁଛନ୍ତି ପାଣି ରୋଷେ ଦେଉଛୁ ଛୁଆଁଡ଼ି ।୩ । ଯାହା ଦେଖା ଆଶେ, ନ ଛାଡ଼ୁ ନିମିଷେ, ସଉଧ ପଞ୍ଜର ପାଶ, ତା ଗୃହୁଁ ଗୃହୁରୀ ନ ରୁଚଇ ପରି କାହିଁକି ମୋଡ଼ୁ ଶ୍ରୀମୁଖ ।୪। ଯାହା ରସେ ରସି ନିକୁଞ୍ଜକୁ ନିଶି ନିବିଡ଼ ଅନ୍ଧାରେ ଯାଉ, ସେ କିଶୋର କୋଳେ ଧରୁଛନ୍ତି ତଳେ ଭଉ ହୃଦେ ନ ଜଡ଼ାଉ । ୫ । ଚିନ୍ତାମଣି କରଗତ ହେଲା ପରି ହୋଇଲେ ହେଲେ କାତର, ମୂରୁଛିବ ଧନ କି ନନ୍ଦନନ୍ଦନ କହେ ଶ୍ରୀମୁକୁନ୍ଦଦେବ । ୬ ।

( ୧୪୪ )

ରାଗ—କାମୋଦୀ, ଏକତାଳ

ସଖି କେ ସେ ନୀପମୂଳେ ଗୋ । ପଦ ।

ଅସିତ ଅଙ୍ଗ କାନ୍ତିଗଣ୍ଡେ, ରବିପରି ତାରି ଗଣ୍ଡେ, ମଣି ମକରକୁଣ୍ଡଳ ଲୋଳେ ଗୋ । ୧ । ମୁଁ ହାରେ ନାୟକ ଅଣି, କରନ୍ତି ସେ ନୀଳମଣି, କିଣା ହେବ ସଖି କେଉଁ ମୂଲେ ଗୋ । ୨ । ଗୃହିଁ ତା ଚାରୁବଦନ ମନ୍ଦରେ ନ ରହେ ମନ, ଖେଳୁଛି ଅର୍ଦ୍ଧମାକେମାକୁଳେ ଗୋ । ୩ । ସଖି ମୁଁ କହୁଛି ସତ, ଛାଡ଼ି ସବୁ କୁଳବ୍ରତ, ଖୁରିଏ ଖେଳନ୍ତି ତାରି ତୁଲେ ଗୋ ॥ ଘୂର୍ମି ଆନନ୍ଦ ଅମଳେ, ତା ପାଦପଙ୍କଜତଳେ, ଶ୍ରୀମୁକୁନ୍ଦଦେବ ଚାନ୍ଦ ଭୁଲେ ଗୋ । ୫ ।

୧୪୪ । ଟୀକା—ଖୁରିଏ—ମୁହୂର୍ତ୍ତେ, ନାୟକ—ହାରମଧ୍ୟବର୍ତ୍ତୀ ମଣି ।

( ୧୪୫ )

ସେ ଗଜେନ୍ଦ୍ରଗତି ମୋତେ ପ୍ରତି ଦଣେ ଦଶିଲା । ପଦ ।

ଏ ଜଗତେ ଭାବ ଯେତେ, ନ ରହିଲା ମୋର ଚିତ୍ତେ, ଯାହାକୁ ଚାହିଁଲେ ସେ ତ ତାହା ପର ଦଶିଲା । ୧ । ସହଜେ କାନ୍ତିରେ ଚୋରି, ଧଇଲେ ନ ଦିଏ ଧରି, ମାର ମାରଗଣ ଗାଢ଼େ ମରମରେ କଷିଲା । ୨ । ମୁଁ ତାହାର ପ୍ରୀତି କଣା, ହେବାରୁ ଅଧିକେ ବଣା,-ମୃଗାକ୍ଷୀର ବିନା ଅନେ ମନ ମୋ ନ ରସିଲା । ୩ । ଅତି ଯତ୍ନ କରି ବଳେ, ଶୟନ କରିବା କାଳେ, କ୍ଷଣେ ହେଲେ ନିଦ୍ରା ମୋ ଈକ୍ଷଣକୁ ନ ଅସିଲା । ୪ । ବୋଲେ ଅଷ୍ଟଦୁର୍ଗେଶ୍ୱର, ତା ପାଶୁ ହେବାରୁ ଦୂର, ଦିନକୁ ଦିନ ମଦନ ଜୀବନକୁ ଶୋଷିଲା । ୫ ।

( ୧୪୬ )

ରାଗ—ସାବେରୀ

ବୁଡ଼ି ପ୍ରୀତିରେ, ବୁଡ଼ି ପଡ଼ିଗଲି ପରମାଦେ ଅତି । ପଦ ।

ମନ ଛନ ଛନ ନିରନ୍ତରେ, ନ ରହିଲା ଆନ ବିଷୟରେ, ପୂର୍ଣ୍ଣ ବେଦନେକ ନୀରଭରେ, କ୍ଷୀଣ ହୋଇଗଲା ଅତି ତନୁ ନିତି ନିତି । ୧ । ନ ପାଇଲି ମୁଁ ସୁଖକୁ ଲେଶେ, ଅନୁଭବ ଦୁଃଖ ତ ବିଶେଷେ, ନିମିଷକ ତ ହେଲା ବରଷେ, ଶୁଣି ରହିଲିଣି ଲାଜେ ପୁଣି ଅପଖ୍ୟାତି । ୧ । ଦଗ୍ଧ ହେଲା କାମାନଳେ ଦେହ, ସହି ନୁହେ କି କରିବି କହ, ଦଣ୍ଡେ ଦଣ୍ଡକେ ହେଉଛି ମୋହ, ରହୁ ନାହିଁ କେତେରୂପେ ବୋଧ କଲେ ଧୃତି । ୩ । ହେଲି ଜୀବନରେ ମୁଁ ନିରାଶ, ଦେଲି ଭଗାରଙ୍କ ମୁଖେ ହାସ, ନେଲି ଅକାରଣେ ଏ ବୟସ, ହାସ ବିଳାସ ବେଶରେ ରହୁ ନାହିଁ ମତି । ୪ । ବସୁଦୁର୍ଗ ଭୂପ ରସେ ଭଣି, ଏହା ଚିତ୍ତରେ ଗୋପରମଣୀ, ଅହା ବିହି କି ବିହିଲା ଅଣି, ଜାଣି ନ ପାରିଲି ବେନୁପାଣି କୁଟିଳ ରୀତି । ୫ ।

( ୧୪୭ )

ଅହା ମୋ ଖଞ୍ଜନାକ୍ଷି, ଅନଙ୍ଗେ ମୋ ବିନା ଦୁଃଖୀ ରେ,
ଅବନୀରେ ଟଳି ପଡ଼ିବାରୁ ତୋଳି ଧରୁଥିବେ ପ୍ରିୟସଖୀ ରେ । ପଦ ।

ଅହର୍ନିଶ ଝୁରି ଝୁରି, ଅତି କୃଶ କୃଶୋଦରୀ, ଇନ୍ଦୁକଳା ତନୁ ତାକୁ ନିଧିବନି ତାରି ତାରି ତନୁଶିରୀ ରେ । ୧ । ଅଶ୍ରୁଭରେ ନେତ୍ର ବେନି, ଅବିରତେ ପୂରିବନି, ଅସାର ମାର ଅକୂପାରେ ପଡ଼ିଣି ମୃଦୁହାସୀ ଭାସିବନି

ରେ । ୨ । ଅଭରଣ ଦୂର କର, କେଉଁ କୁମ୍ଭ ପୟୋଧର, ଅମଳ ମୃଣାଳ ଖଣ୍ଡ ପାଣି ପିଣ୍ଡେ ମଣ୍ଡୁଥିବଟି କପର ରେ । ୩ । ଅବଧିରେ ତେଜ ଅଶା, ଅଧିକରେ ଅଭରସା, ଅତି ଶ୍ୱାସଗର ପଡ଼ୁଥିବ ପର ହେବନି ଦଶମ ଦଶା ରେ । ୪ । ଅଷ୍ଟଦୁର୍ଗେଶ୍ୱର ଭଣି, ଅଭିନବ ରାମାମଣି, କମାଧବ କୃପା ସତେ ହେବ ଅବା ଜୀବ ଯିବାଯାଏ ପୁଣି ରେ । ୫ ।

( ୧୪୮ )

ରାଗ—କାମୋଦୀ

ଦେବି ମୁଁ ପରାଣକୁ ବରଜ ଗୋ ।
ତୁହି ତୁ ଥରେ ଶ୍ୟାମ ମରଜ ଗୋ ॥

ପିଇ ଜୀଇବି ବୋଲି, କେତେ କଷ୍ଟରେ ଥିଲି, ପୀୟୂଷ ରସପାନ ସରଜ ଗୋ; ସହି ମୋତେ ନ ସହି, ପାରିଟି ତହିଁ ନେଇ, କେ ଦେଲା କାଳକୂଟ ପରଜ ଗୋ । ୧ । ଧନଜୀବନଚୟ, ପ୍ରିୟ ବାନ୍ଧବ ଭୟ, କାନ୍ତ ମହତ୍ତ୍ୱ ଅଶା ବରଜ ଗୋ; ସଜନି କୋଟିକାମ, ବିଗ୍ରହଜଣା ଶ୍ୟାମ, ସଙ୍ଗତେ ଥିଲି ପ୍ରେମ ଅରଜ ଗୋ । ୨ । ମୋ ତହୁଁ ରୂପବତୀ, କେଉଁ ବ୍ରଜଯୁବତୀ, ଧନ୍ୟ ତା ପ୍ରୀତିରେ ସେ ଭିରଜ ଗୋ; ଫିଟାଇ ନେଲା ମନ, ମୋହଠାରୁ ମୋହନ, ସୀଇଁବାଠାରେ ସୁର ଦରଜ ଗୋ । ୩ । ଚଞ୍ଚଳ ବିଦ୍ୟୁଲ୍ଲେଖା, ସହିତେ ଦେଇ ଦେଖା, ବିରହୀ ସମୁଦାୟ ତରଜ ଗୋ; ଶ୍ରୀ ଜଗଦ୍ଦେବ ଦୁଃଖ, କହେ ସଜନି ଦେଖ, ଘୋଟିଅସୁଛି ଘନ ଗରଜ ଗୋ । ୪ ।

( ୧୪୯ )

ରାଗ—ତୋଡ଼ି ପରଜ

ରେ କିଶୋରି, ତୁ ଲେଡ଼ୁଅଛୁ ମାଡ଼କୁ,
ନାହିଁ କରୁ କରୁ ଗ୍ରହିଲୁ କାହିଁକି ଶ୍ୟାମଳ ଚାନ୍ଦ ଅଙ୍କକୁ ରେ । ପଦ ।

ମୋରେ ତ ନଜର ନ ଦେଉ ନଜର ନ ଦେଉ ଯେ ବିଶାଖାରେ, ବୃଥା ନିତି ରସେ କି ଥାଏ ତୋର ସେ ତମାଳ ତରୁଶାଖାରେ । ୧ । ଅନ ମହାଧନ ବିବିଧ ବସନ ଯମୁରୁ ନେଇଛୁ ମାଗି, ତୋର ତ ଜୀବିକା ହୋଇଅଛି ଏକା କଳାମେଘି ଶାଢ଼ୀ ଲାଗିରେ । ୨ । ଉଳପ ପର ଅନଳପ ସୁରଭି ଫୁଲ ଝଡ଼ ପଡ଼େ ତଳେ; ମତ୍ତ ସୀମନ୍ତିନି ! ମଣି ମିଶାଇଛୁ ଅତସୀ-କୁସୁମ ଦଳେ । ୩ । ଗଣି ନୋହିବାର ମଣିଭୂଷା ଅଛି ତହିଁକି ନ ଗ୍ରହୁଁ

ଛାଲେ, ଗଳାଇ ଦେଇ ଗୁନ୍ଥିଛୁ ମକ୍ତ କିଙ୍କ କଳାଇନ୍ଦୀବର ମାଳେ । ୪ । କଳାବାଟେ ହେଲେ ବଳାହକେ ଗୃହିଁ ପୁଲକେ ହେଉ ଭରଭ, କଳା ବୋଲ ସ୍ନେହେ ଘଳା ମଳୟଜ ବୋଳାଉ ଯା ଅଙ୍ଗେ ନିତ । ୫ । ମାର କାଣିଅଛୁ ବାରିଜାକ୍ଷି ହସି ସର୍ବ ଅବତଂସ ଫୁଲେ, କଷ୍ଟ ପାଇବୁ ତୁ କାହାର କି ଦିବ ଅକ୍ଷୟଦୁର୍ଗନାଥ ବୋଲେ । ୬ ।

( ୧୫୦ )

ମୋ ଭୂଲେ ଥିଲ କି ଲିହ,

କଲ ମଲ୍ଲୀ ରୋପଣ, ତହୁଁ ଜନ୍ମିଲ ତୃଣ,

ଚିନ୍ତା ରତନଗଣ ହେଲ ପାଷାଣ କଣ । ଘୋଷା ।

ଚୂତ ଫଳିଲ ନାଗରଙ୍ଗ, କଟିମେଖଳା ହେଲ ଭୁଜଙ୍ଗ,

ତଟିନୀ ତଟେ ବାସ, କର ନ ଗଲ ଶୋଷ,

ପିଇବାର ପୀୟୂଷ,-ପାନରେ ହେଲ ବିଷ । ୧ ।

ମଧୁଗାକର ହେଲ ନିମ୍ବ, ରବି ପରି ହେଲ ଚନ୍ଦ୍ରବିମ୍ବ,

ଧାତାର କି ବିବେକ, ଚଞ୍ଚୁଜିତ କିଂଶୁକ,

ପଢ଼ା ପଣ୍ଡିତ ଶୁକ, ହେଲ ମୋ ଦ୍ରୋଣ କାକ । ୨ ।

ମନ୍ଦାକିନୀରେ ନିମଜ୍ଜିଲି, ନିନ୍ଦା କାହିଁକି ଅରଜିଲି,

ଚଢ଼ିଲି ମେରୁଚୂଳ, ଭୋଗ ହେଲ ଅତଳ

ବ୍ରହ୍ମଜାତି ପାତଳ ହୀରା ହେଲ ପିତ୍ତଳ । ୩ ।

ଅଉ ନ ରଖିବି ନବୀନା, ଜୀବନ ଯିବ ତାଙ୍କ ବିନା,

ଏ ଚିନ୍ତାର ମନ୍ଦର, ହେଲେ ଶ୍ୟାମସୁନ୍ଦର

ବନ୍ଦଇ ଜଳନ୍ଧର, ଅବନୀ ପୁରନ୍ଦର । ୪ ।

( ୧୫୧ )

ରାଗ—ପୂରବୀ

ସବି ଯାଉଛି ରେ ଏହିଠାରୁ ମନୋରଥ,

ଗୃହିଁଦେଲେ ଅଉ କାହିଁ ନ ଦିଶଇ ଅଣି ଥାଉଁ ଥାଉଁ ପଥ । ପଦ ।

---

୧୫୦ । ଟୀକା—ଲିହିବା—ଲେଖିବା, ନାଗରଙ୍ଗ—ନାରଙ୍ଗନାମକ ଅମ୍ଳଫଳ ବିଶେଷ, ମେଖଳା—ଅଣ୍ଟାସୂତା, ଭୁଜଙ୍ଗ—ସାପ, ପୀୟୂଷ—ଅମୃତ, ଚଞ୍ଚୁଜିତ କିଂଶୁକ—( ଶୁକର ବିଶେଷଣ ) ଯାହାର ଥଣ୍ଟ ପଳାସ ଫୁଲଠାରୁ ଅଧିକ ନାଲ; ଦ୍ରୋଣକାକ—ଡାମରାକୁଅ, ମନ୍ଦାକିନୀ—ସ୍ୱର୍ଗ ଗଙ୍ଗା ।

ସୀତା ସୀତାକାନ୍ତ ଲକ୍ଷ୍ମଣସହିତେ ଆରୋହଣ କରି ରଥ, କାନନ ଗମନ କରୁଁ ସୁମନ୍ତ୍ରରେ ଖେଦେ କହେ ଦଶରଥ ।୧। ଶବର ଶରରେ ନଷ୍ଟ ହେବାକାଳେ କପଟରେ ଗୋପିନାଥ, ଗାଣ୍ଡିବ ବଢ଼ାଇ ଦେଇ ଶ୍ରୀଭୁଜକୁ ମନେ ବିସୁରଇ ପାର୍ଥ ।୨। ଅକ୍ରୂର ସହିତେ ମଧୁପୁର ଯିବେ ବୃନ୍ଦାବନ କଳାନାଥ, ଦେଖି ଅନ୍ୟୋନ୍ୟରେ କୁହାକୁହି ହୋନ୍ତି ସ୍ନେହେ ଗୋପାଙ୍ଗନାଯୂଥ ।୩। ସନ୍ନ୍ୟାସବେଶ ଧାରଣ କରି ଗୋରା ତେଜଣ ସକଳ ସ୍ୱାର୍ଥ, ନ ମାନନ୍ତେ ଶଚୀକୁହା ବିଷ୍ଣୁପ୍ରିୟା ଭାବେ କରେ ତାଡ଼ ମାଥ ।୪। ଦଶରଥ ପାର୍ଥ ଗୋପୀ ବିଷ୍ଣୁପ୍ରିୟା ପ୍ରାଣ ଧାରଣେ ସମର୍ଥ, ନୋହିବାରୁ ବୋଲେ ନୀଳାଦ୍ରି ବିହାରୀ ହରିଚନ୍ଦନ ଯଥାର୍ଥ ।୫।



# କବିତା କଲ୍ଲୋଳିନୀ

( ୧ )

## ଜଗତେ କେବଳ

ରାଗ—ଆଷାଢ଼ଶୁକ୍ଳ

ଜଗତେ କେବଳ, ଜନେ ହସିବେ ଏଥି ତହୁଁ ଫଳ । ଘୋଷା ।
ଜଟିଳ କର ସ୍କନ୍ଧ ରୋମରାଜି । ଶିଖରିଦରୀରେ ମରୁ ଗରଜି ।
କୁଟିଳ କର ଭ୍ରୂକୁଟୀକୁ ତୁହୁଁ । ସରମା କଣ୍ଠୀରବ ହେବ କାହୁଁ । ୧ ।
ଅଳକ୍ତଦ୍ରବ ନୟନେ ବୋଳି । ରସାଳ ଗହଳ ଶାଖାରେ ଖେଳି ।
କବଳ କରୁ ତା କଳକଳାପ । କାକ କି କରିବ ପଞ୍ଚମାଳାପ । ୨ ।
ବରଜୀବ-ରସେ ଦେଇ ମାନସ । ବରଜି ବରଷେ ଅମେଧ୍ୟ ଗ୍ରାସ ।
ଦେହେ ମନ୍ଦାକିନୀରଜ ଲଗାଇ । ଗ୍ରାମ ଶୂକର କି ହୋଇବ ଗାଈ । ୩ ।
ଚଞ୍ଚୁ ଚରଣେ ଲଗାଇ ହିଙ୍ଗୁଳ । ନିଜ ତୁଣ୍ଡେ ମଣ୍ଡି ଖଣ୍ଡ-ମୃଣାଳ ।
ଶୁକ୍ଳ ପୂର୍ବ ଅଙ୍ଗ ବୁଲାଇ ବକୀ । ତେବେ ସେ ମରାଳୀ ବୋଲାଇବ କି ।୪।
ରଞ୍ଜି ନାୟକ ରଙ୍ଗେ ଚୌପଦାର । ଖଞ୍ଜିଲେ ହେଲେ ତୁରୁକ ସବାର ।
ଖିଲାଇଲେ ହେଲେ ନାନା ମସଲା । ତୁରଙ୍ଗ ହୁଏ କି ରାସଭପିଲା । ୫ ।
ବଦରିକା ବନେ ନିତ୍ୟ ନିବାସ । କରି ଆଚରି ବ୍ରତ ଉପବାସ ।
ପ୍ରଯତ୍ନ କଲେହେଁ ନାନାପ୍ରକାର । ଖଦ୍ୟୋତ ହୋଇବ କି ପ୍ରଭାକର । ୬ ।

---

୧ । ଟୀକା—ଶିଖରିଦରୀ—ପର୍ବତଗୁମ୍ଫା, ସରମା—କୁକୁର, କଣ୍ଠୀରବ—ସିଂହ, ଅଳକ୍ତଦ୍ରବ—ଅଳତାରସ, ରସାଳ—ଆମ୍ବ, କବଳ କରୁ—ଗ୍ରାସ କରୁ ବା ଖାଉ, ବରଜୀବରସେ—ଗୋରୁଦୁଧରେ, ଅମେଧ୍ୟ—ବିଷ୍ଠା, ମନ୍ଦାକିନୀରଜ—ଗଙ୍ଗାଧୂଳି, ଚଞ୍ଚୁ—ଥଣ୍ଟ, ଖଣ୍ଡମୃଣାଳ—ପଦ୍ମନାଡ଼ଖଣ୍ଡ, ବକୀ—ବଗୁଲି, ମରାଳୀ—ରାଜହଂସୀ, ଚୌପଦାର—ଅଗ୍ରଗାମୀ ସିପାହୀ, ତୁରଙ୍ଗ—ଘୋଡ଼ା, ରାସଭ—ଗଧ, ବଦରିକା ବନ—ବରକୋଳି ବଣ ଓ ତୀର୍ଥବିଶେଷ; ଖଦ୍ୟୋତ—ଜୁଳୁଜୁଳିପୋକ, ପ୍ରଭାକର—ସୂର୍ଯ୍ୟ ।

ଯାହାକୁ ଯାହା କରିଛି ଦଇବ । ତହୁଁ କି ସେ ଅନ୍ୟଥା ହୋଇବ ।
ଘେନଲେ ହେଲେ ଯତ୍ନେ କୋଟି ପୁଷ୍ଟ । ପିତ୍ତଳ କି କେହି ହେବ ପୁରଟ ।୭।
ଦେବ ଉପବନେ ହୋଇ ଜନତା । ସ୍ୱବାସ-ମୃଦକୁ ଜବସଲତା ।
ତୁଳସୀ ତୁଲେ ହେଲେ ମିଶାମିଶି । ତାହାକୁ ଯେବେ ବୋଲିବା ତୁଳସୀ ।
ସମଜଇ ନାହିଁ ସ୍ୱଜାତ ଭାଷା । କହିଲେ ଯେ ହୁଅଇ ଲୋକହସା ।
ଜଡ଼ ମୁଁ ବୋଲି ନ ଜନ୍ମି ନିର୍ବେଦ । ଷଡ଼ଦର୍ଶୀ ତୁଲେ କଲେ ବିବାଦ ।
ଦେହରେ ବାଜିଲେ ପର ନିଶ୍ୱାସ । ସମ୍ଭାଳିବାକୁ ନ ଥାଇ ବିଶ୍ୱାସ ।
ନିର୍ଲ୍ଲଜ ଅଭିମାନେ ତେଜିବ ଘୃତ । ହାତୀ ଲଢ଼ାଇକି ବାନ୍ଧିଲେ କାତ ।୧୦।
କରମରେ ତ ହୋଇଅଛି ଲେଖା । କରମର୍ଦ୍ଦକ ଯୋଗ୍ୟ ତୋର ଶିଖା ।
ହରମଉଳିଯୋଗ୍ୟ ଚମ୍ପକକୁ । ଭରମରେ ବୃଥା ପଡ଼ି ଯା ଟାକୁ । ୧୧ ।
ଶ୍ରୁଚିଚନ୍ଦ୍ରୋଦୟ ମଶାଲ ପାଖେ । ବହ୍ନି ଜାଳିବ ଯେବେ ଦଶାମୁଖେ ।
ଧାତା ତ କରିନାହିଁ ତାମ୍ବାକାଶ । କିରୂପେ ହେବ ସେପରି ପ୍ରକାଶ । ୧୨ ।
ବୋଲ ହୋଇ ଭୂତ ଧରି ପରଶୁ । ବଳୀବର୍ଦ୍ଧବର ଚରମେ ବସୁ ।
ଗଜସ୍ତି-ପ୍ରାଣନାଥ ଅନୁଭବ । ଠଉରି ପାରିବ ନାହିଁ ତା ଲବ । ୧୩ ।
ସରପର୍ପଟି ଯାହାକୁ ମିଳଇ । ସେ ସୁଖେ ତା ଭୋଜନେ ପ୍ରବଳଇ ।
ସଢ଼ାଇବାକୁ ତା ବଢ଼ାଇ ବସି । ଦୁର୍ମତି ଯେବେ ଖୋଇବ ଘଷି ।୧୪।
ଶର ଉପବନ୍ତୁ କେଉଁ ପୁରୁଷ । ସମ୍ବାଦ ଯୋଗ୍ୟ ଗୁଣ ପଉରୁଷ ।
କଉଶେ ସଞ୍ଚରିବା ନ ସହିବ । କଣ୍ଟକଣ୍ଠେ ଯେବେ ଅବ୍ରୋହିବ ।୧୫।
ଗଙ୍ଗାର ପ୍ରବାହେ ଅଳପେ ବୁଡ଼ । ଅଙ୍ଗାର କି ନିଜ ବର୍ଣ୍ଣ ଛାଡ଼ ।
ବଳାହୃତ ରତ୍ନ ପର ଦଶିବ । ବାଳା ପୟୋଧର ହାରେ ମିଶିବ । ୧୬ ।

---

ପୁରଟ—ସ୍ୱର୍ଣ୍ଣ, ଜବସଲତା—ଦୁବଘାସ, ସ୍ୱବାସମୃଦକୁ—ନିଜ ଜନ୍ମସ୍ଥାନ ଗର୍ବରୁ, ନିର୍ବେଦ—ବୈରାଗ୍ୟ, ଷଡ଼ଦର୍ଶୀ—ଦର୍ଶନଶାସ୍ତ୍ରଜ୍ଞ ପଣ୍ଡିତ, କାତ—ଶ୍ଲେଟ କଣ୍ଟୁରୀ, କରମର୍ଦ୍ଦକ—କରଞ୍ଜଫୁଲ (?), ଶିଖା—ମସ୍ତକ, ହରମଉଳି—ଶିବଙ୍କ ମସ୍ତକ, ଟାକୁ—ଅପେକ୍ଷାକରୁ, ଶ୍ରୁଚିଚନ୍ଦ୍ରୋଦୟ—ମନୋହରଚନ୍ଦ୍ରଉଦୟ ବଳତା, ଦଶାମୁଖେ—ଶୃଙ୍ଗଅଗ୍ରେ, ତାମ୍ବାକାଶ—ତତ୍‌ସ୍ୱରୂପ, ଭୂତ—ପାଉଁଶ, ପରଶୁ—ଶସ୍ତ୍ରବିଶେଷ, ବଳୀବର୍ଦ୍ଧବର—ଷଣ୍ଢ, ଚରମ—ପିଠି, ଗଜସ୍ତିପ୍ରାଣନାଥ—ଶିବ, ଅନୁଭବ—ତେଜ, ସରପର୍ପଟି—ଦୁଧସରରେ ତିଆରି ଏକ ପ୍ରକାର ମିଷ୍ଟାନ୍ନ, ବଢ଼ାଇ—ଗର୍ବ, ଘଷି—ଶୁଖିଲା ଗୋବର, କଉଶେ—ଶବ୍ଦମାତ୍ର, ଅତି-ସାମାନ୍ୟ; ସଞ୍ଚରିବା—ପାଦରେ ଚାଲିବା, କଣ୍ଟକଣ୍ଠ—ଘଷିବ୍ରହ୍ମ ପଥ; ବଳାହୃତ ରତ୍ନ—ଇନ୍ଦ୍ରନୀଳମଣି ।

ସତର ବୟସୀ ସତତ ମନ । କରଇ ଯାହାଙ୍କୁ ଅନୁଗମନ ।
ଛବି-ଶୂନ୍ୟ, ଷଣ୍ଡ ବୃଦ୍ଧ ତା ଭୁଲେ । ଅବିବେକବଶୁ ବିବାଦୀ ହେଲେ । ୧୭ ।
ଗୁଞ୍ଜିର କେଉଁ ପୁଣ୍ୟବନ୍ତ ସିନା । ସଙ୍ଗକୁ ଅଙ୍ଗୀକାର କଲା ସିନା ।
ହୋଇଲା ତ ବୋଲି କନକ ତୁଲ୍ୟ । ଲୋଡ଼ିବ ଯେବେ ତାହା ତୁଲ୍ୟ ମୂଲ୍ୟ । ୧୮ ।
ଗଜପତି କୁମ୍ଭସ୍ଥଳ ବିଦାରି । ସଜ ପଲଲ ଭୁଞ୍ଜିବାରୁ ହରି ।
ଦୃଷ୍ଟି ନ ଦେଲା ବୋଲି ଅନ୍ୟ ଶବେ । ଜମ୍ବୁକେ ଯଶସ୍ୱୀ ବୋଲିବା ଯେବେ ॥
ମାନୋଦ୍ଧାରଣ ଶରଣପଞ୍ଜର । ବଘେଲ ବାଦଶା ନୃପକୁଞ୍ଜର
ରାଜା ଜଗଦେବ ହରିଚନ୍ଦନ । ଲଙ୍ଘିଲେ ତାଙ୍କୁ ନ କରି ବନ୍ଦନ । ୨୦ ।
ତାଙ୍କ ସୁଧର୍ମୀ ତୁଲ୍ୟ ସଭା କବି । ଭଣିଲେ ବୃହସ୍ପତି କବିରବି ।
ଶ୍ରବଣ-ସର୍ବାବୟବୀ ମାନବ । ସହସ୍ରାକ୍ଷ ସାମ୍ୟ ଯେବେ ଲୋଡ଼ିବ ।
ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ । ୨୧ ।

( ୨ )

କାହାକୁ କହିବା

ରାଗ—ଅଷାଢ଼ଶୁକ୍ଳ

କାହାକୁ କହିବା, କପାଳରେ ସିନା କର ତାଡ଼ିବା :- ଘୋଷା ।
ଭଜିଥିବ ଭାବି କଳପଲତା, କାଳେ ସେ ହୋଇଲେ ଅପରାଜିତା,
କରି ଗୋଦାବରୀ ନିକଟେ ବସା, କାଳଦେବତା ଯେବେ ହେବ ତୃଷା । ୧ ।
ନଥର ପରୀକ୍ଷିତ ହୀରାମଣି, ପଥରୁ ଯେବେ ହେବ ଊଣା ପୁଣି,
କରି ହାଜର ଥିବ ପଦ୍ମନିଧି, ଜନମିବ ଯେବେ ଯାଚକ ବୁଦ୍ଧି । ୨ ।
ପିନ୍ଧିଥିବ ଜାମାନିମାଗୁଣ୍ଡିକ, ଗୁପତ ଅଙ୍ଗ ଦିଶିଲେ ଝଲକ,
ହରିଭଜନମାଳା ଥିବ କରେ, ଧରି ନେବେ ଯେବେ ଯମ କିଙ୍କରେ । ୩ ।
ଶୟନକୁ ଥିବ ହଂସୁଲତୁଳି, ନିଜ ଅଙ୍ଗରୁ ଜନମିଲେ ଧୂଳି,
ମାଧୂର୍ଯ୍ୟ ଲୋଭରେ ଖାଇଲେ ସିତା, କଣ୍ଠ ଉପକଣ୍ଠ ଲାଗିଲେ ପିତା । ୪ ।

---

ଛବିଶୂନ୍ୟ—କୁରୂପ, ଷଣ୍ଡ—ନପୁଂସକ, ଗୁଞ୍ଜି—କାଇଁଚ, ପଲଲ—ମାଂସ, ହରି—ସିଂହ, ଜମ୍ବୁକ—ବିଲୁଆ, ସୁଧର୍ମୀତୁଲ୍ୟ ସଭାକବି—ଦେବସଭା ତୁଲ୍ୟ ତାଙ୍କ ସଭାର କବି,—ସହସ୍ରାକ୍ଷ—ଇନ୍ଦ୍ର, ଶ୍ରବଣସର୍ବାବୟବୀ ମାନବ—ଯେଉଁ ଲୋକର ସମଗ୍ର ଶରୀରରେ ଶ୍ରବଣ ପରି ଶକ୍ତି ଥାଏ ।

୨ । ଟୀକା— ନଥ—ନୋଥ, ପଦ୍ମନିଧି—ଅତି ମୂଲ୍ୟବାନ ରତ୍ନବିଶେଷ, ଜାମାନିମାଗୁଣ୍ଡି—ପାଇଜାମା ପ୍ରଭୃତି, ହଂସୁଲତୂଳି—କୋମଳ ତୁଳାଶେଯ, ସିତା

ଜୀଇବା ପାଇଁ ପିଇବା ପୀୟୂଷ, ପରିପାକେ ଯେବେ ହେବ ସେ ବିଷ,
କୁନ୍ଦନ ଯେବେ ପାଲଟିବ ରଙ୍ଗ, କଟିସୂତ୍ର ଯେବେ ହେବ ଭୁଜଙ୍ଗ । ୫ ।
କେତକୀରୁ ସମ୍ଭବିଲେ ଦୁର୍ବାସ, ଶିରଗର୍ଭରୁ ଜନ୍ମିଲେ କୁଳିଶ,
ନିଜ ନିଶ୍ୱାସରେ ପଢ଼ିଲେ ଛଳ, ଜଠରାନଳେ ଦେହ ଗଲେ ଜଳି । ୬ ।
ସକଳ ସଉଭାଗ୍ୟ ଅଭିଳାଷେ, ଅନୁସରି ସୁରସୁରଭି ପାଶେ,
ଦୋହନକାଳେ ଦୁଧରୁ ତାହାର, ଧାରାପରାଗ ହୋଇଲେ ବାହାର । ୭ ।
ପିଞ୍ଜରମଣ୍ଡନ ପଢ଼ା ଶାରିକା, ପଢ଼ା ଛାଡ଼ି କଲେ ମଣ୍ଡୂକଡକା,
କପିତ୍ଥ ଫଳିଲେ ରସାଳଲତା, ଅଶୁଭ ପାଞ୍ଚିଲେ ଇଷ୍ଟଦେବତା । ୮ ।
ଜ୍ୟୋତିଷ୍ମନ୍ତ ତାର ନୟନେ ଥିବ, ସମୀପ ଦୀପ ଯେବେ ନ ଦିଶିବ,
ଘନସାର ସାର ସଙ୍ଗମ କ୍ଷଣେ, ଅନ୍ଧ୍ୟ ଯେବେ ଜନମିବ ଈକ୍ଷଣେ । ୯ ।
ଦୂର ହୋଇବାକୁ ଦୁରିତବ୍ୟୂହ, ଗଙ୍ଗାପ୍ରବାହେ କରି ଅବଗାହ,
ନିତ୍ୟ ନିବାସ କରିଥିବ କାଶୀ, ଆସି ଗ୍ରାସି ଦେଲେ ପାତକରାଶି । ୧୦ ।
ହାତୀ ବିତରଣ କରି ଯାଚକେ, ଜାତ କୃପଣ ବୋଲାଇଲେ ଲୋକେ,
ପାତିତ୍ୟଧ୍ୱଂସୀ ଶ୍ରୀମହାପ୍ରସାଦେ, ଜାତିବିଧ୍ୱଂସ ହେଲେ ପରମାଦେ । ୧୧ ।
ଅବଲମ୍ବି କରି ଗରୁଡ଼ନିଡ଼, ଡୁଣ୍ଡୁଭରୁ ହେଲେ ଭୟ ନିବିଡ଼,
ହରିଦରୀମଧ କରି ଶରଣ, ଶଶ ସକାଶୁଁ ଲଭିଲେ ମରଣ । ୧୨ ।
ସିନ୍ଧୁରେ ପଶି ନ ତିନ୍ତିଲେ ପାଦ, ସାଯୁଜ୍ୟ ମୋକ୍ଷରେ ଥିଲେ ବିପଦ,
ମାଜି ନିର୍ମଳ ମୁକୁରକୁ ଚାହିଁ, ପ୍ରତିବିମ୍ବ ଯେବେ ଦିଶିବ ନାହିଁ । ୧୩ ।
ହୃଦ୍ୟରୁ ଯେବେ ଗୁଣର ବିଚ୍ଛେଦ, କାମକାଣ୍ଡରେ ହେଲେ ଶିରଚ୍ଛେଦ,
ସେବିବା ସଞ୍ଜୀବନୀ ମହୌଷଧ, ନୋହିବ ଯେବେ ଆମୟ-ନିଷେଧ । ୧୪ ।
ହିମଗିରିଦରୀ କରି ଆଶ୍ରୟ, ହେଲେ ନିଦାଘ ଭୟ ଅତିଶୟ,
ପଣ୍ଡିତମଣ୍ଡଳୀରେ କରି ସ୍ଥିତ, ଜଣା ନୋହିଲେ ବଚନ ସଙ୍ଗତ । ୧୫ ।
ଜାଣି ବେଦବିଦ୍ୟା ତତ୍ତ୍ୱସାରକୁ, ମୂରୁଖ ବୋଲାଇଲେ ଆଖରକୁ,
ପରଶୁରାମଙ୍କୁ କରିବା ଗୁରୁ, ପଳାଇବା ଯେବେ ଅରି ଆଗରୁ । ୧୬ ।
ବୀଣାବାଦ୍ୟ ଶିକ୍ଷା ଦେଇ ଅଶେଷେ, ଅତାଳଜ୍ଞାନୀ ବୋଲାଇଲେ ଶେଷେ,
ଧରଣୀଦେବଙ୍କ ଚରଣରଜ, ଶିରେ ଘେନିବା ଯେବେ ହେବ ଲଜ । ୧୭ ।

---

—ନିବାତ, କୁନ୍ଦନ—ସ୍ୱର୍ଣ୍ଣ ବା ରତ୍ନ, ରଙ୍ଗ—ଟିଣ, ଘନସାର—କର୍ପୂର, ଅନ୍ଧ୍ୟ—ଅନ୍ଧତ୍ୱ, ଦୁରିତବ୍ୟୂହ—ପାପସମୂହ, ଡୁଣ୍ଡୁଭ—ଧଣ୍ଡସାପ, ହରିଦରୀ—ସିଂହ ରହିବା ଗୁମ୍ଫା, ସାଯୁଜ୍ୟମୋକ୍ଷ—ଆତ୍ମା ଓ ପରମାତ୍ମାର ପୂର୍ଣ୍ଣ ମିଳନ, ଆମୟ—ରୋଗ, ଧରଣୀଦେବ—ବ୍ରାହ୍ମଣ, ତାଳବୃନ୍ତ—ବିଞ୍ଚଣା ।

ଶରୀର ଖେଦ ହୋଇବାକୁ ଶାନ୍ତ, ଚଳିବା ମନ୍ଦ ମନ୍ଦ ତାଳବୃନ୍ତ,
ତହୁଁ ନ ଜନମି ମୃଦୁ ଅନିଳ, ସମ୍ଭବିବ ଯେବେ ପ୍ରଳୟାନଳ । ୧୮ ।
କହିଲ କଳନ୍ତ୍ରିର ପୁରନ୍ଦର, ଶୋଭା ନିମନ୍ତେ ବହି ଅଳଙ୍କାର,
ତହୁଁ ସୁନ୍ଦରଭାବ ନ ଦର୍ଶିବ, ପିଶାଚ ପରି ଯେବେ ଆଭାସିବ ।
ତାହାକୁ କହିବା, କପାଳରେ ସିନା କରି ତାଡ଼ିବା । ୧୯ ।

( ୩ )

ରାଗ—ଅଷାଢ଼ଶୁକ୍ଳ

ଶିଖଣ୍ଡ ମୁକୁଟ, ଶିଖିଚ ତିଳ୍ପ ଅଜନମୁ କୁଟ ।' ଘୋଷା ।

ହେଲ ଯେ ସକଳ ଗୁଣ ପ୍ରକଟ, ପୁରୁଷ ଜାତ ତୁମ୍ଭେ ମଧୁଲିଟ,
ଶ୍ରୀରପିଁଯିଧେ ଅନୁରୋଧ ତୁଟ, କଞ୍ଜରୁ ତେଜିଁ କୁଟଜକୁ ଚଟ । ୧ ।
ପ୍ରତି ନିକୁଞ୍ଜେ ତାଳ ପହପଟ, ଅବଶେଷକୁ ସାକ୍ଷୀ ନଦୀତଟ ।
ବ୍ରଜବଜାରେ ବସେ ଏହି ହାଟ, ପୁଣି ସାହସେ ନିୟମକୁ ହଟ । ୨ ।
କି ମନ୍ତ୍ରେ କରାଇ ମନ ଉଚାଟ, ଚୁଟୁ କହୁ କହୁ ତୋଟିକି କାଟ ।
ବଚନ ସୁଧାସାର ପ୍ରତିଭଟ, ପେଟୁ ଟିଯାକ ନିପଟ କପଟ । ୩ ।
ପ୍ରିୟାକୁ ପିନ୍ଧାଇ ସ୍ୱ ପୀତପଟ, ଆପେ ପିନ୍ଧିବା ତାହା ଲଗିପଟ ।
ଅହା ଏ ଗୁଣ କରିବାକୁ ସ୍ଫୁଟ, ଜଗତେ ଘଟିବେ ନାହିଁ ଯେ ଭଟ । ୪ ।
ହୋଇଗଲ କେଡ଼େ ଅକଲଙ୍କେଟ, ଚନ୍ଦ୍ରକେ ଲକ୍ଷା ଲଗି ହେଲ ଛଟ ।
ଏରୂପେ ଯେବେ ସକଳ ପାଳଟ, ମନମଥ ପେଷି ଥିଲ କି ଥାଟ । ୫ ।
ବୋଲଅ ପର ପ୍ରଣୟିଲମ୍ପଟ, ଯେ କରେ 'ବିଶ୍ୱାସ ତାହାକୁ ଜଟ ।
ଏ ରୀତିରୁ କେ ନ ବହିବ ରୁଟ, ଋଷି ତ ହେଲେ ଛୁଣ୍ଡାଇବେ ଜଟ । ୬ ।
ତୁମ୍ଭ ବୁଦ୍ଧିବଳ ପରି ନିରାଟ, ଜାଇ ଫିଙ୍ଗିଦେଇ ତୋଳ ଭରାଟ ।
ମାଳା କରିବାକୁ ସଖି ବରାଟ, ଫିଙ୍ଗିଲ ମଞ୍ଜୁଷ୍ଟ ହୀରକରାଟ ।
ନୀପ ନିକୁଞ୍ଜ ଅବା କେତେ ବାଟ, ଶ୍ରମ ହୋଇଥିବ ବୋଲି ଜଳଟ ।
ଶ୍ରୀହସ୍ତେ ଚଳି କୁସୁମ ଅଲଟ, କରପରି ଉରଃସ୍ଥଳକୁ ଖଟ । ୮ ।

---

୩ । ଟୀକା—ମଧୁଲିଟ—ଭ୍ରମର, କଞ୍ଜ—ପଦ୍ମ, କୁଟଜ—ବଣମଲ୍ଲୀ, କୁଟ—କପଟ, ଲଗିପଟ—ପିନ୍ଧା ଲୁଗା, ପ୍ରତିଭଟ—ପ୍ରତିପକ୍ଷ ଯୋଦ୍ଧା, ଚନ୍ଦ୍ରକ—ମୟୂରପୁଚ୍ଛ; ଛଟ—ଶହିତ, ଜଟ—ଠକାଅ, ରୁଟ—ଦୁଃଖ ବା ରୋଷ, ବରାଟ—କଉଡ଼ି, ମଞ୍ଜୁଷ୍ଟ—ପେଡ଼ିରୁ, ହୀରକରାଟ—ଶ୍ରେଷ୍ଠ ହୀରା, ଉରଃସ୍ଥଳ—ବକ୍ଷୋଦେଶ ବା ଛାତି, ସ୍ତନସମ୍ପୁଟ—ସ୍ତନରୂପ ଫରୁଆ, ସେ ଶେଯେ କର କଞ୍ଜଦଳକୁଟ—ସେ ଶଯ୍ୟାରେ

ହୃଦରେ ଲଦି ଯା ସ୍ତନ-ସମ୍ପୁଟ, ପିଅ ଯାହା ସ୍ୱାଦୁ ଅଧରପୁଟ ।
ସେ ଶେଯେ କର କଞ୍ଜଦଳକୂଟ, ବସିଛୁ ଗିଳିବାକୁ କାଳକୂଟ । ୯ ।
ଅଜ ଯେ ହୁଅଇ ନାହିଁ ସେ ଲଟ, କିସ ହୋଇବ ହେଲେ ଛଟପଟ ।
ଏତିକି ମୋ ପ୍ରାଣସଖୀର ଭେଟ, କାଳକୁ ହୋଇଲାଣି ଅନିକଟ । ୧୦ ।
ହେବାରୁ ତୁମ୍ଭ ସ୍ନେହେ ଲଟପଟ, ଉତ୍ତମ ପକ୍ଷ ଛାଡ଼ିବାର ଘଟ ।
ଯାହାର ଥିବ ତେଡ଼ିକି ଅଙ୍କଟ, ଦେଖିବ ତୁମ୍ଭେ ତାହାର ଶୁକଟ । ୧୧ ।
କରଜର ମୂଳେ ଚିର କନ୍ୟାଟ, ଯେ ଦେଖି ଫୁଲୁଥାଏ ତୁମ୍ଭ ନାଟ ।
ଯେ ତୁମ୍ଭ ଦରଶନ ଚାତକପଟ, ତା ସୁଖ ମୁଟିଖ ଛୁଟାଇଲ ଛାଟ । ୧୨ ।
ଜାଣି ଯେ ଯିବାର ଯମୁନାଘାଟ, ଦେଖିବାକୁ ତାକୁ ଅଟେ ଝଁପଟ ।
ବହ ଯାହାକୁ ରଚ ବାହାପଟ, କହ କି ଦୋଷ ନୁହ ତାହା ପଟ । ୧୩ ।
ନିଶିତମ ହୋଇଥାଏ ବିକଟ, ଅସି ନଖେ ଠୁଙ୍କ ଯାହା କବାଟ ।
ଯେ ତୁମ୍ଭ ସ୍ନେହବନ୍ଦ୍ୟା ବଡ଼ଗୁଟ, କର ଠିକ ତାକୁ ଏଡ଼େ କପଟ । ୧୪ ।
ଜଳଦ ହୋଇଥାଏ ସଙ୍ଘୋଟ, ଚପଳା ଖେଳୁଥାଇ ଝଟ ଝଟ ।
ଦୂରୁ ଡାକୁଥାନ୍ତି ଯାମିକ ଭଟ, ଅସି ପରା ତୁମ୍ଭେ ତା ସେବା ଗଟ । ୧୫ ।
କର ଅହୁର ତୁମ୍ଭେ ସର୍ପଘଟ, କୁଞ୍ଜ ଖବର କହୁଛୁ କରଟ ।
ଯତ୍ନେ ଯତନେ କଲେହେଁ ଅପଟ, ନ ବାସିଯାଏ କି ଚମ୍ପକପୁଟ । ୧୬ ।
ଦେଖାଇ ମାମୁ ବୋଲି ଦ୍ୱିଜରାଟ, କାଲି ଦେଇଥିଲୁଁ ଯା ନେନେ ଅଟ ।
ତୁମେ ତ ସେହି ଶ୍ୟାମବନ୍ଧୁ ଅଟ, ଶିକ୍ଷା କଲ କାହୁଁ ଏତେ କପଟ । ୧୭ ।
କାହିଁକି ଦେଲ ଏ ପ୍ରାଣ ସଙ୍କଟ, ନୋହୁଁ ବଳୀ ବକ କେଶି ଶକଟ ।
କି ହେବ ଅଜ ହୋଇ ଭଟଭଟ, କର୍ମକୁ ଭର୍ମ ହେଲା ଆରକୂଟ । ୧୮ ।
ଶୁଣି ଭଣିଲେ ହସି ନବ ନଟ, ଆନ ସଙ୍ଗ ମୋର ହଟ ଚମଟ ।
ଏକା ତୋ ସଖୀ ଜୀବନ ମୁଁ ଘଟ, ତା ଜାଣେ ଅଷ୍ଟଦୁର୍ଗ ତୁରାସାଟ ।
ଶିଖଣ୍ଡି ମୁକୁଟ, ଶିଙ୍ଗିଛ ଭଲ ଅଜନମୁଁ କୁଟ । ୧୯ ।

---

ପଦ୍ମପକ୍ଷକୂଟ କର ଅର୍ଥାତ୍ ଜମା କର; କାଳକୂଟ—ବିଷ; ଘଟ ଛାଡ଼ିବା—ପ୍ରାଣ ତ୍ୟାଗ କରିବା; ଶୁକଟ—ଦୁର୍ଦ୍ଦଶା; କନ୍ୟାଟ—ସ୍ତ୍ରୀମାନଙ୍କ ରହିବା ଘର; କରଜର ମୂଳେ···ତୁମ୍ଭ ନାଟ—ଯେଉଁ ସ୍ତ୍ରୀ ତୁମ୍ଭକୁ ଦେଖି ଆନନ୍ଦିତ ହୁଏ, ସେ ଦୁଃଖରେ ନଖମୂନରେ ସ୍ତ୍ରୀଙ୍କ ରହିବା ଘରକୁ ଚିରେ; ଛାଟ—ଆଘାତ କରିବାର ଦଣ୍ଡ, ବାହାପଟ—ବାହୁବଳ; ପଟ—ପକ୍ଷ; ଯାମିକଭଟ—ପ୍ରହରୀ, ଚୌକିଦାର; କରଟ—କୁଆ; ଅପଟ—ନିରୁଦ୍ଧ; ଚମ୍ପକକୂଟ—ଚମ୍ପାଫୁଲର ଆବରଣ; ଦ୍ୱିଜରାଟ—ଚନ୍ଦ୍ର; ଅଟ—କଜ୍ଜଳ; ଭର୍ମ—ସୁନା; ଆରକୂଟ—ପିତଳ; ତୁରାସାଟ—ଇନ୍ଦ୍ର ।

( ୪ )

## ଚାହିଁଲ ତ ନାହିଁ

ରାଗ—ଅଷାଢ଼ଶୁକ୍ଳ

ଚାହିଁଲ ତ ନାହିଁ, ଚକ୍ଷୁକୋଣେ ଚାରୁଚନ୍ଦ୍ରମାମୁହାଁ । ଘୋଷା ।
ଚାମରକୁନ୍ତଳା ବସନ୍ତେ ରୁଷି, ଚନ୍ଦ୍ରାଜଳେ କେଉଁ ତରୁଣୀ ଭାସି ।
ଚତୁରୀ ସହଚରୀ ଆଗେ ବୋଲେ, ଚଉରେ କି ଘେନି ଟିକିଏ ହେଲେ ।୧।
ଚରମ ଆଡ଼େ ଉର ଉଭା ହେଲି, ଚାକର ଛାମୁରେ ଭେଟୁଛି ବୋଲି ।
ଚାଟୁ ଚାତୁରୀ ଚଟୁଳବଚନ, ଚାରଣ ପଦ କଲି ନିବେଦନ । ୨ ।
ଚିବୁକ କମ୍ପାଇ ହୋଇ ବିକଳ, ଚିରିଲି ଚରଣନଖେ ଭୂତଳ ।
ଚିର ଅଂରଜିତ ସ୍ନେହସମ୍ପଦେ, ଚଡ଼କ ପକାଇ ନିର୍ଦ୍ଦୟେ ହୃଦେ । ୩ ।
ଚିନାଏ ଅପରାଧ ନାହିଁ ବୋଲି, ଚେଳ ଅଞ୍ଚଳ ପ୍ରସାରି କହିଲି ।
ଚଣ୍ଡମୂରତି ଧରିଲ କା ବୋଲେ, ଚରଣ ପଙ୍କଜ ଧରିଲେ ହେଲେ । ୪ ।
ଚମ୍ପକଗଉରାଙ୍ଗୀ ପ୍ରଭୁପଣେ, ଚେଟୀଙ୍କ ତୁଲେ ମୁଁ ହୋଇଲି ଜଣେ ।
ଚେର ଦେବା କାଳେ ମୋ ଭାଗ୍ୟବଲ୍ଲୀ, ଚଳି ଉପୁଡ଼ାଇ ଦେଲ କି ବୋଲି ॥
ଚଢ଼ାଇ ଉନ୍ନତ ସୁଖପାଦପେ, ଚକଆଇ ମୂଳ କାଟିଲେ କୋପେ ।
ଚିକ୍କଣ ନୁହଇ ବୋଲି ନ ଜାଣି, ଚିନ୍ତା ହେଲି ମୋରେ କାହୁଁ କି ଶୁଣି ।୬।
ଚଣ୍ଡାଳ ଦୁର୍ଯୋଗରୁ ହୋଇ ଦୋଷୀ, ଚିହ୍ନ ଯେବେ ମୋରେ ରହିଛୁ ରୋଷି ।
ଚଦ ଥରେ ଆଗ ପଛେ ନବାନା, ଚତୁର୍ଥ ଉପାୟ କରନ୍ତା ସିନା । ୭ ।
ଚାତୁର୍ଯ୍ୟବତୀ ନଜକର କର, ଚାଲି ନ ଜାଣେ ମୁଁ ଗରବେ ପୁରି ।
ଚିରାଳ ଯୁବାଗଣେ ବାନ୍ଧିଥାଇ, ଚୂନା କରି ମୋର ତେଡ଼େ ବଢ଼ାଇ । ୮ ।
ଚାରୁବେଶାର ମୁହିଁ ଅନ୍ତରଙ୍ଗ, ଚଉପଦୀ ଗୀତ ରଚନା ସଙ୍ଗ ।
ଚଉଠେ ନ ରଖିଲ ସେ ସ୍ନେହରୁ, ଚପଳେ ଛଡ଼ାଇ ଦେଇ ଦେହରୁ । ୯ ।
ଚାମୀକରସାରଦେହା ଦେହରେ, ଚୀନ ବାସ ପରି ଦାନ ଯେ ହରେ ।
ଚଉକେ ଅନ୍ତର ନୁହଇ କେବେ, ଚୋର ହେଲି ତାହା ଛାମୁକୁ ଏବେ ।୧୦।

---

୪ । ଟୀକା—ଚେଟୀ—ଦାସୀ, ଭାଗ୍ୟବଲ୍ଲୀ ଚେର ଦେବାବେଳେ—ମୋ ଭାଗ୍ୟରୂପ ଲତାରୁ ଚେର ବାହାରିବା ବେଳରେ, ଚଦ—ଗାଳି ଦେଇ, ଚତୁର୍ଥ ଉପାୟ—ଭେଦ ବା ବିଚ୍ଛେଦ, ଚିରାଳ—ପତାକା ( ? ), ଚାମୀକର—ସୁବର୍ଣ୍ଣ, ଚୀନବାସ—ସୂକ୍ଷ୍ମ ବସ୍ତ୍ର, ଚକାମୁଆଁ—ଗୋଲକାର ମୁଆଁ ନାମକ ମିଷ୍ଟାନ୍ନ,

ଚାହିଁଥାଇ ଯାକୁ କାଳକେ ଦନେ, ଚେଉ ତ ପୁଣି ସେ ପଡ଼େ ନୟନେ ।
ଚୁଦରଧରଙ୍କୁ ଏହା କି କର, ଚକ୍ଷୁରସ କେବେ ନ ହେଲ ପର । ୧୧ ।
ଚଣ୍ଡମୟୂଖମଣ୍ଡଳ ସମାନ, ଚୁହୁଁ ଚୁହୁଁ ଯହୁଁ କଲ ବଦନ ।
ଚୁଚୁକ ବାଜିଲ ପର ମୁଁ ଡରେ, ଚହିଁକି ପଡ଼ଇ ପହିଲୁ ଥରେ । ୧୨ ।
ଚମସ୍ୱିନେଶା କି ସୁଖ ପାଦରେ, ଚକଟି ପକାଇଲ ଅନାଦରେ ।
ଚଖାଇ ସୁଧା ଯା କଲ ଅନ୍ୟଥା, ଚମତ୍କାର ଲାଗୁଛି ଏହି କଥା । ୧୩ ।
ଚିରନ୍ତନ ଜନ୍ମ ସୁକୃତ ରାଶି, ଚନ୍ଦ୍ରଚୂଳପାଦ ପ୍ରସାଦେ ମିଶି ।
ଚୁଣ୍ଡେ ଦେଇଥିଲ ବାଳାମଣିକି, ଚିପୁଡ଼ି ଦେଲ ସେ ଭାବ ଏଣିକି । ୧୪ ।
ଚେତ ମୋ ଯେବେ ନ ବଳେ ଅନ୍ଧକୁ, ଚକାମୁଆଁ ଶହେ ଦେବୀମାନଙ୍କୁ ।
ଚଳୁଆ ସ୍ୱର ଶାର୍ଦ୍ଦୂଳକୁ ଯେବେ, ଚର୍ବଣ କର ବୋଲି ଦେଲ ଏବେ ।୧୫।
ଚିକସ୍ୱାଭଙ୍ଗୀ ମୋ ଅଙ୍ଗରେ ହେଜ, ଚଣ୍ଡିକା ସ୍ତୋତ୍ର ପଣ୍ଡିତାଙ୍କୁ ଖୋଜ ।
ଚନ୍ଦ୍ର ଚନ୍ଦନ ବୋଳାଇ ମୋଦରେ, ଚୁପସର କାଢ଼ି ଦିଏ ଆଦରେ । ୧୬ ।
ଚୁଳଇ ଯେବେ ମୁଁ ଶୁଭ ସନ୍ଦେଶ, ଚିଠାଜରେ ଲେଖି ରହି ବିଦେଶ ।
ଚୁଙ୍ଗଡ଼ାଢର ଜୁଟେ ଫରମାସେ, ଚରଣ କରେ ଚୁରକୁ ହରଷେ । ୧୭ ।
ଚନ୍ଦ୍ରକୁ ଚନ୍ଦ୍ରିକା ପିଇବା ଆଶେ, ଚକୋର ପରି ଅନୁସର ପାଶେ ।
ଚିନ୍ତୁଥାଇ ଅସାଧାରଣ ଫଳ, ଚହକିଲ କାଳେ ସମ୍ପତ୍ତିମୂଳ । ୧୮ ।
ଚିକୁରପାଶରେ ଦନ୍ତପନ୍ତିକା, ଚଳାଇବାକୁ ହେବାରୁ ମୋ ଦକା ।
ଚୁଳୁରେ କବରୀ ତରୁଣୀ ପରି, ଚିର ସଜଡ଼ାଇ ଅଶ୍ୱାସି ଭରି । ୧୯ ।
ଚେତା ବାହୁନେ ପହୁଡ଼ିବା କାଳେ, ଚିନ୍ଦଇ-ଚରଣ ଅଳତା ବୋଳେ ।
ଚେଉଲେ ଯାହା ବୋଲେ ଲଭି ଲାଜ, ଚେତାଇ ନାହିଁ ସେ ରସକୁ ଅଜ ॥
ଚନ୍ଦ୍ରିକାବିହୀନ ରଜନୀକାଳେ, ଚନ୍ଦନୀସୋପାନ ଉଠିବାବେଳେ ।
ଚନ୍ଦ୍ରଦୀପ ତା ସମ୍ମୁଖରେ ନ ଥିଲେ, ଚେତନା ମୋ ଦେହେ ନ ଥାଇ ଭଲେ ॥
ଚନ୍ଦୁଆ ଅବନ୍ଧା ମନ୍ଦିର ତଳେ, ଚୁଲାଇ ଯେବେ କେବେ କୁତୁହଳେ ।
ଚଉପହରା ଦାସୀଙ୍କ ଉପରେ, ଚୁପଡ଼ି ଫରମାସଇ କୋପରେ । ୨୨ ।
ଚୁକଚକ୍ୟବନ୍ତ ସୁନ୍ଦର ଗାଲେ, ଚୁମ୍ବଇ ଯେବେ ମୁଁ କାମଅମଳେ ।
ଚମକିବ ଭୀରୁ ବୋଲି ଏ ଡରେ, ଚୁମୁକାର ରବ ନ କରେ ଥରେ । ୨୩ ।

---

ଚିକସ୍ୱାଭଙ୍ଗୀ—ସ୍ୱାସ୍ଥ୍ୟଭଙ୍ଗ; ଚନ୍ଦ୍ର—କର୍ପୂର; ଚୁଙ୍ଗଡ଼ାଢର—ଗଡ଼ାଢର ବା ସରଢର; ଦନ୍ତପନ୍ତିକା—(ଏଠାରେ)ପାନିଆ; ଚନ୍ଦନୀସୋପାନ—ମଣ୍ଡପର ପାହାଚ, ଚଣ୍ଡମୟୂଖ—ସୂର୍ଯ୍ୟ; ଚଉଡ଼ାଇ ଦେଇ—ଚହଟାଇ ଦେଇ ବା ଫଟାଇ ଦେଇ ।

ଚଳଦରୁ ବଳ ବସ୍ତୁଏ ହେଲା, ଚଞ୍ଚଳ କମ ତା କେବେ ନ ଗଲା ।
ଗୁଣକର ଭଲେ ଭରୁଥାଏ ହଟ, ଚଞ୍ଚଡ଼ାଇ ଦେଉ କ ସ୍ନେହ ଘଟ । ୨୪ ।
ଚୁହାଁ ଚୁହିଁ ନାହିଁ ଅନରେ ବୋଲି, ଚକାରେ କାଯ୍ଯମ ଯେତେ ମୁଁ କଲି ।
ଚଳବଂଶ ପଦୁଁ ବଳେ ଗଣିଲେ, ଚତୁର ଶ୍ରୀ ଗୋଟବ୍ରସ୍ଯ ଭଣିଲେ ।
ଗୁହିଁଲ ତ ନାହିଁ, ଚକ୍ଷୁକୋଣେ ଗୁରୁଚନ୍ଦ୍ରମାମୁହାଁ । ୨୫ ।

( ୫

ସେ ପୀରତି ସତେ

ରାଗ—ଅଷାଢ଼ଶୁକ୍ଳ

ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ଘୋଷା ।
ଶାରଦା ନୁହେ କରେ ବାବଦୂକ, ଅମଳ ନୋହେ ଅତି ଉନ୍ମାଦକ,
ହୋଇ ହୃଦଯ଼ ଅଦୃଶ୍ୟ ପଦକ, ହଜାଇ ଦଅଇ ବିବେକଯାକ । ୧ ।
ସୁମ ନୋହି କରେ ଦବ୍ୟ ସୁଗନ୍ଧ, ସମଜଇ ନାହିଁ ନୁହଇ କନ୍ଧ,
ପଟଳ ନୋହି ଚକ୍ଷୁ କରେ ଅନ୍ଧ, ଶୃଙ୍ଖଳ ନୋହେ ଦୃଢ଼େ କରେ ବନ୍ଧ ।୨।
ନୋହେ ବଇରାଗ୍ୟ ତେବେ ସେ ଦେହେ, ତାହା ବିନା ଯନ୍ତ ଲବେ ନ ରହେ,
ଅଜ୍ଞାନ କରେ ମୂର୍ଖପଣ ନୋହେ, ଅନଳ ନୋହି ଶୀର୍ଣ୍ଣ କରେ ବିରହେ ।୩।
ନୋହେ ଚନ୍ଦ୍ରକର କରେ ଅହ୍ଲାଦ, ଅମୃତ ନୁହେଁ ସେ ତହୁଁ ସୁଆଦ,
ଚିନ୍ତା ନୁହେ ଜାତ କରେ ବିଷାଦ, ବଢ଼ାଏ ଗରବ ନୁହେଁ ସମ୍ପଦ । ୪ ।
ନୁହଇ ଶଗ୍ରିରରଖା ମନ୍ତ୍ର, ଦର ହେତୁରୁ ନ ଜନ୍ମାଏ ଦର,
ଦୁଏ କାଦାନଭୁତ ବିନାଦର, ପଲ୍ଲବାଏ ଅସଦୃଶେ ଆଦର । ୫ ।
ନୋହେ ଧୂକନେବଗୋଲା କଜ୍ଜଳ, ଦୃଶ୍ୟ କରାଏ ଗାଢ଼ତମ ସ୍ଥଳ,
ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ, ବୁଡ଼ାଇ ଦଅଇ ନୁହଇ ଜଳ । ୬ ।
ଅତି ଚମତ୍କାରତର ତା ଲୀଳା, ନାହିଁ ଦେହ ନୁହେ ଶିଳ୍ପକୁଶଳା,
ଲେଖଇ ସଂସାରେ ନ ରଙ୍ଗି ତୁଳା, ପ୍ରତି ଦଗେ ପ୍ରିୟଜନ ପିତୁଳା । ୭ ।
ଅଭିପ୍ରେତ ଗଲେ ନୟନେ ପଡ଼ି, ଅଟକଇ ପଦ ନୁହଇ ହଡ଼ି,
ନ ଥାଏ ଭୂଜ ରହିଥାଏ ଭିଡ଼ି, ନୁହଇ ପରାଣ ନୁହଇ ଗୁଡ଼ି । ୮ ।

---

୫ । ଟୀକା—ଶାରଦା—ସରସ୍ୱତୀ, ବାବଦୂକ—ବାଚାଳ, ପଦକ—ହାର ମଧ୍ୟବର୍ତ୍ତୀ ଅଳଙ୍କାରବିଶେଷ, ସୁମ—ଫୁଲ, କନ୍ଧ—ଅରଣ୍ୟଜାତୀୟ ଲୋକ, ଧୂକ—ପେଚା, ଜଙ୍ଘାବଳ—ବେଗଗାମୀ ଦୂତ, ହଡ଼ି—ହରକାଠ, ପ୍ରତିବନ୍ଧକ;

ପୁତ୍ର କଳତ୍ର ସମ୍ପତ୍ତି ଅବାସେ, ରୁଚି ବିନା ବିଷ ପରି ଅଭ୍ୟାସେ,
ଚିନ୍ତା ଜନ୍ମାଇ ଦିଅଇ ମାନସେ, ଅହା କି ବିଚିତ୍ର ରସନଦୀ ସେ । ୯ ।
ବିଚ୍ଛେଦ କ୍ଷଣ କରଇ ବିବିଷେ, ସଙ୍ଗମେ ଅଶେଷ ସୁଖ ବରଷେ,
ବିରି ଅଙ୍କର ସବୁ ଭାବର ସେ, ଅତି ବିଷମ ହୁଏ ନବ ରସେ । ୧୦ ।
ସନ୍ତପ୍ତ କରେ ନୁହଇ ତପନ, ଅନ୍ତକ ନୁହେ ହରଇ ଜୀବନ,
ମନୁ ଜନମେ ନୁହଇ ମଦନ, ଦନୁଜ ନୋହେ ସେ ପିଶିତାଶନ । ୧୧ ।
ନୁହଇ ପରଶ୍ୱ କେଦାର ପରି, ପାରଇ ଫଣୀଫଣାମଣି ହରି.
ମନୋରଥ ପଥେ ନ ଥିବା ଶିରୀ, ହେଲେ ଦିଅଇ କରଗତ କରି । ୧୨ ।
ନୋହେ ବହଳ ଉପାନହ ଯୋଡ଼, କଣ୍ଟକେ କଟାକ୍ଷ ନ କରେ ଅଡ଼,
ବୃଷ୍ଟି ବାରଣ ଛତ୍ର ନ ପକଡ଼, ନ ମାନେ ନଭମାସ ନିଶା ଝଡ଼ । ୧୩ ।
ନୁହଇ ପାଷାଣ ମୂଷା ସମାନ, ନ ମାନେ ଗୃହପଣେ ଦାଢ଼ ମନ,
ନୁହଇ ଖେଚର ସିଦ୍ଧସାଧନ, ଧନଦାଳୟକୁ ପେଷଇ ମନ । ୧୪ ।
ଫଳେ ନାନାଫଳ ନୋହେ ବ୍ରତତୀ, ସ୍ମର ସହଚରୀ ନୁହେ କେଳତି,
ମର୍ମରେ ଭେଦଇ ନୁହଇ କାତି, ମଦିରା ନୋହି ଯା ହରଇ ଜାତି । ୧୫ ।
ଅଦ୍ରି ମୁନିଙ୍କର ଗୋତ୍ର ସମ୍ଭୂତୀ, ଭୂଦେବ ସୂର୍ଯ୍ୟଗୁରୁ କବିରତ୍ନ,
ସଂଶୟ ଧ୍ୱଂସ ନୋହିବାରୁ କଚ୍ଛି, ବିଗୃହ ମାନସେ ପଗ୍ଭରୁଅଚ୍ଛି ।
ସେ ପୀରତି ସତେ, କି ପଦାର୍ଥ କହ ପଣ୍ଡିତେ ମୋତେ । ୧୬ ।

( ୬ )

ଖେମଟା ଭୁମ୍ପା

ତୋ ଗୃହୁ ଗୃହାଣି ଗୃହିଁ, ମରି ତୁ ଅରୁର ସାଣ ପକା ପଛେ, ମୋ ନିଅଳୀ, ମୋ ଦେହ ତ ସହୁ ନାହିଁ । ୧ । ଦିଅ ଯେତେ ଇଚ୍ଛା ଦଣ୍ଡ, ଝୁମ୍ପି କାମ ସଙ୍ଗେ ଝୁଣି ଦେବି ସିନା, ମୋ ନିଅଳୀ, ଝଳ ଝଲମଲ ଗଣ୍ଡ ॥ ହେଉଛି କି ଶିରଗଭ୍ଭ, କାଳ ସହୁନାହିଁ ବାଳମୃଗଦୃଶା, ମୋ ନିଅଳୀ, ନୁଅ ବିକଶିତ ଶୋଭ । ୩ । ତୋହ ପରି ତୁହି ସିନା, ବିଜେ କଲା ପୁରେ ସୁର ରହିଥାଏ, ମୋ ନିଅଳୀ, ବନଜ-ବନ-ବାସନା । ୪ । ଅଚ୍ଛ ଯେବେ ଅନୁକମ୍ପା, କାତି ଝିଙ୍କି ପଛେ ଗ୍ଳତରେ ପ୍ରହାର, ମୋ ନିଅଳୀ, ହୀରା ବୁଲ୍ଲକ ନ କମ୍ପା ॥

---

ପିଶିତାଶନ – ମାଂସଭକ୍ଷକ, ପରଶୁକେଦାର—ଏକପ୍ରକାର ଗଦ, ଏହାର ଗନ୍ଧରେ ସାପ ମୁଣ୍ଡ ନୁଅଇଁ ପଡ଼ ରହେ ।-ଉପାନହ— ଯୋତା, ନଭମାସ—ଶ୍ରାବଣମାସ ।

୬ । ଟୀକା – ବନଜବନବାସନା – ପଦ୍ମବନର ସୁବାସ, ହୀରବୁଲ୍ଲକ— ହୀରାର ଦଣ୍ଡି ।

ଯାସୋର ବାସର ଲଜ, ପଛକୁ ପକାଇ ନ ଦେଲେ ନ ଚଳେ, ମୋ ନିଅଳୀ, ବଧି ନିଷେଧକୁ ଅଜ । ୬ । ତୋ କୁଚ ତ କରକଶ, ସବୁ ଗୁମାନ ଅଛ କେତେବେଳକୁ, ମୋ ନିଅଳୀ, ଥରେ ମୋହ କରେ କଷ । ୭ । ଚୁମ୍ବନେ କଲେ ଶରଧା, ଚରଣଠାରୁ ଲବସିଯାଏ ତୋର, ମୋ ନିଅଳୀ, କାହିଁ ପୁର ନାହିଁ ସୁଧା । ୮ । ଚତୁରଦଶ ଭୁବନେ, ରସବନ୍ତୀ ଚକ ଚୂଡ଼ାମଣି ବୋଲ, ମୋ ନିଅଳୀ, ତୋ ବିନା ଅନେ ନ ମାନେ । ୯ । କାହିଁକି ଗୁଲ୍ଫୁ ତଳେ, ଘାଣ୍ଟି ହେଉଅଛୁ କଣ୍ଠୀରବମଧ୍ୟା, ମୋ ନିଅଳୀ, ମୋ ମନଯାକ ବିକଳେ । ୧୦ । ଅନ ନାହିଁ ତୋହ ବିନା, ଅଷ୍ଟଦୁର୍ଗଧସିବର ଅରେ ଧୀରି, ମୋ ନିଅଳୀ, ତୋହର ଅଧୀନ ସିନା । ୧୧ ।

( ୭ )

ଜାଇଫୁଲ ଚୁମ୍ବା

କରଗତ ଚୁନ୍ଦମୁହିଁ, କର ଗତ ରସେ ରଜନୀ ପୁହାଏ, ଜାଇଫୁଲ ରେ, ତୋ ରୂପ ଲବଣ୍ୟ ଚୁହିଁ । ୧ । ଖରପରଶୁମୋହନା, ଖଣ୍ଡପରସା ବଚନକୁ କହ, ଜାଇଫୁଲ ରେ, ଖଣ୍ଡ ହୃଦସ୍ଥ ବେଦନା । ୨ । ଗିରିସମ କାଳେ ଧନ, ଗିରସମ କୁଚେ ଲେପି ଚନ୍ଦନ, ଜାଇଫୁଲ ରେ, କରୁଥାଉ ଆଲିଙ୍ଗନ । ୩ । ଘନସାର ମୋ ହୃଦରୁ, ଘନସାରକେଶୀ ଝାଡ଼ି ଦେଇ କର, ଜାଇଫୁଲ ରେ, ଗାଢ଼େ ଆଲିଙ୍ଗନ କରୁ । ୪ । ନାଗରମଣିକ ତତେ, ନାଗମଣିକୁମ୍ଭସ୍ତନା ସମାନ ରେ, ଜାଇଫୁଲ ରେ, ହୋଇବେ ନୋହେ ପରତେ । ୫ । ଚନ୍ଦ୍ରମୁହାଁ ପ୍ରାଣଧନ, ଚନ୍ଦ୍ର ମୁହିଁ ଗୁଳ ରଭ କଲ କାଳେ, ଜାଇଫୁଲ ରେ, ଶୀତଳକାରେ ଭକୁ ଅଞ୍ଜନ । ୬ । ଛାଇ ବିପରୀତ ମୋର, ଛାଇଟି ପରିଏ ଦେହକୁ ନ ଛାଡ଼େ, ଜାଇଫୁଲ ରେ, ସେରୂପେ ଥିବ ପାଶର । ୭ । ଜାତୀକରଜା ସୁକେଶୀ, ଜାତକର ଦବ୍ୟହାରକ ସୁଦନ୍ତୀ, ଜାଇଫୁଲ ରେ, ଚନ୍ଦ୍ରଚନ୍ଦ୍ରମା ସୁହାସୀ । ୮ । ଝଳ ସୁନାଅଙ୍ଗୀ ରତେ, ଝଳ ସୁନା ପର ଗାଢ଼େ ଭିଡ଼ି କର, ଜାଇଫୁଲ ରେ, ନ ଦେଉ କ ସୁଖ ମତେ । ୯ । ନଶାରେ ସିତକରଜା,

୭ । ଟୀକା—ଖଣ୍ଡପରଶୁମୋହନା—ଶିବଚିତ୍ତହାରିଣୀ, ଘନସାର—କର୍ପୂର ବା ଚନ୍ଦନ, ଘନସାରକେଶୀ—କଜ୍ଜଳକୁନ୍ତଳା, ନାଗରମଣୀ—ପାତାଳ-ପୁରବାସିନୀ, ନାଗମଣିକୁମ୍ଭ—ବଡ଼ ହାତୀର କୁମ୍ଭସ୍ଥଳ, ଛାଇ ବିପରୀତ—ଇଚ୍ଛା, ଜାତକର—ଉତ୍କୃଷ୍ଟ, ଚନ୍ଦ୍ର—କର୍ପୂର, ସିତକରଜା—ଶୁକ୍ଳବର୍ଣ୍ଣ ନଖ ଯାହାର,

ନିଶାରେ ଶୀତରେ ଅଦର ନ କର, ଜାଈଫୁଲ ରେ, ଅଙ୍ଗସଙ୍ଗେ ଦେଲ୍ଲ ମଜା । ୧୦ । ଟିକିଏ ବାକଲ ନୋହୁ, ଠିକା ଏବେ କାମରଜାର ଭାଙ୍ଗିବ, ଜାଈଫୁଲ ରେ, ତୋ ସାହାରେ ପ୍ରାଣସହୁ । ୧୧ । ଠକୁରିବ ନାହିଁ ବୋଲ, ଠକୁର ବାସିଗ ପାଇଣ ମଦନ, ଜାଈଫୁଲ ରେ, ପଳାଏ ରତେ ଛଇଲ । ୧୨ । ଡାକ କରଗତ ତୋତେ, ଡାକ କରଅଛୁ ଡାକମଞ୍ଝା ସର, ଜାଈଫୁଲ ରେ, କୁହଇ ମୁଁ କଦାଚିତେ । ୧୩ । ତାଲି ସୁଧାକର-ମୁଖି, ତାଲି ସୁଧା କ ଭଙ୍ଗୀରେ ଗୃହୁଁ ଥାଉ, ଜାଈଫୁଲ ରେ, ଜପୁକାଇ କେତେ ସୁଖି । ୧୪ । ଅବଧର ତୋ ଅଙ୍କାକୁ, ଅବଧ ରିପୁ କାମକୁ ଦଣ୍ଡ ଦେବ, ଜାଈଫୁଲ ରେ, ସେବାରେ କେଣି ମନକୁ । ୧୫ । ତାରତମ କଲେ ସହୁ, ତାରତ ମଧ୍ୟରେ କଳଙ୍କ ମୁଖିକୁ, ଜାଈଫୁଲ ରେ, ଇନ୍ଦ୍ରସମ ହେବ କେହୁ ॥ ଥର ଥରକେ ମୋ ଅଙ୍ଗ, ଥରଥର ହୁଏ କାମଶରଘାତେ, ଜାଈଫୁଲ ରେ, ରତିରେ ନ ପାଏ ସଙ୍ଗ । ୧୭ । ଦରଶନକମୋହନୀ, ଦରଶନ ବିନା ତୋହର କାମକୁ, ଜାଈଫୁଲ ରେ, ନୋହିଲେ ଥାଏ ନ ମାନି । ୧୮ । ଧରମ ନ କର ନିକ, ଧର ମନରେ ପାଇଛୁ ମୁହିଁ ହେମ, ଜାଈଫୁଲ ରେ, ଚମ୍ପକସୁବରନୀକ । ୧୯ । ନରବର-ସୁତା ଧେନ, ନରବରଜେ ସମାନ ସତେ ନାହିଁ, ଜାଈଫୁଲ ରେ, ପାଇ ତୋ ପ୍ରେମରତନ । ୨୦ । ପରମଦା-ବଚ ସହୁ, ପରମ ଦାରୁଣ ଫୁଲଧନୁ ପାଦେ, ଜାଈଫୁଲ ରେ, ଅନୁସର ଅଛୁ ମୁହିଁ । ୨୧ । ଫୁଲୁଥାଏ ଯେବେ ନାସା, ଫୁଲୁଥାଏ କାମ ମନ ସାହା ପାଇ, ଜାଈଫୁଲ ରେ, କରଣ ତୋତେ ଭରସା । ୨୨ । ବରଷ ଶହେ ତପରେ, ବଚ ଫଣସ୍ତେ ଛାଡ଼ି ପୂର୍ବେ ପାଇଛୁ, ଜାଈଫୁଲ ରେ, ଶିବଙ୍କୁ ମନାଇ ବାରେ । ୨୩ । ଭାରତୀକ ଶୁଣି ତୋର, ଭାରତୀ କ ପାଣି ବୀଣା ଫିଙ୍ଗି ଦେବେ, ଜାଈଫୁଲ ରେ, ଲଜ୍ଜାରେ ହୋଇ କାତର । ୨୪ । ମନମଥ ନାମ ଯାର, ମନମଥନୀ ତୁ ଅଟୁ ତାହାର, ଜାଈଫୁଲ ରେ, ଶଶିହାସୀ ରମାବର ॥ ଜୀବନଜବଦନାକୁ, ଜୀବନ ଯତନେ ବାକ ଦେଇଅଛୁ, ଜାଈଫୁଲ ରେ, କାତର କାମ ଗ୍ଳାବକୁ । ୨୬ । ରତ୍ନକର ତୁଳା ତୋର, ରତ୍ନ କରକରଦନା

ନିଶାରେ—ଅନୁରାଗାଧିକ୍ୟରେ, ନିଶାରେ—ରାତ୍ରିରେ, ଠିକା—ଠେକ, ବନ୍ଧମା; ଅବଧ ରିପୁ—ଦୁର୍ଜ୍ଜୟ ଶତ୍ରୁ, ନରବରସୁତା—ରାଜକନ୍ୟା, ନରବରଜ—ନରଶ୍ରେଷ୍ଠ, ଭାରତୀ—କଥା ଓ ସରସ୍ୱତୀ, ଜୀବନଜବଦନା—ପଦ୍ମମୁଖୀ, ରତ୍ନକର ତୁଳା—ଅତି ସାମାନ୍ୟ ଓଜନରେ, ସୁରମଣି—ଇନ୍ଦ୍ରମଣି ।

ଊଣାହେବ, ଜାଈଫୁଲ୍ ରେ, ସମ କେ ଅଛୁ ସଂସାରେ । ୨୭। ଲକ୍ଷ ଦେବୀ ସେବା କରି, ଲକ୍ଷ୍ୟ ଦେବ ତୋତେ ବିଶ୍ବର କବିଏ, ଜାଈଫୁଲ ରେ, ନ ପାଇଲେ ଶ୍ରମ ପୁଣି । ୨୮ । ବଳିଅଛି କହ ଧନ, ବଳିଅଛି ଶୁଭ ରଶ୍ମି ଜୀବନରେ, ଜାଈଫୁଲ୍ ରେ, ତୋ ଅଧର ସୁଧାପାନ । ୨୯ । ସାରସଗନ୍ଧ ମହିଳା, ସାରସଙ୍ଗତ ପାଇ ମୁହିଁ ନିରତେ, ଜାଈଫୁଲ୍ ରେ, ଭାବେ ହେଉ-ଥାଏ ଭୋଳା । ୩୦ । ସୁବରନକୁ ତୋହର, ସୁବରନ ସବୁ ନୋହଣ ଅନଳେ, ଜାଈଫୁଲ୍ ରେ, ଦହୁଅଛୁ ତା ଶରୀର । ୩୧ । ସୁରମଣୀ ପାଶେ ଥିଲେ, ସୁରମଣି ପଦ ବଳାତ୍କାରେ ମୋର, ଜାଈଫୁଲ୍ ରେ, ପଡ଼ିଥାଏ ପାଦ ତଳେ । ୩୨ । ହରବର ପାଇ କେତେ, ହର ବର ପାଇ ପାଇଲି ଛତେ, ଜାଈଫୁଲ୍ ରେ, ନ ଥିଲି ମନେ ପରତେ । ୩୩ । ଝିଲ୍ଲି ପହଞ୍ଚିବା ଭାବ, ଝିଲ୍ଲିପ ହରିଚନ୍ଦନ କହେ ଛତେ, ଜାଈଫୁଲ୍ ରେ, ଦେଖି ଦେବକୁ ତେଜିବ । ୩୪ ।

( ୮ )

କାମଦୁହା ଚଉତିଶା

ରାଗ—ପୁରବୀ

କଶୋଣ୍ଡିଙ୍କ ବର ଯଦୁପତି, କରି ଚିର ପରବାସେ ସ୍ଥିତି ।
କୁନ୍ଦକଇରବହାସୀଙ୍କ ପୂର୍ବ ରସବଶ ହୋଇ ଜଳପତ୍ର ।
ଅରେ କଳଭାଷି । କୃଶୋଦରୀ କମନୀୟ ମୁଖଶଶୀ ।
କଳାକଲ୍ଲୋଳିନୀ କେଳିକଳହଂସୀ, କାମ ମଦର ମହତ୍ତ୍ବ ସମୁଲ୍ଲାସୀ । ୧ ।
ଖଟଣି କଙ୍କରଙ୍କର ମେଳେ, ଖଟିଥିବ ଯେ ତୋ ଖଟତଳେ ।
ଖପଣିମଣ୍ଡଳ ଜିଣି ଯିବା ଫଳ ଲୁଟିଯିବ ତା ଚରଣ ମୂଳେ ।
ଅରେ ଖେଳାଖେଳା, ଖଞ୍ଜରୀଟରୁ ବଳେ ତୋ ନେତ୍ରଲୀଳା ।
ଖୁରଅଙ୍କ ନ ଥାଇ ସ୍ନେହରେ ହେଲା, ଖଣ୍ଡପରଶୁ ମନମୋହନଶୀଳା । ୨ ।
ଗତିରେ ବିବିଧ ଭଙ୍ଗୀ ଭରୁ, ଗଜେନ୍ଦ୍ର ଗରବ ହେଲେ ହରୁ ।
ଗଗନ ସଲିଳଗୃହୀ ହଂସକୁଳ ଦନଯାଏ ଡରି ମରୁ ମରୁ ।

---

୮ । ଟୀକା—କୁନ୍ଦକୈରବହାସୀ—କୁନ୍ଦଫୁଲ ଓ କଇଁଫୁଲ ପରି ହାସ ଯାହାର, ଖଟଣୀ—ସେବା, ଖୁରଅଙ୍କ—ମୁହୂର୍ତ୍ତିମାତ୍ର, ଗର—ବିଷ, ଘୋର

ଅରେ ଗଣ୍ଡିଧନ, ଗୁଣବତୀ ମୁଁ ଗୁଡକ ନବଘନ ।
ଗତରସ ହେଲା କେତେ ସୁଖମାନ, ଗର ଗିଳିବାକୁ ହେଉଅଛି ମନ । ୩ ।
ଘଟପୀନସ୍ତନୀ ଗୃହୁ ବେଣୀ, ଘେନାଘେନି କେତେ ଜାଣୁ ପୁଣି,
ଘୋରତର ସ୍ମରପ୍ରତାପ ସାଗର ମଧ୍ୟରୁ ତୁ ମୋର ଉଦ୍ଧାରଣୀ ।
ଅରେ ଘନକେଶୀ, ଘନଜଘନୀ ମହାମଣ୍ଡନ ବେଶୀ ।
ଘୋର୍ ଶ୍ରୀଖଣ୍ଡବାସିନୀ ବରଯୋଷା, ଘାରିପକାଇଛୁ ତୋ ବିଚ୍ଛେଦଦଶା । ୪ ।
ନ ପାରେ ମା ବୋଲି ଅଡୁଥାଇ, ନମ୍ରେ କରଯୁଗ ଯୋଡୁଥାଇ,
ନଣ ପରି ଗେଲେ ମୋଡୁଥାଇ, ହସି ନତନୁ ଲଢ଼ାଇ ଲେଉଡୁଥାଇ ।
ଅରେ ନତ ଅଙ୍ଗୀ, ନୂଆ ବୟସୀ ନର୍ମ ରଙ୍ଗିଲାପାଙ୍ଗୀ ।
ନେଇ ବରଛି ତୁ ଏକା ଜାଣୁ ଫିଙ୍ଗି, ନାହିଁ କରିବାରେ ଥାଏ କେତେ ଭଙ୍ଗୀ
ଚରଣୁ ଚିକୁର ଯାଏ ତୋର, ଚୁମ୍ବିବାରେ ଚଉ ଥାଏ ମୋର,
ଚେତା ବହିାନେ ପହୁଞ୍ଚଥାଇ ଚେଳ ଗ୍ରହିଇ ମୁଁ କରେ ଦିଗମ୍ବର ।
ଅରେ ଚନ୍ଦ୍ରମୁଖୀ, ଚେତ ଚମକେ କି ଲାଜେ ବୁଜୁ ଅକ୍ଷି ।
ଚେଳ ଢାଙ୍କୁ ମୋତେ ମୋ ଅଙ୍ଗରେ ଲକ୍ଷି ଚକ୍ଷୁଉଷ୍ମ ଅଙ୍ଗ ନ ପାରଇ ଦେଖି ।
ଛଣା ପୀୟୂଷ ସଦୃଶ ରସେ, ଛପିଥାଏ ଲାଜ କି ବିଳାସେ,
ଛ ଗୃହଦିଗ ସୁନ୍ଦର ଦିଶୁଥାଏ, ଛଇଳା ଲାବଣ୍ୟ ପରକାଶେ ।
ଅରେ ଛବିନିଧି, ଛାମୁ ଛାଡ଼ିବାକୁ କଲା ମନ୍ଦ ବିଧି ।
ଛେଦ ହୋଇବାକୁ ଜାତ ହୁଏ ବୁଦ୍ଧି, ଛେଲି ମାରି ହେବ ରହିଥାଉ ସିଦ୍ଧି । ୭ ।
ଜପାମାଳା ତୁ ମୋ ସ୍ୱନବାସୁ, ଯେତେବେଳେ ଜାକୁଞ୍ଜିକୁ ଅସୁ,
ଜଙ୍ଗମ ହେବାର ଜମ୍ବୁନଦ ସାର ଜଗତଜୀବାତୁ ପରି ଦିଶୁ ।
ଅରେ ଜବାଧରୀ, ଜମ୍ବାରିତମଣି ନୀଳତର ଚାରି ।
ଜମ୍ବୁନଦ ଧରାଧର ପୟୋଧରୀ, ଜକାଜକ ଜଉତୁକ ଧୁରନ୍ଧରୀ । ୮ ।
ଝୁଲି ଝୁଲି ଗୃହ ମୋଦ ମଦେ, ଝୁମୁ ଝୁମୁ ତୋ ଝୁଣ୍ଟିଆ ନାଦେ ।
ଝଟତ ନିର୍ଜରପ୍ରଭୁ-ଶିରୀ ଶିର ଝଟକୁ ମୁଁ ଝୁଣ୍ଟିଯାଏ ପାଦେ ।
ଅରେ ଝଳ ଗୋରୀ, ଝୁଲି ଜାଣୁ ଭଲ ହେଲେ ମୋହ ପରି,
ଝଲକଇ ଝାଲବ୍ୟାଜ ସୁଧା ଝରି, ଝଟ ଝଟ ହେଉଥାଏ ଭୂଷା ଶିରୀ । ୯ ।

---

ଶ୍ରୀଖଣ୍ଡବାସିନୀ—ଘୋରି ହୋଇଥିବା ଚନ୍ଦନ ପରି ଯାହାର ଦେହ ବାସେ, ନର୍ମ—ପରିହାସ, ଚିକୁର—କେଶ, ଚେଳ—ବସ୍ତ୍ର, ଦିଗମ୍ବର—ବସ୍ତ୍ରଶୂନ୍ୟ; ଜମ୍ବୁନଦଧରାଧର—ମେରୁପର୍ବତ, ନିର୍ଜରପ୍ରଭୁ—ଇନ୍ଦ୍ର, ମଣିସାନୁ—(ଏଠାରେ)

ନମ୍ରମୁଖେ ମଣିସାନୁ ଥାଏ, ନିକଟେ ପୀୟୂଷଭାନୁ ଥାଏ,
ନଥ ଭୁଲେ ନାହିଁ ବାଦେ କର ହୃଷ୍ଟ ଚୁମ୍ବନ ଝୁଲ ନ ମାନୁଥାଏ ।
ଅରେ ନାଗ୍ରବର, ନୃତ୍ୟ କରୁଥାଏ ପୟୋଧରେ ହାର ।
ନେତ୍ରଦ୍ୱୟ ଏକା ପିନା ସାକ୍ଷୀ ମୋର । ନାଦେ ତୋଷୁଥାଏ ମଧ୍ୟ ଅଳଙ୍କାର ॥
ଝୋପି ଝୋପି ଝାଲ ଚୂର୍ଣ୍ଣ କେଶେ, ଟିକ ଟିକ ମୋତି ପଡ଼ ଦଶେ,
ଝେକ ଝେକ ଘେନ ଯାଉଥାଉ ସ୍ୱର୍ଗସୁଖ ବଢ଼ାଉ ବଢ଼ ରସେ ।
ଅରେ ଝାଲ୍ରସ୍ନା, ଝଲି ପଡ଼ୁଥାଏ ମୋର ବିବେଚନା ।
ଝାଣି ଧେନିଯାଉ ହେଲେ ମୋ ବେଦନା, ଝିକାସ୍ମିତ ତୁ ରସିକା-
ଚକ୍ରେ ପିନା । ୧୧ ।

ଠବଣ୍ଟିଲ ମୁଖ ସୁଧାଧାମ, ଠାଣି ତ ଜିଲ୍ଲେକେ ନିରୁପମ,
ଠୁଳ ହେଉଥାଏ ଥରେ ଥରେ ନେତ୍ର ନୀଳକୁଞ୍ଜ ବୁଜା ଶୋଭାସ୍ତୋମ ।
ଅରେ ଠିକହାସି, ଠକପଣ ପୁଣି କରୁ ଥାଏ ମିଶି ।
ଠଳାଇବ କେ ତୋ ଶବ୍ଦମରାଶୀ, ଠାର ନେତ୍ରାନ୍ତ ମନମୋହନପାଶୀ ॥
ଡରୁଅଛି ପର ଝେକ ଚଲ୍ଲୀ, ଡେର କର୍ଣ୍ଣପାଶ ନ ରହିଲି ।
ଡାକିଲେଣି ସଖୀ ଦେଉଅଛୁ ରଙ୍ଗ ଏବୁକୁ ଏଡକ ହେଉ ବୋଲି ।
ଅରେ ଡାକଭଟି, ଡଅଁ ମାର ଯିବାକୁ ବସନ୍ତେ ହଟି ।
ଡକା କରଇ ମୁଁ ବନ୍ଧୁ ସରିଲିଟି, ଡୋଳା କରାଉ ଅପାଙ୍ଗତଟି ନଟୀ । ୧୩ ।
ଢାଳି ଅନୁକମ୍ପା ରସହର, ଢଳାଇ ମୋ ଉରେ ପୟୋଧର ।
ଢୋକେ ଢୋକେ କର ପିଅଉ ନାଗରୀମଣି ଅତି ସ୍ୱାଦୁ ଶୋଣାଧର ।
ଅରେ ଢଳାଢୋଳା, ଢାଙ୍କି ପକ୍ଷ୍ମ ଫେଡ଼ି ପୁଣି ରତୁ ଖେଳା ।
ଢକ୍କା ସ୍ୱରରଣେ ତୋ କିଙ୍କିଣୀମାଳା, ଢମ ଢମାଣୀ ଶ୍ରବଣେ
ଅନୁକୂଳା । ୧୪ ।

ଅସିତ ତିଳକ ଲଲାଟରେ, ଅଳିକ ଅନାଇ ଅଳୀ କରେ,
ଅମ୍ଳାନ ଶ୍ରୀମୁଖସରୋଜରେ ମୋତେ ଅଳି କର ବୋଲି ଅଳୀକରେ ।
ଅରେ ଅନଙ୍ଗତା, ଅଙ୍ଗୀକାର କରୁ ହୋଇ ଅନଙ୍ଗତା ।
ଅନର୍ଗଳ ଅଧିକାର ପରଶତା, ଅନଳପ ସୁଖଦାନ କଳ୍ପଲତା । ୧୫ ।

---

ତତ୍ ସଦୃଶ କୁଚ, ବଢ଼ଭି—ଚନ୍ଦ୍ରଶାଳା, ରସିକାଚକ୍ରେ—ରସିକାସମୂହରେ, ଝିକାସ୍ମିତ—ସସ୍ମିତ, ଶୋଭାସ୍ତୋମ—ଶୋଭାସମୂହ, ଚଲ୍ଲୀ—ଭ୍ରୂଲତା, ଶୋଣାଧର—ରକ୍ତବର୍ଣ୍ଣ ଓଷ୍ଠ, ଅସିତ—କୃଷ୍ଣ, ଅଳକ—ଭ୍ରମରକୁ, ଅଳୀକର—

ତୁଙ୍ଗସ୍ତନେ ମୋତେ କରଭେଟୁ, ତରଳ ମସାର ନୀତ କରୁ,
ତରଣିକାତଟ ତାପିଞ୍ଛ ବିଟପ ତଳେ ନ ସଞ୍ଚରୁ ନିନ୍ଦା ଡରୁ ।
ଅରେ ତନୂଦରି, ତାକ ତରକ ତୁ ଜାଣୁ କେତେ ପରି ।
ତୁଳା ତଳକେ ହିଲେକେ ନାହିଁ ସରି, ତାପତମକୁ ତପନକର ସିରି ॥
ଥାଏ ତ ବଳେ ନାରତେ ମନ, ଥରେ ମୁଁ ସ୍ବରେ ପଙ୍କାନ୍ତେ ଅନ,
ଥରୁଟିକୁ ଅଜ ଅଧିକ ନାହିଁଟି ଭ୍ରଷି ହସି କରୁ ଅଲିଙ୍ଗନ ।
ଅରେ ଥିରମତି, ଥାନ ବାକ୍ୟ ନ ରଖେ ମୋ ଚୁମ୍ବିତତି ।
ଥୋକେ ହେଲେ ଜଣାଇ କି ରତିପତି, ଥର ଥର ଭଜୁ ମୋତେ
କୁନ୍ଦଦନ୍ତୀ । ୧୭ ।
ଦୃଷ୍ଟି କୋଣ କର ଅପଲକ, ଦେହବଲ୍ଲୀ କର ସପୁଲକ,
ଦୃଢ଼େ ମୋ ମଧ୍ୟକୁ ଉରୁଯୁଗେ ଭଜୁ ପଦାଭୁଷା କର ବାବଦୂକ ।
ଅରେ ଦୁଃଖିଧନ, ଦୟାଜଳଧି-ମୀନ ମୁଁ ତୁ ଜୀବନ ।
ଦୂର ହୋଇଅଛୁ କେତେ ସୁଖମାନ, ଦୁଷ୍ଟ ଦଇବ କଲଛୁ ସିନା ଆନ ।୧୮।
ଧରଣୀମଣ୍ଡଳରମ୍ଭାଗର୍ଭା, ଧର ତ୍ରିଲୋକମୋହନ ଶୋଭା,
ଧୃତକୁ ତୁ ସିନା ଧମକାଇ ଜାଣୁ, ଧୂର୍ଜଟିପରବଲ୍ଲଭାନିଭା,
ଅରେ ଧୀରବର, ଧରାଧର କଲେ ରମ୍ୟ ପୟୋଧର,
ଧରାଧର ପରି ଲାଗେ କି ଦୁର୍ଦ୍ଧର, ଧାରାଧରନୀଳଚେଳ କି ସୁନ୍ଦର । ୧୯ ।
ନାନାବନ୍ଧେ ରସୁ ମୋର ଚିତ୍ତ, ନିଷ୍ଠେ ଯେବେ ବୋଲେ ମୋ ଶପଥ,
ନଖ ନଖ ଦେଖ ବୋଲି ମୋର ସୁଖ ବରଧନା ହେଉ କି ସଂଯତ,
ଅରେ ନଳିନାକ୍ଷି, ନେତ୍ର ମନ ଦୁହେଁ ସେ ସମୟୁ ସାକ୍ଷୀ,
ନିତ ମାତ ମତେ କରୁ ଯେତେ ସୁଖୀ, ନିରନ୍ତରେ ତା ମାନସେ ଅଛୁ ରଖି ॥
ପ୍ରଣୟର ପର୍ଯ୍ୟାଲୋଚନାରେ, ପୂରଥାଏ କୃପା ଲୋଚନରେ,
ପସନ୍ଦ ପଡ଼ିବ ବୋଲି ସିନା ମାନ ପରଦା ବନ୍ଧାଉ ବଚନରେ ।
ଅରେ ପ୍ରେମଶୀଳା, ପ୍ରିୟମ୍ବଦା ତୁହି ମୋ ନେତ୍ରପିତୁଳା ।
ପୁଷ୍ପହାସୀ ତୁହି ଜାଣୁ ପ୍ରୀତିତୁଳା, ପୁଷ୍ପଦଳ ଉପଳ ତୋ ତନୁ ତୁଳା ।୨୧।

---

-ପ୍ରାର୍ଥନା କର, ଅଲୀକରେ—ମିଛରେ, ତରଳ ମସାର—ହାର ମଧ୍ୟର ନୀଳମଣି, ତନୂଦରି—ହେ କ୍ଷୁଦ୍ରଉଦରଧାରିଣି, ଆନ—ଗୁଣ, ଜୀବନ—ଜଳ, ଧୂର୍ଜଟିପରବଲ୍ଲଭା-ନିଭା—ରତିସଦୃଶୀ, ଦୁର୍ଦ୍ଧର—କର୍କଶ, ଧାରାଧରନୀଳଚେଳ—ମେଘପରିକୃଷ୍ଣବସ୍ତ୍ର,

ଫଟା କପାଳେ ତ ଅଛି ଲେଖା, ଫେରିଯାଇ ନୋହିବାକୁ ଦେଖା,
ଫେର ଲଗି ତେଲଗ୍ରନ୍ଥି କାହୁଁ ଢୋଲ କରିବ ନାହିଁ ଏ ଶୁଭ ଲେଖା,
ଅରେ ଫନ୍ଦାଧନ, ଫଟୁଅରୁ ଫିଙ୍ଗିଦେଲି ମୁଁ କାଞ୍ଚନ ।
ଫୁଲବନବିହାରିଣୀ ମୋ ଜୀବନ, ଫେରି ଗୃହିଁବା ଗୃହାଣି କି ମୋହନ ॥
ବକୁଳବଲ୍ଲୀ ନିଳୟ ବନେ, ବେଢ଼ିଥିଲେ ସହଚରୀମାନେ,
ବାସନ୍ତିକ ଦଳ ବହଳ ବିଛଣା ବିଜେ ବେଳ ଜାଣି ଅନୁମାନେ ।
ଅରେ ବିଧୁମୁଖି, ବେଶ ଫେରାଇଥିଲି ତ ଦୂରୁଁ ଦେଖି ।
ବଡ଼ ବାଲିଶ ପଛେ ରହିଲି ଲୁଚି, ବୀଣା ଦେଲା ତୋ ଶ୍ରୀହସ୍ତେ ଏକ ସଖୀ ॥
ଭର୍ମଦେହା ସରସିଜବ୍ରଜ, ଭ୍ରମରବର ମୋହନରାଜ,
ଭଣି ଗୀତେ ଏତେ ଅଳାପନ୍ତେ ମତେ ଭୁଷିଦେଲା ଭାଲେ ହଂସଧ୍ୱଜ ।
ଅରେ ଭାଲୁବଳ, ଭୁଷଜାଇ ଦେଇ ଫୁଲ ଅପସର ।
ଭୁଜେ ଭଣ୍ଡି ଚୁମ୍ବିଲି ସହସ୍ର ଥର, ଭାଜିଗଲା ସେ ସଙ୍ଗୀତ ଆଡ଼ମ୍ବର । ୨୪ ।
ମହାରାଜ ଉପରୁର ଖଟି, ମାଡିଥିଲେ ନେତେ କୃଶକଟୀ,
ମୁଦିର ଶେଷରୁ ହଂସୀ ମାନସରୁ ହେଲା ପରି ହେଲେ ଗୋଟି ଗୋଟି ।
ଆରେ ମଦାଳସୀ, ମନ୍ଥି ଲାଜେ ମୋ ତନୁରେ ଗଲୁ ପଶି ।
ମନମଥ ରଣେ ହାରଗଲା ଖସି, ମହୀ ଚୁମ୍ବିଦେଲା ଶେଫାଳିକା ଖସି । ୨୫ ।
ଯୁକ୍ତପଣ୍ଡିତାରେ ରତିପତି ଯାନଜିତ ରାଜହଂସଗତି ।
ଯମକ ଶୃଙ୍ଗାର ରସ ବିଭବର ଭ୍ରମ ବୋଲି ହୁଏ ମୋ ପ୍ରତୀତି ।
ଅରେ ଯୋଷାବର, ଯତିମୋହନା ବର୍ତ୍ତୁଳ ପୟୋଧର ।
ଯନ୍ କରି ସାଜିଥାଅ ଉରେ ହାର, ଯଥାର୍ଥରେ ସୁଖଦାତା ଅଛୁ ମୋର ॥
ରତିଶେଷ କାଳ ଚୂଳି ଶିରୀ, ରହିଛି ମୋ ନେତ୍ରଯୁଗ ପୁରି,
ଇସପ୍ରସଙ୍ଗରୁ ରଥାଙ୍ଗଭଙ୍ଗରୁ ମନୁର ମନୁଥରଥ ପରି ।
ଅରେ ରସିକାଟି, ରଙ୍ଗସ୍ଥଳୀ ମୋ ମନ ତୁ ଲାସିକାଟି ।
ରମ୍ଭା ରତି ଦ୍ୟୁତି ପରିହାସିକାଟି, ରୋଷେ କେ ଦେଲା ମୋ ଅଶାରସି କାଟି ॥
ଲୁଗାଲାଗିକାଳେ ଧନେ ମୋଦେ, ଲୁଚି ଦେଖୁଥିଲି ଅପ୍ରମାଦେ,
ଲଗଡ଼ ଜରେଜ ବାଳେକେ ସ୍ୱୟମ୍ଭୁ ଶମ୍ଭୁ ସ୍ତବ ପଢ଼ିଦେଲି ପଦେ ।

---

ବାଲିଶ—ତକିଆ, ଭର୍ମଦେହା—ସ୍ୱର୍ଣ୍ଣବର୍ଣ୍ଣ ଗୌରାଙ୍ଗୀ, ମୁଦିର—ବର୍ଷାକାଳ, ମାନସରୁ—ମାନସରୋବରରୁ; ଯମକ—ପୁନରାବୃତ୍ତି ସ୍ଥଳ, ରଥାଙ୍ଗ—ଚକ୍ର, ଲାସିକା—ନୃତ୍ୟକାରିଣୀ, ରସି—ଦଉଡ଼ି, ଲଗଡ଼—ଦୃଢ଼ସଂଲଗ୍ନ, ରଦମୋତି—ଦାନ୍ତରୂପ ମୋତିକୁ ରସନାରେ ରଖି ଅର୍ଥାତ୍ ଜିଭ କାମୁଡ଼ି ଦେଇ,

ଅରେ ଲୀଳାବନ୍ତ, ଲଜ୍ଜେ ରସନାରେ ରଖି ରଦମୋତ୍ତ,
ଲୋଲେ ପଳାଇବାକୁ ବଳାତ୍ନେ ମତ୍ତ, ଲୋଭେ ଭିଡ଼ି କରାଇଲି ଅଙ୍କେ ସ୍ଥିତ ॥
ବୋଇଲି ବସ ରେ ରସବନ୍ତ, ବସନ ତ ପିନ୍ଧୁଥାଉ ନିତ,
ବିବସନ ଶିରୀ ଦିବସେ ଏପରି ଦେଖିଲେ ନ କାଟେ ସ୍ମରହେତି ।
ଅରେ ବିମ୍ବାଧରୀ, ବିଶ୍ୱ ଲାବଣ୍ୟସାରସମ୍ଭାର-କାରୀ ।
ବରଷିଲୁ ପୁଣି ସ୍ମିତ ସୁଧାଧାରୀ, ବକ୍ଷେ ଜମାଇଲୁ ତହୁଁ ଫେଣ ହାରୀ ।୨୯।
ଶୃଙ୍ଗାରକୁ ତ ମୁଁ ରଙ୍କ ପରି, ଶଶଧରକୁ ସୁରଙ୍କ ପରି,
ଶିରୋଗର୍ଭ କରୁ ଶୋଣକଞ୍ଜନାଭ ଚରଣୀ ଯାଏ ଚୁମ୍ବିଲି ଧରି ।
ଅରେ ଶଶିହାସି, ଶାତପ୍ରବାହେ ନଲାଇଁ ଦୁହେଁ ଭାସି ।
ଶିରୀ ମଘବାର ହୋଇଗଲା ଦାସୀ, ଶର୍ମ ଏପରି ସ୍ୱପ୍ନ ହୋଇଲା ଆସି । ୩୦ ।
ଷଟ୍‌ପଦଚୁମ୍ବିତ ପୁଷ୍ପପୁଞ୍ଜେ ଷଟଋତୁ ରମାପୂର୍ଣ୍ଣ କୁଞ୍ଜେ,
ଷଡ଼ାନନତାତ ପରିପନ୍ଥି-ରଣେ ଚୁମ୍ବିବି ନିକ ତୋ ମୁଖକଞ୍ଜେ ।
ଅରେ ଷୋଳବୟୀ, ଷଷ୍ଟି ଦଣ୍ଡ ହୋଇବ ତୋ ତନୁସ୍ଥାୟୀ ।
ଷଡ଼ୁପାୟେ ହେବୁ କୃତ ପରିଚୟୀ, ଷଟ ଦୁଇ ଶ୍ରୁତ କରିବେ କି ଦୟୀ ।୩୧।
ସୁନ୍ଦରୀ ଚକ୍ରବର୍ତ୍ତିନୀ ବାନା, ସଂସାରେ ସୁନ୍ଦର ତତେ ସିନା,
ସୁରସୀମନ୍ତିନୀ ଗୁଡ଼ାକ ତ ଅନିମିଷ ଦୋଷୁ ନେତ୍ରଲୀଳାହୀନା ।
ଅରେ ସୃଷ୍ଟିଶୋଭା, ସବେ ଉପମା ତୁ ହୋଇଥିଲେ ଉଭା ।
ସରୁମଧମା ନିର୍ଲୋକୀ ଚିରଗଭା, ସରସ୍ୱତୀଙ୍କର ତୁ ସଙ୍ଗୀତସଭା । ୩୨ ।
ହସି ମାତ୍ର ହୋଇ ରସଲୋଳ, ହରିବା ସୁରୁବ ପରି କାଳ ।
ହରିତାଳଗୋରୀ ଶ୍ରୀଅଙ୍ଗରୁ ମୁହିଁ ହରିବି କି ସତେ ନୀଳରେଳ ।
ଅରେ ହାଟୀଗତ, ହତକପାଳ ଦେବ କି ଏ ସମ୍ପତ୍ତି ।
ହାରସ୍ଥଳେ ରଖିଥିବି ତତେ ନିତ, ହଜିପିବ ମାନସରୁ ଏ ବିପତ୍ତି । ୩୩ ।
କ୍ଷୋଭ ଲେଶକୁ ନ ରଖି ମନେ, କ୍ଷଣେ ହେଲେ ଅତି ସାବଧାନେ,
କ୍ଷିତୀନ୍ଦ୍ର ବାଲୁକେଶ୍ୱର ଦେବ ଲୋକେ ବର୍ଣ୍ଣିବ କି ତୋ ଚରଣ ଧ୍ୟାନେ ।
ଅରେ କ୍ଷିତିଭୂଷା, କ୍ଷପାମୟୂଖବଦନା ବରଯୋଷା ।
କ୍ଷତ ହୋଇ ଯାଉଛି ମୋ ପ୍ରତି ଆଶା, କ୍ଷୁଣ୍ଣ ନୋହି ପୂରିଲା ଏ ଚଳଡଶା ॥

---

ସ୍ମରହେତି—କନ୍ଦର୍ପଅସ୍ତ୍ର, ଶିରୋଗର୍ଭକ—କେଶ, ଶୋଣକଞ୍ଜନାଭ—ରକ୍ତପଦ୍ମ ସଦୃଶ, ଶାତ—ସୁଖ, ଶିରୀମଘବାର—ଇନ୍ଦ୍ରସମ୍ପତ୍ତି, ଶର୍ମ—ସୁଖ, ଷଷ୍ଟିଦଣ୍ଡ—ସମସ୍ତ ଦିବା ଓ ରାତି, ଷଟ୍ ଶ୍ରୁତ—ବ୍ରହ୍ମା, ସୁରସୀମନ୍ତିନୀ...ଲୀଳାହୀନା—ଦେବଲୋକରେ ସ୍ତ୍ରୀମାନଙ୍କର ଚକ୍ଷୁରେ ନିମେଷ ପାତ ହୁଏ ନାହିଁ; କ୍ଷପାମୟୂଖ—ଚନ୍ଦ୍ର ।

( ୯ )

## ସର୍ପ ଜଣାଣ

ରାଗ—କାମୋଦୀ

ବାଧିଲା ଜାଣି କ୍ଷମା କର ନୋହିଲେ ରମାରମଣ ଦଣ୍ଡେ ଦିଅ ଟାଳି । ତୁମ୍ଭଙ୍କୁ ଜଗନ୍ନାଥ ଆଜ ମୋ ମନୋରଥ ଭରତ କର ଦେବି ଗାଳି ହେ କୃପାନିଧି । କରୁଣାସିନ୍ଧୁ ବୋଲି କର, କହନ୍ତି ବୁଧେ ଡର ମର । କାଳସର୍ପ ଅପଣ, କବଳ କର ପ୍ରାଣ-ପବନମାନଙ୍କୁ ସବୁର ହେ କୃପାନିଧି । ୧ । ଜଳଧି ଅନ୍ତେ ନିଜ, ଘର ଦେବାଧିରାଜ, ବୁଡ଼ାଇ ଦେଇଛ ଅପଣ । ତୁମ୍ଭର ସିନା ଘେନ, ଅଶ୍ଚର୍ଯ୍ୟ ନୁହେ ଆନ, ଜନର ଘରବୁଡ଼ାପଣ ହେ କୃପାନିଧି । ଭୁଜଙ୍ଗ ସାମ୍ୟ ଅମ୍ଭ ତୁଲେ, ବତାଅ ବୋଲି ଆଜ୍ଞା ହେଲେ, ମୁଁ ନୁହେଁ ଘରବୁଡ଼ା, ବତାଇବାକୁ ଛୁଡ଼ା ହୋଇଛୁ ବତାଇବି ଭଲେ ହେ କୃପାନିଧି । ୨ । ତାହାକୁ ବୋଲି ଚକ୍ରୀ,ଚକ୍ରଥିବାରୁ ଚକ୍ରୀ, ତୁମ୍ଭେ ତ ବୋଲାଅ ମଣ୍ଡଳେ । ବୋଲାଇ କୁଣ୍ଡଳୀ ସେ ଅପଣ ତ ବିଶେଷେ ଭୂଷିତ ମକର କୁଣ୍ଡଳେ ହେ କୃପାନିଧି । ଅଦୃଶ୍ୟ ହେବରୁ ତ ପାଦ, ତାହାକୁ ବୋଲି ଗୂଢ଼ପଦ । ଅପଣା ଚରଣ ତ ବିରଞ୍ଚିକୁ ଗୁପତ କାହିଁ ତାଠାରୁ ତୁମ୍ଭ ଭେଦ ହେ କୃପାନିଧି । ୩ । ହେବ ବା ଅବଧାନେ, ତାହାଙ୍କୁ ତ୍ରିଭୁବନେ, ବୋଲନ୍ତି କାକୋଦର ନରେ । ଏ ତ୍ରିପିଷ୍ଟପଯାକ ମଧ୍ୟେ ଗୋଟିଏ କାକ ନାହିଁ କି ତୁମ୍ଭର ଉଦରେ ହେ କୃପାନିଧି । ବିବରେ ସେ ଅତି ଲମ୍ପଟ, ବିବର ବିହଙ୍ଗମ ରାଟ, ବିଧିରେ ସେ ଲମ୍ପଟ, ଆପଣ ସେ ତ ପଟପଟଳେ ହୋଇଅଛ ସ୍ଫୁଟ ହେ ମହାପ୍ରଭୁ । ୪ । କାନ ନ ଥାଇ ଆଖି, ଭୁଜଙ୍ଗଠାରେ ଦେଖି, ନୟନଶ୍ରବା ବୋଲି ତାକୁ । କହ କମଳାନନ କାହିଁରୁ ତୁମ୍ଭ କାନ, ସର୍ପ ବୋଇଲେ ଚଳିବାକୁ ହେ କୃପାନିଧି । ଫଣିକାୟାକୁ ବୋଲି ଭୋଗ, ଥିବାରୁ ସେ ଦୁଇ ସଂଯୋଗ. ତାହାକୁ ବୋଲି ଭୋଗୀ ତୁମ୍ଭେ କି ନୁହ ଭୋଗୀ କରୁ ଯା ଅଛି ମହାଭୋଗ, ହେ କୃପାନିଧି । ୫ । ଯେବେ ଭୁଜଙ୍ଗ ନୁହ, କାଳିୟ-ଠାରେ ଦ୍ରୋହ କଲ କାହିଁକି ଏଡ଼େ କହ । କେତେ ନ ଥିଲେ ଗୋପେ,

---

୯ । ଟୀକା—କବଳ କର ପ୍ରାଣପବନମାନଙ୍କୁ ସବୁରି—ସମସ୍ତଙ୍କର ପ୍ରାଣରୂପ ପବନକୁ ନେଇଯାଅ । ( ସର୍ପ ପକ୍ଷରେ—ସର୍ପ କେବଳ ପବନ ଖାଇ ବଞ୍ଚେ । ) କାକୋଦର—(କାକବକ୍ରଗାମୀ ଉଦର ଯାହାର) ସର୍ପ, ଶ୍ଳେଷାର୍ଥ ହେଲେ—କାକ—କୁଆ ଉଦରରେ ଯାହାର, ବିବର—ଗାତ, ଅନ୍ୟନ୍ୟ ବି ଅର୍ଥାତ୍ ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ଗରୁଡ଼, ପଟ—ଚକ୍ଷ ଓ ସାପକାତି, ପଟଳ—ସମୂହ ।

ତୁମ୍ଭେ ଯାହାଙ୍କ କୋପେ, ତାହାଙ୍କୁ ଦେଲ ପ୍ରାଣେ ମାରି ହେ କୃପାନିଧି ॥ ତାହାର ନାମେ ତୁମ୍ଭ ନାମ, ଅଦ୍ୟାପି ହେଉଛି ଜନମ, ଯେବେ ସ୍ୱଗୋତ୍ର ଦ୍ରୋହ, ନ ଥାନ୍ତା ନାଥ କହ କପାଳି ହୁଅନ୍ତା ଏ ଜମ ହେ ମହାପ୍ରଭୁ ।୬। ଜାଣି ବାଳୁତକାଳୁ, ଲବଣୀ ହାଣ୍ଡିତଳୁ, ଧରି ପାଶରେ ଦୃଢ଼େ ଭିଡ଼ି । ଦୟା ନ କରି ତଳେ, ଯାମଳା ତରୁତଳେ ଜନନୀ ନେଇ ଦେଲେ ଗୁଡ଼ି ହେ କୃପାନିଧି । ଯେତେକ ଥିଲା ଗର୍ବେ ପଣ୍ଡ, ଜୀର୍ଣ୍ଣ ହେବାକୁ ହେଲ ଭଣ୍ଡ, ତନ୍ନ ଜଗତ ଯାକେ, ଜାଣି ତ ଥିବେ ଲୋକେ ସେ ତରୁ ପିବାର ଅପ୍ରିୟ ହେ କୃପାନିଧି । ୭ । ବ୍ରହ୍ମା ଶଙ୍କର ମୁଖ୍ୟ, ଦେବଙ୍କଠାରୁ ମୋକ୍ଷ-ପ୍ରଧାନ ଧନ ଗୁଡ଼ା କଲ । ପତିତଙ୍କୁ ନ ପୋଷି,-ବାଳୁ ଜମରେ ଅଶୀବିଷ ପରିଏ ଅଭ୍ୟସିଲ ହେ କୃପାନିଧି । ଅସାବଧାନେ ଗଲେ ମିଳି, ଗୋଟିକୁ ଗିଳଇ କୁଣ୍ଡଳୀ, ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡିମଣ୍ଡଳୀ ଲୁଣ୍ଠ କରି ଅପଣ ଅଛ ଗିଳି ହେ କୃପାନିଧି ।୮। ଅହିତ ବୋଲାଏ ସେ, ଏକ ଅକ୍ଷର ଦୋଷେ, 'ଅ'ହିତ ବୋଲାଅ ନିପୁଣ । କଂସ ପ୍ରମୁଖାସୁର ବିପକ୍ଷପ'ନଙ୍କର ଅହିତ ହୋଇଛ ଅପଣ ହେ କୃପାନିଧି । ଜଗତେ ଧରି ଯେବେ ଅହି, ଘଟ ଗୋଟିକେ ନେଇ ଥୋଇ, ଅଛି ଯାବତ ଘଟେ, ବଞ୍ଚାଅ ଯେ କପଟେ, ମୋର ହାବୁଡ଼ୁ ଯିବ କାହିଁ, ହେ କୃପାନିଧି । ୯ । କେଉଁ ଶିଶୁ କାମିନୀ ସ୍ତନ୍ୟପାନରୁ ଯେଣି ଜୀବନ ଯାଇଛି ଜଗତେ । ଶୋଷି ପୂତନା ପ୍ରାଣ, ଯେଣିବାରି ଜୀବନ, ନାହିଁକି ତୁମ୍ଭ ଦ୍ରବ୍ୟ ଶତ୍ରେ ହେ କୃପାନିଧି । ସକଳ କଥା ମୋର ଦେଖି, ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ, ବ୍ରଜେ ଭୁଜଙ୍ଗ ଗ୍ରୃହ, କରି ମୁଁ ନାହିଁ ବୋଲି, ଲୁଅଁ ତ ଥରେ ଚକାଅକ୍ଷି ହେ କୃପାନିଧି । ୧୦ । ନୁହେ ଅବାସ ଘର, ମାନସ ସରୋବର ଶୁଭିଲା ନାଗେଶ୍ୱର ରବ । କ୍ଷଣେ ନ ରହି ଧାଇଁଗଲଟି କାହିଁପାଇଁ, ଅଜ ନ ଥିଲେ କେତେ ଦେବ ହେ କୃପାନିଧି । ମନ୍ତ୍ର ଜାଣିବା ଲୋକେ ବଶ, ହୁଅନ୍ତି ସବୁ ଅଶୀବିଷ, ମନ୍ତ୍ରାଧୀନ ତ ତୁମ୍ଭେ, ବଞ୍ଚାଉଅଛ ଦମ୍ଭେ, ଭୁଜଙ୍ଗ ନୁହ ଅଜ କିସ ହେ କୃପାନିଧି । ୧୧ । କହଇ କବିସୂର୍ଯ୍ୟ ନାଥ ନୁହ ଅଧୈର୍ଯ୍ୟ ଏଣିକି ମହତ ନ ଯାଉ । ମୁଁ ତୁମ୍ଭ ପରିଗ୍ରହ, ଜାଣିଲେ କି ବିଗ୍ରହ ଇତରେ ନ ଜାଣନ୍ତୁ ଅଜ ହେ କୃପାନିଧି । ଯେତେବେଳେ ମୋ ଅନ୍ତ ହେବ, ଏତିକି ମାତ୍ର ମୋତେ ଦେବ, ପରେତରାଟଦ୍ୱାରସୀମାରୁ ପରିହାରି କରିଣ ଯହିଁ ତହିଁ ନେବ ହେ କୃପାନିଧି । ୧୨ ।

---

ଗୁଡ଼ାକଲ—ଏକତ୍ର କରିଅ କଲ । ଅ—ବିଷ୍ଣୁ, ଅହିତ—ଶତ୍ରୁ, ଭୁଜଙ୍ଗ—ସର୍ପ ଓ ବିଟପୁରୁଷ, ନାଗେଶ୍ୱର—ହସ୍ତିଶ୍ରେଷ୍ଠ ଓ ସାପୁଅକେଳାର ବାଦ୍ୟଯନ୍ତ୍ର, ପରେତରାଟ—ଯମ ।

ଶ୍ୱାସଗଣ ବେଶଭୂଷାରେ ଅରୁଚ । ବନ୍ଦଦଳ ପର ଛଟକେ ଦେଖିଲ ଅଦୃଶ୍ୟ ଉଦରରୁଚ ।୫୨। ବାରବାନସୁନାଦେହା ସେ ହୋଇଲ ବାରଣଦନ୍ତପ୍ରତିମା । ଦ୍ୱିରଦରଦନପଲଙ୍କ ବରଜ ତଳ୍ପ କଲ୍ପ ଖାଲ୍ କ୍ଷମା ।୫୩। ବରଜ ଅମୃତସଦୃଶ ଅଶନ ରସିଲ ମୃଦ ଭକ୍ଷଣେ । ଶିଥିଳାଇ ରାସ ପିନ୍ଧିବା ଅଳସ ଖେଳାଇଲ ଲୋଲଈକ୍ଷଣେ ।୫୪। ପ୍ରଭଦନ ଗୋଷ୍ଠ ବ୍ରତଦାନ ପର ହେଲ ସୁରତବିରତ । ତାମସ ସୁଷମାନିଧିର ଏପର ଦଶ ମାସ ସମାପତ ।୫୫। ରସବସମନା ସିନ୍ଧୁଙ୍କୁ ମନ୍ଦର ପ୍ରସବ ସମୟ ହେଲ । ପାରିଜାତ ତରୁପର ଜାତରୂପଦେହା ସୁତ ଜାତ କଲ ।୫୬। ନାକ୍ଷତ୍ରିକଗୋଷ୍ଠୀ ସିଦ୍ଧ ହେଲ କୋଷ୍ଠୀ ଚକ୍ରବର୍ତ୍ତୀଯୋଗଯୁତ । କରାଇଲେ ରାଜା ମହୋତ୍ସବ ବାଜାଧ୍ୱନି ତୁନ୍ଦିଲ ଜଗତ ।୫୭। ସୁବର୍ଣ୍ଣ ବରଷାପୂର୍ଣ୍ଣ ହେଲ ବସା ଧନଦ ହେଲେ ଯାଚକ । କ ନିଶା କ ଦିନ ନ ଜାଣିଲେ ଜନ ତିନି ସାତ ଦିନଯାକ ।୫୮। ଜାତ କଲେ ନାହିଁ ସୁବୀର ବୋଲିବା ଜାତକ ନାମ ପ୍ରଥମେ । ସିଦ୍ଧଗିର ସ୍ମର ସମସ୍ତେ ଡାକିଲେ ଅନଙ୍ଗସୁନ୍ଦର ନାମେ ।୫୯। ଦିନୁ ଦିନୁ ଶଶୀପର ଅଙ୍କମସୀ ବିନା ବଢ଼େ ଭୂପସୁତ । ବ୍ରଜେ ବନମାଳୀ ପରି ବାଲ୍ୟକେଳି ରଚଇ ଅପରମିତ ।୬୦। ଶ୍ରୁତିବେଧ ହେଲ ଯହୁଁ ବିଦ୍ୟାଶାଳା ପରବେଶ କରାଇଲେ । ଗୁରୁପ୍ରଭାବଜ ମନ୍ତ୍ରୀସୁତ ରାଜବଲ୍ଲଭାଖ୍ୟ ସଖା ତୁଲେ ।୬୧। ଅମରକେଶରୀ ଫଣୀଶ୍ୱର ପରିପାଳିତ କାବ୍ୟପଦ୍ଧତି । ନାଟକ ଅଳଙ୍କାର ତର୍କ ବେଦାନ୍ତ ସ୍ମୃତି ଇତିହାସ ପାଳି ।୬୨। ଅଷ୍ଟାଦଶମିତ ପୁରାଣ ଚରିତ ଗଣକ ଚକ୍ରାମତ ।

---

—ବର୍ଷାକାଳ ।୫୨। ଜୃମ୍ଭାବଜୃମ୍ଭଣ—ହାଇ ମାରିବା ।୫୩। ବାରବାନସୁନାଦେହା—ଉଜ୍ଜ୍ୱଳ ସ୍ୱର୍ଣ୍ଣବର୍ଣ୍ଣାଙ୍ଗୀ, ବାରଣଦନ୍ତପ୍ରତିମା—ହାତୀଦାନ୍ତ ପିତୁଳା ପରି ଧଳା, ଦ୍ୱିରଦରଦନପଲଙ୍କ—ହାତୀଦାନ୍ତ ପଲଙ୍କ, ତଳ୍ପ—ଶଯ୍ୟା, କ୍ଷମା—ପୃଥିବୀ, ମାଟି ।୫୪। ଅଶନ—ଭୋଜନ, ମୃଦ—ମାଟି, ଲୋଲଈକ୍ଷଣେ—ଚଞ୍ଚଳ ନେତ୍ରରେ ।୫୬। ଜାତରୂପଦେହା—ସ୍ୱର୍ଣ୍ଣାଙ୍ଗୀ ।୫୭। ନାକ୍ଷତ୍ରିକଗୋଷ୍ଠୀ—ଗଣକ ବା ଜ୍ୟୋତିଷଗଣ (ଦ୍ୱାରା) । ତୁନ୍ଦିଲ—ପରିପୂର୍ଣ୍ଣ ।୫୮। ଧନଦ—କୁବେର, ଧନୀ; ଯାଚକ—ମାଗିବା ଲୋକ, ବସା—ପୃଥିବୀ, ତିନି ସାତ ଦିନ—୨୧ ଦିନ ।୬୦। ଅଙ୍କମସୀ—କଳଙ୍କକାଳିମା ।୬୧। ଶ୍ରୁତିବେଧ—କାନଫୋଡ଼ା, ଗୁରୁପ୍ରଭାବଜ—ବୃହସ୍ପତିଙ୍କ ଔରସଜାତ ।୬୨। ଅମରକେଶରୀ—(କୋଷକାର) ଅମର ସିଂହ,

ରତ୍ନାଶ୍ୱବାରଣ ଶସ୍ତ୍ରପରୀକ୍ଷଣ ଅନଳ୍ପ ଶିଳ୍ପ ସଙ୍ଗୀତ । ୬୩ । ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ହଠ ଚମଟ ଶାବର । ସର୍ବଦେଶ ଗିର କାଳୀତାଳଦଳ ଲେଖା ବିବିଧ ଅକ୍ଷର । ୬୪ । ଶତଅବଧାନ ସରସ କବନ ମହାରାଜ ନୀତଯାକ । ଅସାଧ୍ୟତର ତୁରଙ୍ଗମଦମନ ଧୃତିବିନୟ-ବିବେକ । ୬୫ । ନୋହିଲ ସେ ଦୁହିଙ୍କର ସେହି ବିଦ୍ୟା ଯହିଁ ସେ ନ କଲେ ଇଚ୍ଛା । ଲୋଡ଼ିଲେ ମିଳିଲ ନାହିଁ କି ଭାରତୀଭଣ୍ଡାର ହେବାରୁ ତୁଚ୍ଛା । ୬୬ । ତନୁମାନ ଭିନ୍ନ ଜୀବନେ ଜୀବନ ମନରେ ମନ ମିଶିଲା । ଏପରି ସମୟ ହରୁଁ ସଖୀଦ୍ୱୟ କୈଶୋରତା ପ୍ରକାଶିଲା । ୬୭ । ଅତି ସୁକୁମାର ଏ ଦୁଇ କୁମାର ବୋଲି ନ ଅଟଇ ଦୟା । ଦନୁ ଦନୁ ମନ ବନରେ ମଦନ-ମୃଗୟୁ କଲା ମୃଗୟା । ୬୮ । ଲଜ୍ଜାଗଉରବ ଘେନି ଏକ ଭାବ ଆରକେ ନୁହଇ ଜଣା । କରୁଥାଆନ୍ତି ନିତି ସରସ ଭାରତୀ ସୁଧାରେ ମନ ମାଜଣା । ୬୯ । ଲେଖାରେ ତୁରୀୟ ସୁଚରିତମୟ ଏକସ୍ତ୍ରୀମୟ ପଦ । ଶେଷ ଶ୍ଳେଷଯୁତ ହେଲା ସମାପତ କୁମାରୋତ୍ସବ ଏ ଛାନ୍ଦ । ୭୦ । ଗୋବରଧନ-ବିହାରୀ ହର ହର ଗୃହ ପାଦ ବାରିରୁହ । ରାମଚନ୍ଦ୍ର ଦେବ ମନମିଳିନ୍ଦକୁ ଦେବ ମରନ୍ଦପ୍ରବାହ । ୭୧ ।

---

ଫଣୀଶ୍ୱର—ପ୍ରସିଦ୍ଧ ଭାଷ୍ୟକାର, ପରିପାଳିତ—ସଙ୍କଳିତ, ପ୍ରଣୀତ କାବ୍ୟପଟଳୀ —କାବ୍ୟସମୂହ, ପାଳି—ରାଶି, ସମୂହ । ୬୩ । ଅଷ୍ଟାଦଶମିତ—୧୮ ସଂଖ୍ୟକ, ରତ୍ନ, ଅଶ୍ୱ, ବାରଣ (ହାତୀ), ଶସ୍ତ୍ର (ଖଡ୍ଗାଦି) ପରୀକ୍ଷା କରିବା ଶାସ୍ତ୍ର । ଅନଳ୍ପ—ପ୍ରଚୁର । ୬୪ । ଶାବର—ଗୁଣିବିଦ୍ୟା । କାଳୀତାଳଦଳଲେଖା—କାଗଜଲେଖା ଓ ତାଳପତ୍ରଲେଖା । ୬୫ । ଶତଅବଧାନ—ଏକ ସମୟରେ ଶହେ ଲୋକଙ୍କ ପ୍ରଶ୍ନର ଉତ୍ତର ଦେବା ରୂପ ବିଦ୍ୟା, କବନ—କବିତା, ଧୀର, ବିନୟୀ, ବିବେକୀ ହେବା ଶିକ୍ଷା । ୬୮ । ମଦନମୃଗୟୁ—କାମରୂପ ଶିକାରୀ ।୬୯। ଲଜ୍ଜାର ଆଧିକ୍ୟରୁ ନିଜ ନିଜ ହୃଦୟର କାମବିକାର କେହି କାହାକୁ ଜଣାଉ ନ ଥାନ୍ତି, ମାତ୍ର ରସ-ଗର୍ଭିକ କଥାମୃତ ଦ୍ୱାରା ପରସ୍ପର ମନୋମୋହନ କରୁଥାଆନ୍ତି । ୭୦ । ତୁରୀୟ—ଚତୁର୍ଥ । ୭୧ । ଗୋବର୍ଦ୍ଧନ ପର୍ବତରେ ବିହାରକାରୀ ହରିଙ୍କର ଏବଂ ଗୋବର୍ଦ୍ଧନ ( ବୃଷଭ )-ବିହାରୀ ହରଙ୍କ ଗୃହ ପାଦ ବାରିରୁହ ( ପଦ୍ମ ) ରାମଚନ୍ଦ୍ର ଦେବ ମନରୂପ ମିଳିନ୍ଦକୁ (ଭ୍ରମରକୁ) ମରନ୍ଦ (ମକରନ୍ଦ) ପ୍ରବାହ ଦେବେ ।

# ପଞ୍ଚମ ଛାନ୍ଦ

## ରାଗ—କୌଶିକ

( ମଣିମଞ୍ଜୁଳା ରାଜଧାନୀ ବର୍ଣ୍ଣନା ଓ ଚନ୍ଦ୍ରକଳା ଜନ୍ମ )

ଅଥ ମନମଥରସକଥାପଥ ପଥିକେ ଶୁଣ ହୃଷ୍ଟଚିତ୍ତେ । ମହାରାଜ-ଘୋଷ ପୂର୍ବକୁ କୋଶ ଶତ ପଞ୍ଚକ ପରମିତେ । ଅଛି ଅଶେଷ । ବିଭବନାମେ ରାଜ୍ୟରାଜ । ମଣିମଞ୍ଜୁଳା ରାଜଧାନୀ ସେ ଦେଶ ତାରାଳି ମଧ୍ୟ ଦ୍ୱିଜରାଜ । ୧ । ଅହା ଜଗତୀରେ ତାହା ଯଶ ଲବ କାହା ଜନ୍ମକେ କୁହାଭଲ । ଯାହା ଜଳଜଳେ ରାହାଜଗୁଅଳେ ଜାହାଜ ଲକ୍ଷ ଲକ୍ଷ ଗୃହ । ହେଉ ଅଛନ୍ତି । ସାହା ଜଗତଜନଙ୍କର । ବାହାଜନ୍ୟ ଯଶେ ମିଶିଛି ବିଶେଷେ ମହାଜନପଣ ତାଙ୍କର । ୨ । ଦୁର୍ଗଗୃହ ବାହ୍ୟ ଉତ୍ସର୍ଗରୁ ଯହିଁ ଅଶକ୍ତ ହୋଇ ଅନୁମାନେ । ଉଦୟାସ୍ତ ଉମାଗୁରୁ ବିନ୍ଧ୍ୟନାମାଚଳ ଚହ୍ନନ୍ତି ନାହିଁ ଜନେ । ପ୍ରତ ପ୍ରଭୃତେ । ପ୍ରାଚୀର ପ୍ରାଚୀର ଶିଖରେ । ଚିରକାଳୁ ଥିବା ଅଭିନବ ଜବାସ୍ତବକ ଭ୍ରମ ହୋଏ ସୂରେ । ୩ । ପଙ୍କେରୁହବଂଶ-ଭବ ଅବତଂସ ହେବାରୁ ସେ ଧରାଧିନାଥ । ତପନୀୟମୟ ବୃତ୍ତିସମୁଦୟ ହେବାର ହୋଇଲା ଯଥାର୍ଥ । ବସୁନ୍ଧରାରୁ । ସ୍ୱର୍ଗକୁ ମାର୍ଗ ବୋଲି ଏତେ । ସହର ବାହାର ମଣ୍ଡା ମଣିହଂଶ୍ରାଦଣ୍ଡରୁ ହେଉଛି ପରତେ । ୪ । ଜନ୍ମ ତହିଁ ରହି ଯଉବନ ବହି ଲଭି ତହିଁରେ ପରିଣତ । ସେହି ମହାରାଜଧାନୀ ସୀମା ଅଜଯାଏ ଜନେ କଳି ନାହାନ୍ତି । ଆନ ଦେଶରୁ । ଆସିବା

---

ପଞ୍ଚମ ଛାନ୍ଦ

୧ । ମନ୍ମଥରସ—ଶୃଙ୍ଗାରରସ, ସେ କଥାପଥରେ ଯେଉଁମାନେ ପଥିକ । ରାଜ୍ୟରାଜ—ରାଜ୍ୟଶ୍ରେଷ୍ଠ, ତାରାଳି—ନକ୍ଷତ୍ରସମୂହ, ଦ୍ୱିଜରାଜ—ଚନ୍ଦ୍ର । ୨ । ଯେଉଁ ନଗରୀର ଯଶର ଲବମାତ୍ର ସଂସାରରେ କୌଣସି ଲୋକ ଜୀବନରେ କହିପାରିବ ନାହିଁ । ଜଳଜଳେ—ପରିଖାର ପାଣିରେ, ରାହାଜଗୁଅଳେ—ବାଟ ଜଗିଥିବା ଲୋକମାନେ, ବାହାଜନ୍ୟ ଯଶେ—କ୍ଷତ୍ରିୟ ଯଶ ସଙ୍ଗରେ ସେହି ମହାଜନଙ୍କ ପରୋପକାର ଯଶ ମିଶିଛି । ୩ । ଉଦୟାସ୍ତ—ଉଦୟ ଓ ଅସ୍ତ ପର୍ବତ, ଉମାଗୁରୁ—ହିମାଳୟ ପର୍ବତ, ପ୍ରାଚୀର—ପୂର୍ବଦଗର, ପ୍ରାଚୀର—ପାଚେରି, ଜବାସ୍ତବକ—ମନ୍ଦାରଫୁଲର ପେଣ୍ଡା, ସୂରେ—ସୂର୍ଯ୍ୟଙ୍କଠାରେ । ୪ । ପଙ୍କେରୁହବଂଶ······ ପଦ୍ମବଂଶଜାତ ରାଜାମାନଙ୍କ ଭୂଷଣସ୍ୱରୂପ, ତପନୀୟମୟବୃତ୍ତି—କେବଳ ସୁନାର କାରବାର ଯାହାଙ୍କର ( ରାଜ ପକ୍ଷରେ ); ସୂର୍ଯ୍ୟସମ୍ବନ୍ଧୀୟ

ଜନ କି କଳିବ । ଧରିବଳ ଗଣି ପାରିବ କେ ପୁଣି ମଣିସାନୁସୁନା ତୁଳିବ । ୫ । ସେ କି ଦାମୋଦର ଦେବଙ୍କ ଉଦର ତହିଁ ଯା ନାହିଁ କାହିଁ ନାହିଁ । ଦେବଙ୍କ ଅଭ୍ୟାସ ହେଲ ଅନିମିଷ ଯାହା ସମ୍ପତ୍ତି ଗୃହିଁ ଗୃହିଁ । ଯହିଁ ଅାପଣେ । ବସେ ପଣ ପଣ କୁଞ୍ଜର । ଗଣନା କେ ପୁଣି କରିବ ସାଜେଣି ଭସ୍ମ ତୁରଙ୍ଗମପୁଞ୍ଜର । ୬ । ପରିବାର ହାଟ ବାଟକୁ ନାଅନ୍ତି ପରିବାରେ ଯହିଁ ହାଟକ । ଯହିଁ ଜନ ପଙ୍କେରୁହହରମ୍ୟ ଅଙ୍କେ ଏକା ଜାଣନ୍ତି ବରାଟକ । ଯହିଁ ଦୁଆରେ । ଶାକ ଗୋ ବୋଲି ଡାକ ଶୁଣି । ସୁରୂପାଳୀ ନେଇ ସ୍ୱରୂପେ କୁଡ଼ାଇ ଦିଅନ୍ତି ଦିବ୍ୟ ମୋତି ମଣି । ୭ । ହେବା କ୍ଷଣେ ଜଣା ବଜାର ବିଛଣା ଉଠିଯିବା କାଳ ନିକଟ । ପୁଳିନ୍ଦସୁନ୍ଦରୀ ପଢ଼ିବା କସ୍ତୁରୀ ପଗଡ଼ି କରି କୁଟ କୁଟ । ହେଲେ ରଖନ୍ତି । ମିଶାଇ ଅବକର ତୁଲେ । ତାହାର ବସତି ଦୁଆରେ ଦିଅନ୍ତି ଗୋମୟ ଅଣ ଗୋ ଯେ ବୋଲେ । ୮ । ସୁନାଗରୀଅରେ ଜୀବନ ଦେ ବୋଲି ଦାସୀକି ବୋଲନ୍ତି ଗୃହପତି । ଯହିଁ କୁଟୁମ୍ବିନୀ ଅନ ଭାବ ଘେନି ହୁଅନ୍ତେ ଦୃଢ଼ ମାନବତୀ । ଜାଣି ଭୟରେ । ଅବରୋଧକୁ ଧବ ଯାଏ । ବସାଇ କୋଳରେ ସୁରୂପା ଗାଲରେ ଦୃଷ୍ଟିକି ବୋଲି ସମଜାଏ । ୯ । ବରଣମଣ୍ଡଳ ବିଷ୍ଣୁପଦୁଁ ବଳି ବ୍ୟାପିଥିବାରୁ ଗୁରିପାଖେ । ବହୁଳ ପକ୍ଷରେ ବହଳ ଋକ୍ଷଙ୍କ ପଟଳୀ ଚୁମ୍ବିବାରୁ ଶିଖେ । ଯେଉଁ ନଗରୀ । ଜନ ବିଗୃହେ ତାହା ଦେଖି । ଏ କି ଚମତ୍କାର ଅକାଳେ ଚତୁର ଦଗ ଅଚଳେ ଦରଶିଗୀ । ୧୦ । କେଉଁ ପୁରେ କ୍ଷିତି ମାର୍ଜନା କରନ୍ତି ସୁନାଗଡ଼ିକା ଝାଡ଼ୁଧରି । କସ୍ତୁରୀ ରୋଚନା ଗନ୍ଧସାର ମିନା କୁଙ୍କୁମ ତୁଲେ ପଡ଼େ ଛରି । ଚନ୍ଦ କମ୍ବଳ । ବିଛଣା

---

( ପଦ୍ମ ପକ୍ଷରେ ) ମଣିବିଭୂଷିତ ପତାକାଦଣ୍ଡ ।୫। ମଣିସାନୁସୁନା—ମଣିମୟ ପର୍ବତ ଶୃଙ୍ଗରେ ଥିବା ସୁନା ।୬। ଅାପଣେ—ବଜାରରେ, କୁଞ୍ଜର—ହାତୀ, ସାଜେଣି—ସଜ୍ଜିତ, ତୁରଙ୍ଗମପୁଞ୍ଜ—ଅଶ୍ୱସମୂହ ।୭। ହାଟକ—ସୁନା, ବରାଟକ—କଉଡ଼ି ଓ ପଦ୍ମବୀଜକୋଷ; ସୁରୂପାଳୀ—ସୁନ୍ଦରୀସ୍ତ୍ରୀମାନେ, ସ୍ୱରୂପେ—ପ୍ରତ୍ୟକ୍ଷରେ । ୮। ପୁଳିନ୍ଦସୁନ୍ଦରୀ—ନୀଚଜାତୀୟା ସୁନ୍ଦରୀମାନେ, କସ୍ତୁରୀପଗଡ଼—କସ୍ତୁରୀର ଖଣ୍ଡ ବା କଣା, କୁଟ—ଚୂଡ଼, ଅବକରତୁଲ—ଅଳଅ ସାଙ୍ଗରେ ।୯। ସୁନା ଗରୀଅରେ—ସୁନାରେ ତିଆରି ଗରାରେ, (ଅନ୍ୟ ପକ୍ଷରେ)—ହେ ସୁରସିକା ଅ, ଜୀବନ—ପାଣି ଓ ପ୍ରାଣ, କୁଟୁମ୍ବିନୀ—ନିଜ ସ୍ତ୍ରୀ, ଅବରୋଧ—ଅନ୍ତଃପୁର, ଧବ—ସ୍ୱାମୀ ।୧୦। ବରଣମଣ୍ଡଳ—ପ୍ରାଚୀରର ଅଗ୍ରଭାଗ, ବିଷ୍ଣୁପଦ—ଆକାଶ, ବହୁଳପକ୍ଷରେ—କୃଷ୍ଣପକ୍ଷରେ । ବହଳଋକ୍ଷକ ପଟଳୀ—

ଭ୍ରମେ ପରିବାରେ । କରନ୍ତିହ ଛୁଡ଼ା ପୀଡ଼ାକୁ ଲଭନ୍ତି ଖାଲି ଧରିବାକୁ ଚିକିବାରେ । ୧୧ । ସଲାବଣ୍ୟରସ ପୂରନ୍ତି ବିଶେଷ ନାହିଁ ତା ବୀଚଜାତଦର । ରତନ ମକରକୁଣ୍ଡଳୀ ପ୍ରକର ସନ୍ତାନକଳ୍ପ ସୁଖାକର । ପ୍ରତି ପ୍ରାଙ୍ଗଣ । ମଣ୍ଡନେ କୀଲାଲ ଦର୍ଶଇ । ଚନ୍ଦ୍ର ତୁରଙ୍ଗମ ଗଜ ଲକ୍ଷ୍ମୀକଳ୍ପସ୍ଥଳୀ ସେ ସିନ୍ଧୁକୁ ହସଇ । ୧୨ । ନିଜ ଦାନବାରି ଗଜଦାନବାରି ବହେ ଦାନବାରି ଗୃହକୁ । ଅର୍ଭକେ ତାହାର ଗର୍ଭକୁ ଚଳାଇ ତରିମଣ୍ଡପ ସମୂହକୁ । ଖେଳ ମଣନ୍ତି । ମାଧବ ପ୍ରତି ମାସଯାକ । ମାଧବପ୍ରତିମା ଗୃପକେଳିରମା ଭାବ ହେବାରୁ ସମୁତ୍ସୁକ । ୧୩ । ପ୍ରତିମାସେ ରାକାପ୍ରଦୋଷେ ରସିକାଜନଙ୍କ ଭ୍ରମ କି କହିବା । କେ ଥାଏ ତଳରେ କେ ଊର୍ଦ୍ଧ୍ୱସ୍ଥଳରେ ଅଟ୍ଟାଳିକାରେ ଥାଏ ଅବା । ଯେତି ଉପରେ । ଥାଏ ସେ ଚନ୍ଦ୍ରକୁ ବନ୍ଦାଏ । ତଳେ ଥିବା ବାମା ଊର୍ଦ୍ଧ୍ୱଗତା ରାମାଲପନକୁ ଅର୍ଘ୍ୟ ବନ୍ଦାଏ । ୧୪ । ଯହିଁ ଗୃହଚୂଳ ହିରଣ୍ୟମଞ୍ଜୁଳ କଳଶୀ ଉପର ଦଣ୍ଡକୁ । ଚୁମ୍ବିବା ଦଣ୍ଡକ କାଳେ ଗୃହିଁ ଲୋକ କଳା ବଳାହକଖଣ୍ଡକୁ । ମନେ ବିଚାରେ । ବଡ଼ଭି ନୀଳଚେଲ-ବଲ୍ଲୀ । ଯେଉଁ ବର୍ଣ୍ଣ ଘନ ଚୁମ୍ବେ ତାକୁ ଜନ ଘେନେ ସେ ବର୍ଣ୍ଣବାନା ବୋଲି । ୧୫ । ଯେବେ ସଂଯୋଗ ପ୍ରକାରେ ପ୍ରାବୃଟକାଳୀନ ଘନ ବ୍ୟୋମେ ଘୋଟେ । ଦେଖି ବାତଲୋଳ ସୁପୀତ ଦୁକୂଳ ଲତା ବଡ଼ଭି ଗିରିକୂଟେ । କେଉଁ ପ୍ରାସାଦେ । ଗୃହିଁ ଅବଦାତପତାକା । ଜନ ଘେନେ ପୀତ କେତୁକୁ ତଡ଼ିତ ଧବଳକେତୁକୁ ବଳାକା । ୧୬ । ନିସର୍ଗ ଚପଳା ବଲ୍ଲରୀକଖେଳା

---

ବନ୍ଧୁ ତାରକାସମୂହ । ଦବଶିଖୀ—ଦାବାନଳ, ବନାଗ୍ନି । ୧୧ । କସ୍ତୁରୀ, ଗୋରୋଚନା, ଚନ୍ଦନ, କୁଙ୍କୁମ ପ୍ରଭୃତି ବିଭିନ୍ନ ରଙ୍ଗର ଛିରି (ଛିଟିକା) ପଡ଼ିବାରୁ ପରିବାର ଲୋକମାନେ ସେ ସବୁକୁ ଚନ୍ଦ୍ରକମ୍ବଳ ମନେ କରି ବୃଥା ଚିକିବାକୁ ଚେଷ୍ଟା କରି ନଖ ଛଡ଼ିବାରୁ କଷ୍ଟ ପାଆନ୍ତି । ୧୨ । ସଲାବଣ୍ୟରସ—ଲାବଣ୍ୟପୂର୍ଣ୍ଣଶୃଙ୍ଗାର ରସ ଓ ସୁନ୍ଦର ଜଳ, ବୀଚଜାତଦର—ଲହରୀ ହେତୁରୁ ଭୟ, ସନ୍ତାନ—ପୁତ୍ରାଦି, କଳ୍ପବୃକ୍ଷ; କୀଲାଲ—ଜଳ ଓ କପରି ରକ୍ତବର୍ଣ୍ଣ; ପ୍ରତି ଅଗଣାରେ ଥିବା ସୁନ୍ଦର ଜଳାଶୟମାନଙ୍କୁ ସମୁଦ୍ର ସଙ୍ଗେ ତୁଳନା କରାଯାଇଅଛି । ୧୩ । ନିଜ ଦାନବାରି—ନିଜେ ଦାନ କରିବା ବେଳେ ଦେଉଥିବା ଜଳ; ଗଜ-ଦାନଦାରି—ହସ୍ତୀମାନଙ୍କର ମଦଜଳ, ଦାନବାରିଗୃହକୁ—ସମୁଦ୍ରକୁ, ଅର୍ଭକେ—ପିଲାମାନେ, ତରିମଣ୍ଡପ—ଖେଳିବା ପାଇଁ କରିଥିବା ମଣ୍ଡପାକୃତି ନୌକା, ମାଧବ—ବୈଶାଖମାସ, ବୈଶାଖରେ ମାଧବ ପ୍ରତିମା (କୃଷ୍ଣ ପ୍ରତିମା)ଙ୍କର ଗୃପକ୍ରୀଡ଼ାର ରମା (ସୌନ୍ଦର୍ଯ୍ୟ) ଭାବ ସମୁତ୍ସୁକ (ଆନନ୍ଦିତ) ହୁଅନ୍ତି । ୧୪ । ରାକାପ୍ରଦୋଷ—ପୂର୍ଣ୍ଣିମାର ସନ୍ଧ୍ୟା, ରାମାଲପନ—ସ୍ତ୍ରୀର ମୁଖ (ଚନ୍ଦ୍ର) । ୧୫ । କଳାବଳାହକ—କଳାମେଘ, ବଡ଼ଭି—ଚନ୍ଦ୍ରଶାଳା, ନୀଳଚେଲବଲ୍ଲୀ—ନୀଳବର୍ଣ୍ଣର ବସ୍ତ୍ରଖଣ୍ଡ ।

ଯାସୋର ଧରକୂଟର ଉଟଜେ ବସି । ଶୟନ ନ ଭଜି ନୟନ ନାସା ଅଗ୍ରେ ନିବେଶି । ୨୫ । ଯେ ଜପିଥିବ ତ ଶୋଯପୀଠରେ ଶତବରଷ । ସେ ସିନା ଧରିବ ଏ ସୁନାଗୋଷ୍ଠୀ କରସାରସ । ୨୬ । ଚରମାଦ୍ରି ଯାଏ ଚରମାନଙ୍କୁ ପେଷିବା ଶିବେ । ନିଦେଶମାଙ୍ଗିକେ ସ୍ୱଦେଶଯାକ ବୁଝି ଅସିବେ । ୨୭ ବାଳୀବର ବର ଧ୍ୟାବେ ନ ଛବି ହେବ ପ୍ରକଟ । ରଙ୍ଗାଜୀବେ ଯିବେ ଅସିବେ ଲେଖି ତା ରୂପପଟ । ୨୮ । ମାୟାନର ନରଉନସ୍ୟେ ଜାଣନ୍ତି ଇନ୍ଦ୍ରଜାଲେ । ଅଙ୍କ ଦେବ ଦେନ ସେ ଯିବେ ଦେଶ ହେଜିବେ ଭଲେ । ୨୯ । ଧୀରପଣେ ପଣେ ଅମରଗୁରୁ ଯିବେ ଓହରି । ପୃଥିବୀରେ ବୀରେ ନ ଥିବେ ଯାହା କଳାକୁ ସରି । ୩୦ । ସମ୍ପଦରେ ଦରେ ଶଙ୍କିବେ ଯାକୁ କୁଳିଶପାଣି । ବଳି କର୍ଣ୍ଣ କର୍ଣ୍ଣେ ଯା ଦାନ ଯଶ ନ ଥିବ ଶୁଣି । ୩୧ । ଗୁଣରୂପରୁ ପୁରୁଷତାଭାସ ମାନକ ଥିବ । ଅବଧାନ ଧାନ ପ୍ରମାଣେ ଯାହାଠାରେ ହୋଇବା । ୩୨ । ସେହି ହେବ ଦେବ ସୁମନ୍ତମଣ୍ଡଳୀସଂକ୍ରନ୍ଦନ । ଜେମାମଣି ମଣିସଂଯୋଗବିଧାନରେ କୁନ୍ଦନ । ୩୩ । ସ୍ୱୟମ୍ବର ବରବର୍ତ୍ତନା ମନେ ବାଞ୍ଛିବ ଅବା । ମନୋରଥ ରଥସଞ୍ଚାରପଥ କମେ ଜାଣିବା । ୩୪ । ଏ ବିଧିରେ ଧୀରେ କହନ୍ତି କନ୍ୟାରତନ ଛବି । ତାହାର ସେ ରହେ ବଳିବା ଚିତ୍ତ ପ୍ରଧାନ ଭାବି । ୩୫ । ଜନମାର ନିରବଧିକ ଧନେ ବଳେ ଯେ ମତ୍ତ । ଜାଣି ତାତ ତା ତରଳତା ଲୋଡ଼େ ସୁଗୁଣଖ୍ୟାତ । ୩୬ । ବନ୍ଧୁ କୁଳକୁ ଲଜ୍ଜା ନୋହେ କୁଳ ହେଲେ ନିର୍ମଳ । ଗୃହକରଙ୍କ ରଙ୍କପଣରୁ ଖୋଜି କରନ୍ତି ମୂଳ । ୩୭ । ମହତ୍ତ୍ୱ ମହତ୍ତମମାନେ ପ୍ରବଳାଇ କରନ୍ତି । ଅନନ

---

କଲ୍ପ, କଥା । ୨୫। ଧରକୂଟରଉଟଜେ—ପର୍ବତଶୃଙ୍ଗସ୍ଥକୁଡ଼ିଆରେ । ୨୬। କରସାରସ—କରପଦ୍ମ । ୨୭ । ଚରମାଦ୍ରି—ଚରମାଚଳ, ପଶ୍ଚିମସୀମା ଶେଷ, ଶିବେ—ଶୁଭମୁହୂର୍ତ୍ତରେ । ୨୮ । ରଙ୍ଗାଜୀବେ—ଚିତ୍ରକରମାନେ । ୩୦ । ପଣେ ଅମରଗୁରୁ—ଅଣୀ ଜଣ ବୃହସ୍ପତି, ଓହରିଯିବେ—ପରାସ୍ତ ହେବେ । ୩୧ । କୁଳିଶପାଣି—ଇନ୍ଦ୍ର, ବଳି କର୍ଣ୍ଣ—ପ୍ରସିଦ୍ଧ ଦାତା ଦୁଇ ଜଣ, କର୍ଣ୍ଣ—କାନ । ୩୨ । ପୁରୁଷତାଭାସ—ପୌରୁଷର ସୂଚନା ବା ସଙ୍କେତ । ଅବଧାନ—ଚିତ୍ତର ଏକାଗ୍ରତା, ଧାନ ପ୍ରମାଣେ—ଅତି ଅଳ୍ପ ମାତ୍ରାରେ । ୩୩ । ସୁମନ୍ତମଣ୍ଡଳୀସଂକ୍ରନ୍ଦନ—ପଣ୍ଡିତସମୂହର ଇନ୍ଦ୍ର, ଅର୍ଥାତ୍ ଶ୍ରେଷ୍ଠ ପଣ୍ଡିତ, କୁନ୍ଦନ—ସୁବର୍ଣ୍ଣ । ୩୪ । ମନୋରଥରଥ ସଞ୍ଚାରପଥ—ଅଭିଳାଷରୂପ ରଥର ଗତିପଥ ଅର୍ଥାତ୍ ଯେଉଁ ବାଗରେ ଇଚ୍ଛା ତାହା । ୩୬ । ନିରବଧିକ ଧନେ—ପ୍ରଚୁର ସମ୍ପତ୍ତିରେ ( ମା ଧନ ଖୋଜେ ), ତା ତରଳତା—ଧନର ଅସ୍ଥିରତା, ସୁଗୁଣ

ଆନ ନର ନନ୍ଦା ସ୍ତବ କରେ ଭରତ । ୩୮ । ତଥାପି ତଥାପି ହୋଇବ ଦେବ ଦୁଃଖ ବଗୁର । ମନୁଜ ମନୁଜନ୍ୟପୀଡ଼ା ନ ରଖନ୍ତୁ ଈଶ୍ବର । ୩୯ । ତରୁଣୀ ତ ରତୀ କରନ୍ତୁ ତପେ ଦେବଙ୍କୁ ପୁର୍ବେ । ଦେବ କା ଦେବ କାଶୋଗ୍ରୀଙ୍କ ଦୁଃଖ ନ ସୁଝି ଏବେ । ୪୦ । ସଚିବ ଶଚିବରତୁଲ୍ୟ ନୃପ ଦୁହେଁ ଏପର । ମାନସମାନ ସମାଧାନ କର ନେଲେ ଶର୍ବରୀ ।୪୧। ପ୍ରଭାତପ୍ରଭା ତରଣୀଙ୍କ ସୂତ କଲେ ପ୍ରକାଶ । ବାସବ-ବାସବତୀ ଦିଗ ହେଲା ଯୋଗିନୀ ବେଶ । ୪୨ । ଅମ୍ବର ଅମ୍ବର କଷାୟ ପିନ୍ଧିବାରେ ରସିଲା । ଦଣ୍ଡକ ଦଣ୍ଡ-କମଣ୍ଡଳୁ ଘେନି ସମୁଲ୍ଲସିଲା ।୪୩। ହରଷେ ହରସେବନରେ ମାଳୀ ହେଲେ ବାହାର । ସାରସସାର ଷଟ୍‌ପଦେ ପିଇ କଲେ ଝଙ୍କାର । ୪୪ । କାରଣ ହେଲା ସେ ସମୟ କୋକଲୋକ ମୋଦର । ଦରରୁ ଉଲୂକେ ନୋହିଲେ କୋରଡ଼ରୁ ବାହାର । ୪୫ । ହୀର ନୀହାରପର ହେଲା ସ୍ତନେ ଅଭିରାମର । ମାରମାରଗଣ ବରଷା କରନ୍ତି ହେଲା ଓହର । ୪୬ । ହରଣ କୁଳଟା ନୀବୀର କରୁଥିଲେ ଯେ ବାଟ । ବାଟପିଚ୍ଛାୟାରେ ଛପିଲେ ଗୁଡ଼ ବହଳ ଖଟ । ୪୭ । ଖଟଣୀ ଲୋକେ ଫିଟାଇଲେ ନୃପଦ୍ୱାର କବାଟ । ବାଟଜଗାଙ୍କୁ ଅଭିସାରୀ ଦେଲେ ଭୂଷଣ ପାଟ । ୪୮ । ପାଟବ ତମିସ୍ରପୁଞ୍ଜର ରବି କଲେ ବିପାଟ । ପାଟଳରେ କାସେ ଅଶ୍ରୟ କଲେ ଅଚଳକୂଟ । ୪୯ । କୂଟ-ଯୋଧୀ ଦନୁଜଙ୍କର ଯେଉଁ ରାମ ମାରଣ । ରଣମୁଖେ ସେ ଗ୍ଲେଟରାୟୁ ନୃପତର ଶରଣ । ୫୦ । ପରଣୟୁମନ୍ଦାନନ୍ଦନ ଜାଣ ଏ ଛନ୍ଦ ନାମ । ଏକ ପଞ୍ଚାଶତ ସଂଖ୍ୟକ ପଦେ ହେଲା ବିରାମ । ୫୧ ।

---

ଖ୍ୟାତ—ଜନର ପ୍ରଶଂସା । ୩୯ । ମନୁଜମନୁଜନ୍ୟପୀଡ଼ା—ମନୁଷ୍ୟର ମାନସିକ ସନ୍ତାପ । ୪୧ । ସଚିବ—ମନ୍ତ୍ରୀ; ଶଚିବର—ଇନ୍ଦ୍ର । ୪୨ । ତରଣୀଙ୍କ ସୂତ—ସୂର୍ଯ୍ୟ ସାରଥି ଅରୁଣ; ବାସବବାସବତୀଦିଗ—ଇନ୍ଦ୍ରଙ୍କ ଅଧିଷ୍ଠିତ ପୂର୍ବଦିଗ; ଯୋଗିନୀ-ବେଶ—ତାପସୀ ବେଶ; ଅମ୍ବର···ଗୈରିକବସ୍ତ୍ରରୂପ ରକ୍ତବର୍ଣ୍ଣ ଆକାଶ । ୪୩ । ସାରସସାର—ପଦ୍ମର ମଧୁ ବା ମକରନ୍ଦ । ୪୫ । କୋକଲୋକ—ଚକ୍ରବାକ ସମୂହ; ଉଲୂକ—ପେଚା । ୪୬ । ନୀହାରପର—ତୁଷାର ପରି ( ଶୀତଳ ) । ମାରମାରଗଣ—କନ୍ଦର୍ପଶର; ଓହର—କ୍ଷୀଣ, ଅଳ୍ପ । ୪୭ । କୁଳଟା—ଅସତୀ ନାରୀ, ନୀବୀ—ସ୍ତ୍ରୀମାନଙ୍କ ଲୁଗାର ଅଣ୍ଟାଗଣ୍ଠି, ବାଟପିଚ୍ଛାୟା—ଗଛଛାଇ । ୪୮ । ଅଭିସାରୀ—ଅଭିସାରିକା ନାୟିକା । ୪୯ । ପାଟବ ତମିସ୍ରପୁଞ୍ଜର—ଘନ ଅନ୍ଧକାରସମୂହର, ବିପାଟ—ବିଦାରଣ; ପାଟଳର—ଗୈରିକ; ଅଚଳକୂଟ—ପର୍ବତ ଶିଖର । ୫୦ । କୂଟଯୋଧୀ—ମାୟା ଯୁଦ୍ଧକାରୀ । ୫୧ । ପରଣୟୁ-ମନ୍ଦାନନ୍ଦନ—ଆନନ୍ଦପ୍ରଦ ବିବାହ ମନ୍ତ୍ରଣା ।

## ବିଂଶ ଛାନ୍ଦ

### ରାଗ—ରୈଖ

### ( ଇନ୍ଦ୍ରଜାଲ ପ୍ରଦର୍ଶନ )

ଶୁଣ ହେ ସୁହୃଦ ଜନେ ନବ ଯୁବରାଜ ଦିନେ ପୁର ବାହ୍ୟ ଉପବନ ମଣ୍ଡପେ ବସି । ରାଜବଲ୍ଲଭ ପ୍ରମୁଖ ସଖାନିବହକୁ ସୁଖ ଦେଉଥିଲ ମୁଖ୍ୟ ଅକ୍ଷଲୀଳାରେ ରସି । ଖଡ଼ଣୀ ସାମନ୍ତ କିଶୋରେ । ଖଟିଥିଲେ ସାବଧାନ ହୋଇ ପାଶରେ । ୧ । ଏ ସମୟେ କୁଞ୍ଜଦ୍ୱାରପାଳ ବେତ୍ର-ଲତାଧର ଧରଣୀ ହୃଦୟେ ଶିରସ୍ପରଶ କରି । ଜଣାଇଲା ଦିବ୍ୟ ଅବଧାନକୁ ଆସୁ ହେ ଦେବ ନଟ ଅଶେଷ ବିଭବ ବେଶସଞ୍ଚାରୀ । ମାୟାମୟ ବିଦ୍ୟା-କୁଶଳ । ତବ ପାଦମୂଳ ଦରଶନରେ ଲୋଳ । ୨ । କସାଇଛୁ କ୍ରମେ କ୍ରମେଲକ ତୁରଙ୍ଗ ଚରମେ ଦାମାମା ନାଗରା ଭୂରି ଅଛୁ ଅନେକ । ବୁହାଇଛୁ ମତ୍ତଗଜ ସମଜରେ କରି ସଙ୍ଗ ଜାମ୍ବୁନଦ ଜରୀତମ୍ବୁ ନେପଥ୍ୟ ଯାକ । ଅଛି ପଞ୍ଚ ତଟୁପଟଲୀ । ମହୋନ୍ନତ ବଳୀବର୍ଦ୍ଦ ନୁହଇ କଳି । ୩ । ସିଂହସଂହନନ ସାରମେୟ ଅଛନ୍ତି ଅପାର ମେଖବୁହା ଗଧ ଅଧଶତ ସମେତେ । ପାଟୀର ଚର୍ଚ୍ଚିତସ୍ତନ ଘଟୀ କଞ୍ଚୁକ ଶୋଭନ ନଟୀ ଦଶ ଗୋଟି ସିଂହକଟୀ ସମସ୍ତେ । ଗାନ ନରତନ ରୀତରେ । ଅନ ନର ତ ନ ଥିବେ ପୁଣି ଖିତିରେ । ୪ । ଶୁଣି ଗୋତ୍ରାଧିପ ପୁତ୍ର ମିତ୍ର ସମ୍ମତରେ ନେତ୍ର-କୋଣକୁ କମ୍ପାଇଁ ଆସୁ ବୋଲି ସୂଚିଲା । ଅବକାଶେ ଭେଟି ନଟ ଯୋଡ଼ି ରହି କରପୁଟ ଜୟ ପୂର୍ବ ସ୍ତବ ଭାଟ ପରି ରଚିଲା । କଳପିଲା ହଟ କପଟ ।

---

ବିଂଶ ଛାନ୍ଦ

୧ । ମୁଖ୍ୟ ଅକ୍ଷଲୀଳା—ପ୍ରଧାନ ପଶାଖେଳ । ୨ । କୁଞ୍ଜଦ୍ୱାରପାଳ—କୁଞ୍ଜ-ଦ୍ୱାରର ଦ୍ୱାରୀ; ଧରଣୀହୃଦୟେ ଶିର ସ୍ପରଶ କରି—ମାଟିରେ ବକ୍ଷ ଓ ମସ୍ତକ ଲଗାଇ ଅର୍ଥାତ୍ ସାଷ୍ଟାଙ୍ଗ ପ୍ରଣାମ କରି । ୩ । କସାଇଛୁ—ଦୃଢ଼ରୂପେ ବାନ୍ଧିଛୁ; କ୍ରମେଲକ—ଓଟ, ତୁରଙ୍ଗ—ଘୋଡ଼ା, ଚରମେ—ପିଠିରେ, ଦାମାମା ନାଗରାଭୂରି—ବାଦ୍ୟବିଶେଷ, ମତ୍ତଗଜସମଜରେ—ବଡ଼ ବଡ଼ ହାତୀସମୂହଦ୍ୱାରା, ଜାମ୍ବୁନଦ··· ସୁନାଜରିର ପଡ଼ିଥିବା ତମ୍ବୁ ଏବଂ ନେପଥ୍ୟ ( ବେଶ ) ସବୁ । ତଟୁପଟଲୀ—ଛୋଟ ଘୋଡ଼ାସବୁ । ୪ । ସିଂହସଂହନନସାରମେୟ—ସିଂହପରି ଶରୀରବିଶିଷ୍ଟ କୁକୁର, ମେଖ—କିଲା (ତମ୍ବୁ ଟାଣିବାପାଇଁ), ପାଟୀର—ଚନ୍ଦନ, କଞ୍ଚୁକ—କାଞ୍ଚୁଲି, ଗାନ ନରତନରୀତରେ—ଗାଇବା ଓ ନାଚିବାରେ । ୫ । ଗୋତ୍ରାଧିପପୁତ୍ର—ରାଜପୁତ୍ର,

କଦଳୀତରୁ ତୋରଣ କନକପୁଟ । ୫ । ଯୁବରାଜ ସଭା ଗୁଡ଼ି ଯେତେକ ନଟୀ ଅକାଣ୍ଡ ହେଲେ ନାଟ ଦେଖିବାକୁ ମଣ୍ଡଳୀ ଘେର । ହୋଇ ତାଙ୍କ ଗୀର୍ବା ଭ୍ରଂଶ ଜାତ ହେଲେ ରାଜହଂସ ତା ଦେଖି ଯେ ହସିଲା ତାଠାରୁ ସେପର । ତହୁଁ ପୁଣି ଅକାଶେ ଗୃହ୍ନିଁ । ଡାକିଲା ରେ କାମଚଣ୍ଡି ରହିଲୁ କାହିଁ । ୬ । ତହୁଁ ଅକାଶରୁ କାଶମିଶା ବୃଦ୍ଧା ଅଟ୍ଟହାସ ସହିତେ ଶୁଭିଲା ଘୋର ଘର୍ଘରସ୍ୱରେ । ସୁରତ ବିନା ନିମିଷ ହୋଇଛୁ ମତେ ବରଷ କର ରେ ମୋର ସନ୍ତୋଷ ନବକିଶୋରେ । ଏତେ କହି ପଡ଼ିଲା ଖସି । କାଳରାତ୍ରି ମୂର୍ତ୍ତି ତାଳତରୁ ସଦୃଶୀ । ୭ । ଧବଳ ଝାଞ୍ଜରକେଶା ତହିଁ ପୁଣି ଲୋକହସା କମୁଚ ସଦୃଶ ଖୋସା ସଧ କରଛୁ । କାକ ବକ ପକ୍ଷଟିର ଦୃଷ୍ଟ ବଦ ଗୃରସୋର ବେଢ଼ରେ ବସନ୍ତ ତୋରା ଫୁଲ ଘେରିଛୁ । ନେଇ ତରୁକୋଟର ପରା । ଗୋଟାକରେ ଅଛୁ ମାଳ ସଫେଦ ତାରା । ୮ । ପୀନସଗଦ ବିକୃତ ନାସାବିଲ ଅନ୍ତର୍ଗତ ଲୋମ ନିକୁରମ୍ବ ଚୁମ୍ବେ ଲମ୍ବ ଚିବୁକ । କଞ୍ଚୁକ ହୁଗୁଳା ଗଳବଳ ତଳ କୁକ୍ଷିସ୍ଥଳୀ ଲୁଳି ହେଉଛୁ ଅନ୍ଦୋଳ ଯାହାର ବୁକ । ଶଙ୍ଖ ମଣିମାଳା ଅନେକ । ମଣ୍ଡିଛୁ ସେ ଚଣ୍ଡୀ ଗଳଗଣ୍ଡିଆ ବେକ । ୯ । ତିନ୍ଦୁକ ଇନ୍ଧନ ଗୋରା ଦେହା ପୃଥୁଳପଞ୍ଜରା ଜରାଶୁଷ୍କଲଙ୍ଗଳୀ କପୋଳ ନିତମ୍ବ । ଘୋଡ଼ାଇଁ କାଷାୟ ବାସେ ଅଧ ଅଧମାଙ୍ଗେ ଦଶେ କାସୀସ ଓଷ୍ଠୀର ଶ୍ୱେତ ଲୋମ-କଦମ୍ବ । ତରୁଣଙ୍କ ଗୃହ୍ନି ସଂକୋଚେ । ରସନା କାମୋଡ଼ି ହସି ଅଳପ ନାଚେ । ୧୦ । ପାଶେ ମିଳି ଯିବା ଯୁବାଜନଙ୍କ ସୂନଧନବା ବିକାର ଅନ୍ତୁରେ କମି

---

କଳପିଲ ହଟକପଟ—ମାୟାପୂର୍ଣ୍ଣ ଇନ୍ଦ୍ରଜାଲ କଳନା କଲା, କନକପୁଟ—ସୁନାପୁଟଦିଆ । ୬ । ନଟୀ—ବେଶ୍ୟା, ହୋଇ ତାଙ୍କ ଗୀର୍ବାଭ୍ରଂଶ—ଖୋସଣୀ ଫିଟି-ଯାଇ । ୭ । କାଶମିଶା—କାଶରୋଗଯୁକ୍ତା, ନିମିଷ—କ୍ଷଣକାଳ । ୮ । ଧବଳଝାଞ୍ଜର-କେଶା—ଯାହାର କେଶ ଧଳା ଓ ପାତଳା, କମୁଚସଦୃଶ—ଗୁଆ ପରି କ୍ଷୁଦ୍ର, ସଧକରଛି—କୌତୁକରେ ବାନ୍ଧିଛି, କାକବକପକ୍ଷଟିର—କୁଆ ଓ ବଗ ପକ୍ଷୀ ଖୋସାରେ ଖୋସିଛି, ଦୃଷ୍ଟ ବଦ ଗୃରସୋର—ଦେଖାଯାଉଥିବା ଗୃରସର ଦଦ, ବସନ୍ତତୋରା—ହଳଦିଆ ବର୍ଣ୍ଣର ସୁନ୍ଦର (ଫୁଲ), ତରୁକୋଟର—ଗଛକୋଲ । ୯ । ପୀନସଗଦବିକୃତ—ପୀନସ ରୋଗଦ୍ୱାରା ବିକାର ପ୍ରାପ୍ତ, ନିକୁରମ୍ବ—ସମୂହ, କୁକ୍ଷିସ୍ଥଳୀ—ଉଦରଦେଶ, ବୁକ—ବକ୍ଷସ୍ଥଳ ( ସ୍ତନ ); ଗଳଗଣ୍ଡିଆ ବେକ—ଗଳଗଣ୍ଡ ରୋଗଯୁକ୍ତ ସ୍ଥୂଳ ବେକ । ୧୦ । ତିନ୍ଦୁକଇନ୍ଧନ—କେନ୍ଦୁକାଠ, ଜରା—ବାର୍ଦ୍ଧକ୍ୟ, ଶୁଷ୍କଲଙ୍ଗଳୀ-କପୋଳନିତମ୍ବ—ଗଣ୍ଡଦେଶ ଓ ନିତମ୍ବ ଶୁଖିଲା ନଡ଼ିଆ ଭଳି, କାଷାୟବାସ—ଗେରୁଆ ଲୁଗା, କାସୀସଓଷ୍ଠୀ—ଯାହାର ଓଷ୍ଠର ବର୍ଣ୍ଣ ହୀରାକସ ବର୍ଣ୍ଣ ପରି ଛେଡା ବା ପୀଠାଭ, ଲୋମକଦମ୍ବ—ରୋମସବୁ । ୧୧ । ସୂନଧନବା—ପୁଷ୍ପଧନ୍ୱା, କନ୍ଦର୍ପ; ବିକୃତ—ସ୍ୱଭାବର

ଧାଇଁ ଗୀତ ଗାଇ ତଳପେ ଶୁଆଇ କଲେ ଅରଷ୍ଟବର୍ଦ୍ଧମାନ । ସମୁଚ୍ଛଳନ୍ତି । ମଙ୍ଗଳ ତୁଳତୁଳ ବାଜା । ଘେନି ରତ୍ନାଞ୍ଜଳି ନୟନପୁଗଳି ପବାସ କଲେ ମହାରାଜା । ୪୪ । ତାହା ଜନ୍ମ ଶୁଣି ଯା ହାଟକଶ୍ରେଣୀ ବୃଷ୍ଟିରେ ପୂର୍ଣ୍ଣ କଲେ କ୍ଷମା । କବି ଭାବି କହେ ସେ କି ଶିଶୁ ନୋହେ କଳଙ୍କଦାରିଦ୍ର ଚନ୍ଦ୍ରମା । ରାଣୀ ଉଦର । ଆକାଶୁଁ ହେବାରୁ ଉଦିତ । କଳଙ୍କୀ ଶଶୀଙ୍କ ବରଜ ଅସି କି ତାରିଳ ହେଲ ଭୂମିଗତ । ୪୫ । ଲୁଟିଲେ ପ୍ରଜାଏ ସାତଦିନ ଯାଏ ହଜାର ସଂଖ୍ୟକ ବଜାର । ସହସ୍ରାଂଶୁଁ ଅଂଶ ନ ଲଭିଲ ଶେଷ ଲୁଟିବାରେ ହେଲେ ବେଜାର । ଲକ୍ଷ ରଜକେ । ସଜ କରିବା ଚେଲକୁଟ । ବରଜ ଦୂରେ ଡାକିଲେ ମୋଦରେ ଅସ ହେ ଜନେ ଲୁଟ ଲୁଟ । ୪୬ । ଏକବିଂଶ ଦିନ ସକଳ ଭୁବନ ସେ ପୁରେ ପରି ଅଭ୍ରସିଲେ । ଗଜରଦ ମୂଳ ହୋଇ ନୃପକୁଳଗୁରୁ ମହୀସୁରେ ଅସିଲେ । ଯେମାମଣିଙ୍କ । ରଙ୍ଗେନ୍ଦ୍ରେ ମହାରାଜ କୋଳେ । ଅଷ୍ଟକଞ୍ଜମାଳାଭୂଷିତ ଚପଳା ଘନାଙ୍ଗେ ଖେଳନ୍ତି କି ଭେଳେ । ସେ ନରେନ୍ଦ୍ରବାର୍ଲୀ ରାଶି ରକ୍ଷ ଭଲ ମୀନ ରେବତୀ ମୂଳ କଲେ । ଚମ୍ପା-ମାଳା କୋଷ୍ଠୀ ଲେଖିଲି ବିମ୍ବୋଷ୍ଠୀ ଚନ୍ଦ୍ରକଳା ବୋଲି ବୋଇଲେ । କୋଳ ତଳପ । ଖଟଦୋଳି ସୁରବିସ୍ମୟ । ଜନଙ୍କ ନୟନ ହୃଦୟ ବଚନ ସେ ଦିନୁ ହୋଇଗଲେ ଶିବ । ୪୮ । ନଗରି ଭୂପାଳରାଜବଧୂ ନୀଳ କମଳ-ନୟନା ଜନମ । ପଞ୍ଚାଶତପଦ ଘଟିତ ଏ ଛାନ୍ଦ ବାଳବତାର ଏହା ନାମ । ଏହା ଉତ୍ତର । ଛାନ୍ଦେ ପ୍ରଥମୁଁ ଜେମା ଛବି । ବାଳଲୀଳା ଧରି ହେବାର କିଶୋରୀ ସଂକ୍ଷେପେ ବରନିବ କବି । ୪୯ । କମଳାଙ୍କ ଶିଶୁ କର୍କଶପରଶୁକର-ବନ୍ଦ୍ୟ କଞ୍ଜନୟନ । କମଳାଙ୍କ ସ୍ତନ କର୍ପୂର ଚନ୍ଦନ କମଳଧିମଧ୍ୟଶୟନ । କମ୍ବୁକଟକ । କମଳ ସିଂହାସନେ ସ୍ଥିତ । ଭର ରାମଚନ୍ଦ୍ର ଦେବ ଧରାଇନ୍ଦ୍ର-ଠାରେ କରୁଣା ଦୃଷ୍ଟିପାତ ।

---

ମାଛ । ଭୁମ୍ବିସୁନ—ଲଜଫୁଲ; ଗର୍ଭିଣୀ ସ୍ତ୍ରୀକୁ ଲଜଫୁଲ ପିତା ଲଗିଲେ ଝିଅ ଜାତ ହୁଏ । ନାଭି·· ନାହିକୁ ପାଣି ଶୁଖିଯିବା ପରେ । ଅରଷ୍ଟ—ଅନ୍ତୁଡ଼ଶାଳ । ୪୫ । ଯା ହାଟକ···ସୁବର୍ଣ୍ଣ ବୃଷ୍ଟିରେ ଯାହା ପୃଥିବୀକୁ ପୂର୍ଣ୍ଣ କଲେ; କଳଙ୍କଦାରିଦ୍ର-କଳଙ୍କହୀନ, ତାରିଳ—ନକ୍ଷତ୍ରଗଣ । ୪୬ । ସହସ୍ରାଂଶୁଁ ଅଂଶ—ହଜାର ଭାଗରୁ ଭାଗେ ମଧ୍ୟ ସରିଲି ନାହିଁ । ଚେଲକୁଟ—ଲୁଗାଗଦା । ୪୭ । ଗୁରୁମହୀସୁରେ—ଗୁରୁସ୍ଥାନୀୟ ବ୍ରାହ୍ମଣମାନେ; ଅଷ୍ଟକଞ୍ଜମାଳା—ଅଠଗୋଟି ପଦ୍ମମାଳ; ଘନାଙ୍କେ—ମେଘକୋଳରେ । ୫୦ । କମଳାଙ୍କ ଶିଶୁ—ବ୍ରହ୍ମା; କର୍କଶପରଶୁକର—ଶିବ; କଞ୍ଜନୟନ—ପଦ୍ମନେତ୍ର ( ଜଗନ୍ନାଥ ), କମଳଧି—ସମୁଦ୍ର, କମ୍ବୁକଟକ—ଶଙ୍ଖକ୍ଷେତ୍ର, ପୁରୀ ।

# ଷଷ୍ଠ ଛାନ୍ଦ

## ରାଗ—ଘଣ୍ଟାରବ

( ଚନ୍ଦ୍ରକଳାର ବାଲ୍ୟାବସ୍ଥା ବର୍ଣ୍ଣନା )

ତଦନ୍ତେ ରସିକେ ଶୁଣ । ବୁଝି ବୁଝି ଭଲ ଷଣ । ଯେଉଁ ପର କନେ ଦେଖନ୍ତି ନୟନେ ଯେମାର ଶୁଭ ଲକ୍ଷଣ । ୧ । ଭାବବା ଲାବଣ୍ୟରମା । କେ କହେ ନୁହେ ଏ ଜେମା । ଧରି ଶିଶୁଲୀଳା କନକ ଚପଳାବଲ୍ଲରୀ ମଣ୍ଡିଲା କ୍ଷମା । ୨ । ସୁଧାମୟୁଧାମସାର । ତା ଶଶମିଷ ମସାର । କଲା ମୁଖ କେଶ ଅବଶ ଲୋକେଶ ଏ ବସୁନ୍ଧରାଭୂଷାର । ୩ । ଲଲାଟପଟ କପଟ । ଅଷ୍ଟମୀ ବିଧୁ ପ୍ରକଟ । ଫଳରେ ଫଟକ ରଖୁଛୁ ଅଟକ ଲୋକନେତ୍ରଙ୍କୁ ନିପଟ । ୪ । ଦୂରୁ ଅନା ପ୍ରାଣସଙ୍ଗି । ଭୂରୁ ଅସିତ ଭୁଜଙ୍ଗୀ । ଆଜଠାରୁ କହେ ଗଣନାରେ ଶହେ ଅହେତୁକ ଖେଳାଭଙ୍ଗୀ । ୫ । ଲସିକା ଶୋଭା ମନ୍ଦର । ନାସିକାକୁ ବେଦବର । ସାର ତିଳଫୁଲେ ସଜାଡ଼ିଛୁ ମାର ଭାରତ ହେବ ଅଖର । ୬ । ଅଧରଶୋଭାକୁ ଭାବ । ମନ୍ଦାର କି ବନ୍ଧୁଜୀବ । ନ ଚଳଇ ଅବ ଚରଣ ଏ ଶିଶୁ ଦେଖି କେଉଁ ବନ୍ଧୁ ଯିବ । ୭ । ନେତ୍ର ବିଚିତ୍ର ସାରଙ୍ଗ । ତାରା ଇନ୍ଦ୍ର ନୀଳ ଭୃଙ୍ଗ । କୋଟି ଶୁଭଲକ୍ଷ୍ମଜଳଧିର ପକ୍ଷ୍ମପାଳୀ ରଖିଅଛୁ ସଙ୍ଗ । ୮ । ଗଣ୍ଡ ଦରପଣ ବିମ୍ବେ । ଭଉଁଚନ୍ଦ୍ର

---

### ଷଷ୍ଠ ଛାନ୍ଦ

୩ । ସୁଧାମୟୁ ଧାମସାର—ଚନ୍ଦ୍ରଲୋକର ସାରଭାଗ, ତା ଶଶମିଷ ମସାର—ଚନ୍ଦ୍ରର ଶଶରୂପୀ କଳଙ୍କ କପଟ ଇନ୍ଦ୍ରନୀଳମଣି ପରି; କଲାମୁଖ···ବ୍ରହ୍ମା ଚନ୍ଦ୍ର ଲୋକର ସାରାଂଶ ଓ ତନ୍ମଧ୍ୟସ୍ଥ ଇନ୍ଦ୍ର ନୀଳମଣି ( କଳଙ୍କ ) ଆଣି ଅବଶ ହୋଇ ଯଥାକ୍ରମେ ଏ ସୁନ୍ଦରୀର ମୁଖ ଓ କେଶକୁ ନିର୍ମାଣ କରିଛି । ୪ । ଫଳ—କାନ୍ତି । ନିପଟ—ଏକାନ୍ତ ଭାବରେ । ୫ । ଭୁରୁ—ଭ୍ରୂ; ଅସିତଭୁଜଙ୍ଗୀ—କୃଷ୍ଣସର୍ପୀ । ୬ । ଲସିକା—କଣ୍ଠସ୍ଥଳ, ଅଖରକୁ ( ଶେଷରେ ) କନ୍ଦର୍ପର ଶରମୁଣା ହେବ ବୋଲି ବ୍ରହ୍ମା ନାସିକାକୁ ରଶିଫୁଲର ସାରବସ୍ତୁରେ ସଜାଡ଼ି ରଖିଛି । ୮ । ସାରଙ୍ଗ—ପଦ୍ମ । ତାରା—ଆଖିର ପୁଅ, କନୀନିକା; କୋଟିଶୁଭଲକ୍ଷ୍ମଜଳଧିର—ଶୁଭଲକ୍ଷଣ ସମୂହ ଯାହାଠାରେ ଏକତ୍ର ମିଳିତ ହୋଇଅଛି । ପକ୍ଷ୍ମପାଳୀ—ଚକ୍ଷୁର ଲୋମ ପଙ୍‌କ୍ତି । ୯ । ଭଉଁଚନ୍ଦ୍ର—କାନ୍ତିର ଚନ୍ଦ୍ର

ପ୍ରତିବିମ୍ବେ । କେଡ଼େ ଭାଗ୍ୟବତୀ ନରେନ୍ଦ୍ରଯୁବତୀ ଗଣ୍ଡେ ଯା ଏହାକୁ ଚୁମ୍ବେ । ୯ । ଯୋଗବଶୁଁ ଅଦରଶେ । ପ୍ରତିଫଳ ଯେବେ ଦିଶେ । ଯଥା ସାଜେ ରଙ୍ଗ ପଦ୍ମନାଗରଙ୍ଗ ତଥା ଚିବୁକ ଉଲ୍ଲସେ । ୧୦ । ଅନାଇ ଏହାର ଶ୍ରୁତି । ଏପରି ହୁଏ ପ୍ରତୀତି । ନେତ୍ରମୃଗ ଖସି ନ ଯିବାକୁ ପାଶି ରଖିଛୁ କେଳିତପତି । ୧୧ । କନକ କପୋତ ପୋତ । ତୁଳା ନୁହେ କଣ୍ଠରୁତ । ଅକାରଣଭବ ସକରୁଣରବ ଜଣେ କଳକଣ୍ଠରୁତ । ୧୨ । ଅଙ୍ଗୁ ହେଲଣି ସଙ୍ଗତ । ଜେମାର କଲକଣ୍ଠିତ । ଶ୍ୱାସହାସ କାନ୍ଦ ସମକ୍ରୋଧ ମନସ୍ମିତ ମିଶ୍ରିତ କଣ୍ଠିତ । ୧୩ । ସ୍ୱର୍ଣ୍ଣମୟ ସୁକୁମାର । ସ୍ୱର୍ଣ୍ଣଦାମ୍ବ ଶାଳ ସାର । ବିରଚିଲ୍ ଅଣି ଯତ୍ନେ କୁଶପାଣି ବାହୁଯୁଗ୍ମ ସୁଦ୍ଭଶାର । ୧୪ । କନକ କଳିତ ମହୀ । ବକ୍ଷକୁ ବିଗ୍ରହ ବହି । ମେରୁ ମଞ୍ଜି ପୋତିଥିଲ ପରି ଦ୍ୟୁତି ସ୍ତନସ୍ଥାନ ଅଛି ବହି । ୧୫ । ଶୋଣମଣି ମଧ୍ୟ ସୁନା । କଞ୍ଜପାଣିପାଦ ସିନା । ନିଜଗତିଯୋଷା ମଣ୍ଡନକୁ ଭୂଷା ହେବ ଏ କୁନ୍ଦଦଶନା । ୧୬ । ନଜର ଦିଅ ଉଦରେ । ମଜ୍ଜା ଏ କି ପ୍ରମୋଦରେ । ସ୍ୱଲାବଣ୍ୟ ଜଳପୃଷ୍ଠର କମଳ ନବଦଳଶୋଭା ଧରେ । ୧୭ । ନାଭିବଳ ଅବରତ । ଛବିକି ଅନବରତ । ଦେଖି ସୁଖୀ ହେଲ ଅମ୍ଭ ନେତ୍ର ଭଲ ଅଚରିଥିଲ ବରତ । ୧୮ । କି ସୁନ୍ଦର ଊରୁଦ୍ୱୟ । ହେଲେ ଯଦ୍ଭବନୋଦୟ । ବିପରୀତ ସୁନା କଦଳୀର ଦଳି ଦେବ ଏ ଶୋଭା ନିଶ୍ଚୟ । ୧୯ । ଅନା ଜାନୁତଳଶିରୀ । କରେ ମନ-ଧନ ଚୋରି । ଅଟେ ସରଣୀ ପଦ୍ମଭବା ମଣିଶଙ୍ଖସୁନାଚୁରିପରି । ୨୦ । ଇତ୍ଥଶ ସୁଷମାସୀମା । ସେ ମହୀମହେନ୍ଦ୍ର ଜେମା । ଜମେ ବିବର୍ଦ୍ଧିତ

---

ଜେମାଙ୍କ ଗଣ୍ଡଦେଶରୂପ ଦର୍ପଣଖଣ୍ଡରେ ପ୍ରତିବିମ୍ବିତ ହୋଇଅଛି । ୧୦ । ଅଦରଶେ—ଦର୍ପଣରେ, ପ୍ରତିଫଳ—ପ୍ରତିବିମ୍ବ, ଯୋଗବଶୁଁ—ଦୈବାତ୍ । ୧୧ । କେଳିତପତି—କନ୍ଦର୍ପ, ପାଶି—ପାଶଯନ୍ତ୍ର, ଫାଶ (କାନକୁ ଫାସ ସଙ୍ଗେ ତୁଳନା କରାଯାଏ) । ୧୨ । କଳକଣ୍ଠରୁତ—କୋକିଳଧ୍ୱନି । ୧୩ । କଲକଣ୍ଠିତ—ନାୟକ ସମୀପରେ ହର୍ଷ ହେଉଥିବା ନାୟିକା ହାସଶ୍ୱାସ ପ୍ରଭୃତି ଯେଉଁସବୁ ଭାବ ଏକ ସମୟରେ ପ୍ରକାଶ କରେ । ୧୫ । ବିଧାତା ବକ୍ଷସ୍ଥଳକୁ ସ୍ୱର୍ଣ୍ଣଘଟିତ ପୃଥିବୀ ମନେ କରି ତହିଁରେ ମେରୁପର୍ବତର ବୀଜର ଜ୍ୟୋତିପରି ସ୍ତନସ୍ଥାନକୁ ନିର୍ମାଣ କରିଅଛି । ୧୬ । ଶୋଣମଣି ମଧ୍ୟସୁନା—ସୁନାଭିତରେ ରକ୍ତବର୍ଣ୍ଣ ମଣିପରି । କଞ୍ଜପାଣିପାଦ—ପଦ୍ମହସ୍ତ ଓ ପଦ୍ମପାଦ ।୧୭। ନିଜ ଲାବଣ୍ୟରୂପ ଜଳରେ ପୁରଟକମଳ (ସ୍ୱର୍ଣ୍ଣପଦ୍ମ) ନୂତନପତ୍ରର ଶୋଭାକୁ ଧରିଅଛି ।୧୮। ନାଭିବଳଅବରତ—ନାଭିଗର୍ତ୍ତିରୂପ ଅବର୍ତ୍ତି

ହେଲା ଅବଦାତ ପକ୍ଷରେ ଯଥା ଚନ୍ଦ୍ରମା । ୨୧ । ଜଗତ୍ତ୍ରିଲୋଚନ ବେଢ଼ । ଉତ୍ତାନ ଶୟନ ଗୁଢ଼ । କେତେଦିନେ ପୁଣି ପ୍ରକାଶିଲା ଠାଣି ଉଦରମାଣ୍ଡ ପଦୁଢ଼ । ୨୨ । ଦନ୍ତୁଁ ଧନ ସୁକୁମାରୀ । ବହିଲା ଅଦ୍ଭୁତ ଶିରୀ । ଅଣି ହେବା ଶୋଭା ଭଣିବାକୁ ପ୍ରଭୁ ଫଣୀଶ୍ୱର ଗଲେ ହାରି । ୨୩ । ଅବରୋଧତମ ଦୁଃଖ । ହରଲା ଛବି ମୟୂଖ । ବିଶ୍ୱମନବାଣଲକ୍ଷ ସେ ମଣ୍ଡିଲା ପାଖ ଦାସୀଙ୍କର କାଖ । ୨୪ । ଦେବଙ୍କ ପ୍ରସାଦ ଧରି । ମଇତ୍ରୀ ଯଥା ଅଚିରି । ଏକ କରତଳୁ ଅରକେ ନିଅନ୍ତି ଉଭରଭୂଷା ସୁନ୍ଦରୀ । ୨୫। ସମ୍ଭବତେ କୁତୂହଳ । ଗୋଳେ ବାରଜାଲା କୋଳ । ଦେଖି ପୁରି ମରକତ ବସୁଧାର ପୃଷ୍ଠେ ନିଜ ପ୍ରତିଫଳ । ୨୬ । ଭିତ୍ତିଧରି ତହୁଁ ପୁଣି । କେତେବେଳେ ଧାତ୍ରୀପାଣି । ଧରି ମନ୍ଦ ମନ୍ଦ ଚରଣାରବିନ୍ଦ ଯୁଗେ ମଣ୍ଡିଲ ଧରଣୀ । ୨୭ । ସମ୍ଭାଳି ନ ପାରି ଉଭା । ଖସିପଡ଼େ ହେମପ୍ରଭା । ଖସିଗଲା କି ଅଭ୍ରସିଆଏ ବିଶ୍ୱମଣ୍ଡଳ ଚମ୍ପକଗଭା । ୨୮ । ସେ ଧରାଧବ ଦୁଲାଲୀ । ସଂସର୍ଗ କୁତୁକଭଳି । କୁନ୍ଦଲତା ନାମ ସମବୟା ବାଳୀ ଜଣେ ହେଲା ପ୍ରିୟ ଅଳୀ । ୨୯ । ତାହା ବାହାରେ ବହୁତ । ଲଳିତା ବନିତା ମିତ । ବନିତାକୁଳେ ତାମସୀ ଦିନ ସୁଖେ ନେବାରେ କଲେ କାମିତ । ୩୦ । ସଖୀଙ୍କି ମୋଦେ ଫୁଲାଇ । ରଚିଲା କେଳି ଗେଲାଇ । ଘେନି ଭୂମୀଙ୍କର ସିକତାନିକର ଭରନ୍ତି ସୁନା କୁଲାଇ । ୩୧ । ଖେଳେ ବଳିବାକୁ ମତି । କରନ୍ତି ତ ପ୍ରଜାପତି । ଜନମରୁ ପ୍ରତି ବାଳିକା ମୂରତି-ମାନଙ୍କୁ ସୁରୂପବତୀ । ୩୨ । ଘେନି ସହଚରୀରାଜ । ପରମ ହରଷ ଭଜ । ବାଳିକା ଦିଏ ପାଞ୍ଚାଳିକା ବିବାହ ମହୋତ୍ସବେ ମହାଭୋଜ । ୩୩ ।

---

ବା ଭଉଁରୀ, ବରତ—ବ୍ରତ ।୨୧। ଅବଦାତପକ୍ଷ—ଶୁକ୍ଳପକ୍ଷ ।୨୨। ଜଗତ୍ତ୍ରିଲୋଚନ ବେଢ଼—ଲୋକଚକ୍ଷୁର ବନ୍ଧନସ୍ୱରୂପା, ଉତ୍ତାନ ଶୟନ—ଚିତ୍ ହୋଇ ଶୋଇବା ବା ଉପରକୁ ମୁହଁ କରି ଶୋଇବା ।୨୩। ଫଣୀଶ୍ୱର—ଅନନ୍ତନାଗ ।୨୪। ଅନ୍ତଃ-ପୁରର ଅନ୍ଧକାରରୂପ ଦୁଃଖକୁ ତାହାର କାନ୍ତିର କିରଣ ଦୂର କଲା । ୨୫ । ମଇତ୍ରୀ—ମିତ୍ରତା, ବନ୍ଧୁତ୍ୱ । ୨୬ । ଦେଖି···ଅନ୍ତଃପୁରର ମରକତ-ମଣିରେ ନିର୍ମିତ ଭୂପୃଷ୍ଠରେ ନିଜ ପ୍ରତିବିମ୍ବ ଦେଖି । ୨୮ । ହେମପ୍ରଭା—ସ୍ୱର୍ଣ୍ଣାଙ୍ଗୀ ଚନ୍ଦ୍ରକଳା, ବିଶ୍ୱମଣ୍ଡଳଚମ୍ପକଗଭା—ସଂସାର ମସ୍ତକର ଚମ୍ପାଫୁଲର ଝରାପରି । ୩୦ । ତାମସୀଦିନ—ରାତ୍ରି ଓ ଦିନ । କାମିତ—କାମନା ।୩୧। ଭୂମୀଙ୍କର ସିକତା-ନିକର—ସୁନାର ଧୂଳିସମୂହ ।୩୩। ପାଞ୍ଚାଳିକା—ପିତୁଳା, କଣ୍ଢେଇ ।

ବଢ଼ାଇ କାନନାଉଳୀ । ପିନ୍ଧାଇ ଦେଲେ ବାଉଳୀ । ଦୁରବୋଧ ଗଲା ବୋଧ ବହ୍ନିଶିଖା ହାଉଳ ବାଜ ଝାଉଁଲା । ୩୪ । ଶୁଦ୍ଧାନ୍ତ ଦୁଃଖ କାଉଳ । ହୋଇ ହୋଇଲା ବାଉଳ । ବଗୃହଲା ଏହା ଉଦୟରୁ ଅହା ଗଲା ଅଉଳ ପାଉଳ । ୩୫ । ଯଥା କଞ୍ଜକୋଷେ ବାସ । କରଥାଏ ଅଗୁଁ ବାସ । ନିମିତ୍ତ କାରଣ ଅରୁଣକିରଣ ଛୁଇଁଲେ ଲଭେ ପ୍ରକାଶ । ୩୬ । ସେହି ରୂପେ ବିଦ୍ୟାଶାଳା । ବିଧିଙ୍କ ମାନ ଦେଖିଲା । ସଜାଡ଼ିଙ୍କା ବେଳୁ ଅଜାଡ଼ ବିଧାତା ସକଳ ଗୁଣ ରଖିଲା । ୩୭ । ଅତିଶୟ ଖେଳ ଛଟା । ଦୁର୍ଲଭଦ୍ରବ୍ୟରୁ ହଟା । ଗୁଡ଼ିଲା ଜାଣିଲା ବାଣୀ ଲଳିତ୍ୟରେ କରିବାର ସଟାବଟା । ୩୮ । କଥା ସମଜିଲା ହେଲା । ମଥା ସଙ୍କ ଭରଜିଲା । ଯଥା ବତାଇଲେ ଗୁରୁଜନେ ଭଲେ ତଥା ପଥକୁ ଭଜିଲା । ୩୯ । ବଢ଼ିଅ ମଣୋହି ରସେ । ବୁଢ଼ି ଯାମିନୀ ଦିବସେ । ତାମ୍ବୂଲକରଙ୍କବାହିନୀଙ୍କି ରଙ୍କ ପରାଏ ରଖିଲା ପାଶେ । ୪୦ । ତନୁନିର୍ଜିତ ରୋଚନା । ସେ ଶିଶୁ ମୃଗଲୋଚନା । ମଣ୍ଡିବା ଦଣ୍ଡିବା ଜାଣିଲା ମଣିଲା ଗୁଣ ଦୋଷ ବିବେଚନା । ୪୧ । ସଖୀମୁଖେ ଭଣାଇଲା । ଜନକକୁ ଜଣାଇଲା । ଦ୍ୱୀପାନ୍ତରୁ କୋଟିମୂଲ୍ୟ ଭୂଷାପେଡ଼ୀ ସଞ୍ଚୟକୁ ଅଣାଇଲା । ୪୨ । କଥାକର୍ଣ୍ଣନେ ରସିଲା । ତା ମନ୍ଦା ରୁଚି ହସିଲା । ମୁଖେ ଚେଳାଞ୍ଚଳ ଦେଇ ଅଚଞ୍ଚଳ ହୋଇ ଉତ୍ସଙ୍ଗେ ବସିଲା । ୪୩ । ଧନୀ ତଦ୍ବ୍ରତା ବର୍ଜିଲା । ଅମିତ ଦେଖି ତର୍ଜିଲା । ସୁମିତ ନିମନ୍ତେ ସୁବାସିତ ସୁନବନୀ ତଅର ସର୍ଜିଲା । ୪୪ । ଅଭିଷେକରେ ନରେଶ ।

---

୩୪ । କାନନାଉଳୀ—କର୍ଣ୍ଣବେଧବିଧି, ବାଉଳ—ଫାଶିଅ, ହାଉଳ—ହାଉଅ, ଝାସ; କର୍ଣ୍ଣବେଧ ଅଗ୍ନିଶିଖା ବାଜବାରୁ ବାଲ୍ୟକାଳର ଅଜ୍ଞତା ଝାଉଁଳ ପଡ଼ିଲା । ୩୫ । ଶୁଦ୍ଧାନ୍ତ—ଅନ୍ତଃପୁର, କାଉଳ—ଅସ୍ଥିର ଖୁବ୍‌ଧି; ବାଉଳ—ବାତୁଳ, ଏହା ଉଦୟରୁ—ଚନ୍ଦ୍ରକଳାର ଜନ୍ମ ହେବାରୁ; ଅଉଳପାଉଳ—ଅତି ବ୍ୟାକୁଳ । ୩୬ । କଞ୍ଜକୋଷେ—ପଦ୍ମକଢ଼ିରେ, ବାସ—ସୁଗନ୍ଧ । ୩୮ । ଖେଳଛଟା—ଚଞ୍ଚଳତା, ଦୁର୍ଲଭଦ୍ରବ୍ୟରୁ ହଟା—ଦୁଷ୍ପ୍ରାପ୍ୟବସ୍ତୁ ପାଇବା ପାଇଁ ଅଳି କରିବା, ସଟାବଟା କରିବା—ଠକି ଦେବା । ୩୯ । ମଥାସଙ୍କ—ମୁଣ୍ଡ ଦୋହଲାଇବା । ୪୦ । ତାମ୍ବୂଲକରଙ୍କବାହିନୀ—ପାନବଟା ଧରିଥିବା ସ୍ତ୍ରୀ । ୪୧ । ରୋଚନା—ଗୋରୋଚନା । ୪୨ । କୋଟିମୂଲ୍ୟ ଭୂଷାପେଡ଼ୀ ସଞ୍ଚୟ—ବହୁମୂଲ୍ୟ ବେଶ ହେବା ପେଡ଼ୀ (toilet box) ସମୂହ । ୪୩ । କଥାକର୍ଣ୍ଣନେ—କଥା ଶୁଣିବାରେ । ୪୪ । ଧନୀ—ସୌଭାଗ୍ୟବତୀ (ଚନ୍ଦ୍ରକଳା); ସୁନବନୀ—ଫୁଲବଗିଚା । ୪୬ । ଋତୁ-

କଲେ ଶରଧା ବିଶେଷ । ବିରାଜିଲା ରାମା ଲାଗିହୋଇ ଜାମା ପଗଡ଼ି ସିପାହିବେଶ । ୪୫ । ଭୂରୁ ଯନ୍ତ୍ରଣା ଶିଖିଲା । ମୂରୁଜ ଶବ୍ଦ ଲେଖିଲା । କୁରୁଜାତଦେହା ଗୁରୁଜାତ ଗିରେ ଉରୁ ଜାଗରୂକ ହେଲା । ୪୬ । ନାନାଜାତ ଫୁଲ ଭୂଷା । ବନାଇଲା ନୀଳକେଶା । ଖେଳିଲା ସେ ବେଳ ଜାଣି ନ୍ୟାୟବଳ ଶକଟା ଗଞ୍ଜପା ପଶା । ୪୭ । ଜନନୀଙ୍କି ଜଣାଇଲା । ବୀଣାଯନ୍ତ୍ର ଅଣାଇଲା । ତହିଁ ବିଶ୍ୱଜଣା ହେବାକୁ ପ୍ରବୀଣା ଚଣ୍ଡୀସ୍ତବ ଗୁଣାଇଲା । ୪୮ । ପଢ଼ି ବିନୟ ଅରଜ । ତାରତମ ନ ବିରଜ । ପ୍ରତିଲେଖ ଲେଖି ଜାଣିଲା ସୁମୁଖୀ ଶ୍ରିତମରଜ ଭରଜ । ୪୯ । ସମାନ ବୟସୀ ଅଳୀ । ଗ୍ରାମୁରେ କଲେହେଁ ଅଳି । ଭାବ ନ ଥିବାର ଜାଣି ବିରଜିଲା ଧାବ ନ ଥିବାର କେଳି । ୫୦ । ଅଚିରସୁବାସୀ ଭଲା । ଅତର୍କିତେ ବିଜେ କଲା । ତାଜି ମନ ଦେଲେ ସଜନୀ ଇଙ୍ଗିତେ ଲାଜମ ତା ଜମା କଲା । ୫୧ । କାଳିକାକାନ୍ତ ଶ୍ରୀଧର । ପରଶୁମୁରଲୀଧର । ରାମଚନ୍ଦ୍ର ଶ୍ରେଷ୍ଠରାୟ ଭୂନାଥର ଅମନ୍ଦ ହରଣ କର । ୫୨ । ନେଶାଧିକ ପଞ୍ଚାଶତ । ପଦପୁଞ୍ଜରେ ନିର୍ମିତ । କୁମାରୀ ବିନୋଦବଞ୍ଜିନ ଏ ଛାନ୍ଦ ଶୁଭେ ହେଲା ସମାପତ । ୫୩ ।

---

---

ଜାତଦେହା—ସ୍ୱର୍ଣ୍ଣମୁଦ୍ରା (ଅଳଙ୍କାର) ପୂର୍ଣ୍ଣ ଦେହ ଯାହାର । ଗୁରୁଜାତଗିରେ—ଗୁରୁଜନଙ୍କ ବଚନରେ । ଉରୁଜାଗରୂକ—ଅତ୍ୟନ୍ତ ଜାଗ୍ରତ୍ । ୪୯ । ବିନୟଅରଜ—ବିନୟପୂର୍ଣ୍ଣ ପ୍ରାର୍ଥନାପତ୍ର । ପ୍ରତିଲେଖ ଲେଖି—ପ୍ରତ୍ୟୁତ୍ତର ଲେଖି ଦେଇ । ଶ୍ରିତମରଜ—ଆଶ୍ରିତମାନଙ୍କର ହୃଦୟ । ୫୦ । ଭାବ ନ ଥିବାର ଜାଣି······ ପ୍ରକୃତ ଭାବ ନାହିଁ; ଅଥଚ ପ୍ରୟୋଜନସିଦ୍ଧି ନିମିତ୍ତ ଯେଉଁମାନେ ଦୌଡ଼ାଦୌଡ଼ି କରନ୍ତି ସେମାନଙ୍କୁ ତ୍ୟାଗ କଲା । ୫୧ । ତାଜି ମନ ଦେଲେ—ମନକୁ ଉତ୍ତେଜିତ କରିଦେଲେ । ଲାଜମ ତା ଜମା କଲା—ତାକୁ ଲଜ୍ଜା ଦେଲା ।

---

## ସପ୍ତମ ଛାନ୍ଦ

ରାଗ—କଲ୍ୟାଣଅହାରି

( ଚନ୍ଦ୍ରକଳାର କୈଶୋରଲୀଳା )

ଅଥ ବାଳସପଣେ ଯେନ ତ ଈସପଣେ ପିଇବା ପର ଜେମାଣିରି । ସେ ମୃଦୁକଲପମୋହନା ଅଲପ ହୋଇ ଅସିବାରୁ କଶୋରି । ପ୍ରତିମା । ପ୍ରତିମୁହୂର୍ତ୍ତେ ଅନ ଅନ । ଯେଉଁ ରୂପେ ତପନୀୟ ଭଜେ ରୂପ ଦାହ-ଦାହକେ ବାନ ବାନ । ୧ । ଶରଣ୍ଣି ଶ୍ରୀଜାଣି ଦେଲ କି ରସାଣି ହାଟକ ହଟପିତୁଳାକୁ । ନ ଦେଖିଲେ ଜନେ ଜଗତେ ନୟନେ ତା ନଖାଗ୍ର କାନ୍ତି ତୁଳାକୁ । ମ୍ରଦମା । ଯେନ ସେ ଊରୁବର୍ତ୍ତୁଳାକୁ । ଯୋଗ୍ୟ ନୋହେ ଯେନ ନ କଲେ ସଜନୀ ପାହାଡ଼ା ହଂସୂଲୀତୁଳାକୁ । ୨ । ଅମାନୀ ଗହନ ଗଜ ଅଭିମାନ ଛୁଇଁ ଅସିଲ ଗମନକୁ । ଶିଶୁ ସଖୀମାଳା ଅଚରିବା ଖେଳା ଯୋଗାଇଲ ନାହିଁ ମନକୁ । ଅନକୁ । କପଟ ନୋହିଲ ନଜର । ଅନାରତ ରସପ୍ରସଙ୍ଗେ ମାନସ ହୋଇ ଅସିଲ ଜରଜର । ୩ । ଦରସ୍ଫୁଟ ମଲ୍ଲୀହାସୀ ଭ୍ରୂରୁବଲ୍ଲୀ ଖେଳିବା ଖୁରଲୀ ଶିଖିଲ । ଅସିତ ଭୁଜଙ୍ଗୀ ସୃଷ୍ଟି ଖେଳାଭଙ୍ଗୀ ଅହଙ୍କାର ସାର ଶୁଖିଲ । ଅଲାପ । ମଧ୍ୟ ମଧ୍ୟରେ ନାସାପୁଟ । ଫୁଲଉଠିବାରୁ ବତାଇଲ ଗୁରୁ ହୋଇ ସ୍ୱମଣ୍ଡନକୁ ନାଟ । ୪ । ଜେମାକାନ୍ତି ଝଳ ଗ୍ରହି ନ ସମ୍ଭାଳି ମନ୍ଦ କାତ ପ୍ରେମପ୍ରବାହ ।

---

ସପ୍ତମ ଛନ୍ଦ

୧ । ମୃଦୁକଳପମୋହନା—କୋମଳ ଭୂଷଣ ଯୋଗୁଁ ମନୋହର । ଯେଉଁରୂପେ···ସୁନା ଯେପରି ପ୍ରତି ପୋଡ଼ରେ ଭିନ୍ନ ଭିନ୍ନ ତେଜ ଧରେ । ୨ । ହାଟକହଟପିତୁଳାକୁ—କୌତୁକିଆ ସୁନାର ପ୍ରତିମୂର୍ତ୍ତିକୁ ( ଚନ୍ଦ୍ରକଳାକୁ ), ନ ଦେଖିଲେ······ଲୋକେ ତା ନଖ ଅଗର କାନ୍ତିର ଶୋଭାକୁ ତୁଳନା କରିବାପାଇଁ ସଂସାରର କୌଣସି ପଦାର୍ଥ ଦେଖିଲେ ନାହିଁ । ମ୍ରଦମା—ମୃଦୁତା, କୋମଳତା; ଊରୁବର୍ତ୍ତୁଳା—ସୁଗୋଲଜଙ୍ଘନବିଶିଷ୍ଟା, ପାହାଡ଼ା-ହଂସୁଲୀତୂଳାକୁ···ସିବାପାଇଁ ବାଟରେ ପଡ଼ିବା ହଂସପରର ତୁଳାନିର୍ମିତ ଗଦିକୁ । ୩ । ଅମାନୀ ଗହନଗଜ—ଅମାନିଆ ବଣହାତୀ, ନଜର—ଦୃଷ୍ଟି, ଅମାନୀ ଗମନକୁ···ଚନ୍ଦ୍ରକଳାର ଗତି ବଣୁଆ ମତ୍ତଗଜ ଗତିପରି ହେଲ । ଅନାରତ—ଅବିରତ, ସର୍ବଦା; ଜରଜର—ଜର୍ଜର, ମଜ୍ଜିତ; ୪ । ଖୁରଲୀ—ଅଭ୍ୟାସ, ଅସିତଭୁଜଙ୍ଗୀ···କଳାସର୍ପର ଖେଳିବା ଭଙ୍ଗୀର ସୌନ୍ଦର୍ଯ୍ୟ

ସଜନୀ କେବଳ ସଜ ନୀଳୋତ୍ପଳ ମଣ୍ଡିବାରେ କର ଉତ୍ସାହ । କପୋଳ । ଚୁମ୍ବୀ ନୀଳୋତ୍ପଳ ଖୋସିଲ । ମୁକୁରେ କଦମ୍ବ କଳି ପ୍ରତିବିମ୍ବପରି ଦନ୍ତୁରିତ ଦିଶିଲ । ୫ । କହିବା ମାଧୁରୀ ବିଶେଷରୁ ଗୋରୀ ମୁଖସୁଧାକର କମ୍ପିଲ । ଝଲକା ମୁକୁତା ଝୁଲନ୍ଦମକୁ ତା ନୟନଖଞ୍ଜନ ଝାମ୍ପିଲ । ନିରେଖି । ପ୍ରବନ୍ଧ ପଟପଟଳୀକି । ଅନାଇଲେ ହସି ସମାନବୟସୀ ମନ ଅନୁରୂପ ଆଳିକି । ୬ । ସେ କାଳେ କେ ଗୁରୁଜନ ଯେବେ ଦୂରୁ ଲୋଚନ-ଗୋଚର ହୋଇଲେ । ଉଦାସୀନ ଲୀଳା ପ୍ରବାହରେ ବାଳା ତା ଶଙ୍କାପଙ୍କକୁ ଧୋଇଲା । ନିକଟେ । ହେବ କି କୁସୁମଉତ୍ସବ । ଅଗୁଁ ରତିବର ଦେଲେ ଅତି ବରତୁଳ କରି ହୃଦେ ଉଦ୍‌ବେଗ । ୭ । ଚୁମ୍ବିଲ ଡମରୁ ଡମ୍ବରକୁ ସରୁଶିରୀ ଧରି ମଧ୍ୟପ୍ରଦେଶ । ହେଲା ନିତମ୍ବରୁ ନିଧୁବନେ ଗୁରୁ ବିଜୟୀ ଉତ୍ତମ ଅଭ୍ୟାସ । ତାଦୃଶ । ସ୍ପଷ୍ଟ ନୋହିଲେହେଁ ଦିବଳ । ଭାବଗର୍ଭ ଦରହାସୀର ଉଦର ଶୋଭା ସଂସାରୁ ଗଲା ବଳି । ୮ । ଦ୍ରବ୍ୟ ବିନା ଛାୟା ବିଳସିବା ମାୟା କେମା ଉଦରେ ଉଲ୍ଲସିଲା । ରୋମରାଜି ବ୍ୟାଜ କଳାନାଗ-ରାଜ ଶିଶୁପରି ଦିଶୁ ଦିଶିଲ । ଗୁଳିବା-ବେଳ ଛାଇକି ଅନାଇଲ । ବେଶେ ହେବା ମନ ନ ପ୍ରକାଶି ଧନ କୁସୁମଭୂଷା ବନାଇଲା । ୯ । ବାଳାବର ଉରସ୍ଥଳ ପଞ୍ଚଶର ସାଧନ ଅଖେଟ ମହୀକି । ଦ୍ରୋଣତୁଲ୍ୟ ଗୁରୁ କରିବା ବିଗୁରୁ ଅତି ମନେ ଅଣି ତହିଁକି । ଥାପିଲ । ଦ୍ରୋଣ ଭଳିରବ ଦୁହିଙ୍କି । ଅଗୁଁ ପଡ଼ିଥିବା ମେରୁବୀଜ ଅବା ଅଙ୍କୁରିତ ହେଲା ନାହିଁ କି । ୧୦ । ଫିଟିଲେ

---

ଗର୍ବ ନଷ୍ଟହୋଇଗଲା । ୬ । ଝଲକା—ଏକପ୍ରକାର କାନଫୁଲ, ଝୁଲନ୍ଦମ—ଝୁଲିବା ଭଙ୍ଗୀ, ପ୍ରବନ୍ଧପଟପଟଳୀକି—ପରସ୍ପର ସନ୍ନିବିଷ୍ଟ ରତି ଚିହ୍ନସମୂହକୁ, ଆଳି—ସଖୀ । ୭ । ସେକାଳରେ—ଚିହ୍ନଦର୍ଶନସମୟରେ, ଉଦାସୀନଲୀଳାପ୍ରବାହରେ—ନ ଜାଣିବାପରି ହୋଇ, ନିକଟେ—ନିକଟରେ, କୁସୁମଉତ୍ସବ—ପ୍ରଥମ ରଜୋଦର୍ଶନ, ହୃଦୟରେ—ଛାତିରେ, ଅତି ବର୍ତ୍ତୁଳ ଉଦ୍‌ବେଗ—ଗୋଲାକାର କୁଚରୂପ ଉତ୍କଣ୍ଠା । ୮ । ମଧ୍ୟପ୍ରଦେଶ—କଟିଦେଶ, ଡମରୁ ଡମ୍ବର—ଡମରୁର ଆଡ଼ମ୍ବର ବା ଶୋଭା, ସରୁଶିରୀ—କ୍ଷୀଣଶୋଭା, ନିତମ୍ବ—ପିଚ୍ଛ, ନିଧୁବନେ ଗୁରୁ—ରତି ବିଦ୍ୟାରେ ଶିକ୍ଷକ । ୯ । ଦ୍ରବ୍ୟବିନା···ପଦାର୍ଥ ନ ଥିଲେ ଛାଇ ଯେପରି ଦେଖା-ଯାଏ ନାହିଁ, ସେହିପରି କେମାର ଉଦର ନ ଥିଲା ପରି ଜଣାଗଲା, ଅର୍ଥାତ୍ କେମା କ୍ଷୀଣୋଦରୀ (ସ୍ତ୍ରୀ ଉଦର କ୍ଷୀଣ ହେବା ସୌନ୍ଦର୍ଯ୍ୟର ପରିଚାୟକ ) । ରୋମରାଜି ବ୍ୟାଜକଳା ନାଗରାଜଶିଶୁ ପରି ଦିଶୁ ଦିଶିଲା···କେମାର ନାଭିତଳକୁ ଯାଇଥିବା ରୋମରେଖା ନିକଳ କଳାନାଗଛୁଆ ପରି ଅଳ୍ପକେ ଦିଶିଲା ।୧୦। ଉରସ୍ଥଳ

ପ୍ରଲମ୍ବ କୁନ୍ତଳ ନିତମ୍ବ ଲଙ୍ଘି ଦିଶିଲା କି ବିହ୍ୱଳ । ତା ଅଙ୍ଗ ଅମରଲତାର କି ମରକତମଣିମୟ ଓହଳ । ଲାବଣ୍ୟ । ରମାର କେତକୀ ପ୍ରଭାସେ । ଧୂଳି ବିନା ଦେଖି ସୁଖୀ ହୋଇ ଲାଗିଅଛନ୍ତି ଭୃଙ୍ଗାଳି ଏ ଅଭ୍ରସେ । ୧୧ । ନିଧାଠୀ କିଙ୍କିଣୀ ବଦାବଦ ମଣି କଠାଉ ଲଗି ଗୃଳ୍ ଗୃଳ୍କ, ମାନିଲା ଜାଣିଲା ସ୍ନେହରେ ଦେହରେ ଜମାଇ ବୟସ୍ୟାଙ୍କୁ ଯାକି । ସୁନ୍ଦର । ଶିଶୁଙ୍କ ଗଣ୍ଡରେ ଚୁମ୍ବିଲା । ଚୁହିଁଲା ସଖିଗେ ଯେଉଁ ଅଙ୍ଗ ଲାଗେ ନିଜ ମୁଖ ପ୍ରତିବିମ୍ବିଲା । ୧୨ । ସୀତା ସୀତାଧବ ମାଳତୀମାଧବ ଭୀମଜା ତା ଧବ ଚରିତ । ରତି ପଞ୍ଚବାଣ ଘଟଣା ପୁରାଣ ଶ୍ରବଣେ ବଳାଇଲା ଚିତ୍ତ । ପୁଲକ । ଉଠିଲା ଶୁଣି ପରିରମ୍ଭ । ବିପ୍ରଯୋଗ ଶୁଣି ନେତ୍ରଯୁଗେ ପୁଣି କଲା ବିକଳେ ଅଶ୍ରୁ ଅମ୍ବୁ । ୧୩ । ରହସଜଧର ମଧ୍ୟେ ପୟୋଧର ଅଙ୍କୁର ଚୁହେଁ ହୃଷ୍ଟମନେ । ଶାଢ଼ୀ ପାଲଟିବା ଛଳେ ନବ ଜବାଧରା ଦୃଷ୍ଟି ଦିଏ ଜଘନେ । ବିପୁଳ । ଉରୁଯୁଗଳ ନେତ୍ର ଚୁମ୍ବେ । ଫେରାଇ ବଦନ ପୁଣି ଦୁଃଖିଧନ ନଜର ଦିଅଇ ନିତମ୍ବେ । ୧୪ । ତରୁଣୀଙ୍କ କାନ୍ତକରଜାଗ୍ରକ୍ଷତ କି ମାନେ ଏହା ଭାବି ବାଳା । ଲେଖି କକ୍ଷାନ୍ତର ସ୍ଥଳରେ ସିନ୍ଦୂରଦ୍ରବରେ ଶିଶୁ ଶଶିକଳା । ପ୍ରମୋଦେ । ଚୁହେଁ କାଞ୍ଚୁଲି ତଟ ଟେକି । ତହୁଁ କି ଅଭ୍ରସି ଯାଏ ଇଷି ଭାଷି ଉରୁଯୁଗଳ

---

—ସ୍ଥଳ, ପଞ୍ଚଶରସାଧନଅଖେଟମଣ୍ଡ—ମଦନର ବ୍ୟାୟାମ ସାଧନର ଅଖଡ଼ାଭୂମି, ଦ୍ରୋଣ—କୌରବମାନଙ୍କ ଅସ୍ତ୍ରଗୁରୁ, ଦ୍ରୋଣ ଭଇରବ ଦୁହିଙ୍କି—ମାପଅଡ଼ା ଓ ଶିବମୂର୍ତ୍ତି ( ରୁଦ୍ରାକ୍ଷ ) । ମେରୁବୀଜ—ମେରୁପର୍ବତର ମଞ୍ଜି । ୧୧ । ତା ଅଙ୍ଗ ଅମରଲତାର—ତାହାର ଶରୀରରୂପ କଳ୍ପଲତାର, ମରକତମଣି—ଶାଗୁଆ ବର୍ଣ୍ଣର ମଣିବିଶେଷ । ଲାବଣ୍ୟ ଅଭ୍ରସେ—ଚନ୍ଦ୍ରକଳାର ଶରୀର ଲାବଣ୍ୟ ଲକ୍ଷ୍ମୀଙ୍କର କେତକୀପୁଷ୍ପ ବର୍ଣ୍ଣର କାନ୍ତି କି ? କେତକୀ ଫୁଲରେ ଧୂଳି ଥିବାରୁ ଭ୍ରମର ତା ପାଖକୁ ଯାଏ ନାହିଁ, ମାତ୍ର ଏଥିରେ ଧୂଳି ନ ଥିବାରୁ କେଶଗୁଚ୍ଛ ଛଳରେ ଭ୍ରମରମାନେ ଆସି ତହିଁରେ ଲାଗିଅଛନ୍ତି—ଏହିପରି ଅଭ୍ରସୁଛି । ୧୨ । ନିଧାଠୀ···ଗୃଳ୍କ—ବାରମ୍ବାର ବାଜୁଥିବା ଛନ ଧାଡ଼ି ମଣିଲଗା କଠାଉ ମାଡ଼ି ଚୁଲିବାର ଭଙ୍ଗୀ, ବୟସ୍ୟା···ସଙ୍ଗିନୀକୁ ଦେହରେ ସ୍ନେହରେ ଜମାଇ ଯାକି ଜାଣିଲା ଅର୍ଥାତ୍ ସଙ୍ଗିନୀମାନଙ୍କୁ ସ୍ନେହରେ ଗାଢ଼ ଆଲିଙ୍ଗନ କରି ଶିଖିଲା । ୧୩ । ମାଳତୀମାଧବ—ମହାକବି ଭବଭୂତିଙ୍କ ପ୍ରଣୀତ ସଂସ୍କୃତ ନାଟକ । ଭୀମଜା—ଦମୟନ୍ତୀ, ପରିରମ୍ଭ—ଆଲିଙ୍ଗନ, ମିଳନ; ବିପ୍ରଯୋଗ—ବିରହ, ବିଚ୍ଛେଦ; ବିକଳେ···ବିକଳରେ କାନ୍ଦପକାଇଲା । ୧୪ । ରହସଜଧର ମଧ୍ୟେ—ନିର୍ଜନ ପଲ୍ଙ୍କାଘର ଭିତରେ । ପୟୋଧରଅଙ୍କୁର—ଗଜୁରୁଥିବା କୁଚ । ଜଘନ—କଟି-

ଦିଏ ଯାଙ୍କ । ୧୫ । ପଛୁଁ ଜେ ସଜନୀ ଅସିଲେ କି ଘେନି ତମକ୍କ ସଂଯତ ହୋଇଲେ । ଦକ୍ଷିଣ ଅଙ୍ଗ ଢୋଳି ହେଜଅଛୁ ରେ ଅଳି ବୋଲି ବୋଲେ ବୋଇଲେ । ବାଲୁଶ । ତେଜ ଆଜଜିଲ ସଖୀଙ୍କ । ଜୃମ୍ଭାରମ୍ୟମୁଖୀ ତାଳେ ଲମ୍ବ ରଖି ଅଙ୍ଗୁଳି ଠୁଙ୍କିଲେ ମହୀଙ୍କ । ୧୬ । ନିରକ୍ଷର ସଖୀ ଗିରେ ଚନ୍ଦ୍ରମୁଖୀ ନ ରଖିଲେ ଲବେ ଖାତର । ସ୍ୱସମ ଅମଳତର ଗୁଣବୃନ୍ଦ କୁନ୍ଦଲତା ମୁଖେ ମାତର । ଅକୁତ । ତୁନ୍ଦଳ ଦୃଷ୍ଟି ଖେଳାଇଲେ । ଇତରଙ୍କ ତୁଲେ ଇତରଙ୍କୁ ଗେଲେ ଲଗାଇ ରସେ ଚଳାଇଲେ । ୧୭ । ଅରୁଣ ଉଦୟୁ ସମୟୁ ସଦୟହୃଦୟା ପହୁଡ଼ ଭାଙ୍ଗିଲେ । ଶାଠୀକି ପାଲଟି ଫଳି ଦନ୍ତପାଟି ହୀରାଙ୍କୁରରାଜି ମାଜିଲେ । ବାଜିଲା । କ୍ଷଣେ ପ୍ରଥମ ନାଡ଼ୀ ଖୁରି । ସାଜିଲେ ମାଜଣାକୁ ସେ ବିଚକ୍ଷଣା ମାଜିଲେ ମୁକୁରାସ୍ୟ ଶିରି । ୧୮ । ବହଳ ବିଚିତ୍ର ସୁପବିତ୍ର ଚିତ୍ର ଅସନେ ରାଜିଲେ ଗେଲେଇ । ଗୃହିଁ ଅଦରଚେ ଶ୍ରୁତିପାଶୀ ପାଶେ କଲମା , କୁନ୍ତଳ ବୁଲାଇ । ଅଳିକେ । ମଣ୍ଡନ ତିଳକ ଘେନିଲେ । କଞ୍ଜମଞ୍ଜିମାଳା ଜପ ସେ କମଳାସନାକୁ ଅହାଂକ ମାନିଲା । ୧୯ । କ୍ଷିତିଭୂଷାଟିକା କ୍ଷୀରୋଦ ଶାଠୀ କି ମାନିଲେ ମାଜଣା ଶେଷରେ । କ୍ଷୀରୋଦ-ସମ୍ଭବା ପ୍ରତିବିମ୍ବ ଅବା ବିରାଜିଲେ ଜୀବନ୍ୟାସରେ । କିଶୋରୀ । ଦିଶିଗଲେ ସେ ବିପରୀତ । ରସି ସମ୍ପୋଦରେ କି ଜମ୍ବୁନଦରେ ମିଶିଗଲେ ସୁରସରିତ । ୨୦ । ଜୟଦେବ କୃତ ଗଜେନ୍ଦ୍ର ବିପତ୍ତି ମୋକ୍ଷଣ ଗୋପାଙ୍ଗନା ଗୀତା । ପାଠକଲେ ଅରୁମନ୍ଦାର ସେ ଗୁରୁଚମଶ୍ରୀନୟନା ବନିତା । ତୁଳସୀ । ଗୁରୁ

---

ଦେଶର ସମ୍ମୁଖଭାଗର ନିମ୍ନଦେଶ ।୧୫। କରଜାଗ୍ରକ୍ଷତ—ନଖକ୍ଷତ; କି ମାନେ—କିପରି ଶୋଭାପାଏ । କକ୍ଷାନ୍ତରସ୍ଥଳରେ—କାଖ ନିକଟରେ । ଶିଶୁଶଶିକଳା—ଦ୍ୱିତୀୟାଚନ୍ଦ୍ରପରି ନଖକ୍ଷତସୂଚକ କ୍ଷୀଣରେଖା, କାଞ୍ଚୁଲ୍ଲିତଟ—ନିଜର ପିନ୍ଧିଥିବା କାଞ୍ଚୁଲିର ଧଡ଼ି । ୧୬ । ବାଲୁଶ—ବାଲୁଶ୍ ତକିଆ, ଜୃମ୍ଭାରମ୍ୟମୁଖୀ—ହାଇମାରିବା ଯୋଗୁଁ ସୁନ୍ଦର ଦେଖାଯିବା ମୁଖଯୁକ୍ତା । ୧୭ । ନିରକ୍ଷର—ମୂର୍ଖ ସଖୀମାନଙ୍କ କଥାରେ, ସ୍ୱସମଅମଳତର—ନିଜଭଳି ଅତି ଉତ୍କୃଷ୍ଟ ଗୁଣସମୂହ ଲାଭ କରିଥିବା କୁନ୍ଦଲତା ନାମକ ସଖୀ ଆଡ଼କୁ ଅକୁତତୁନ୍ଦଳଦୃଷ୍ଟି ଅର୍ଥାତ୍ ଅଭିପ୍ରାୟଯୁକ୍ତ ସ୍ଥୂଳଚକ୍ଷୁରେ ଗୃହିଁଲେ । ୧୮ । ହୀରାଙ୍କୁରରାଜି—କ୍ଷୁଦ୍ର ହୀରାଖଣ୍ଡ ପରି ଉଜ୍ଜ୍ୱଳ ଦାନ୍ତମାନଙ୍କୁ, ନାଡ଼ୀଖୁରି—ଦଣ୍ଡଜ୍ଞାପକ ଘଣ୍ଟା, ମାଜଣା—ସ୍ନାନ, ମୁକୁରାସ୍ୟ-ଶିରି—ଦର୍ପଣତୁଲ୍ୟ ମୁଖର ଶୋଭା । ୧୯ । କଲମାକୁନ୍ତଳ—କାନପାଖରେ ବାହାରିଥିବା କ୍ଷୁଦ୍ର କ୍ଷୁଦ୍ର କେଶ, ଅଳିକେ—ଲଲାଟରେ, କଞ୍ଜମଞ୍ଜିମାଳା—ପଦ୍ମବୀଜର ମାଳି । ୨୦ । କ୍ଷୀରୋଦଶାଠୀ—କ୍ଷୀରୋଦ୍ର ପାଟଶାଢ଼ୀ; କ୍ଷୀରୋଦ-

କପିଳାଧେନୁ ପୂଜା । ପ୍ଲକ୍ଷ ପ୍ରଦକ୍ଷିଣ ସାରି ସଦକ୍ଷିଣ ଦାନ ଦିଅଇ ନାରୀରାଜା । ୨୧ । ବଢ଼ିଲେ ଆଶିଷଗ୍ରହଣ କାଶୀଶସମାଧିଖଣ୍ଡନା ନିକଟେ । ଅଙ୍ଗଣୀ ଭ୍ରମର ଯୁଗଳୀ ମୟୂର ଝୁଲି ନିଯୋଗୀ ଜନ ଘଟେ । ଶ୍ରୀଭୂଜ । ଫଇଠ ଧରି ପ୍ରିୟସହ୍ନି । ଇଷ୍ଟଦେବ ଦରସନକୁ ସୁନ୍ଦର ଚରଣକଞ୍ଜେ ମଣ୍ଡେ ମହ୍ନି । ୨୨ । ସାରି ଦରଶନବିଧିକ ସେ ଜନ ନୟନମୃଗ-ବନ୍ଦପାଶୀ । ଲବଣ୍ୟଖନି କି ବଙ୍ଗେ ଜନମାଙ୍କି ଜୁହାରେ ପ୍ରତିଦିନ ଆସି । ଆଶିଷ । ତୁଲେ ଦେଲେ ଚୁମ୍ବଯୁଗଳି । ମଣୋହି କୋଠାକୁ ଅବଧାନ ତାକୁ ଦିଅନ୍ତି ଆସି ଶିପ୍ରଅଳୀ । ୨୩ । ମାଏ ବେଳେ ବେଳେ କବଳେ କବଳେ ସବଢେ ସବଢେ ରେପଣେ । ପୀୟୂଷକଳପ କବଳ ଅଳପ ଅଶନ କରନ୍ତେ ଅପଣେ । ରୁଚକ । ପ୍ରକଟ ନ କରି ଅଭଣେ । ସୁରଭିତ ବନେ ଚରି ଅଚମନେ ରସେ ମଦଗଜଗତି ସେ । ୨୪ । ଜନସ୍ଥିନୀ ଲଗି ଚେଲାଞ୍ଚଲେ ଯୋଗିମୋହନମୁଖୀ ମୁଖ ପୋଛେ । କର୍ପୂରି ବଡ଼ିଆ ବଡ଼ିଅଲି ଅଲୀ ଘେନି ହାଜରି ହୋଏ ପଛେ । ତାମ୍ବୁଲ । ଯୋଗଣ ଫରମାସୀ ମାଏ । ଅନ୍ତରି ହୁଅନ୍ତେ ଘେରନ୍ତି ସନ୍ତତେ ଗଠିବା ଗଞ୍ଜଣୀ ବାମାଏ । ୨୫ । ଦରସ୍ମୃଟରସ ପ୍ରସଙ୍ଗ ସରସ ସମ୍ଭାଷଣେ କ୍ଷଣେ ବସଇ । କ୍ଷଣେ ପ୍ରାତରନ୍ଦୀବରଶୋଭି ବନ୍ଦବାସପରି ନେତ୍ର ଦିଶଇ । ଯହୁଁ ସେ । ଅପହୁଡ଼ ହୁଏ କଣୋସି । ଦ୍ୱିତୀୟ ମାଜଣା ଅବକାଶ ଜଣା ହୋଏ ଘେରନ୍ତି ପରଗୃସି । ୨୬ । ବ୍ୟୋମଲତାଫଳ ମାଉିଣ୍ଡ ମଣ୍ଡଳ

---

ସମ୍ଭବା—ଲକ୍ଷ୍ମୀ, ସମ୍ଭେଦରେ—ନଦୀସଙ୍ଗମ ସ୍ଥଳରେ, ଜମ୍ବୁନନ୍ଦ—ଯେଉଁ ନଦୀର ତୀରରୁ ସୁନା ଉତ୍ପନ୍ନ ହୁଏ ( ହରିଦ୍ରାଭ ) । ସୁରସରିତ—ସ୍ୱର୍ଗଙ୍ଗା ( ଶୁକ୍ଳାଭ ) । ୨୧ । ଜୟଦେବକୃତି—ଗୀତଗୋବିନ୍ଦ, ଗଜେନ୍ଦ୍ର ବିପତ୍ତିମୋକ୍ଷଣ—ଗଜୋଦ୍ଧାରଣ ସ୍ତବ, ଗୋପାଙ୍ଗନାଗୀତା—ଭାଗବତ ରାସପଞ୍ଚାଧ୍ୟାୟୀର ପ୍ରସିଦ୍ଧ ଗୋପୀଗୀତା, ଅଲ୍ଲମନ୍ଦାର—ଅରୁଆ ( ତାମିଲ ଭାଷା )ରେ ଲେଖା ହୋଇଥିବା ସ୍ତୋତ୍ର ? କପିଲା ଧେନୁ—ହଳଦିଆ କଳାମିଶା ବର୍ଣ୍ଣର ଗାଈ, କୋଇଲି ଗାଈ; ପ୍ଲକ୍ଷ—ଅଶ୍ୱତ୍ଥ ବା ଓସ୍ତଗଛ । ବଢ଼ିଲେ—ସମାପ୍ତ ହେଲେ । ୨୨ । ଆଶିଷଗ୍ରହଣ—ବ୍ରାହ୍ମଣମାନଙ୍କଠାରୁ ଅଶୀର୍ବାଦ ଗ୍ରହଣବିଧି । କାଶୀଶସମାଧିଖଣ୍ଡନା—ଶିବଙ୍କ ଯୋଗ ଭାଙ୍ଗିବାରେ କ୍ଷମା । ଶ୍ରୀଭୂଜପଇଠ—ଚନ୍ଦ୍ରକଳାର କରତଳର ଭର, ଭାର । ୨୩ । ଜନନୟନମୃଗବନ୍ଦୀପାଶୀ—ମନୁଷ୍ୟମାନଙ୍କର ନୟନରୂପ ମୃଗକୁ ବାନ୍ଧିବା ଫାସସ୍ୱରୂପା ( ଚନ୍ଦ୍ରକଳା ) । ୨୪ । କବଳେ କବଳେ—ଗୁଣ୍ଡାଏ ଗୁଣ୍ଡାଏ । ସବଢେ ସବଢେ—ଗଣ ପକାଇ, ରେପଣ—ଅର୍ପଣ, ପୀୟୂଷକଳ୍ପ—

ବାସରବିବସାନ କମରେ । ପାଚ ପ୍ରତୀଚୀସମୁଦ୍ରେ ଝଡ଼ପଡ଼ୁଁ କୁମୁଦେ ମାଉନ୍ତେ ଭ୍ରମରେ । କଳୋଜ୍ଜ୍ୱଳେ । ବଢ଼ାଇ ସନ୍ଧ୍ୟା ଦରଶନ । ସଙ୍ଗୀତ-ସଭାକୁ ପୁଅଏ ଶୋଭାକୁ ଏହି ତା ନୀତି ନିତି ଦିନ । ୨୭ । ଯାହା ପାପଲ୍ଲବ ମହାପାପ ଲବ ନ ରଖେ ସ୍ମରଣକ୍ଷଣରେ । ଯାହା ଦର-ଚକ୍ର ଜନଦରଚକ୍ର ଚୂର୍ଣ୍ଣ କରନ୍ତି ବୀକ୍ଷଣରେ । ସେ ପ୍ରଭୁ । ଚରଣ-ପଙ୍କଜ ଯୁଗଳେ । ଜଳନ୍ତରଭୂପ ମାନସମଧୁପ ମରନ୍ଦପାନଲୋଭେ ମିଳେ । ୨୮ । ଊନବିଂଶ ପଦ କଳତ ଏ ଛାନ୍ଦ ନାମ କୁମାରୀ କଉତୁକ । କୁମାର ବଳୟୁ ହୃଦକୁବଳୟୁ ଅଖଣ୍ଡମଣ୍ଡଳ ମୃଗାଙ୍କ । ନୃପତି । ଯୁବ୍ରତି ନିତି ଆଦରଣ । ମୂରୁଖ ତରୁଣୀଗଣ ହେବେ ଗୁଣୀ ମନେ କଲେ ଏହା ସ୍ମରଣ । ୨୯ ।

---

## ଅଷ୍ଟମ ଛାନ୍ଦ

### ରାଗ—କେଦାର ଚକ୍ରକେଳି ବାଣୀ

### ( ଚନ୍ଦ୍ରକଳାର ଯୌବନୋଦ୍‌ଗମ )

ଏଥୁ ଅନନ୍ତରେ ଶୁଣ ସରସେ । ବଇଶାଖ ମାସ ବୁଧଦିବସେ । ଶୁକ୍ଳପଞ୍ଚମୀ ଧନିଷ୍ଠାଖ୍ୟ ଋକ୍ଷ । ଶୁଭଚନ୍ଦ୍ର କରଣ ଗଣ ମୁଖ୍ୟ । ୧ । ଯୋଗ ସମୂହ ରାଜ ଶୁଭଯୋଗ । କରିଥିଲ ସେ ଦିନପାକ ଭୋଗ । ସାରି ମନୋହର ତାମ୍ବୁଲ ଭୋଜନ । ଘେନି ସଙ୍ଗତେ ପ୍ରିୟସଖୀଗଣ । ୨ । ଫୁଲ୍ଲ

---

ଅମୃତତୁଲ୍ୟ । ଅତିଶେ—ଅତିଶୟରେ । ସୁରଭିତବନେ—ସୁବାସିତ ଜଳରେ । ୨୬ । ପ୍ରାତରଦୀବରଶୋଭିବନ୍ଦୀବାସ ପରି—ସକାଳ ଅର୍ଦ୍ଧମୁଦ୍ରିତ ନୀଳକଇଁ ପରି ଆଖି ଦିଶେ, ଅପଦ୍ରୁତ—ନିଦରୁ ଉଠିବା । ୨୭ । ବ୍ୟୋମଲତା···ଝଡ଼ପଡ଼ୁ—ସୂର୍ଯ୍ୟମଣ୍ଡଳ ଆକାଶରୂପ ଲତାର ଫଳସ୍ୱରୂପ, ସେ ଫଳ ଶେଷବେଳକୁ ପାଚି ଅର୍ଥାତ୍ ଲାଲବର୍ଣ୍ଣ ଧରି ପରିପକ୍ୱ ହୋଇ ପ୍ରତୀଚୀ ସମୁଦ୍ରରେ ( ପଶ୍ଚିମ ଦିଗର ସମୁଦ୍ରରେ ) ଝଡ଼ ପଡ଼ନ୍ତେ ଅର୍ଥାତ୍ ସନ୍ଧ୍ୟା ହୁଅନ୍ତେ । ସଙ୍ଗୀତ·· ସଙ୍ଗୀତସଭାକୁ ଶୋଭିତ କରେ । ୨୮ । ପାପଲ୍ଲବ—ପାଦକିଶଳୟ, ଲବ—କ୍ଷୁଦ୍ରାଂଶ, ଦରଚକ୍ର—ଶଙ୍ଖ ଓ ଚକ୍ର ଏବଂ ଭୟସମୂହ । ୨୯ । କୁମାରବଳୟୁ ····ଯୁବକମଣ୍ଡଳଙ୍କ ହୃଦୟ କୁମୁଦ ପକ୍ଷରେ ପରିପୂର୍ଣ୍ଣମଣ୍ଡଳ ମୃଗାଙ୍କ (ଚନ୍ଦ୍ରମା) ପରି; ନିତି ଆଦରଣ—ଦୈନିକ ଆଦର୍ଶ ।

---

ଅଷ୍ଟମ ଛନ୍ଦ

୧ । ବୁଧଦିବସ—ସୋମବାର । ୪ । ଜୃମ୍ଭାଜୃମ୍ଭିତ—ହାଇଦ୍ୱାରାପ୍ରକାଶିତ,

ମଣ୍ଡପେ ଜେମା ଚନ୍ଦ୍ରକଳା । ନ୍ୟାସ୍ତ କଲ କେଳରେ ବିଜେ କଲ୍ଲ । ଖେଳୁ ଖେଳୁ ତା ମୃଦୁ ଅଙ୍ଗଦେଶେ । ବଳସିଲ୍ଲ ଅଳସଭାବ ଲେଶେ । ୩ । ଜୃମ୍ଭାଜୃମ୍ଭିତ ମୃଗକଳାନିଧି । ଢେର ଦେଲ ବାହୁପାଶ ପରଧି । ସାୟନ୍ତନ ଶ୍ୟାମଳ କଞ୍ଜଶିରୀ । ଛୁଇଁ ଅସିଲା ନୟନଶଫରୀ । ୪ । ଜାଣି ସଖୀ ହୃଦେ ଭାବ ପାଇଲେ । ଦନ୍ତଚ୍ଛଦ ପଲ୍ୟଙ୍କ ବିଛାଇଲେ । ତହିଁ କେଶରତୁଳଙ୍କ ସଜାଇ । ଚନ୍ଦ୍ରଚୂର୍ଣ୍ଣେ ମିଶାଇ ଦଳଜାଇ । ୫ । ସଜ ବକୁଳ ଗର୍ଭଗତ କଅ । ଫୁଲ ବାଲିଶ ଅଦ ସବୁ ନୂଆ । ମୁଖ୍ୟ ମଖମଲ ସନ୍ଧି ମୃଚୁଳୀ । ସ୍ଥାନ ଜାଣି ରଖିଲେ ପ୍ରିୟ ଅଳୀ । ୬ । ଗାଢ଼ା ଗୁଲବ ଦ୍ରବ୍ୟ ସିଞ୍ଚା ଝୁନା । କଲେ ଅସ୍ତରଣ କେହୁ ନବୀନା । ଛୁରଅନା ଫୁଲ ଜାଲ ପରଦା । ଟେକି ଧଇଲ କେଉଁ ବିଶାରଦା । ୭ । କୁନ୍ଦଲତା ଉପରେ ଭୃଙ୍ଗଭର । ଦେଇ ଜଭା ହୁଅନ୍ତେ ବାଳାବର । ଦାସୀମାନେ ରଖି ସେକାଳେ ଟାକ । ଦେଲେ ପହଣ୍ଡ ସାବଧାନ ଡାକ । ୮ । ନୀଳପାହାଡ଼ାରେ ପାଦଯୁଗଳୀ । ନ୍ୟାସ କରନ୍ତେ ସେ ବିଶ୍ୱସଙ୍ଗୋଳ । ସୁରନନ୍ଦନା ସଲିଳପ୍ରବାହ । ମଣ୍ଡି ଦେଲ୍ଲ କି ଶୋଣ-ଜଳରୁହ । ୯ । ହରଉତ୍ସଙ୍ଗେ ଚିରଜେମା ଥିବ । ଦନ୍ତପଙ୍କ୍ତିଙ୍କେ ପହୁଞ୍ଚିଲ୍ଲ ଗୋତ୍ର । ସିତ ଅସିତ ଗ୍ରମରଯୁଗଳୀ । ଧିବ ଖଟିଲେ ନୀଳା ମୋଢମାଳୀ । ୧୦ । ଚମ୍ପା ମାଳୀ ଘେନି ଫୁଲ ଅଢ଼େଣୀ । ମନ୍ଦ ମନ୍ଦ ଗ୍ଲଳିଲ ମନ ଜାଣି । ବସି ଅଶ୍ୱାସି କୁନ୍ଦନ ରତନ । କଲେ ପାଦ ସମ୍ବାହନ ଯତନ । ୧୧ । କେହୁ ଟାକି ଅପହ୍ନୁତ ସମୟ । ଜାଗରୂକ ଅଛନ୍ତି ସଖୀଚୟ । ବାସପାଣି ଭରି ହେମମଞ୍ଜରୀ । ଜଗି ରହିଛୁ ଧରି ହେମଝଝର । ୧୨ । କରେ ଧରି

---

ବାହୁପାଶ ପରଧି—ବାହୁପାଶ ବେଷ୍ଟନ । ସାୟନ୍ତନ—ସନ୍ଧ୍ୟାକାଳୀନ, କଞ୍ଜଶିରୀ—ପଦ୍ମଶୋଭା ( ଅଖି ବୁଜି ହୋଇ ଅସିଲା ) । ନୟନଶଫରୀ—ନେତ୍ରରୂପ ମୀନ । ୫ । ଦନ୍ତଚ୍ଛଦ—ହାତୀଦାନ୍ତଦ୍ୱାରା ଅଚ୍ଛାଦିତ । କେଶରତୁଳ—ନାଗେଶ୍ୱର ଧୂଳିପୁଣ୍ଡ ତୂଳାଶେଯ । ଚନ୍ଦ୍ରଚୂର୍ଣ୍ଣେ—କର୍ପୂର ଚୂନାରେ, ଦଳଜାଇ—ଜାଇଫୁଲ ଦଳ ବା ପାଖୁଡ଼ା । ୭ । ଗୁଲବଦ୍ରବ—ଗୋଲାପ ଅତର, ଝୁନା—ଏକପ୍ରକାର ସରୁ ଗୁଦର । ଅସ୍ତରଣ—ଶଯ୍ୟା । ୮ । ଟାକ—ଅପେକ୍ଷା । ୯ । ସୁରନନ୍ଦନା—ସୂର୍ଯ୍ୟକନ୍ୟା ଯମୁନା, ଶୋଣଜଳରୁହ—ରକ୍ତପଦ୍ମ । ୧୦ । ନୀଳା ମୋଢମାଳୀ—ଦୁଇଜଣ ସଖୀଙ୍କ ନାମ । ୧୧ । ଚମ୍ପାମାଳୀ କୁନ୍ଦନରତନ—ସଖୀଙ୍କ ନାମ । ଫୁଲଅଢ଼େଣୀ—ଫୁଲରେ ତିଆରି ହାସ, ପାଦସମ୍ବାହନ—ଗୋଡ଼ ମୋଡ଼ିବା । ୧୨ । ହେମମଞ୍ଜରୀ—ସଖୀ, ହେମଝଝର—ସୁନାର ସୁରେଇ । ୧୩ । ଝୁନାକସ ଗୁଦର—ପାତଳ

ସୁନାକସ ସୁନ୍ଦର । ହେଲ ଲବଙ୍ଗକଳିକା ହାଜର । ହେମ ହଂସେ ବଢ଼ିଅ ବଢ଼ା ଭାର । ଗୁଣ ଜଳଧି ଅଚ୍ଛି ଅନୁସର । ୧୩ । ଶଶିଲେଖା କନକ ପିକଦାନୀ । ଅତି ପ୍ରମୋଦେ ଅଚ୍ଛି କରେ ଘେନି । ଧର କଙ୍କିଣୀ ସୁମୁଖୀ କଠାଉ । ରସକଳା ସ୍ନେହକେ ଦାଉ ଦାଉ । ୧୪ । ଶୋଭାଲହରୀ ଘେନି ଗନ୍ଧସାର । ଚୂର ମିଶାଇଅଚ୍ଛି ଘନସାର । ମୃଗମଦୁଁ ଭିନ୍ନ କର ରୋଚନା । ଅତି ଯତ୍ନେ ଦଳୁଚ୍ଛି ସୁଲୋଚନା । ୧୫ । ନବ କୁଙ୍କୁମ କୁଙ୍କୁମ ଦଳୁଚ୍ଛି । ନବନୀତେ କି ସିନ୍ଦୁର ଗୋଳୁଚ୍ଛି । କାଆ କରଜେ କସୁଚ୍ଛି ପାନିଅ । ସ୍ୱର୍ଣ୍ଣମଣି ବନାଉଛି ମାନିଅଁ । ୧୬ । ଜାଇଗଭା ନବାଉଚ୍ଛି ସେବତୀ । ସ୍ୱର୍ଣ୍ଣ ସଜାଡ଼ୁଅଚ୍ଛି ଲୀଳାବତୀ । ପ୍ରେମମଞ୍ଜୁଳା ମଣ୍ଡନ ସୁଙ୍ଗଡ଼ା । ରଙ୍ଗି ଧର ବରାହକେଶ ଝାଡ଼ା । ୧୭ । କରୁଅଚ୍ଛି ମାଜିବାକୁ ଆରମ୍ଭ । କେହି ହାଟକ ବାସବାରକୁମ୍ଭ । ପୁଞ୍ଜି ପୁଞ୍ଜି କର ରଖୁଅଛନ୍ତି । କେହି ଖାଉଁକୁଆଁ ଶାଢ଼ୀ ବାଛନ୍ତି । ୧୮ । ମଲ୍ଲୀ ନଅଳୀ କେତକୀ ସୁମନା । ସୁର ପରସ୍ପରେ ଏକମନା । ଭସ୍ମୁ ପ୍ରମୋଦେ ଜଳେ ଅବଗାହି । ମରକତ ଚଉକି ନେଇ ବହି । ୧୯ । ମଣିମନ୍ଦର ସୁନ୍ଦରୀ ମଣ୍ଡପେ । ଧୀରେ ଥୋଇ ଜଗିଲେ ତା ସମୀପେ । ହେଲ ତୁରୀୟ ଯାମ ସମାଗମ । ଶୁଭ କୁଳୀରଲଗ୍ନ ଭୋଗ କ୍ଷମ । ୨୦ । ବାଳା ପୁଲକେ ଦର୍ଶିଲ ସୁନ୍ଦର । ଚମକିଲ ଫୁଲଧନୁମନ୍ଦର । ମଧ୍ୟ ହୋଇଲ ବୁକୁ ଦମ ଦମ । ହୃଦେ ଛୁଇଁଲ କଚ୍ଛ କମ୍ପକମ୍ପ । ୨୧ । ଅପହୁଡ଼ ସମସ୍ତ ହେଲ ଆସି । ଉଚ୍ଛୁ ଲଭିଲ ଲଜ୍ଜିଲ ବୟସୀ । ସୁରଶର ରଙ୍ଗି ରଂତନାୟକ । ଏକା ବାନ୍ଧିଲ କଙ୍କେଲୀ ସାୟକ । ୨୨ । ଜେମା ମନ ଲକ୍ଷ୍ୟ ଫୁଟି ଫିଟିଲ ।

---

ରଞ୍ଜିତ ସୁନ୍ଦର । ହେମହଂସେ—ସୁନାରେ ତିଆର ହଂସ ଆକୃତିବିଶିଷ୍ଟ ଡବା । ୧୫ । ଗନ୍ଧସାର—ଚନ୍ଦନ, ଘନସାର—କର୍ପୂର, ମୃଗମଦୁ—କସ୍ତୁରୀରୁ, ରୋଚନା —ଗୋରୋଚନା । ୧୬ । କୁଙ୍କୁମ—ସଖୀର ନାମ, ନବନୀତ—ଲହୁଣୀ, କାଆ—ସଖୀର ନାମ, କରଜ—ନଖ, କସୁଛି—ପରୀକ୍ଷା କରୁଛି, ସ୍ୱର୍ଣ୍ଣମଣି—ସଖୀ, ମାନିଅଁ—ଫୁଲଗଭା । ୧୭ । ସ୍ୱର୍ଣ୍ଣ—ଫୁଲତୋଡ଼ା, ବାରହାବାଳବଢ଼ାରେ ଅଳଙ୍କାର ପ୍ରଭୃତି ସଫା କର । ୧୮ । ଖାଉଁକୁଆଁ ଶାଢ଼ୀ—ସୂକ୍ଷ୍ମଭାବରେ କୁଆଁ ହୋଇଥିବା ଶାଢ଼ୀ । ୨୦ । ତୁରୀୟଯାମ—ଚତୁର୍ଥ ପ୍ରହର । କୁଳୀରଲଗ୍ନ—କଙ୍କଡ଼ାଲଗ୍ନ । ଭୋଗକ୍ଷମ ହେଲ—ଭୋଗ କରିବାକୁ ପ୍ରବେଶ କଲ । ୨୧ । ପୁଲକେ —ରୋମାଞ୍ଚିତ ହୋଇ । ୨୨ । କଙ୍କେଲୀସାୟକ—ଅଶୋକ ଫୁଲର ବାଣ ।

ନିଜ ସିଂହଦୁଆରେ କି ଛୁଟିଲା । ଜାଣିପାରି ସେ କୃଶୋଦରୀ ଈଶ୍ୱରୀ । ଅବଲମ୍ବେ ମସ୍ତକ ଅବତରି । ୨୩ । ସଖୀ ସମ୍ମୁଖେ ନ ଦେଇ ଦୃଷ୍ଟିକି । କଲା ସ୍ଥଳଜଳରୁହବୃଷ୍ଟିକି । ମଣିପାଦୁକାରେ ନାହିଁ ନଜର । ଅତି ଭ୍ରଜନେ ହୋଇଲା ହାଜର । ୨୪ । ବାସବତୀ କି ସଂକେତ ପାଇଲା । ଏକା ଗହଣେ ସେହି ଗୋଡ଼ାଇଲା । ବାତବକ୍ରନାଳ ନୂଆ କମଳ । ପରି ନୂଆଇଁ ଶ୍ରୀମୁଖମଣ୍ଡଳ । ୨୫ । ଉରୁସନ୍ଧିବାସେ ନୂଆ ଛଇଳା । ଯହୁଁ ନେତ୍ରଖଞ୍ଜନ ଖେଳାଇଲା । ନବ ଗବୟ ଶୃଙ୍ଗଜାତ ଅନ୍ତେ । ହେଲା ପଦ୍ମରାଗ ପରି ପରତେ । ୨୬ । କାଚଭିତ୍ତିରେ କିବା ଅଡ଼ମ୍ବର । ଦଶେ ବନ୍ଧୁଜୀବ ପ୍ରତିବିମ୍ବର । ନିଜ ଗୋପୁର ଚନ୍ଦ୍ର ଅର୍ଥେ ଅବା । ରୁପାଥାଳୀରେ ପ୍ରସୂନଧନ୍ୱା । ୨୭ । ଗୈରିକ ଗୋଳାଇ ଅଛୁ ରଙ୍ଗ । ଦେଖି ମଣିଲା ପୂର୍ଣ୍ଣଚନ୍ଦ୍ରମୁଖୀ । ରତି ଭାଲକରି ବିନ୍ଦୁ ସୁନ୍ଦର । ସେହି ବାସେ ପୋଛିଲା କି ସିନ୍ଦୁର । ୨୮ । ତହୁଁ ତଳକୁ ପୁଣି ଦେଇ ଦୃଷ୍ଟି । ତହିଁ ଦେଖିଲା ସେହି ଶୋଭା ବୃଷ୍ଟି । ହେମ ପ୍ରାସାଦରେ ବସି ଦର୍ପକ । ଦ୍ୱାରେ ପିଙ୍ଗିଦେଲା କି ପାନପିକ । ୨୯ । ତାକୁ କୁସୁମପ୍ରିୟ ବୋଲି ଜାଣି । ଦ୍ରବମୟ କୁସୁମେ କୃଶପାଣି । ସନ୍ତର୍ପଣ ବିଧିରେ ମନକରି । ସ୍ୱର୍ଣ୍ଣପାତ୍ରରେ ତହୁଁ କରୁ ଭରି । ୩୦ । ରଖିଅଛି କି ସବୁ କରି ଠୁଳ । ସିଞ୍ଚି ପୁଲକ ଇନ୍ଦ୍ରନୀଳ ତୂଳ । ଜାଣି ଯଉବନ ରାଜା ବିଜୟ । ମନେ ହେବାରୁ ସଂଭ୍ରମ ଉଦୟ । ୩୧ । ସେ

---

୨୩ । କ୍ଷେମାମନଲକ୍ଷ୍ୟଫୁଟି ଫିଟିଲା···ସେ ଶର ଚନ୍ଦ୍ରକଳା ମନରୂପ ଲକ୍ଷକୁ ଫୁଟାଇ ବା ଭେଦକରି ନିଜ ସିଂହଦ୍ୱାରକୁ ଗୁଳିଗଲା କି ? ୨୪ । କଲାସ୍ଥଳ···ସ୍ଥଳପଦ୍ମକୁ ବର୍ଷିଲା ଅର୍ଥାତ୍ ତଳଆଡ଼କୁ ଆଖି ପକାଇଲା । ୨୫ । ବାତବକ୍ରନାଳ—ପବନରେ ଯାହାର ନାଡ଼ୀ ବଙ୍କା ହୋଇଅଛି ।୨୬। ନବଗବୟ ··ଗବୟ (ଗୋଜାତୀୟ ଜୀବ)ର ନୂଆ ଶିଙ୍ଗରେ ନିର୍ମିତ ପେଡ଼ାଭିତରେ ପଦ୍ମରାଗମଣି ଥିଲା ପରି ଜଣାଗଲା । ୨୭ । କାଚ-ଭିତ୍ତିରେ—କାଚକାନ୍ଥରେ । ବନ୍ଧୁଜୀବ ପ୍ରତିବିମ୍ବ—ବଧୂଲିଫୁଲର ଛାୟା । ଗୋପୁର—ବହିର୍ଦ୍ୱାର । ପ୍ରସୂନଧନ୍ୱା—ପୁଷ୍ପଧନ୍ୱା କନ୍ଦର୍ପ । ୨୮ । ଗୈରିକ—ଗେରୁ । ରତି···ରତିଦେବୀ ନିଜ ଲଲାଟରେ ସୁନ୍ଦର ବିନ୍ଦୁଟିଏ ରଚନା କରିସାରି ଚନ୍ଦ୍ରକଳାର ସେହି ଲୁଗାରେ ସିନ୍ଦୁରକୁ ପୋଛି ଦେଲା କି ? ୨୯ । ହେମପ୍ରାସାଦ—ସୁନାର କୋଠା (ଚନ୍ଦ୍ରକଳାର ଶରୀର) । ଦର୍ପକ—କନ୍ଦର୍ପ । ୩୦ । ତାକୁ—ଚନ୍ଦ୍ରକଳାକୁ । ଦ୍ରବମୟକୁସୁମେ—ତରଳ ରକ୍ତବର୍ଣ୍ଣ ଫୁଲରସରେ । କୃଶପାଣି—ବ୍ରହ୍ମା, ସ୍ରଷ୍ଟା ।

ସମୟେ ସୁଷମା କଳାବତୀ । ହେଉଁ ଅତି ତରଳତରମତି । ଅଲଙ୍କତ ସଂଭବଦ୍ରବଚ୍ଛବି । ହେମପ୍ରାଙ୍ଗଣେ ପକାଇଲା ପବି ।୩୨। ଜଗଜ୍ଜୟ ସଂକଳ୍ପେ କାମର୍ଗଜା । କଲା ନିକୋଣ ହେମଯନ୍ତ୍ର ପୂଜା । ଉପହାର ନିମନ୍ତେ କରି ଅବା । ସମରପିଛି ଅଭିନବ ଜବା ।୩୩। ନିଜ ମନ୍ଦିର ଦେହଳୀର ପାଶେ । ରତି ବସିଛି ପ୍ରିୟ ଅଙ୍କଦେଶେ । ତାହା ଲାଗି କୁସୁମ୍ଭା ଚେଲାଞ୍ଚଳ । ପଡ଼ି ଦେହଳୀ କରୁଛି ମଞ୍ଜୁଳ ।୩୪। କିବା ନବୀନ ଯଉବନରମା । ମଣ୍ଡିବାକୁ ଶବଦରେ ଭାଲସୀମା । ରଙ୍ଗ ପରଣତତର ତାମ୍ବୂଳ । ତହିଁ ଦଳଅଛି କିଛି ହିଙ୍ଗୁଳ ।୩୫। ଚଳଦଳଚ୍ଛବି ପରପନ୍ତୀଙ୍କ । ଦେଇ ମନ୍ମଥମନ୍ଦିର ମନ୍ତ୍ରିଙ୍କ । ତାହା ଲୋହିତରେ ଚିତା ଘେନିଲା । ସେହିପରି ସେ ସମୟ ମାନିଲା ।୩୬। ରସ ବରଷା ସମୟ ପ୍ରବେଶେ । ସ୍ୱର୍ଣ୍ଣ ଭୂମିରେ ଇନ୍ଦ୍ରଗୋପ କି ସେ । ଭ୍ରମ ସନ୍ଦେହ ହୁଅନ୍ତେ ନିଶ୍ଚୟ । କରି ହୃଦୟ ରସାନନ୍ଦମୟ ।୩୭। ଉଭୁ ହୁଅନ୍ତେ ହସି ମଥା ପୋତି । ପାଟି ବଢ଼ାଇ ଦେଲା ବାସବତୀ । ଲାଜ ମୋହମିଶ୍ରିତ କରି ମନ । କରି ମଣିଭିତ୍ତି ଦିଗେ ଗମନ ।୩୮। ପ୍ରତିବିମ୍ବିତ ବାଳାଶୋଭା ଗୃହିଁ । ଲଭି ଦ୍ୱିଗୁଣ ସୁଖ ଗୃହମୁହିଁ । କୁସୁମିତ ଦୁକୂଳକୁ ପାଲଟି । ଲାଗି ହୁଅନ୍ତେ ଲାଲ ପାଟ-ଶାଟୀ ।୩୯। ହେମଲତା ବଳ୍କବମୟ ହେଲା । ପରି ଦିଶିଲା ସେ ବର-ମହିଳା । ତେଣେ ଆଳୀଏ ମଣି ଚମତ୍କାର । କଲେ ପରସ୍ପରେ ଏହି ବିଚାର ।୪୦। କାଲ ବେଳ କେ ନ ଥିବାର ନିତି । ଦେଖାଗଲା ଏ କି ବିଚିତ୍ର ସ୍ଥିତି । କଟୁ ଊଣା ଏକାଦଶ ବରଷ । କେମାମଣିଙ୍କ ହୋଇଲା ବୟସ ।୪୧। ଅମ୍ଭେମାନେ ତା ଲାଗି ଲାଗାପରି । ଶିଶୁକାଳରୁ ଥାଇ ଅନୁସରି । ନ ଥିବାରେ ଆମ୍ଭେ ତାହା ସାଥିରେ । ସ୍ୱପ୍ନେ ଏକାନ୍ତ କରି ନାହିଁ

---

୩୨। ସୁଷମାକଳାବତୀ—ଶୋଭା ଓ ସୂକ୍ଷ୍ମକଳାର ନିଧାନ (ଚନ୍ଦ୍ରକଳା)। ଅଲଙ୍କତଦ୍ରବସମ୍ଭବଚ୍ଛବି—ଅଲତାରସର ଛାଆ ବନ୍ଦୁ । ହେମପ୍ରାଙ୍ଗଣ—ସୁନା ଅଗଣା ।୩୩। ନବଜବା—ନୂଆ ମନ୍ଦାରଫୁଲ ।୩୪। ଦେହଳୀ—ଏରୁଣ୍ଡିବନ୍ଧ; ତାହା ଲାଗି କୁସୁମ୍ଭାଚେଲାଞ୍ଚଳ—ରତିର ଫିକା ରଙ୍ଗଶାଢ଼ୀର ପଣନ୍ତ ।୩୫। ପରଣତତରତାମ୍ବୂଳ—ଅତି ପାଚିଲା ପାନ ।୩୬। ମନ୍ମଥମନ୍ଦିର (କଣ୍ଠି) ଚଳଦଳଚ୍ଛବି (ଅଶ୍ୱତ୍ଥପତ୍ର) ରୂପ ପରପନ୍ତୀଙ୍କ (ଶନ୍ଦୁକ) ମନ୍ତ୍ରି ଦେଇ ତା ରକ୍ତରେ ଚିତା ଘେନିଲା କି ? ୩୭। ରସବରଷା ସମୟ—ଜଳବୃଷ୍ଟି କାଳ, ଇନ୍ଦ୍ରଗୋପ—ସାଧବ ବୋହୂ ପୋକ ।୪୦। ହେମଲତା···ସୁବର୍ଣ୍ଣର ଲତାରେ ପତ୍ର ଧଇଲା କି ?

ଥରେ । ୪୨ । ଲବେ ନ ବିଚାରି ଅନୁରୋଧକୁ । ବିଜେ କଲେବେଳେ ଅବରୋଧକୁ । ବାସବଜିତଙ୍କ ନେବେ ଠାବ ଦେଲ । ଅଜ ବିଜନରେ କି ବିଚାରିଲ । ୪୩ । ଅଜ ଅଛିତେ କି କାଳ ହରିବା । ବୁଝି ଯେ ଯାହା ଉପାୟ କରିବା । ଶୁଣି ଜଣେ କହିଲ ଏ ବାଣୀକି । ଏହାପରି ସିନା ହେବ ଏଣିକି । ୪୪ । କହୁଥିଲେ ବୋଲୁଥିବା ମଣିମା । ମନକଥାଟି କେହି ନ ଜାଣିମା । ନିରନ୍ତରେ ଏଥର ଫୁଲବାଣ । କେମାଠାରେ କରିବ ମନ୍ତ୍ରୀପଣ । ୪୫ । ଜାଣି ଭାର ଏ ସମସ୍ତ ମରଜ । କେତେ ଗଲେନି ସ୍ୱସ୍ଥାନ ବିରଜ । ଗଢପବ ଚରଣରୁ ନିବାଗ । ହୋଇ କଲେନି ନୟନେ ନିବାସ । ୪୬ । ଅବିବେକ ପୃଥୁଭାବ ପଳାଇ । ସ୍ଥାନ କଲ ନିତମ୍ବବିମ୍ବେ ଯାଇ । ରସ କୃଶତା ହୃଦୟରୁ ଖସି । ହୋଇଲେନି ମଧ୍ୟଦେଶ-ନିବାସୀ । ୪୭ । ତେଜି କର୍କଶ ମନ ନଗରୀକି । କଲ ଅବଲମ୍ବ ବକ୍ଷସରିକି । ଦେଖୁ ନାହଁ କି ଏବେ ସେ ଦ୍ୟୁତିକି । ଜଗତ୍ରୟ ନୟନସମ୍ପତ୍ତିକି । ୪୮ । ଏହି ସମୟେ ଚେଟୀ ବନୁଚୂଡ଼ । ଦୃଶ୍ୟ ହୋଇଲ ଘେନି ଲଟଶାଢ଼ୀ । ସେ କି ସଂଚରିବା ହେମମଞ୍ଜରୀ । ଅଛି ସିତ କୁସୁମଗୁଚ୍ଛ ଧରି । ୪୯ । ସଉରଭ ଲୋଭରେ ଭୃଙ୍ଗରାଜ । ଗୃହପାଶେ ଘେରୁଅଛି ଗଜଜ । ଅବା ଅଳୀଙ୍କ ସନ୍ଦେହ ଛୁଟିଲ । ଅଳିଶ୍ରେଣୀ ଦମ୍ଭେ ବ୍ୟୋମ ଉଡ଼ିଲ । ୫୦ । ଖେଳା ଚପଳ କଳହଂସୀ ପରି । ଅତି ହରଷେ ଧାଇଁ ସହଚରୀ । ଲଜ୍ଜାନମ୍ରମୁଖୀଙ୍କି ପରିହାସେ । ଘେରି ରହି ଜଣାଇଲେ ଏ ରସେ । ୫୧ । ସଖୀ ଏଡ଼େ ନିର୍ମଳ ହୃଦପଟ । ଅର୍ଦ୍ଧଅଙ୍ଗେ ବହିଲ ତ କପଟ । କରିଥାଉ ଯେ ତେଡ଼େ ଅନୁରାଗ । ଅଭ କେଉଁ ଭାଗ୍ୟରୁ ଦେବୁ ଭାଗ । ୫୨ । ଲୁଗୁଇଲେ କି

---

୪୬ । ଗଢପବ···ସେ ବର୍ତ୍ତିମାନ ଚଞ୍ଚଳଗତି ଛାଡ଼ି ଚଞ୍ଚଳନେତ୍ରୀ ହେଲଣି । ୪୭। ଅବିବେକ···ବିବେକଶୂନ୍ୟତାରୂପ ସ୍ଥୂଳତା ପଳାଇ ନିତମ୍ବରେ ରହିଲା, ଅର୍ଥାତ୍ ବିବେକ ବୃଦ୍ଧି ହେଲା ଓ ନିତମ୍ବ ସ୍ଥୂଳ ହେଲା । ରସକୃଶତା···କ୍ଷୀଣରସଭାବ ହୃଦୟରୁ ଯାଇ ମଧ୍ୟଦେଶନିବାସୀ ହେଲଣି ( କଟିଦେଶରେ ବାସ କଲଣି ) ଅର୍ଥାତ୍ ହୃଦୟ ରସପୂର୍ଣ୍ଣ ଓ କଟୀ କ୍ଷୀଣ ହେଲଣି । ୪୮ । କର୍କଶତା ମନରୂପ ନଗରକୁ ଛାଡ଼ି ଏବେ ଏହାର ବକ୍ଷ ଦେଶରେ ବାସ କରୁଛି ( ଏହାର କୁଚଦ୍ୱୟ ଏବେ କର୍କଶ ହେଲଣି ) । ୪୯ । ଚେଟୀ—ଦାସୀ, ଲଟଶାଢ଼ୀ—ପୁରୁଣା ପିନ୍ଧାଶାଢ଼ୀ, ସଞ୍ଚରିବା ହେମମଞ୍ଜରୀ—ଚାଲୁଥିବା ସ୍ୱର୍ଣ୍ଣବୃନ୍ତ କି ? ସିତ-କୁସୁମଗୁଚ୍ଛ—ଧଳା ଫୁଲପେଣ୍ଡା । ୫୦ । ଅଳିଶ୍ରେଣୀଦମ୍ଭରେ—ଭ୍ରମର ପଂକ୍ତି

ଲୁଚେ ଏହି ମାନ । ଫୁଲବାସନା ମାନଙ୍କ କି ଅନ । ଘନ ଅଛୁନ୍ତି କଲେ ଲୋକନେତ୍ର । ଘନେ ଅଚ୍ଛନ୍ନ ହୁଅଇ କି ମିତ୍ର । ୫୩ । ଦେଇ ଶିଖରେ କରକଶଳୟ । ଜେମା ଲୁଗୁଉଛୁ କି ସୁରାଳୟ । କର ଯୋଡ଼େ କି ସମୁଦ୍ର ଲୁଚିବ । ସତ୍ୟ ହେଲେ ଏ କାହାକୁ ରୁଚିବ । ୫୪ । ଆଉପରି କର ତୋର ଭଜନ । ଏତେ ମାନକୁ ନୋହିଲୁଁ ଭାଜନ । ଯେତେବେଳେ କୁରଙ୍ଗଶିଶୁଦୃଶା । କେବୁ ରମଣଅଙ୍କେ ବସି କାଶ । ୫୫ । ମଞ୍ଜୁ ମଞ୍ଜୀର ବାଜୁଲ ରସନା । କଣ୍ଠ କହିବେ ଏହି ଦୁହେଁ ସିନା । ତୁ ତ କହିବା ପରି ଦିଶୁ ନାହିଁ । ପଚ୍ଚାରିବାକୁ ଅମ୍ଭ ବଳ କାହିଁ । ୫୬ । ଶୁଣି ଲବଙ୍ଗକଳିକା ହସିଲା । ଛଳ ସଖୀଙ୍କି ଏ ବାଣୀ ଭାଷିଲା । ମନ ଧରି କହୁଅଛୁ ସହିକ । କାଳଯାକ ସେବାଫଳ ଏହି କି । ୫୭ । କେନ୍ଦ୍ରସମ୍ପତ୍ତି କଣ୍ଠ ନ ଦେଖିବ । ଭଉତଟରେ କେ ପୁଣି ଲୁଚିବ । ଦନେ ହେଲେ କି ମରଦନ ବେଳେ । ସ୍ତନତଟକୁ ନ ଦେଖିବା ଡୋଳେ । ୫୮ । ଶିଶୁଶଶୀ ତ ସବୁ ଦେବ କହି । ଅତି ବଡ଼ ବଡ଼ଙ୍କ ଯାଏ କାହିଁ । ବାଳା ବୋଲିବ ଅବା ତହିଁ ବାସ । ଥିବ ନିବିଡ଼େ କାହିଁ ଅବକାଶ । ୫୯ । ବାସ ସିନା ସମସ୍ତ ପ୍ରକାଶିବ । ପୁଣି ରଦବାସ ତୁଲେ ମିଶିବ । ଦୁହେଁ ମିଶି କରିବେ ସବୁ ଜଣା । ଅହା କି କରିବଟି ସୁଲକ୍ଷଣା । ୬୦ । ଏବଂବିଧ ପରିହାସ ନ ସରୁ । ସରୁମଧ୍ୟା ଯାଇଁ ଜେମା ପାଶରୁ । ଜଣାଇଲା ଶ୍ରୀ ମହାଦେଈ ପାଶେ । ସେ ତ ଜେମା ଜନନୀ ଅତି ତୋଷେ । ୬୧ । ନିଜ କରରୋପିତ ସୁନାଲତା । ସତେ ହୋଇଲା ମଣି କୁସୁମିତା । ମୋଦ ଅଖେଟେ ଚିତ୍ତକୁ ସଧାଇ । ଦେଲେ ନିଜ ଅଙ୍ଗଭୂଷା ବଧାଇ । ୬୨ । ଏ ସମୟେ

---

କ୍ୟାଇରେ । ୫୩ । ଘନ—ମେଘ, ମିତ୍ର—ସୂର୍ଯ୍ୟ । ୫୪ । ଦେଇ ଶିଖରେ··· ଅଗ୍ରଭାଗରେ କରରୂପ ନୂଆ ପତ୍ରଟିଏ ଘୋଡ଼ାଇ ଜେମା (ଚନ୍ଦ୍ରକଳା) ସୁରାଳୟ ( ମେରୁପର୍ବତ ) କୁ ଲୁଗୁଉଅଛ କି ? ୫୫ । କୁରଙ୍ଗଶିଶୁଦୃଶା—ବାଳମୃଗାକ୍ଷୀ । ୫୬ । ମଞ୍ଜୁ ମଞ୍ଜୀର—ମନୋହର ନୂପୁର ( ଚରଣ ଅଳଙ୍କାର ), ରସନା—ଚନ୍ଦ୍ରହାର (ଅଣ୍ଟାର ଅଳଙ୍କାର) । ୫୮ । ଭଉତଟରେ—କାନ୍ଥପାଖରେ । ୫୯ । ଶିଶୁଶଶୀ—ବାଳଚନ୍ଦ୍ର, (ନଖକ୍ଷତ), ବାସ—ବସ୍ତ୍ର, ଅବକାଶ—ସ୍ଥାନ । ୬୦ । ରଦବାସ—ଅଧର । ୬୧ । ସରୁମଧ୍ୟା—ଜଣେ ସଖୀ, ମହାଦେଈ—ଚନ୍ଦ୍ରକଳାର ମା । ୬୨ । ମୋଦଅଖେଟେ···ଆନନ୍ଦରୂପ ମୃଗୟାରେ ମନକୁ ସାଧନ କରି ଅର୍ଥାତ୍ ମନରେ ପ୍ରକୃତ ଆନନ୍ଦ ଅନୁଭବ କରି । ବଧାଇ—ପାରିତୋଷିକ, ଉପହାର ।

ଭେଟି ଅନ୍ୟ ବନିତା । ପାଠକଠିଣୀକରରତ୍ନସୁତା । ଜେମା
କୁସୁମୋତ୍ସବ ଯୋଗ ଧାଠୀ । ଲେଖି ବଢ଼ାଇଦେଲା ପତ୍ରିକାଟି । ୬୩ ।
ମହାଦେବୀ ତ ପରମ ବିଦୁଷୀ । ତହିଁ ଗୃହିଁ ସୁଭାଗ୍ୟ ଯୋଗରାଶି । ଗଦ
ଗଦ ସ୍ୱରେ ହୋଇ ସହାସ । କଲେ ଶରମନ୍ଦର ଫରମାସ । ୬୪ । ଆଜ୍ଞା
ପ୍ରମାଣେ ବାଳା ସହଚରୀ । ଘେନି ସଙ୍ଗତେ ସର୍ବପରିଚରୀ । ଦ୍ୱିମ ବିବାହ-
ଗୀତ ହୁଳହୁଳି । ନାଦେ ଭରିତ କଲେ ମହୀସ୍ଥଳୀ । ୬୫ । ବୀଣା ରବା
ପଖାଉଜ ମର୍ଦ୍ଦଳ । ଭେରୀ ଆରବୀ ତେଲିଙ୍ଗୀ କଂସାଳ । ଆଦ୍ୟ ବାଦ୍ୟ
ନାଦେ ସେ ଭୂମଣ୍ଡଳୀ । ସିନ୍ଧୁ ତୁଲେ କି ଅରମ୍ଭିଲା କଳ । ୬୬ । ଅତିପ୍ରବଳ
ହୋଇ ବାଜୁଁ ବାଜା । ଉଠିଅଛି ସଭାରୁ ମହାରାଜା । ଦେବୀ ପ୍ରମୋଦ
ଭେଟରୁ ଜାଣିଲେ । ଯନ୍ତ୍ରକର ବୋଲି ମୋଦେ ଭଣିଲେ । ୬୭ । ତହୁଁ
ବାଳା ସଖୀ ସର୍ବ ବିମ୍ବୋଷ୍ଠୀ । ମାଷ ତଣ୍ଡୁଲେ ବନାଇଲେ କୋଷ୍ଠୀ ।
ଗୃହକୋଣେ-ପଞ୍ଚବର୍ଣ୍ଣ କୋଠୀର । ସ୍ଥିରତର ପୋତିଲେ ଗୃହ ତୀର । ୬୮ ।
ଗୃହ ପ୍ରହାର କରିବାକୁ ରକ୍ଷା । ଗୃହ ପ୍ରହାର ପୋତିଲେ କି ଦକ୍ଷା ।
ରସକଳା ହସି ବୋଲେ ତହିଁ କି । ବାଳା ସମ୍ଭାଳି ପାରିବ ନାହିଁ କି । ୬୯ ।
ଏକ ଅତନୁ ମାରର ଏ ଗୁଣ । ଏବେ ସତନୁ ଗୃହ ମାରଗଣ ।
ଜଗିରହିଲେ ରଜନୀ ଦିବସ । ସୁକୁମାରୀ ନୋହିବ କି ବିବଶ । ୭୦ ।
ପୁଣି ଦେଲେ ଗୃରୁ ଚେଳ ବେଢ଼ାଇ । ଦେଲା ଏହି ଊହକୁ ସେ
ବଢ଼ାଇ । ହରି ଅଣି ତ୍ରିଲୋକ ସମ୍ପତ୍ତିକି । ତହିଁ ଲୁଚାଇବ ପ୍ରଜାପତିକି । ୭୧ ।
ଗୃହପାର୍ଶ୍ୱେ ଶିଶୁରମ୍ଭାସ୍ତମ୍ଭ । ପାଖେ ରଖିଲେ ସୁନା ପୂର୍ଣ୍ଣକୁମ୍ଭ । ପିକ-
ବଲ୍ଲଭପଲ୍ଲବ ମାଳିକା । କଲେ ତୋରଣି ତରୁଣୀ ବାଳିକା । ୭୨ ।

---

୬୩ । ପାଠକଠିଣୀକରରତ୍ନସୁତା—ପ୍ରଧାନ ଜ୍ୟୋତିଷୀ ଖଡ଼ୀରତ୍ନଙ୍କ ଝିଅ । କୁସୁମୋତ୍ସବଯୋଗଧାଠୀ—ଋତୁମତୀ ହେବା ଯୋଗନକ୍ଷତ୍ରାଦିର ଜ୍ୟୋତିଷ ଗଣନା । ୬୪ । ଶରମନ୍ଦର—କ୍ଷତ୍ରିୟ କନ୍ୟାର ପ୍ରଥମ ଋତୁସ୍ନାନରେ କରାଯିବା ଉତ୍ସବ । (ପରେ ଏହି ଉତ୍ସବର ବର୍ଣ୍ଣନା ହୋଇଛି) । ୬୮ । ମାଷ—ବିରି, ସ୍ଥିରତର—ଦୃଢ଼ଭାବରେ । ୭୦ । ଶରୀର ନ ଥିବା ଏକ ମାର (କନ୍ଦର୍ପ)ର ତ ଏତେ ଗୁଣ, ବର୍ତ୍ତମାନ ଶରୀର ଥିବା ଗୃହଗୋଠା ମାର୍ଗଣ (ଶର) ଦିନରାତି ଜଗି ରହିଲେ ଏ ବାଳିକା ବିବଶ ( ଅସ୍ଥିର ) ହୋଇ ପଡ଼ିବ ନାହିଁ କି ? ୭୧ । ପୁଣି ଦେଲେ··· ···ତା ପରେ ସଖୀମାନେ ସେହି ଶରମନ୍ଦରକୁ ଗୃରୁଚେଳ ( ସୁନ୍ଦର ବସ୍ତ୍ର ) ଦ୍ୱାରା ଆବୃତ କରିଦେଲେ । ସେ ଆବରଣ ଏହି ଊହ ( ଅନୁମାନ )କୁ ବଢ଼ାଇଦେଲା ଅର୍ଥାତ୍ ତହିଁରୁ ଏପରି ଅନୁମାନ ହେଲା—ବ୍ରହ୍ମା ତିନିଭୁବନର ସମ୍ପତ୍ତିକି ଗ୍ରେସଇ ଅଣି ଏହିଠାରେ ଲୁଚାଇବ କି ? ୭୨ । ପିକବଲ୍ଲଭ······ଆମ୍ବଗଛର ନୂଆପତ୍ର ।

ଟାଣିଦେଲେ ବରଜ ଚନ୍ଦ୍ରାତପ । କୋଣେ ଲମ୍ବାଇ ନୂଆ କୁଞ୍ଚ ଥୋପ । ଜେମାରୁଚି ଜଣିଲ ସାତଦ୍ୱୀପ । ବୋଲି ସୁର୍ପେ ରଖିଲେ ସାତଦୀପ । ୭୩ । ତଦନନ୍ତର ତରୁଣୀବରଙ୍କୁ । ବିଜେ କରାଇ ଶରମନ୍ଦିରଙ୍କୁ । ଝିଲ୍ଲି ଗଜା ଖଇରଚୁର ନାଡ଼ୀ । ଲଡ଼ୁ ବସନ୍ତ ଅରିଷା ପାପୁଡ଼ି । ୭୪ । ଜଗନ୍ନାଥବଲ୍ଲଭ ହଂସକେଳି । ମନୋହର ଜାଲମ୍ବ ସରପୁଲି । ଖଜା ପେଡ଼ା ଦିବ୍ୟ ପୁରି ନିପୁରି । ଖଣ୍ଡମଣ୍ଡା କାନ୍ତି ପୁର ଇଣ୍ଡୁରି । ୭୫ । ପାରିଜାତ ସରଖଇ ଖୁରୁମା । ସର ସରପାପୁଡ଼ି ଅନୁପମା । କ୍ଷୀରି ଝିରିସା ବାସ ଅଁଟକାଲି । ବଡ଼ା ସୁପୁରି କାକରା ଶୁଆଲି । ୭୬ । ଦେବା ନେବା ଖାଇବା ରଖାଇବା । ବାସି ଗିର ସଦ୍ଗୁଣ ପକାଇବା । ଏହିପରି ସେ ରାଜଧାନୀ ଯାକ । ପ୍ରତି ମନ୍ଦିରେ ଉତ୍ସବ ଅସ୍ତୋକ । ୭୭ । ସେ ନଗରେ ତ ଦୁର୍ଲଭ ଅରାତି । ସେହି ସାତ ଦିନ ହେଲା ଅ-ରାତି । ସାରି ଶରପୁରବସା ବିଧିଙ୍କ । ତହୁଁ ଅବତାରି ଶୋଭାନିଧିଙ୍କ । ୭୮ । ଶତହୃଦା ଗୋରୀଏ ଏକ-ମେଳେ । ସାତ ଶାତକୁମ୍ଭ କୁମ୍ଭମଙ୍ଗଳେ । କାହିଁ କୁଙ୍କୁମ କାହିଁ ଗନ୍ଧସାର । କାହିଁ ଭରି କୁରଙ୍ଗମଦସାର । ୭୯ । ଦଳି ଗୋଳି ସେ ସକଳ ଶୁଭାଙ୍ଗୀ । ପରସ୍ପରେ ହୋଇଲେ ଫିଙ୍ଗାଫିଙ୍ଗି । ଏକ ଉପରେ ପଡ଼ିଲେ ଆରକେ । ଦେଖା ନାହିଁ ସେ ଉତ୍ସବ ନିଲେକେ । ୮୦ । ନୀରେ ପନୀରେ ତଡ଼ି ଉଚ୍ଛୁଳିଲେ । ସ୍ନାନ କରାଇ ନାନା ତୀର୍ଥଜଳେ । ଦିବ୍ୟ କଷାବାସରେ ଅଙ୍ଗ ପୋଛି । ଦେଲେ ପ୍ରଲମ୍ବ କେଶପାଶ ଉଞ୍ଛି । ୮୧ । ନୂଆବାସ ନବ ରତ୍ନାଭରଣ । କରି ଜଗତୀଭୂଷାଙ୍କୁ ଶରଣ । ଧନ୍ୟ ମଣିଲେ ନିଜ ଜନମକୁ । ଘେନି ବାଳା ଅଙ୍ଗୀକାରକ୍ରମକୁ । ୮୨ । ଦେଲେ ଅଣାଇ ମୁଖ୍ୟ

---

୭୩ । ଟାଣିଦେଲେ...“ସୁନ୍ଦର ଚନ୍ଦୁଆ ଟାଣିଦେଇ ତା ଚାରିକୋଣରେ ନୂଆ ଲମ୍ବା କୁଞ୍ଚ ଥୋପ କରି ଓହଳାଇ ଦେଲେ । ସାତଦ୍ୱୀପ—ପ୍ରାଚୀନ ମତରେ ପୃଥିବୀ ସାତଗୋଟି ଦ୍ୱୀପର ସମଷ୍ଟି, ସୂର୍ପ—କୁଲା । ୭୭ । ଅସ୍ତୋକ ଉତ୍ସବ—ବଡ଼ ଉତ୍ସବ । ୭୮ । ଅରାତି—ଶତ୍ରୁ ଓ ରାତିର ଅଭାବ ( ଦିବସ ) । ଶରପୁରବସା ବିଧି—ଶରମନ୍ଦିରରେ ବସିବା ବିଧାନ । ୭୯ । ଶତହୃଦା ଗୋରୀଏ—ବିଜୁଳିପରି ଗୌରାଙ୍ଗୀମାନେ; ସାତ ଶାତକୁମ୍ଭ କୁମ୍ଭମଙ୍ଗଳେ—ସାତଗୋଟି ସୁନା ମାଠିଆରେ । କୁରଙ୍ଗ ମଦସାର—ଉତ୍କୃଷ୍ଟ କସ୍ତୁରୀ । ୮୦ । ଶୁଭାଙ୍ଗୀ—ସୁନ୍ଦରୀ ସ୍ତ୍ରୀ । ୮୧ । ପନୀର—ସୁବାସିତ ଜଳ, ତଡ଼ି—ପ୍ରାନ୍ତ (ସେହି ମନ୍ଦିରର), ଉଚ୍ଛୁଳିଲେ—

ଦ୍ୱିଜକୁଳ । ଧେନୁ ଧରା ହିରଣ୍ୟ ଅନ୍ନ ଚେଳ । ଦାନାନନ୍ତରେ କୁଶେ ତୀର୍ଥୋଦକ । ଘେନି ପୁରୋଧା କଲେ ଅଭିଷେକ । ୮୩ । ଇଷ୍ଟ ଦେବତା ତ୍ରିପୁରସୁନ୍ଦରୀ । ଦରଶନବିଜୟ ବେଳ ଶିରୀ । ଛନ୍ଦ ବିସ୍ତାର ହେବା ଭୟେ ଦବି । ଅତ ବର୍ଣ୍ଣନା କଲି ନାହିଁ କବି । ୮୪ । ଠାକୁରାଣୀଙ୍କ ଚଳନ୍ତି ପ୍ରତିମା । ପର ବିରାଜିଲି ସେ ରାଜଜେମା । ଜୀବ ଅବା ପ୍ରତିବିମ୍ବେ ଘଟିଲା । ସେ କି ଜଗଜ୍ଜନନୀଙ୍କି ଭେଟିଲା । ୮୫ । ଖଞ୍ଜି ପ୍ରସାଦ ଫୁଲମାଳା ଗଳେ । ତହୁଁ ବିଜେ କରାଇଲେ ସଲ୍ଲିଳେ । ଭେଟାଇବାକୁ ନେଇଁ ଜନନୀଙ୍କି । ବରବାରଣରାଜଗମନୀଙ୍କ । ୮୬ । ଦ୍ୱାରେ ପ୍ରବେଶ ହେଲି ଷଣେ ବାଳା । ଦେବୀ ନିଦେଶୁଁ ଅସି ବାଳାମାଳା । ହୁଳହୁଳିମିଶା ଗୀତ ଗାଇଲେ । ଅନ୍ନ ଗୋମୟରେ ନିଉଁଛାଇଲେ । ୮୭ । ଚନ୍ଦ୍ରାନନାର ବନ୍ଦାପନା ବିଧି । ସାରି ସକଳ କାମକଳାନିଧି । ମୃଦୁ ସୁନ୍ଦର ଶ୍ରୀହସ୍ତେ ଜେମାର । ଧରାଇଲେ ଅର୍ଘ୍ୟକୁ ଅର୍ଯ୍ୟମାର । ୮୮ । ଉଭାକଲେ ମାତାଙ୍କ ଅଗେ ନେଇ । ଦେଲେ ଯୋଡ଼ା ପାଟଶାଢ଼ୀ ବଢ଼ାଇ । ଗୁରୁତରମନ୍ଦାକ୍ଷେ ମନ୍ଦେ ହସି । ନିଉଁଛାଲ କରି ଶୋଭାସରସୀ । ୮୯ । ମହୀ ମଥାରେ ଛୁଇଁ ଜୁହାରିଲା । ରମା ଉପମା ମଣ୍ଡଳୀ ସାରିଲା । ତୋଳି ଜନନୀ ସ୍ନେହସ୍ରୋତେ ପଡ଼ି । ମୁଖଚନ୍ଦ୍ରରେ ଚୁମ୍ବି ଗାଢ଼େ ଭିଡ଼ି । ୯୦ । ଶିଶୁ ସମ୍ପୃଁ ବଳାଅଇ ଗେଲେ । ଧରି ଚିବୁକ ଏ ଆଶିଷ ଦେଲେ । ଜେମା ହାତୀ ମୋ ନୟନସମ୍ପତି । ବାବୁ ହୁଅ ପରମ ଭାଗ୍ୟବତୀ । ୯୧ । ଅନୁରୂପ ଚକ୍ରବର୍ତ୍ତୀ କୁମାର । କର ଗ୍ରହଣ କର ଧନ ମୋର । କାଳଯାକ ତୋ ପଦ ଅଲକ୍ତ । ନାଥ ମୁକୁଟ କରୁ ଆରକ୍ତ । ୯୨ । ଜୀଇ ଶରୀର ପର ଚିରକାଳ । ଗୁଣମଣ୍ଡଳେ ମଣ୍ଡ ଦୁଇ କୁଳ । କର

---

ଉଚ୍ଛୁଳାଇଦେଲେ । କଷାବାସ—ରଞ୍ଜିତ ବସ୍ତ୍ର ।୮୩। ଧେନୁ—ଗାଈ, ଧରା—ଭୂମି, ହିରଣ୍ୟ—ସୁନା, ଚେଳ—ବସ୍ତ୍ର, ପୁରୋଧା—ପୁରୋହିତ ।୮୫। ପ୍ରତିବିମ୍ବ—ଛାୟା, ଜୀବ•••ଛାୟା ସଜୀବ ହୋଇ ଜଗଜ୍ଜନନୀ(ଦୁର୍ଗାଙ୍କୁ) ଭେଟିଲା କି ? ୮୬ । ସଲ୍ଲିଳେ—କୌତୁକରେ । ୮୭ । ବାଳାମାଳା—ବାଳିକାସମୂହ । ନିଉଁଛାଇଲେ—ବନ୍ଦାଇଲେ । ୮୮ । ଅର୍ଯ୍ୟମା—ସୂର୍ଯ୍ୟ । ୮୯ । ଗୁରୁତର ମନ୍ଦାକ୍ଷେ—ଅତି ଲଜ୍ଜାରେ । ନିଉଁଛାଳ—ବନ୍ଦନାକର, ଶୋଭାସରସୀ—ସୌନ୍ଦର୍ଯ୍ୟନିଧାନ(ଚନ୍ଦ୍ରକଳା) ୯୨ । କାଳଯାକ••••••ସବୁଦିନ ତୋ ପାଦ ଅଲକ୍ତ ( ଅଲତା ) ନାଥ ମୁକୁଟ ( ସ୍ୱାମୀର ମୁକୁଟ )କୁ ଆରକ୍ତ କରୁ ଅର୍ଥାତ୍ ସବୁଦିନେ ସ୍ୱାମୀ ତୋର ପଦାନତ

ଧସ୍ୱରେ ଧର୍ମକୁ ଅମନ୍ଦ । ହେଲା କୁସୁମୋଦ୍‌ଗମ ନାମ ଛାନ୍ଦ । ୯୩ ।। ନାଗାନ୍ତକ ଯାହାଙ୍କର ବାହନ । ଅରିଦରେ ଅରିଦର ଦହନ । ଦୁର୍ଗା ମାଧବ ପଦଯୁଗଦ୍ୱୟ । ଭଜେ ଶ୍ରୀରାମଚନ୍ଦ୍ର ଶ୍ଳେଷଚୟ । ୯୪ ।

---

## ନବମ ଛାନ୍ଦ

ରାଗ—ରସକୁଲ୍ୟା

( ବେଶ ବର୍ଣ୍ଣନା )

ତଦନନ୍ତରେ ଶୁଣ ସହୃଦୟେ । ଧନେ ଜେମା ଯାମତ୍ରୟ ସମୟେ । ପ୍ରିୟ ବୟସ୍ୟାଙ୍କୁ ଘେନି ସମୀପେ । ବିରାଜ ମୁକୁରମୟ ମଣ୍ଡପେ ସେ । ଲେଖିଲା ଚିତ୍ରିତ ପଟ ଯେ । ଶୋଭାମୃତକୂପ ଜନନୀଙ୍କ ରୂପ ସେ ପଟେ କଲା ପ୍ରକଟ ହେ । ୧ । ଊଣାମାତ୍ର ଗୂଳି ଗିର ପଲକ । ବନାଇଲା ବାଳୀ-ପ୍ରତିପ୍ରତୀକ । ସେହି ଶୋଭା ସେହି ମୃଦୁବୟସ । ଅକ୍ଷୀଣ ଦକ୍ଷିଣ ଦେଶର ବେଶ ସେ । ଲେଖିଲା ବାଳାରତନ ଯେ । ଦେଖି ଦେଖାଇବା ପ୍ରମୋଦ-ଅମଳୁଁ ନୋହୁଥିଲା ସାବଧାନ ଯେ । ୨ । ଏହି ସମୟ ସଉଭାଗ୍ୟବଶେ । ସେ ପୁର ମଣିପ୍ରାଙ୍ଗଣ ପ୍ରଦେଶେ । ରଚିଲା କଟାକ୍ଷଯୁତ କଙ୍କିଣୀ । ଅତରକିତେ ବିଜେ କଲେ ରାଣୀ ତା । ଜାଣି ସେ ଜଗତଶୋଭା ଯେ । ଭିତ୍ତି ପ୍ରତିଫଳ ସଖୀଙ୍କ ମଣ୍ଡଳ ତୁଲେ ହେଲା ବେଗେ ଲୋଭ ଯେ ।୩। ଲଜ୍ଜା

---

ହୋଇ ରହୁ । ୯୩ । ଗୁଣମଣ୍ଡଳେ—ଗୁଣସମୂହଦ୍ୱାରା । ଅମନ୍ଦ—ଉନ୍ନତ, ବଡ଼ । ଅରିଦରେ—ଚକ୍ର ଓ ଶଙ୍ଖଦ୍ୱାରା, ଅରିଦର—ଶତ୍ରୁଭୟ ।

---

ନବମ ଛାନ୍ଦ

୧ । ପଟ—ଚିତ୍ରପଟ, ଶୋଭାମୃତକୂପ—ସୌନ୍ଦର୍ଯ୍ୟରୂପ ଅମୃତର ଆଧାର (ଜନନୀ) । ୨ । ଊଣାମାତ୍ର—କେବଳ, ନ ଥିବା; ଗୂଳି—ଗତି, ଗିର—କଥା, ପଲକ—ପକ୍ଷ୍ମପାତ, ପ୍ରତିପ୍ରତୀକ—ପ୍ରତ୍ୟେକ ଅଙ୍ଗ । ଅକ୍ଷୀଣ—ଯାହା କେବେହେଁ ମ୍ଳାନ ହୁଏ ନାହିଁ, ପ୍ରମୋଦ ଅମଳୁଁ—ଆନନ୍ଦଜନିତ ଉଦ୍‌ବେଗ ହେତୁରୁ । ୩ । ଭିତ୍ତି ପ୍ରତିଫଳ•••ମା'ଙ୍କ ଆଖିରେ ଯେପରି ନ ପଡ଼ିବ ସେଥିପାଇଁ

ଗଦ୍‌ଗଦ ମିଶ୍ରିତ ହାସ । ସୁଧାମୟ କରି ଦଶନବାସ । ବାସରେ ଢଲେ ହେଲେ ଅପ୍ରକଟ । ଝଟ ଝଟ ଦିଶିବାରୁ ସେ ପଟ ଯେ । ଛନ୍ନ କରି ନ ପାରିଲ ଯେ । ମେନାଙ୍କୁ ମୀନାଙ୍କପରନାରୀ ପରି ଜନମୀଙ୍କି ଜୁହାରିଲ ଯେ । ୪ । ଅନିମିଷପୂର୍ବକ ଅଶେଷ ଚୁମ୍ବେ । ଉଲ୍ଲସି ଘଞ୍ଚ ରୋମାଞ୍ଚକଦମ୍ବେ । ତନୁଜାକୁ ବିଜେ କରାଇ କୋଳେ । ତନୁ ଜାକୁ ଜାକୁ ପ୍ରଣୟୀ ବୋଲେ ସେ । ସେ ଶବ୍ଦେ ପଡ଼ିଲ ଦୃଷ୍ଟି ଯେ । ଶବ୍ଦିଲେ ପ୍ରପଞ୍ଚ ଜୟିକୁ ବିରଞ୍ଚି କଲା କି ଏ ଶବ୍ଦ ସୃଷ୍ଟି ଯେ । ୫ । ପଟେ ପଟୁତର ଶବରମାକୁ । ଉତ୍ସଙ୍ଗରେ ଚନ୍ଦ୍ରକଳା ଜେମାକୁ । ଭଉଁ ପ୍ରତିଫଳ ସୁପ୍ରତିମାକୁ । ଗୃହିଁ ନ କଲ ଲାବଣ୍ୟ ସୀମାକୁ ଯେ । ଗୁଣଗଣ ଅନବଦ୍ୟା ଯେ । ବାଳିକା ଅଳୀଙ୍କି ଗୃହିଁ ପଗୃରିଲେ କାହାର ଏ ଶିଳ୍ପବିଦ୍ୟା ଯେ । ୬ । ଏ ଗିରେ କରି କରି କୋରକିତ । ଜଣାଇଲେ ଜଣେ ଜେମା ସଙ୍ଗାତ । ଜନ୍ମୁତ ତୁମ୍ଭର ଉତ୍ସଙ୍ଗ ଖେଳ । ଅଭ୍ୟସ୍ତ କରି ହରିଅଛୁ କାଳ ଯେ । ଏବେ ତ ଏ ଚନ୍ଦ୍ରମୁହାଁ ଯେ । ତାରୁଣ୍ୟ ଜାତ ଲଜରୁ ଶ୍ରୀମୁଖରେ ଭଣ୍ଡ ହୋଇ ପାରୁ ନାହିଁ ଯେ । ୭ । ମୋ ସହି ନ ସହି ବିଶ୍ଳେଷ କ୍ଳେଶ । କରି ତୁମ୍ଭ ପ୍ରତିକୃତିବିନ୍ୟାସ । ପଚ୍ଛୁଡ଼ିବାକାଳେ ଛନ୍ଦ ପଲ୍ୟଙ୍କେ । ଥିବା ପରି ଘେନି ତୁମ୍ଭର ଅଙ୍କେ ସେ । ସୁଖେ ନେବି କାଳ ପୁଣି ଯେ । ବାତ୍ସଲ୍ୟ ପ୍ରମୋଦ ରସଗଦଗଦ ଏହା ଶୁଣି ହେଲେ ରାଣୀ ଯେ । ୮ । ଚନ୍ଦ୍ରାନନ ଗୃରୁ ଶରୁକେ ପାଣି । ଦେଇ କହିଲେ ଏ ସପ୍ରେମବାଣୀ । ଅହା ମୁଁ ମରଇ ତ ପ୍ରାଣବନ୍ଧୁ । ମୋ ଦୁଃଖସଙ୍ଗାଳ ଲାବଣ୍ୟସିନ୍ଧୁ ତୁ । କାଲି ଖେଳୁଥିଲୁ ଧୂଳି ରେ । ଏବେ ଗୁଣବତୀପଣେ ତୋହତୁଲେ ନୋହେ ଭାରତୀକି ତୁଳ ରେ ।୯।

---

କାନ୍ତରେ ଥିବା ଶବ୍ଦ ଅଗରେ ସଖୀମାନଙ୍କ ସହିତ ଠିଆ ହୋଇଗଲ ।୪। ଦଶନବାସ—ଅଧର, ବାସରେ—ବସ୍ତ୍ରଦ୍ୱାରା । ଛନ୍ନ—ଆବୃତ, ଗୋପନ; ମେନା—ପାର୍ବତୀଙ୍କ ଜନନୀ, ମୀନାଙ୍କପରନାରୀ—କାମଶତ୍ରୁ ଶିବଙ୍କ ସ୍ତ୍ରୀ, ପାର୍ବତୀ ।୫।ତନୁଜ—କନ୍ୟା, ତନୁ ଜାକୁ ଜାକୁ—ଦେହକୁ କୁଣ୍ଢାଇଁ କୁଣ୍ଢାଇଁ, ପ୍ରପଞ୍ଚ—ସଂସାର, ବିରଞ୍ଚି—ବିଧାତା । ୬ । ଶବରମା—ଶବର ସୌନ୍ଦର୍ଯ୍ୟ, ଗୁଣଗଣ ଅନବଦ୍ୟା—ଅନନ୍ଦନୀୟ ଗୁଣଗଣଯୁକ୍ତା । ୭ । କରି କୋରକିତ କରି—ହାତ ଯୋଡ଼ି । ୮ । ବିଶ୍ଳେଷ କ୍ଳେଶ—ବିଚ୍ଛେଦ ଦୁଃଖ, ପ୍ରତିକୃତି—ଚିତ୍ର । ଛନ୍ଦ ପଲଙ୍କେ—ହାତୀ ଦାନ୍ତରେ ଆଚ୍ଛାଦିତ ପଲଙ୍କରେ ବା ଉପରେ ଚାନ୍ଦୁଆ ଥିବା ପଲଙ୍କରେ । ଭାରତୀ—

କାହୁଁ ଶିଖିଲୁ ରେ ଶିଖଣ୍ଡକେଶା । ମୋ କୁଳନିଳୟ ନୟନଭୂଷା । ଏତେ ମୃଦୁଳ ବୟସେ ଏମାନ । ଯହିଁ ରହୁ ନାହିଁ ମୋ ଅନୁମାନ ରୁ । ସ୍ନେହ କେତେ ଜାଣୁ ପୁଣି ରେ । ମୋ ଉତ୍ସଙ୍ଗସଙ୍ଗ ବିଚ୍ଛେଦ ଭୟୁଁ କି ଏ ରଚନା ଅଛୁ ନିର୍ମାଣି ରେ ।୧୦। ତହୁଁ ଗୃହିଁ ବାଳ ପ୍ରିୟ ଆଳୀଙ୍କି । ବୋଇଲେ ଆଜ ମୋ ଗଲାମାଳୀକି । ଏହି ଦାକ୍ଷିଣାତ୍ୟ ବେଶରେ ସାଣି । ବିଜେ କରାଇ ମୋ ଛାମୁରେ ଆଣି ଯେ । ନେବ ଯେ ଯାହା ବଧାଇ ଲୋ । ଫରମାସି ଏହା ବିଜେକଲେ ମହାଦେଇ ଦୁଇ ଚୁମ୍ବ ଦେଇ ଯେ । ୧୧ । ତହୁଁ ପ୍ରମୋଦେ ବାଳା ସହଚରୀ । କେହି କାହାକୁ କହୁ. ନ ପାରି । ଅଭିନବ ଚିତ୍ରାସନରେ ମଣ୍ଡି । ହଂସତୂଳୀ ତୂଳ ଗର୍ଭ ଚଉଖଣ୍ଡି ସେ । ଜଣାଇଲେ ସହଚରୀ ଯେ । ଚତୁର୍ଦ୍ଦଶ ଲୋକ ମୋହମନ୍ତ୍ରଧାରୀ ବିଜେହେଉ ସୁକୁମାରୀ ରେ ।୧୨। ଉଣାଉ ଥାଉଁ ନିତି ଶତବାର । ନ କରୁ ଶିରୀଷାଙ୍ଗି ଅଙ୍ଗୀକାର । ଦିଅଇରୁ ବୋଲି ଅଳୀଙ୍କି ଜାଳି । ବାଳିକାରତନ ଥିଲୁ କି ଭାଳି ରୁ । କ୍ଷମାକର ଆମ୍ଭ ଦୋଷ ଗୋ । ତଇଲଙ୍ଗ ବେଶଭଙ୍ଗି ଅଙ୍ଗୀକାରେ ମଣ୍ଡନାବଳୀକି ତୋଷ ଗୋ । ୧୩ । ଏତେ କହି ଧରୁଁ ଭୁଜ ପଇଠ । ହସିକର ମୁଖଚନ୍ଦ୍ରକୁ ହେଠ । କରିବାକୁ ଚନ୍ଦ୍ର ଗର୍ବ କମ୍ପନ । ତା ଉଦୟୁ ଦିଶେ କର ଲୁପନ ସେ । ସେ ଅସନେ ବିରାଜିଲା ଯେ । ବେଶମାନଙ୍କର ଅକୃତାର୍ଥ ଶଙ୍କା ସେ ଦିନଠାରୁ ଭାଜିଲା ଯେ । ୧୪ । ବାଳା ପ୍ରତିବିମ୍ବ ସୁନ୍ଦରପଣ । ସଙ୍ଗରୁ ହେବାକୁ ଅଦରପଣ । ଛାମୁରେ ଧରି କେ ସୁଦରପଣ । ଜଣାଇଲା ଏଣେ ନଜରପଣ । ନର୍ମଲୋଲ ଉର୍ମିଲତା ରେ । କର୍ମବଳ ଦେଇ ବଢ଼ାଅ ଏହାର ଅତିଶୟ ନିର୍ମଳତା ରେ । ୧୫ । ଏ ଗିରେ ଅସ୍ଫୁଟ ମହାହରଷେ । ଉଲ୍ଲସାଇ ଗଣ୍ଡ ସବ୍ରୀଡ଼ ହାସ୍ୟେ । ଅଧ ଗୃହାଣି କର ଅବଲମ୍ବ । ଦେଖି ମୋହିନୀ ନିଜ ପ୍ରତିବିମ୍ବ ସେ । ମନେ କଲା ଏହି ଚିନ୍ତା ରେ । ଏହାଠାରେ ଜୀବ ନିବେଶି ପୁଂଭାବ ନଦେଲା ମୋତେ ବିଧାତା ଯେ ।୧୬।

---

ସରସ୍ୱତୀ, ତୁଳ ରେ—ମୁଁ ତୁଳନା କରେଁ । ୧୦ । ଶିଖଣ୍ଡକେଶା—ମୟୂରପୁଚ୍ଛ ପରି କେଶ ଯାହାର; ମୋ କୁଳ······ମୋ ବଂଶ, ଗୃହ ଓ ଆଖିର ଭୂଷଣ-ସ୍ୱରୂପା । ୧୧ । ସାଣି—ମାର୍ଜିତ ଭାବରେ ସଜାଇ । ୧୨ । ଅଭିନବ······ହଂସପର ତୂଳାଗଦି ପଡ଼ିଥିବା ଚୌକିରେ ନୂଆ ଚିତ୍ରିତ ଆସନ ପକାଇ, ଚତୁର୍ଦ୍ଦଶ ଲୋକ···ଚୌଦଭୁବନ ମୋହ କରିବାର ମନ୍ତ୍ର ଥାଉପରି । ୧୪ । ହେଠ—ନତ, ନମ୍ର; ତା ଉଦୟୁ ଦିଶେ—ଚନ୍ଦ୍ରୋଦୟର ଦାଗ ପୂର୍ବରୁ । ୧୫ । ଅଦରପଣ—ନିର୍ଭୟତା । ବାଳା ପ୍ରତିବିମ୍ବ···ଚନ୍ଦ୍ରକଳାର ପ୍ରତିବିମ୍ବର ସୌନ୍ଦର୍ଯ୍ୟ ସଙ୍ଗରୁ ନିର୍ଭୟ ହେବାକୁ । ନଜରପଣ—ଦୃଷ୍ଟି ଦିଅ । ନର୍ମଲୋଲ ଉର୍ମିଲତା—ହେ କ୍ରୀଡ଼ାଚଞ୍ଚଳ

ଶିଥିଳାଇ ନିଜ କେଶବଲ୍ଲରୀ । ଅଣ୍ଟାଇ କଣ୍ଟା ସେବତୀ ଫୁଲସ୍ରୀ । ନ ଜାଣିଲି ପର ଅତି ଆଦରେ । ପୋତ୍ତୁ ଅମଳାନ ହିନାଗୃଦରେ ସେ । କରେ କସି କଙ୍କତିକା ରେ । ଚିକ୍‌କଣ ଗୁମର ଚଳ ମରୁ ବୋଲି ଗ୍ଲାନି କୁନ୍ଦଳଛିକା ଯେ । ୧୭ । ସରଙ୍ଗ ପଞ୍ଚସୂତ୍ର ଜରି ଡୋରେ । ଅଟକ୍ର ରଖି ଭଣ୍ଡି ନିବଡ଼ରେ । ଗୃମୀକର କିଅଦଳ ତଳକୁ । ବଖି ଲୁଚର ଚତୁରୀ ଚୂଳକୁ ସେ । ପୁଞ୍ଜି ସୁନାଜର ଫୁଲ ଯେ । ଜଗତୀଧୃତଙ୍କ ଝୁଲ୍ଲ ଶିଖାଇଲି ଆପଣେ କି ଝୁଲି ଝୁଲି ଯେ । ୧୮ । ବାମ ଦକ୍ଷିଣେ ସେ ଚୂଳ ମୂଳରେ । ନ ରଖି ଭେଦ ସୁଷମା ତୁଳରେ । ଖଞ୍ଜି କୁନ୍ଦନସୁନା ଦୂବବାଢ଼ । ଅବଶେଷେ ଡୋରେ ନିବଡ଼େ ଭଣ୍ଡି ସେ । ଆରମ୍ଭିଲେ ଯହୁଁ ବେଣୀ ଯେ । ତର୍ଜିତ ହେଲି ପଞ୍ଚବାଣ କମାଣ ଗୁଣୀଭୂତ ଅଳିଶ୍ରେଣୀ ଯେ । ୧୯ । ବେଣୀ ନୁହଇ ସେ କି ଶିଶୁଶେଷ । କରି ସୁରାଳୟୁ ଧରା ପ୍ରବେଶ । ସେ ଯେଣୁ ନ ଥିଲି ବିବେକ ଲେଶ । କଳା ପଡ଼ିଗଲି ନିଜ ଅପଶ ସେ । ହେଲି ଏପରି ପ୍ରତୀତି ଯେ । କେଳିଲୋଳ କଳା କୁଣ୍ଡଳୀ ସ୍ଥର କି ଜପେ ଯାହା ଭଲେ ମତି ଯେ । ୨୦ । କମରେ ସତାରସୁଧାଂଶୁରେଖା । ଖଞ୍ଜିଲେ ଯା ନାହିଁ ନିର୍ଲେକେ

---

ସ୍ୱର୍ଣ୍ଣଲଭିକା । ୧୬ । ଏହିଠାରେ······ଏହି ପ୍ରଭିବମ୍ବରେ ଜୀବନ ଦେଇ ( ସ୍ୱୀଭାବରେ ) ମୋତେ କାହିଁକି ବିଧାତା ପୁରୁଷତ୍ୱ ନ ଦେଲା ? ୧୭ । କେଶବଲ୍ଲରୀ—କେଶଗୁଚ୍ଛ । ଅଣ୍ଟାଇ କଣ୍ଟା······କଣ୍ଟା ସେବତୀ ଫୁଲର ଫୁଲସ୍ତେଲ ଯଥେଷ୍ଟ ଦେଇ । ହିନାଗୃଦରେ—ସ୍ୱଳ୍ପଗୃଦରରେ । ଅମଳାନ—ଅମ୍ଳାନ, ପରିଷ୍କୃତ; କଙ୍କତିକା—ପାନିଅ; ଗୁମର—ଚଅଁର ( କେଶସଙ୍ଗେ ତୁଳିତ) । ଚଳ ମରୁ—( କେଶଗୁଚ୍ଛଠାରୁ ଉଣା ବୋଲି ) ବିରକ୍ତ ହୋଇ ନଷ୍ଟ ହେଉ ।୧୮। ସରଙ୍ଗ······ଜରି ଲାଗିଥିବା ଲାଲ ପାଟସୂତାରେ । ଗୃମୀକର କିଅଦଳ—ସୁନାର କିଅପତ୍ରୀ (ଅଳଙ୍କାର ବିଶେଷ);ଜଗତୀ...ଚହିଳ କୁଢ଼ାତଳେ ସୁନା ଜରିଲଗା ଫୁଲପୁଞ୍ଜିକୁ ଝୁଲାଇବାରୁ ଉତ୍‌ପ୍ରେକ୍ଷା କରାଯାଉଛି, ସେ କଜେ ଝୁଲି ଝୁଲି ଲୋକଙ୍କ ଧୈର୍ଯ୍ୟକୁ କମ୍ପନ ଶିଖାଇଲା କି ? ୧୯ । ଚୂଳ ମୂଳରେ—ଚଉଁରବଡା ଜୁଡ଼ା ମୂଳରେ । ସୁଷମା ତୁଳରେ—ସୌନ୍ଦର୍ଯ୍ୟ ତୁଳନାରେ । ପଞ୍ଚବାଣ କମାଣ······କନ୍ଦର୍ପଧନୁରେ ଗୁଣ ହୋଇଥିବା ଭ୍ରମରମାନେ ତାକୁ ଦେଖି ଡରିଲେ ଅର୍ଥାତ୍ ତା ଅପେକ୍ଷା ସେ ବେଣୀ ଅଧିକ ସୁନ୍ଦର ହେଲା । ୨୦ । ଶିଶୁଶେଷ—ସର୍ପରାଜ ଶେଷଦେବଙ୍କ ସାନପିଲା । ସୁରାଳୟୁ ଧାରା···ମଦଖଟିରେ ପ୍ରବେଶ କରିବାରୁ କଜ ଅକୀର୍ତ୍ତି ହେତୁରୁ କଳା ପଡ଼ିଗଲା କି ? କେଳିଲୋଳ······କ୍ରୀଡ଼ାସକ୍ତ କଳା ସାପମାନେ ଯାହା ସେ ବେଣୀକୁ ଜପୁ

ରେଖା । ଦରଶ କ୍ଷୟ ଭୟ ମୟ ଚାଲେ । ବେଣୀ କୁହୁ ପ୍ରବାହକୁ ନାଶଲେ ସେ । ସେଥିଲେ କି ଶିଘ୍ର ଦନ୍ତୁ ରେ । ପ୍ରାନ୍ତେ ବଢ଼ ଚୂନୀ ଗୁଣ୍ଡିଫୁଲ ଛନ୍ଦବନ୍ଧ ସାଜିଲେ ସୁତନ୍ତୁ ଯେ । ୨୧ । ଲଲାଟପଟ ନିକଟକୁ ବୋଲି । ରହିଲ ମୋତିପୁଞ୍ଜୀ ଛକ ଜାଲି । ମଣିସିଗିଡ଼ି ଚନ୍ଦ୍ରମା ଅର୍ଯମା । କେଶ ଅମାରେ ହେବା ପର ଜମା ସେ । ଗୁହିଁ ଚମତ୍କାର ଖଞ୍ଜା ଯେ । ଭଲ ମନ୍ଦ କିବା ଅଛି ଏ ବିଗ୍ରହରେ ଭାବି ହେଲେ ପୁଞ୍ଜା ପୁଞ୍ଜା ଯେ । ୨୨ । ବିନ୍ଦୁ ଝାଲରିଅ ଅଳକେ ଗୁନ୍ଥି । ଖଞ୍ଜି ଦିଅନ୍ତେ ମୁକୁତା ସୀମନ୍ତୀ । ନିଜଗତି ଧୃତ ଦେବାକୁ ମନ୍ଥି । ଫିଟିଲା ହାତ ହରପରପନ୍ଥୀ ସେ । ମଉଳମଣି ଉପ୍ରରୁ ଯେ । ନବରତ୍ନ ଚିତା ସପତ ମୁକୁତା ଝୁମ୍ପି ଦେଇ କଲେ ଗୁରୁ ଯେ । ୨୩ । ସିତାଷ୍ଟମୀ ନିଶାନାଥକୁ ହଟି । ଜିଣିଲା ତା ଭାଲପଟ ଯାହାଟି । ସପ୍ତ ମୁକୁତା ଛଳେ ସପ୍ତ ଋଷି । ସମାଧାନ ପାଇ ଅବଶ୍ୟ ଆସି ବସି । ଥରଲେ କି ଭୟ ବହି ଯେ । ଯୋଡ଼ା ଗନ୍ଧସାର ପାଟୀ ଭରୁଅର ଝିଙ୍କା ହେବା ସ୍ଥଳ ଗୁହିଁ ଯେ । ୨୪ । ଶ୍ରିତ ବାଞ୍ଛିତ ଫଳ ନାନାଜାତି । ଦେବାରେ ତ ବାଳା ସୁରବ୍ରତତୀ । ମୋତି ସୀମନ୍ତୀ ତା କୁସୁମ କେଶ । ମୂଳେ ଅଳି ଭଲି ଖଞ୍ଜିଲେ ପଶି ସେ । ଜାମ୍ବୁନଦ ଅମ୍ବକସି ଯେ । ପେଣ୍ଡି ପେଣ୍ଡି ହୋଇ ମଣ୍ଡିବାରୁ ସେ କି ବିରାଜିଲା ମଦାଳସୀ ଯେ । ୨୫ । ଗାଙ୍ଗେୟ

---

କରିବାକୁ ଇଚ୍ଛା କଲେ ତାହା କି ସ୍ଥିର । କି ସାମାନ୍ୟ । ୨୧ । ସତାରସୁଧାଂଶୁ- ରେଖା—ତାରକା ସହିତ ଖଣ୍ଡଚନ୍ଦ୍ର; ଦରଶ—ଦର୍ଶ, ଅମାବାସ୍ୟା; କୁହୁ—ଅମାବାସ୍ୟା; ଅମାବାସ୍ୟା ତିଥି କ୍ଷୟ ହେଉଥିବାରୁ ଚନ୍ଦ୍ରତାରାମାନେ ଚନ୍ଦ୍ରକଳାର ବେଣୀରୂପ ଅମାବାସ୍ୟାର ବିସ୍ତାରକୁ ତା ପିଛଦନ୍ତୁ ଅଶ୍ରୟ କଲେ କି ? ପ୍ରାନ୍ତେ—ବେଣୀଶେଷରେ; ଛନ୍ଦବନ୍ଧ—ଛନ୍ଦପ୍ରକାର । ୨୨ । ମଣିସିଗିଡ଼ି—ରତ୍ନରେ ନିର୍ମିତ ମସ୍ତକର ଅଳଙ୍କାରବିଶେଷ [ ଚନ୍ଦ୍ର ଓ ଅର୍ଯମା ( ସୂର୍ଯ୍ୟ ) ରୂପ ] କେଶରୂପ ଅମାବାସ୍ୟାରେ ଏକନ୍ଦ ଅଛନ୍ତି ( ଅମାବାସ୍ୟାରେ ଚନ୍ଦ୍ର ସୂର୍ଯ୍ୟ ଏକ ରେଖାରେ ଅଛନ୍ତି); ମୋତିପୁଞ୍ଜ ଏଠାରେ ନକ୍ଷତ୍ର ସ୍ଥାନୀୟ । ୨୩ । ହରପରପନ୍ଥୀ—କନ୍ଦର୍ପ; କନ୍ଦର୍ପ ହାତକୁ ମେଲିଲା କି ? ମଉଳମଣିଉପ୍ରରୁ—ମଥାମଣି ଆଗକୁ ରହିବାରୁ । ୨୪ । ସିତାଷ୍ଟମୀନିଶାନାଥ—ଶୁକ୍ଳପକ୍ଷର ଅଷ୍ଟମୀ ଚନ୍ଦ୍ର; ସମାଧାନ—ଅସ୍ଥାନ; ଯୋଡ଼ାଗନ୍ଧସାର……ଦୁଇ ଭ୍ରୂଲତା ଉପରେ ଦିଆଯାଇଥିବା ଚନ୍ଦନପାଟିକୁ ଖଣ୍ଡା ବୋଲି ମନେ କରି ଭୟରେ ଥରିଲେ କି ? ୨୫ । ଶ୍ରିତବାଞ୍ଛିତ—ଚନ୍ଦ୍ରକଳା

ସଙ୍ଗ ସକାଶରୁ ଚାରୁ । ମଣିକର୍ଣ୍ଣିକା ସମ୍ପର୍କ ପ୍ରଚାରୁ । କବିମତକ୍କ ଏମନ୍ତ ଅଭାସେ । ବାଳାବଦନ ବାରାଣସୀ କି ସେ ଯେ । କାହିଁ ନାହିଁ ସେ ମାଧୁରୀ ଯେ । ଗଣ୍ଡଯୁଗ ଚୁମ୍ବି ଭଲ ମାନିଲା ସେ କଲମାଯୁଗଳୀ ଶିରୀ ଯେ । ୨୬ । ଗଣ୍ଡେ ତ ମକରୀଜାଲା ଜାଲୟ । ଶ୍ରୀମୁଖ ଲାବଣ୍ୟ କମଳାଶୟ । ମାଜିଦେବା ମୃଦୁ ସମୀର ବାଜି । ଏକ ପ୍ରଦେଶେ କି ଗଲେ ଅଭିଜ୍ଞ ଯେ । ଚୂର୍ଣ୍ଣକେଶଶଇବାଳ ଯେ । ମନ୍ଦାକ୍ଷ ପ୍ରମୋଦ ରୋଚନ ଲୋଚନଯୁଗ ଯହିଁ ନୀଳୋତ୍ପଳ ଯେ । ୨୭ । ସୁନା ଭୁଜଙ୍ଗ ମଲ୍ଲୀ ଅବତଂସ । ଅବମ୍ବିଲ୍ଲ ଭଲ୍ଲ ବିବେକ ଧ୍ୱଂସ । ହେଲେ ଲୋଚନ ଦୁଃଖୀ ଶିଳାଟଙ୍କ । ବେଣୀଲମ୍ଫୁଲ ଝଲକା ତାଟଙ୍କ ସେ । ଅଂସଲମ୍ବୀ ଚାରୁ ଝୁମ୍ପା ଯେ । ଗହବ ସିନ୍ଧୁବାର ମୋତିମାଳିକା ଦୁହେଁ ହେଲେ ଦର କମ୍ପା ଯେ । ୨୮ । ହାଟକରୁଚି ଜଣିବାକୁ ଯାହା । ହଟ କରୁଅଛୁ ସେ ଟଙ୍କ ଦେହା । ସୁବର୍ଣ୍ଣାବଳି କେଳିନିକେତନ । ସୁବର୍ଣ୍ଣପ୍ରଭୁଜା ତା ଅପଘନ ଯେ । ଏଣୁ ବିଚାରୁ ଶରଣ ଯେ । ସୁବର୍ଣ୍ଣାବଳୀ ଭୂଷଣଗଣ ଅସି କଲେ କି ଅନୁସରଣ ଯେ । ୨୯ । ଝୁଲ କପର ମାନିବ ଏ

---

ଅଶ୍ରିତମାନଙ୍କୁ ବାଞ୍ଛିତ ଫଳ ଦେବାରେ ସୁରବ୍ରତତୀ ( କଳ୍ପଲତା ) ତୁଲ୍ୟ; ମୋତିରେ ନିର୍ମିତ ସୀମନ୍ତ—ସିନ୍ଥି ( ଅଳଙ୍କାର ବିଶେଷ ) ସେ ଲତାର କୁସୁମଗୁଚ୍ଛ । ଜାମ୍ବୁନଦ ଅମ୍ବକସି—ସୁନା ଅମ୍ବକସି ( ଅଳଙ୍କାର ବିଶେଷ ) । ୨୬ । ଗାଙ୍ଗେୟ—ସୁନା ଓ ଗଙ୍ଗା ସମ୍ବନ୍ଧୀୟ; ମଣିକର୍ଣ୍ଣିକା—ମଣିରେ ନିର୍ମିତ କର୍ଣ୍ଣଭୂଷଣ ଓ କାଶୀର ପ୍ରଧାନ ତୀର୍ଥ; କଲମା ଯୁଗଳଶିରୀ—କର୍ଣ୍ଣ ନିକଟବର୍ତ୍ତୀ ବକ୍ରାକାର କ୍ଷୁଦ୍ର କେଶ ଭଙ୍ଗୀର ଶୋଭା । ୨୭ । ମକରୀ—ଗଣ୍ଡରେ ଚିତ୍ରିତ ମକରାକୃତି ଚିତ୍ର ଓ କୁମ୍ଭୀର; ଲାବଣ୍ୟ କମଳାଶୟ—ଲାବଣ୍ୟ ଲକ୍ଷ୍ମୀଙ୍କର ସ୍ଥାନ ଏବଂ ଲାବଣ୍ୟ ରୂପ ଜଳାଶୟ; ମାଜିଦେବା—ଘଷିଦେବା; ଚୂର୍ଣ୍ଣକେଶରୂପ ଶୈବାଳ (ଶିଉଳୀ); ମନ୍ଦାକ୍ଷ—ଲଜ୍ଜା; ପ୍ରମୋଦ—ଆନନ୍ଦ; ରୋଚନ—ପ୍ରୀତିପ୍ରଦାନ । ୨୮ । ସୁନାଭୁଜଙ୍ଗ (ସର୍ପ) ଲଗା ମଲ୍ଲୀକାବତଂସ (ମଲ୍ଲିକଢ଼ୀନାମକ) କର୍ଣ୍ଣଭୂଷଣ; ହେଲେ···ତାହାର ଚକ୍ଷୁ ଦୁଃଖୀ ଅର୍ଥାତ୍ ବିରହୀ ପକ୍ଷରେ ଶିଳାଟଙ୍କ ( ପଥରକଟା ଟାଙ୍ଗିଆ ଅସ୍ତ୍ର ) ସ୍ୱରୂପ ହେଲେ । ତାଟଙ୍କ—କାପ; ଅଂସଲମ୍ବୀ—କାନ୍ଧଯାଏ ଲମ୍ବି ଥିବା; ଗହବ—ଗହଳିଆ; ସିନ୍ଧୁବାରମୋତି—ସମୁଦ୍ରଜାତ ମୋତି । ୨୯ । ହାଟକରୁଚି—ସୁନାର କାନ୍ତି; ସୁବର୍ଣ୍ଣାବଳି—ସୁନ୍ଦର ଅକ୍ଷର ସମୂହ ବା ବିଦ୍ୟାସମୂହ; ସୁବର୍ଣ୍ଣପ୍ରଭୁଜା···ଉତ୍କୃଷ୍ଟ ଜାତୀୟ ରଜାଙ୍କଠାରୁ ଜନ୍ମ ଯାହାର; ସୁବର୍ଣ୍ଣାବଳୀ—

ଭାବେ । ବୁଲ୍ଲିକ ଖଞ୍ଜିଦେଲେ ଗଜରବେ । ବେଢ଼ ତ ପଦ୍ମକୁରୁବନ୍ଧ ଅନ୍ତେ । ଅନ୍ତ ମୁକୁତାରୁ ହୋଏ ପରତେ ସେ । ଚଞ୍ଚୁପୁଟେ ସୁନା କୀର ଯେ । ସ୍ଥୂଳ ଲବଲୀଫଳ ଦୋଳା କରୁଛୁ ବିମୋହକୁ ପିନାକୀର ଯେ । ୩୦ । ଅଥ ରଜନୀନାଥମୁଖୀ ନାସା । ନଥର ଯୋଗେ ମଣ୍ଡିଲା କେ ଯୋଷା । ନ ଥର ବୋଲି ଦେଲେହେଁ ଖାତର । ପଥର ହେଲେ ସେ ସଚରାଚର ଯେ । ନଥର ଥିଲା ହେଲା ଯେ । ପଥରମ୍ୟକାରୀ ବାଳା ପଦକଞ୍ଜ ବଶ ମୁଁ ବୋଲି ଚିନ୍ତିଲା ଯେ । ୩୧ । ଉରୋଜସ୍ୱୟମ୍ଭୂ ଶମ୍ଭୁଯୁଗଳୀ । ସେବାରେ ହାଜର ହେବାକୁ ଭାଳି । ଖଞ୍ଜିଲେ ନାନାବିଧ ମାଳିମାନ । କ୍ରମରେ ଜଗିଲେ ଯେ ଯାହା ସ୍ଥାନ ସେ । ବାଳାକଣ୍ଠକମ୍ବୁ ଦେଖିଣ ଯେ । ଯୋଡ଼ି ଯୋଡ଼ି କରଯୁଗ ନିରନ୍ତର କି ଭାବେ ରହିଲେ ମାଳି ଯେ । ୩୨ । ନାୟିକାମଣି ବାହୁମୂଳ ସ୍ତନ । ରାଜିକା ପାଇ କାନ୍ତିରେ ଶୋଭନ । ଜବ ବୁଟା କଞ୍ଚୁ କସିଦା ପଡ଼ି । କୁସୁମ୍ଭାଦ୍ରବେ ଯାଇ ଅଛି ଜଡ଼ି ସେ । ଦଶିଲା ଏମନ୍ତ ତୋରା ଯେ । ପ୍ରଳୟ କାଳ କ୍ରୋଧାରୁଣ ଶମ୍ଭୁର ମସ୍ତକ ଚକଆ ପରା ଯେ । ୩୩ । ସୁଗ୍ରୀବାଡ଼ମ୍ବର ସମୀପେ ରହି । ଅଙ୍ଗଦ ଶରଣ ନ ଲଭି କାହିଁ । ବାଳୀର ବାହୁଛାୟାକୁ ଭଜିଲା । ଭଜିଲା ନାହିଁ ତ ଭଲା ମଜିଲା ସେ । ମଣି ଥିବାରୁ ବହୁତ ଯେ । ତାରାସୁତର ସାନ୍ନିଧ୍ୟବଶୁଁ ତାର ଗୁଣ ତ ଅପରିମିତ ଯେ । ୩୪ । ଜେମାମଣି ମଣିବନ୍ଧରେ ଆଳୀ । ଖଞ୍ଜିଲେ ତଗା ଖଞ୍ଜି କଡ଼ିଆଳୀ । ସମୀପେ ସିଆକାଠି ଦେଲେ ପାଞ୍ଚି । ନବରତନ ସେବତୀ ପହଞ୍ଚି ସେ ।

---

ସୁନ୍ଦର ରୂପସମୃଦ୍ଧ ଥିବା । ୩୦ । ବୁଲ୍ଲିକ—ଏକପ୍ରକାର ଦଣ୍ଡି, ବେଢ଼—ଗୃହପାଖରେ ବେଷ୍ଟନ; ପଦ୍ମକୁରୁବନ୍ଧ—ଏକପ୍ରକାର ପଦ୍ମରାଗମଣି; ଚଞ୍ଚୁପୁଟ—ଥଣ୍ଟ; ସୁନାକୀର—ସୁନାଶୁଆ; ଲବଲୀଫଳ—ନରକୋଳି; ପିନାକୀ—ଶିବ । ୩୧ । ରଜନୀନାଥ-ମୁଖୀ—ଚନ୍ଦ୍ରମୁଖୀ, ନଥ—ନୋଥ (ନାକର ଅଳଙ୍କାରବିଶେଷ); ନ ଥର—କମ୍ପ ନାହିଁ ଓ ୯ ଥର, ଖାତର ଦେଲେ—ଦମ୍ଭ ଦେଲେହେଁ; ପଥରମ୍ୟକାରୀ··· ବାଠକୁ ସୁନ୍ଦର କରୁଥିବା ତାହାର ପାଦପଦ୍ମର ମୁଁ ଅଧୀନ ଅର୍ଥାତ୍ ସେ ଚାହିଁଲେ ମୁଁ ହାଲିବି । ୩୨ । ଉରୋଜ—କୁଚ, ସ୍ୱୟମ୍ଭୂ ଶମ୍ଭୁ—ସ୍ୱଭାବଜାତ ଶିବ, ମାଳି—ହାର ଓ ମାଳୀଜାତୀୟ ସେବକ, କଣ୍ଠକମ୍ବୁ—କଣ୍ଠରୂପ ଶଙ୍ଖ । ୩୩ । ରାଜିକା—କାଞ୍ଚୁଲା, କୁସୁମ୍ଭାଦ୍ରବ—କୁସୁମ ଫୁଲ ବର୍ଣ୍ଣର ତରଳ ରଙ୍ଗ । ୩୪ । ସୁଗ୍ରୀବା-ଡମ୍ବର—ସୁନ୍ଦର ଗ୍ରୀବାଦେଶର ଶୋଭା, କପିରାଜ ସୁଗ୍ରୀବର ଐଶ୍ୱର୍ଯ୍ୟ; ଅଙ୍ଗଦ—ବଳୟ ଓ ତାରାପୁତ୍ର, ବାଳୀ—ଚନ୍ଦ୍ରକଳା ଓ କପିରାଜ ବାଳୀ,

ହେଲା ଶୋଭା ଅଙ୍ଗକୋଟ ଯେ । ପଞ୍ଚସଂଖ୍ୟକରେ ଖଞ୍ଜିଲେ ସୁସଞ୍ଚ-ଇନ୍ଦ୍ରନୀଳମଣି କାଚ ଯେ । ୩୫ । ଭାବିନୀଭୁଜ ଭାର ହେବା ଡରୁ । ଭୂରିଭୂଷଣ ନ ଖଞ୍ଜିଲେ ଭୀରୁ । କୁଞ୍ଜରଗମନା କେବଳ ବଳେ । କଞ୍ଜ ମଞ୍ଜୁଳ ଗୁଞ୍ଜର ଯୁଗଳେ ସେ । ମଣ୍ଡିଲା କାଚ ଅନ୍ତକ ଯେ । କାଦମ୍ବିନୀକ ନୋହି ବନ୍ଦୀ ହେଲା ତହିଁ ସଜ୍ଜଦର୍ପସାରଯାକ ଯେ । ୩୬ । ଅଙ୍ଗୁଳି କଳିକା ନଖାଗ୍ର ଶିଖା । ସୁନ୍ଦର ଭାବ ଶୁଚିରସ ଝର । ଦଶଧାର ହୋଇ ପଡ଼ିବ ବହି । ଏହି ଶଙ୍କାରେ କେହି ପ୍ରିୟସଖୀ ଯେ । ମୁଦି ଦେଲା ଯନ୍ତ୍ର କରି ଯେ । ହେଲା କୁସୁମିତ ପଞ୍ଚଶାଖାଯୁତ ମନ୍ଦାରପଲ୍ଲବ ପରି ଯେ । ୩୭ । ଯା ନିକଟେ ହଂସ କରୁଛି ଲୀଳା । ସେ ଚରଣ ଶୋଣକଞ୍ଜେ କେ ବାଳା । ମଞ୍ଜୁରବ ଶୁଣି ହେବାକୁ ସୁଖୀ । ମଞ୍ଜୀରଯୋଗେ ପୂତ କରି ଅଖି ଯେ । ରଚିଲା ବଙ୍କିଆ କଟି ଯେ । ସୁରମହୀମଳଯଜ ଲତାମୂଳ ଭଜିଲା କି ଗୁଜଭୋଗୀ ଯେ । ୩୮ । ଦ୍ୱିଗୁଣ କଙ୍କିଣୀ ଖଞ୍ଜି ପଉଞ୍ଜୀ । ଦେଇ ସେ ଖଞ୍ଜରୀଟ-ନୟନା ଖଞ୍ଜି । ଝୁଣ୍ଟିଆ ପ୍ରମୁଖ ଅଙ୍ଗୁଳିଭୂଷା । ଖଞ୍ଜି ମନେ କଲେ ଏହି ପ୍ରଶଂସା ସେ । ଜଙ୍ଗମ ହେମ ନଳିନ ଯେ । ନିଜ ଜାତ ବ୍ରଜ ଜଣିମାରୁ ଅଜ ଲଭିଲା କନକସ୍ଥାନ ଯେ । ୩୯ । ପଙ୍କଜାକୃତ ହେମପାତ୍ରେ ଦଳି । ଯାବକ ରଖିଥିଲା ଯେଉଁ ଆଳୀ । ସ୍ୱକର ମଣ୍ଡି ବାମା ବାମ ପାଦେ । ଦକ୍ଷିଣ ଚରଣ ଗୃହେଁ ପ୍ରମୋଦେ ସେ । ଲଭି ସେ ଭାଜନ ଭ୍ରାନ୍ତ ଯେ । ଅଲେଖ୍ୟଶଳାକା ଗୃଳନ୍ତେ ବାଳିକା ହସିଦେଲା ମଥା ପୋତି ଯେ । ୪୦ । ଅଳୀ ହସି କରତାଳିକ ଦେନି । ଜଣାଇଲେ ଅରେ

---

ତାଡ଼ସୂତ—ଅଙ୍ଗଦ । ୩୫ । ମଣିବନ୍ଧ—କଚଟି, ଢଗା, କଡ଼ଅଳୀ, ସିଅକାଠୁ ନବରତ୍ନ ନିର୍ମିତ ସେବତୀ ଫୁଲ ପରି ପଦାର୍ଥ ( ପଇଁଖଡ଼ୁ )—ଏଗୁଡ଼ିକ ହସ୍ତାଳଙ୍କାର; ସୁସଞ୍ଚ—ସୁନ୍ଦର । ୩୬ । ଭାବିନୀ—ଯୁବତୀ ( ଚନ୍ଦ୍ରକଳା ), ଭୂରି-ଭୂଷଣ—ବହୁ ଅଳଙ୍କାର, ବଳେ—ନିଜ ଇଚ୍ଛାରେ, କଞ୍ଜମଞ୍ଜୁଳ—ପଦ୍ମପରି ସୁନ୍ଦର, ଗୁଞ୍ଜର ଯୁଗଳ—କୁଞ୍ଜର ଖଡ଼ୁ ଦିଓଟି, କାଦମ୍ବିନୀକ—ଭୟରେ ପଳାୟିତ । ୩୮ । ହଂସ—ହଂସକ, ମଲ; ଚରଣଶୋଣକଞ୍ଜେ—ପାଦରୂପ ରକ୍ତପଦ୍ମରେ; ମଞ୍ଜୀର—ନୂପୁର, ବଙ୍କିଅ—ପାଦାଳଙ୍କାରବିଶେଷ, ସୁରମହୀ—ସ୍ୱର୍ଗ, ମଳୟଜ-ଲତା—ଚନ୍ଦନଲତା, ଭୁଜଭୋଗୀ—ସର୍ପରାଜ ବାସୁକି । ୩୯ । ଦ୍ୱିଗୁଣକଙ୍କିଣୀ—ଦିନଗୁଣିଆଁ ଘାଗୁଡ଼ିଲଗା ଅଣ୍ଟାର ଅଳଙ୍କାର, ପଉଞ୍ଜୀ—ପଇଁଞ୍ଚି ନାମକ ଅଳଙ୍କାର, ଜଙ୍ଗମହେମନଳିନ—ଚଳନ୍ତା ସ୍ୱର୍ଣ୍ଣପଦ୍ମ ( ଚନ୍ଦ୍ରକଳାର ପାଦ ) । ୪୦ । ଯେଉଁ ସଖୀ ପଦ୍ମାକୃତି ସୁନା ପାତ୍ରରେ ଅଲତା ରସ ରଖିଥିଲା,

ବରବର୍ଣ୍ଣିନ । ସମ୍ପାଦନରୁ ଭଲ ଲବଣ୍ୟଭୂତ । ଭରମି ନ ଯିବ କାହାର
ମତ ଯେ । ଏହାର କି ଦୋଷ ହେଲା ଯେ । କାହାର କରବ
କଞ୍ଜସୁତ ତତେ ଯାହାର ସୁକୃତ ଭଲ ରେ । ୪୧ । ଏ କଉତୁକ ରସ
ବରଷାରେ । ପଡ଼ି କେ କାହା ଉପରେ ରସାରେ । ପଡ଼ି ସତ୍ୟ ଲକ୍ଷା
ପାଣୀ ରସରେ । ଶଙ୍ଖ ଗୃତୁର୍ଷ୍ଣୀଭର ପ୍ରକାଶରେ । ସାଜିଲେ ପାଦଯୁଗଳୀ
ଯେ । ସୁନାବଲ୍ଲରୀ ପଲ୍ଲବ ରଚିଲା କି ସୁରଭି ଶିଗ୍ରମଣ୍ଡଳ ଯେ । ୪୨ ।
ଶାଢ଼ୀଲାଗିକି ସଜାଡ଼ି ସମ୍ଭାର । ଭଗ୍ନ କଲେ ଧରି ଶୁଭାଙ୍ଗୀ କର । ବ୍ରୀଡ଼ା
ଲୋଲନେତ୍ର ନୀଡ଼ାରୁ ଜାଣି । ଦୂର ହେଲେ କେତେ କୁରଙ୍ଗେକ୍ଷଣୀ ସେ ।
ଲାଗି ହେଲା ମେଘାମ୍ବର ଯେ । ସୁମ ଲତିକାରେ ମିନା ଫୁଙ୍କିଲା କି କଉତୁକୀ
ବେଦବର ଯେ । ୪୩ । ମାରକ୍ର ଆକ୍ର ଉଜଲରେ ପିନ୍ଧ । ପୁରୁଷାୟିତ
ବେଶ ମାବୀ ବାନ୍ଧ । ପଦାଞ୍ଚଳଚୁମ୍ବୀ ଅଞ୍ଚଳ କୁଞ୍ଚ । ଚଞ୍ଚଳାକ୍ଷୀ କରେ ଭଙ୍ଗି
ସୁସଞ୍ଚ ସେ । ଖଞ୍ଜିଲେ କମରପଟ୍ଟା ଯେ । କମର ସୁଷମା ଅମରପୁଙ୍ଗବ
ସ୍ତୋମର ଧଇର୍ଯ୍ୟପଟ୍ଟା ଯେ । ୪୪ । ବାର ଷୋଳସୋର ଜାଲି ମଞ୍ଜୁଳ ।
ତ୍ରିଗୁଣ ହେମକଙ୍କଣୀ ବାଗୃଳ । ରସନାଦାମ ତହୁଁ ଦେଲେ ବାନ୍ଧ ।
ଏହି ଉପମାନ ରହିଲା ରୁନ୍ଧ ସେ । ନୃହଇ ନିତମ୍ବବିମ୍ବ ଯେ । ମଦନ-
ବିଜୟୁଉଣ୍ଡିମଯୁଗଳୀ ହେଲା ମଣ୍ଡନାବଲମ୍ବ ଯେ । ୪୫ । ଯାହା ଲବଣ୍ୟ
ସ୍ୱାଦସୁଧା ଅଶେ । ଦଇବ ଖଞ୍ଜିଛନ୍ତି ରସନାପାଶେ । ସୂକ୍ଷ୍ମ ନେନେ ତହିଁ ଜଗି

---

ସେ ବାମ ପାଦରେ ଅଳତା ଦେଇସାରି ଦକ୍ଷିଣ ପାଦକୁ କ୍ରମରେ ସୁନା
ଅଳତାପାନ ଭ୍ରବ ତହିଁରେ ଆଲେଖ୍ୟଶଳାକା (ଚିତ୍ର କରୁଥିବା ବା ଅଳତା ଦେଉ
ଥିବା କାଠି ବା ତୂଳୀ) କୁ ବୁଡ଼ାଇବାକୁ ଚେଷ୍ଟା କରିବାରୁ ଚନ୍ଦ୍ରକଳା ମୁଣ୍ଡପୋଛ
ହସିଦେଲା । ୪୧ । ଲବଣ୍ୟଭୂତ—ସୌନ୍ଦର୍ଯ୍ୟସମ୍ପତ୍ତି, କଞ୍ଜସୁତ—ବ୍ରହ୍ମା, ପ୍ରଜାପତି ।
୪୨ । ଏ କୌତୁକରୂପ ରସ (ଜଳ) ବର୍ଷାରେ, ରସା—ପୃଥିବୀ, ସୁନାବଲ୍ଲରୀ—
ସ୍ୱର୍ଣ୍ଣଲତା (ଚନ୍ଦ୍ରକଳାର ଦେହ), ପଲ୍ଲବ—(ରକ୍ତବର୍ଣ୍ଣ) ନୂଆପତ୍ର, ସୁରଭିଶିଗ୍ର-
ମଣ୍ଡଳୀ—ବସନ୍ତ ଶୋଭାରାଶି । ୪୩ । ସମ୍ଭାର—ଆୟୋଜନ, ଶୁଭାଙ୍ଗୀ—ସୁନ୍ଦରୀ,
ବ୍ରୀଡ଼ା—ଲଜ୍ଜା, ମେଘାମ୍ବର—ଏକପ୍ରକାର ଶାଢ଼ୀ, ସୁମଲତିକା···କୌତୁକୀ ବିଧାତା
ସୁନାଲତାର ମିନା ଫୁଙ୍କିଲା ଅର୍ଥାତ୍ ରତ୍ନ ବସାଇବା ରୂପ ଶିଳ୍ପଚାତୁରୀ ଦେଖାଇଲା
କି ? ୪୪ । ମାରକ୍ରଆକ୍ରଉଜଲରେ—ଠିକ୍ ଢେଙ୍କିଲିଙ୍କ ଢଙ୍ଗରେ । ପୁରୁଷାୟିତ—
ବିପରୀତରତି, ମାବୀ—କଟିବସ୍ତ୍ରର ଗଣ୍ଠି, ସୁସଞ୍ଚ—ଯତ୍ନରେ, କମର—କଟି, ଅମର-
ପୁଙ୍ଗବସ୍ତୋମର—ବଡ଼ ବଡ଼ ଦେବତାସମୂହର । ୪୫ । ବାଗୃଳ—ଶବ୍ଦାୟମାନ,

ଥିବାର । ଘେନାଲେ ହେଲା କେଉଁ ଚମତ୍କାର ସେ । ତହୁଁ ସେ ଆସନେ ନେଇ ଯେ । ବିଜେ କରାଇଲେ ସେ ମୃଗଲୋଚନା ତିଳକ ରଚନା ପାଇଁ ଯେ । ୪୬ । ମଞ୍ଜୁଳନୟନ ଖଞ୍ଜନ ଯୁଗେ । ଲକ୍ଷ୍ମୀ ମନୋହର ଅଞ୍ଜନ ଯୋଗେ । ତା ଡୋଳାମସୀର ମୟୂଖରେଖା । କର୍ଣ୍ଣାକାଶ ତୁଲେ ହେଲା କି ସଖା ସେ । କି ତା ନେତ୍ର ଦୀର୍ଘ ଭାବ ଯେ । ଲକ୍ଷ୍ମୀବ୍ୟାଜନୀଲ ଦଣ୍ଡରେ ମାପିଲା ସରସୀରୁହସମ୍ଭବ ଯେ । ୪୭ । ବଶିଷ୍ଠାଦ୍ୱୟିତ ମତାନୁସାରୀ । ଚଳନ୍ତେ ସୁନ୍ଦର ସିନ୍ଦୂରଶିରୀ । ସୁର୍ଭାନୁରଦ ବ୍ରଣରେଖା ପାଇ । ଦରେ ପୂର୍ଣ୍ଣ ସୁଧାଙ୍କର ପଳାଇ ସେ । କେଶ ଜଳଦ ଗହନେ ଯେ । ହେବାରୁ ପ୍ରବେଶ ଅର୍ଦ୍ଧଅଙ୍ଗ ଦେଶ ଦଶେ କି ପ୍ରତୀତ ମନେ ଯେ । ୪୮ । ନିର୍ମିଣିଲେ ବିନ୍ଦୁ କସ୍ତୁରୀ ବୋଳେ । ଚନ୍ଦନ ନିତ ମଲ୍ଲୀ ତାହା ତୁଲେ । ଲେଖିଲେ କୁରଙ୍ଗମଦ ଅଖିଅ । ଦେଖିବା ଜନ ବିବେଚନାଖିଅ ସେ । ରଦବାସେ ମସୀମାଛି ଯେ । ଶବୁଙ୍କେ ମକରୀ ରୂପକ ମକରୀ ଯୋଗାଉଲେ ହାର ବାଛି ଯେ । ୪୯ । ସ୍ଥୂଳ ମୁକୁତା ଘନସାରମାଳୀ । ଗହବ ଗୁନ୍ଥା ଛିଟ ପୁଷ୍ପପାଳୀ । ଚନ୍ଦ୍ରହାର ତୁଲେ ଗ୍ରୀବାନ୍ତେ ମିଶି । ହିଗୁଣମୟୀ ଅବିଦ୍ୟା ସଦୃଶୀ ଯେ । ବିଦ୍ୟାନିଧି ଅଭ୍ରସିଲା ଯେ । ଅଂସ ଚୁମ୍ବିବାର ଇଚ୍ଛା ଗଭିର ମଧ୍ୟେ କେ ହସ୍ତ ଖୋସିଲା ଯେ । ୫୦ । ଗଭି ନୋହେ କି ସେ ବାଳା

---

ରସନାଦାମ—ଚନ୍ଦ୍ରହାର, ବିଜୟିତକୃତ୍ରିମ—ଜୟ ତକ୍କା ।୪୬। ଯାହା ଲାବଣ୍ୟ··· ଯେଉଁ ଗୁପ୍ତଅଙ୍ଗର ସ୍ୱାଦରୂପ ଅମୃତ ଆଶାରେ ବିଧାତା ରସନା ( ଚନ୍ଦ୍ରହାର ଓ ଜିହ୍ୱା)କୁ ତା ନିକଟରେ ଖଞ୍ଜିଛି, ସୂକ୍ଷ୍ମନେତ୍ର—ତୀକ୍ଷ୍ଣ ଚକ୍ଷୁ ଅଥଚ ସରୁ ବସ୍ତ୍ରଖଣ୍ଡ । ୪୭ । ଡୋଳାସମୀର ମୟୂରରେଖା—ଆଖିଡୋଳାର କାଳିମାର ଜ୍ୟୋତିରେଖା; ଲକ୍ଷ୍ମୀବ୍ୟାଜନୀଳଦଣ୍ଡ—ଲକ୍ଷ୍ମୀରୂପ କପଟ ନୀଳଯଷ୍ଟି, ସରସୀରୁହସମ୍ଭବ—ବ୍ରହ୍ମା । ୪୮ । ବଶିଷ୍ଠାଦୈତମତାନୁସାରୀ—ବେଦାନ୍ତବାଦୀ ଶ୍ରୀ ବୈଷ୍ଣବଙ୍କପରି (ଶ୍ରୀବୈଷ୍ଣବମାନେ ଭାଲଦେଶରେ ସିନ୍ଦୁର ତିଳକ କରନ୍ତି ) । ସ୍ୱର୍ଭାନୁରଦ···ରାହୁଦନ୍ତର ଅଘାତଜନିତ ରକ୍ତବର୍ଣ୍ଣ ଗାର ଦେଖି ପୂର୍ଣ୍ଣଚନ୍ଦ୍ର ପଳାଇ ଯାଇ କେଶରୂପ ମେଘଗହନରେ ପଶିଗଲା କି ? ମସ୍ତକରେ ଘେନିଥିବା ଅର୍ଦ୍ଧଚନ୍ଦ୍ରାକୃତି ସ୍ୱର୍ଣ୍ଣାଲଙ୍କାର ସେହି ଲୁଚିଥିବା ଚନ୍ଦ୍ରର ଅର୍ଦ୍ଧଅଙ୍ଗ ପରି ।୪୯। କସ୍ତୁରୀବୋଳେ—କସ୍ତୁରୀରସରେ, ଚନ୍ଦନ···ତା ସଙ୍ଗରେ ଚନ୍ଦନବିନ୍ଦୁ ଓ ନିତ ମଲ୍ଲୀବିନ୍ଦୁ ଦେଲେ । କୁରଙ୍ଗମଦ—ମୃଗମଦ ବା କସ୍ତୁରୀ, ଅଖିଅ—ଅର୍ଦ୍ଧଚନ୍ଦ୍ରାକୃତିରେଖା, ରଦବାସ—ଅଧର, ମସୀମାଛି—କସ୍ତୁରୀରେ ମଧୁମାଛି । ମକରୀ ରୂପକ ମକରୀ—ମାଈ ମଗର ପରି ମକରିକା ଶନ । ୫୦ । ଘନସାରମାଳୀ—କର୍ପୂରମାଳା, ଛିଟପୁଷ୍ପପାଳୀ—ଶହିତ

କଟାକ୍ଷ । ସ୍ଥୂଳ ମୃଦୁଳ ପ୍ରଥମ ଲକ୍ଷ । ତହିଁ ଖୁରଲୀ ଯେବେ ହେଉଥିବ । ସୂକ୍ଷ୍ମ କର୍କଶ ଲକ୍ଷ୍ୟ ନ ଭେଦିବ । ବିଧି ବିଗୁରି କି ଏହା ମେ । ତୁଳିତ ଶଙ୍କର ଯତୀଶ୍ୱରଙ୍କର ବିତାଇଲ ରକ୍ଷା ରାହା ଯେ । ୫୧ । ମୋହନବେଣ ନିବିଡ଼ିବା ରୁହିଁ । ତାମ୍ବୁଳକରଙ୍କ ବାହିନୀ କେହି । କର୍ପୂର ବିଡ଼ିଅ ବିଡ଼ି ଖଟିଲ । ଅନ୍ତର କାନ୍ତି ବାହ୍ୟକୁ ଫୁଟିଲ ଯେ । ଲଗିଲ ମସାଲ ଯୋଡ଼ି ଯେ । ରୁମର ମୟୂର ଟୁଲ ଆଦି ଜମା ହେଲ ନାନାରାଜଛଡ଼ି ଯେ । ୫୨ । ସାୟନ୍ତନ ଦୀପ କଳିକା ଯାକ । ହୋଇଥିଲେ ଯେ ଭୂଲୋକେ ଅନେକ । ଅଦ୍ୱିତୀୟ ମୂର୍ତ୍ତି ହୋଇ କି ମିଶି । ଚଳିଷ୍ଣୁ ହେଲ ସଖୀରୂପେ ଦିଶି ସେ । ଜନନୀ ପୁରକୁ ଗଲ ଯେ । ଘନ ନୀଳକେଶୀଠାରେ କା ନୟନ ମନ ନିମଗ୍ନ ନୋହିଲ ଯେ । ୫୩ । ନରକଚ୍ଛେଦୀ ଶ୍ରୀଶ୍ରୀ କଣ୍ଠଭୂଷ । ବିଭୂତ୍ୟବଲେପ ବିଭ୍ରେ ଧରେଶ । ପନ୍ନଗାଶନଲାଞ୍ଛନ ଶୋଭନ । ପନ୍ନଗ-ଶୟ୍ୟ ପନ୍ନଗମଣ୍ଡନ ହେ । ଦୁହିଙ୍କ ପଦାରବିନ୍ଦ ଯେ । ଭଜି ରାମଚନ୍ଦ୍ର ଦେବ ଗଣେ ଏହା ନେପଥ୍ୟପଥ୍ୟ ଏ ଛନ୍ଦ ଯେ । ୫୪ । କାଞ୍ଚନ-ଦେହାଙ୍କ ମନୋରଞ୍ଜନ । ବଞ୍ଚାଇବ ଯୁବ ନିବହ ଦିନ । ସଞ୍ଚାର କରିବ ଏ ଯାହା ହୃଦେ । ପଞ୍ଚାଶପଞ୍ଚ ପରିମିତ ପଦେ ଯେ । ଘୁଞ୍ଚାଇବ ତା କଦନ ଯେ । ମଞ୍ଚରେ ଭାରତୀ ଦେବୀ ଲଗିବାସ ଅଞ୍ଚଳ ବୋଲି ଏ ଘେନ ହେ । ୫୫ ।

---

ଫୁଲମାଳ, ତ୍ରିଗୁଣମୟୀ..........ସତ୍ତ୍ୱ, ରଜ ଓ ତମୋଗୁଣମୟୀ ଅବିଦ୍ୟା (ମାୟା) ପରି । ଅଂସ—କାନ୍ଧ, ଇଠଲାଗଭ୍ରି—ଅଁଳାଫୁଲ ସଦୃଶ ଜୁଡ଼ା ଯାହାର, ସ୍ତବ—ଫୁଲତୋଡ଼ା । ୫୧ । ଖୁରଲୀ—ଅସ୍ତ୍ରକ୍ଷେପଣଶିକ୍ଷାର ଅଭ୍ୟାସ । ୫୩ । ସାୟନ୍ତନଦୀପ.....ସନ୍ଧ୍ୟାବେଳେ ପୃଥିବୀରେ ଜାତ ହୋଇଥିବା କଳିକାକୃତି ଦୀପଶିଖାମାନେ ଏକରୂପରେ ମିଳିତ ହୋଇ ଚନ୍ଦ୍ରକଳାର ସଖୀରୂପ ଧରି ଚଳିଷ୍ଣୁ (ଗତିଶୀଳ) ହେଲେ କି ? ୫୪ । ନରକଚ୍ଛେଦୀ—ନରକାସୁରବିନାଶନ, ଶ୍ରୀଶ୍ରୀକଣ୍ଠଭୂଷ—ଲକ୍ଷ୍ମୀଦେବୀ ଯାହାଙ୍କର କଣ୍ଠର ଭୂଷଣସ୍ୱରୂପ (ବିଷ୍ଣୁ), ବିଭୂତ୍ୟବଲେପ—ବିଭୂତିଭୂଷଣ, ଧରେଶ—ଗିରୀଶ (ଶିବ), ପନ୍ନଗାଶନଲାଞ୍ଛନ—ଗରୁଡ଼ଧ୍ୱଜ, ପନ୍ନଗଶୟ୍ୟ—ଶେଷଶଯ୍ୟାଶାୟୀ (ବିଷ୍ଣୁ), ପନ୍ନଗମଣ୍ଡନ—ସର୍ପଭୂଷଣ (ଶିବ), ନେପଥ୍ୟପଥ୍ୟ—ବେଶର ହିତକର ।

## ଦଶମ ଛାନ୍ଦ

### ରାଗ—ବସନ୍ତ

( ବସନ୍ତ ବନବିହାର )

ଅଥ ବିଚକ୍ଷଣେ କ୍ଷଣେ ସାବଧାନେ ଯେନ । କୁସୁମ ସମୟମୟ ହୋଇଲା ଭୁବନ । ହେଲା କ୍ଷଣପ୍ରଭାପ୍ରଭାପରି କ୍ଷଣେ କ୍ଷଣେ । ଶ୍ରୀଅଙ୍ଗ ଜେମାର ମାରମାରଗଣ ଗଣେ ଯେ । ୧ । ଉକ୍ତି ସେ ପରମରମଣୀୟାଙ୍ଗୀ ସ୍ୱାମୀଙ୍କ । ଏଥିକି ଯତନ ତ ନ କଲେ ନୋହେ ଭଲ । କହିଲେ ରେ କର କର ବାଜଦାନ୍ତି କର । ଧ୍ୱନି ଶୁଣୁଛୁ ତ ଚୂତଶିଖେ ପିକଙ୍କର । ୨ । ଚନ୍ଦନ ପବନ ବନ କଲା ସକମ୍ପନ । ପରାଗଧୂସର ସରଣୀରେ ଚଳେ ଜନ । ଅଶେଷ ରୋଲମ୍ବ ଲମ୍ବ କରି ନିଜ ଶ୍ରେଣୀ । କଲେନି ଗର୍ଜନ ଜନଧୃତିହୃତ ଜାଣି । ୩ । ବିକଚ ବକୁଳକୁଳ ସଙ୍ଗେ ମନ ହାଲି । ବାସ ପ୍ରସାରୁଛି ରୁଚିଦାୟିନୀ ନିଅଳୀ । ଏକାଳ ଭ୍ରମଣ ମଣ ଶ୍ରୀଅଙ୍ଗଙ୍କୁ ପଥ୍ୟ । ଶୁଣି ବାଳାମଣି ମଣି ମନେ ମହାତଥ୍ୟ । ୪ । ରଖି ପ୍ରମୋଦରେ ଦରେ ରଦବାସେ ହାସ । ଲୋଚନ ଅଞ୍ଚଳ ଚଳେ କଲା ଫରମାସ । ଜାଣି ପରିବାରୀ ବାରିଜାକ୍ଷୀ ମନୋରଥ । କଲେ ପରିଷ୍କୃତ କୃତକୃତ୍ୟ ହୋଇ ପଥ । ୫ । ବିଜେ ବିଡ଼ୁରୁ ଭାରୁ କେଳିବନ ସରି । ସିଞ୍ଚିଲେ ପଙ୍କୀର ନୀରଭରେ ବିନ୍ଦୁ କରି । ବିଞ୍ଚିଗଲେ ଘନ ଘନସାର ସାରରଜ । ବିଛାଇଲେ ନବନବମାଲୀ ଦଳବ୍ରଜ । ୬ । ଅଦ୍ୟ ପ୍ରାନ୍ତ କରି କରିଦନ୍ତସ୍ତମ୍ଭ

---

ଦଶମ ଛାନ୍ଦ

୧ । କ୍ଷଣପ୍ରଭା—ବିଜୁଳିତେଜ, ମାରମାର୍ଗଣଗଣେ—କନ୍ଦର୍ପର ଶରସମୂହ ଦ୍ୱାରା । ୨ । ସ୍ୱାମୀଙ୍କ—ସ୍ତ୍ରୀମାନେ, ଏଥିକି ଭଲ···ଏହା ଶଙ୍କା କରି ଯତ୍ନ ଯେ ନ କଲେ ତା ନୁହେ ଅର୍ଥାତ୍ ଯତ୍ନ କଲେ । କରକ—ଡାଳିମ୍ବ, କର—(କଳ, ରଳୟୋରଭେଦଃ ) ମଧୁରଧ୍ୱନି । ୩ । ରୋଲମ୍ବ—ଭ୍ରମର, ଜନଧୃତିହୃତ ଜାଣି —ମନୁଷ୍ୟଙ୍କର ଧୈର୍ଯ୍ୟ ଚୋରି ହୋଇଥିବା ଜାଣି । ୪ । ବିକଚ—ପ୍ରସ୍ଫୁଟିତ, ରୁଚିଦାୟିନୀ—ପ୍ରୀତିଦାୟିନୀ, ପଥ—ହିତକର । ୫ । ଲୋଚନଅଞ୍ଚଳ— କଟାକ୍ଷ, ଚଳେ—ଛଳନାରେ, କୃତକୃତ୍ୟ—କୃତାର୍ଥ । ୬ । ବିଜେବିଡ଼ୁରୁ —ଚନ୍ଦ୍ରକଳା ଥିବା କୋଠାରୁ, ସରି—ପର୍ଯ୍ୟନ୍ତ, ଘନ ଘନସାର ସାରରଜ— ବହଳ କର୍ପୂରସାରର ଧୂଳି, ନବ......ନୂଆ ନିଅଳୀ ଫୁଲର ପାଖୁଡ଼ାସବୁ ।

ପୋତ । ଝାଣି ଚନ୍ଦ୍ରାତପ ତପନକୁ ଘୁଞ୍ଚ ଭୀତ । ଅଢ଼ଣୀ ଚାମର ମରକତ ପିକଦାନୀ । ମୁଠାରେ ଭର ମରମଣୀୟ ମୁଠା ଘେନି । ୭ । ଅମୂଲ୍ୟ ଶୁକସଙ୍କାଶ ମୁଖବାସ ଝସି । ପ୍ରମୋଦବଶରୁ ସବୁ ମର୍ଦ୍ଦିଲ ଖଞ୍ଜସି । ତାହାର ଶ୍ରୀକର କରବାଲ ଗଣ୍ଡାଢାଲ । ବ ଭାବସ୍ୱକର କରମାଳଅ ଚସ୍ୱଳ । ୮ । ରତ୍ନଅବକଳ କଳଧୌତ ଛଡ଼ ଧର । ଭେଟିଲେ ଙ୍କଙ୍କସ୍ୱି କରଗମନାକୁ ଘେର । ଗୃହିଁ ସଖୀ ଲେଖା ଲେଖା କନ୍ୟା ସ୍ୱରୂପାର । ସାଜିଲେ ଗୁଲ୍ମଲ ଲ୍ମଲ ରଜର ସମ୍ଭାର । ୯ । ଭିଡ଼ି ଅବଲଗ୍ନ ଲଗ୍ନ ଗୃହୁ ଚେଲାଅଁଳେ । ବାନ୍ଧିଲେ ଅଙ୍ଗର ବୀରବେଶା କୁତୂହଳେ । ଘୁଞ୍ଚ ଭୃଜଭର ଭରମାଙ୍ଗୀ ବୟୋମଦେ । ହସି ଜଗ୍ଭ ହେଲ ହେଲ ପ୍ରକାଶି ପ୍ରମୋଦେ । ୧୦ । ମହ୍ୱୀ-ଦୁଃଖାପହ ପହଣ୍ଡରେ ରହି ଝାକ । ଗଲ ଆହା ବଜେ ବଜେ ମଣିମା ଏ ଡାକ । ଶ୍ରୀହସ୍ତ ସିତାର ତାର ଧଇଲ କେ ସହ୍ୱି । ବବାଦକୁ ଡାକ ଡାକ ବଜାଇଲେ କେହ୍ୱି । ୧୧ । ଧଇଲ ଖଞ୍ଜସ୍ୱି ଜସ୍ୱି ତକଅମଣ୍ତିତା । ନରେନ୍ଦ୍ର-ତନୟା ନୟାଗମସୁପଣ୍ଡିତା । ଅନଙ୍ଗଅମଳ ମଲ୍ଲବେଶାକୁ ଘାରଲ । ମଦଦ୍ୱିରଦର ଦର ରହି ବାହାରଲ । ୧୨ । ଅଲଙ୍କୃତ ଝଣ ଝଣ ନାଦେ ପଥ ଭର । ବଜେ କଲ ରଣରଣ ସମରକୁ ପର । ସରସ ସାହସ ହସ ପ୍ରକାଶି ଜଗତ । କଲ ବଶାରଦା ରଦାଂଶୁରେ ଧବଳିତ । ୧୩ । କର ପରବେଶ ବେଶବତୀ ହୃଷ୍ଟ ମନେ । ଗୃହିଁ ମଧୁରମାର ମାଧୁର୍ଯ୍ୟ କେଳ

---

୭ । କସ୍ୱଦନ୍ତସ୍ତମ୍ଭ—ହାତଦାନ୍ତର ଖୁମ୍ବ, ଭର୍ମ ରମଣୀୟ—ସୁନାଦ୍ୱାସ୍ୱ ସୁନ୍ଦର, ମୁଠା—ଏକପ୍ରକାର ଚାମର । ୮ । ଶୁକସଙ୍କାଶ—ଶୁଆଅକୃତବଶିଷ୍ଟ, ଖଞ୍ଜସ୍ୱି—ଖଞ୍ଜଣୀ, ତାହାର ଶ୍ରୀକର...ତାହାର ନଜ ବ୍ୟବହୃତ କରବାଲ (ଖଣ୍ଡା), ଗଣ୍ଡାଚମରେ ତିଆର ଡାଲ, ବଭାବସ୍ୱକରମାଳଅ—ଚନ୍ଦ୍ରକରଣ ପର ଶୁକ୍ଳ, ଚସ୍ୱଳ—ପତାକା । ୯ । ରତ୍ନବରଳ—ଅବକୃତ ରତ୍ନରେ ଗଢ଼ା, କଳଧୌତଛଡ଼—ସୁନା ବାଡ଼, ଲେଖାକନ୍ୟାସ୍ୱରୂପାର ଲେଖା ଗୃହିଁ—ଦେବକନ୍ୟାରୂପିଣୀଙ୍କ ପଂକ୍ତିକୁ ଦେଖି, ଗୁଲ୍ମଲ—ଫଗୁ । ୧୦ । ଅବଲଗ୍ନ—କଟିଦେଶ, ଅଣ୍ଟା; ଭିଡ଼—ଦୃଢ଼ଭାବରେ, ଚେଲାଅଁଳେ—ଲୁଗାପଣନ୍ତକାନରେ, ଭରମାଙ୍ଗୀ—ସ୍ୱର୍ଣ୍ଣବର୍ଣ୍ଣା, ବୟୋମଦେ—ଯୌବନଗର୍ବରେ । ୧୧ । ମହ୍ୱୀଦୁଃଖାପହ—ପୃଥିବୀର ଦୁଃଖ-ଦୂରକାସ୍ୱ ( ପହଣ୍ଡ ), ତାର ( ଚନ୍ଦ୍ରକଳାର ) ଶ୍ରୀହସ୍ତ ସିତାରକୁ କେ ଧଇଲା । ୧୨ । ଜସ୍ୱିତକଅ...ଜସ୍ୱିଲଗା ଗଦ ଥିବା ଖଞ୍ଜଣୀ, ନୟାଗମସୁପଣ୍ଡିତା—ନୀତି-ଶାସ୍ତ୍ରପଣ୍ଡିତା; ଅନଙ୍ଗଅମଳ—ଅନଙ୍ଗରୂପ ନଶା, ମଦଦ୍ୱିରଦର ଦର ରହି—ମତ୍ତହସ୍ତୀର ଭୟ ଜାତ କସ୍ୱଇ । ୧୩ । ଅଲଙ୍କୃତ—ଅଲଙ୍କାର, ରଣରଣସମର—କନ୍ଦର୍ପସହ ଯୁଦ୍ଧ, ରଦାଂଶୁ—ଦନ୍ତର କରଣ । ୧୪ । ମଧୁ ରମାର—ବସନ୍ତ

ବନେ । କୁସୁମଲବନେ ବନେ ବିହରିବା ଶନ୍ତ୍ର । ବିହିଲାଇଁ ସାର ସାର ମଣ୍ଡଳ ବିଭୂତ । ୧୪ । ହୃଦୟ ଅକୂତକୁ ତରଳାକ୍ଷୀର ଜାଣି । ତୋଳିଲେ କୁସୁମ ସୁମଧୁରାଧର ଶ୍ରେଣୀ । ଜେମାସଙ୍ଗୀବ୍ରଜ ବ୍ରଜଦେବୀଙ୍କ ତତିଲେ । ପରିହାସ ରସର ସଞ୍ଚାର କରାଇଲେ । ୧୫ । ପୁନ୍ନାଗଭୂରୁହରୁ ହରିଣ-ନେହା ଜଣେ । ତୋଳନ୍ତେ ପ୍ରସୂନ ସୁନୟନା କେହି ଭଣେ । ପୁରୁଷ ଏ ତରୁ ତରୁଣୀ ରେ ତତେ ଜଣା । ଫୁଟିଛୁ ଏ ଯେଣୁ ଯେଣୁ କି ମନେ ଊଣା । ୧୬ । ଯେତେ ଲଟ୍ଠ ସାର ସାର ହେଲେହେଁ ତାହାର । ପୁନ୍ନାଗେ ଭରସି ରସିବାର ଅସୁନ୍ଦର । ସେ ବୋଲେ ରେ ସହି ସହି ପାରିବ ନାହିଁଟି । ପାଶେ ଛୁରଅନା ଅନା କଣ୍ଟିରବିକଟ୍ଠୀ । ୧୭ । ଚହୁଁ ସୁଧୀର କେ ରାକେ-ଶ୍ୱରମୁଖୀ କହେ । ତୁ ଜଗତୀଭୂଷା ଭୂଷା ଚମତ୍କାର ନୋହେ । କେହି ପୁଣି କର କରବୀରକୁ ବଢ଼ାନ୍ତେ । କେ ବରାରୋହା ମହାସେ ରସି ବୋଲେ ଏତେ । ୧୮ । କଳ୍ପ ତ ନିକର କରବୀରେ ଖେଳିବାର । ମଧିରେ ଅବୀର ବିରଚିବା କି ପ୍ରକାର । ତୋଳନ୍ତେ କଂକେଲି କେଳିରତା କେ ଛଇଲା । ତାର ସମୁକୁଳକୁଳଶାଖାକୁ ଧଇଲା । ୧୯ । ପଛରୁ କେ ଯାଇ ଜାଈମୃଦୁଦେହା ଗେଲେ । ଭଙ୍ଗିଲା ତା କୁଚକୁ ଚତୁର ଛଳ ତୁଲେ । ସେ ଭାଷିଲା ଅଳି ଅଲିଙ୍ଗନ୍ ଦିଅ ଛାଡ଼ି । ମୁକୁଳବତୀ ରତିରସରେ ଅଟ୍ଟୁ ବୁଡ଼ି । ୨୦ । ମୃଦୁବାତେ ମଧୁ ମଧୁ

ଲକ୍ଷ୍ମୀର, କୁସୁମଲବନ—ଫୁଲ ତୋଳିବା, ସାରମଣ୍ଡଳବିଭୂତି—ସମଗ୍ର ପୃଥିବୀର ଐଶ୍ୱର୍ଯ୍ୟ, ସାର ବିହିଲେ—ଶ୍ରେଷ୍ଠ କର୍ମ ବିଧାନ କଲେ । ୧୫ । ହୃଦୟ ଅକୂତ—ମନର ଭାବ । ସୁମଧୁରାଧର—ମନୋହର ଅଧରଧାରିଣୀ, ବ୍ରଜଦେବୀଙ୍କ ତତିଲେ—ଗୋପୀମାନଙ୍କ ପଣ । ୧୬। ପୁନ୍ନାଗଭୂରୁହ—ପୋଲାଙ୍ଗଗଛ ଓ ପୁରୁଷଶ୍ରେଷ୍ଠ, ପୁରୁଷ ...ପୁରୁଷରୂପ ପୋଲାଙ୍ଗଗଛ ଫୁଟିଛି ଅର୍ଥାତ୍ 'ପୁଷ୍ପବତୀ' ହୋଇଛି, ଏହା ଦେଖି ତୋ ମନ ଊଣା ହେଲା କି ? ୧୭ । ଯେତେ ଲଟ୍ଠ...ତାହାର ପୁଷ୍ପ ଯେତେ ଉତ୍କୃଷ୍ଟ ହେଲେହେଁ, ପୁନ୍ନାଗ—ପୋଲାଙ୍ଗ ଓ ପୁରୁଷ ହାତୀ । ୧୮ । ରାକେଶ୍ୱରମୁଖୀ—ପୂର୍ଣ୍ଣଚନ୍ଦ୍ରବଦନା, କରବୀର—ଏକପ୍ରକାର ପେନ୍ଥାଫୁଲ ( କନିଅର ନୁହେଁ ) । ୧୯ । କଳ୍ପିତ—ବୀରସଙ୍ଗେ ଖେଳିବାକୁ ନିକର (ନିଶ୍ଚୟ)କର କଳ୍ପ (ହାତଦେଲ),—ଅବୀର—ଫଗୁ, ଯେ ବୀର ନୁହେ । କଂକେଳି—ଅଶୋକ, ସମୁକୁଳକୁଳଶାଖା—କଢ଼ ହୋଇଥିବା ନକଃବତ୍ତୀ ଡାଳ । ୨୦ । ଜାଈ ମୃଦୁଦେହା—ଜାଈଫୁଲ ପରି କୋମଳ ଦେହ ଯାହାର । ମୁକୁଳବତୀ—କ୍ଷୁଦ୍ର କୁଚଯୁକ୍ତା, ତେଣୁ ପୁଷ୍ପବତୀ ହୋଇ ନ ଥିଲେହେଁ ରତିନିପୁଣା ଅଟେ, ଅଥଚ ଫୁଲ ନ ଧରି ଅଶୋକ ମୁକୁଳ ଧରି

ଅଙ୍ଗେ ପକାଇଲ୍କି । ଚମକ୍କି କେ ବାଂଧୂ ବଧୂଲ୍କି ଛକାଇଲ୍ଲି । କେ ବାମା-ବର ସେ ରସେ ବୋଇଲ୍କ ତହିଁକି । ମୋର ପ୍ରାଣବନ୍ଧୁ ବନ୍ଧୁକରେ ପଡ଼ିଲ୍ଲୁ କି । ୨୧ । ସୁମନ୍ଦାରବ୍ରଜ ବ୍ରଜ କର କେ ନାଗସ୍ତ୍ରୀ । ଜଳପିଲ୍ଲ ମଦୋ ମଦେଭେନ୍ଦ୍ରଗତି କର । ଦେଖ ଭେଗ କରେଁ କରେ ସୁବରଜବାଳୀ । କୃଷ୍ଣଟି ମୁଁ ମାନ ମାନବାଏ ଧର୍ମପାଳ । ୨୨ । ଧର ସିନ୍ଧୁବାରବାର କରେ-ଦରେ ଗେଲେ । ଜଣିଲ୍ କୁମ୍ଭଜ ଭଜ ମୋତେ ଲୋକେ ବୋଲେ । ନାଗିଣୀ ପାଖରେ ଖରେ ଗୁହିଁ ବଚକଳ । ବହିଲ୍କ କେ ମଲ୍ଲୀ ମଲ୍ଲୀ ବୋଲ୍ଲି କୋଳାହଳ । ୨୩ । ଢେମ ନାଗେଶ୍ୱର ସ୍ୱର ରଚ କେ ସେପର । କାଳୀଦଳନର ନରତନକୁ ଅଚର । ବୋଲେ ମତେ ବହୁ ବହୁମାନ କର ରଖ । ମୁଁ ଜାଙ୍ଗଳକଟି କଣ୍ଠୀ ଭଙ୍ଗି ନାଚେଁ ଦେଖ । ୨୪ । ଜାଣେ ଅଶୀବିଷ ବିଷହର ନାମ ଗଦ । ରବିସୁତାସର ସରସିଜ ତୋଳା ପଦ । ତୋଳ୍ଲୁଁ କଢ଼ୀକୁନ୍ଦ କୁନ୍ଦନାଙ୍ଗୀ କେହୁ ସ୍ନେହେ । କେଉଁ କଳାବତୀ ବତଶାର୍ଙ୍ଗବୟୁ କହେ । କରେ ସଙ୍ଗି ଅଜ ଅଜନମ ସ୍ନେହତଳେ । ମାନସେ ନ କଳି କଳ ଲୋଡ଼ୁରୁ ତ ବଳେ । ଧରୁ କେ ଶୁଭାଙ୍ଗୀ ଭଙ୍ଗି ସେବତୀରୁ ତାଳେ । ହସି କେ ଅବଳା ବଳାହକକେଶା ଛଳେ । ୨୬ । ଏ ପାରିବା-

---

ଥିଲେହେଁ ଖେଳ ଜାଣେ । ୨୧ । ମଧୁ—ବସନ୍ତକାଳ, ମଧୁ—ପୁଷ୍ପରସ, ବଧୂଲି—ବନ୍ଧୁକ ଫୁଲ, ସାତଘଡ଼ିଆ ଫୁଲ; ରସେ—କୌତୁକରେ, ପ୍ରାଣବନ୍ଧୁ—(ସମ୍ବୋଧନ ), ବନ୍ଧୁକରେ—ମୋ ସ୍ୱାମୀ ହାତରେ ଅଥଚ ବନ୍ଧୁକ (ବଧୂଲି) ଫୁଲରେ । ୨୨ । ସୁମନ୍ଦାରବ୍ରଜ—ସୁନ୍ଦର ମନ୍ଦାର ଫୁଲମାନଙ୍କୁ, ବ୍ରଜ କର—ତୋଳ, ମଦେଭେନ୍ଦ୍ର—ମତ୍ତହସ୍ତୀ, ସୁବରଜବାଳୀ—ସତ୍ୟଭାମା, କରେ—ସୁଖରେ ( ସତ୍ୟଭାମାଙ୍କ ପାଇଁ କୃଷ୍ଣ ସ୍ୱର୍ଗରୁ ମନ୍ଦାରଫୁଲ ଅଣିଥିଲେ ) । ୨୩ । ସିନ୍ଧୁବାର—ବେଗୁନିଆ ଫୁଲ, ବାର—ସମୁଦ୍ର, କରେଦରେ—ହାତମୁଠା ଭିତରେ, କୁମ୍ଭଜ—ଅଗସ୍ତ୍ୟ ଋଷି (ଅଗସ୍ତ୍ୟ ଗୋଟିଏ ସମୁଦ୍ରକୁ ଚଳୁ କରିଥିଲେ, ମାନ ମୁଁ ବାର ବାର (ଦ୍ୱାଦଶସଂଖ୍ୟକ) ସିନ୍ଧୁକୁ ହାତମୁଠାରେ ଧରିଲି) । ନାଗିଣୀ—ଏକଜାତୀୟ ମଲ୍ଲୀଫୁଲ, ବଚକଳ—ଅନ୍ୟ ଜାତୀୟ ମଲ୍ଲୀଫୁଲ, ମଲ୍ଲୀମଲ୍ଲୀ—ମଲ୍ଲୀଫୁଲ, ମଲ୍ଲୀଫୁଲ ଅଥଚ ମରିଗଲି ମରିଗଲି । ୨୪ । ନାଗେଶ୍ୱର—ନାଗେଶ୍ୱର ଫୁଲ ଓ ସାପୁଅଙ୍କ ବାଜା, ନରତନ—ନର୍ତ୍ତନ, ନୃତ୍ୟ; ଜାଙ୍ଗଳିକ—ସାପୁଆକେଳା । ୨୫ । ଅଶୀବିଷ—ସର୍ପ, ବିଷହର ନାମକ ଗଦ । ରବିସୁତାସର—ଯମୁନା ନଦୀ, ସରସିଜତୋଳାପଦ—ପଦ୍ମତୋଳା ପଦ, କଢ଼ୀକୁନ୍ଦ—କୁନ୍ଦଫୁଲର କଢ଼ିକୁ, ବତଶାର୍ଙ୍ଗବୟୁ—ଷୋଳବୟୁସୀ । ୨୬ । କଳ—କଳକା ବା କଢ଼ ଅଥଚ କଳହ ।

ପଣ ପଣସଂଖ୍ୟ ଜନେ ଥିବ । ଅଛୁ କି ସଦାନେ ଧାନେ ଉପାୟୁ ବିଭବ । ତୋଳନ୍ତେ ପାଟଳୀ ଟଳ ଭଣେ କେ କୁତୁକେ । ଓଡେ କର୍ଣ୍ଣସମ ସମଜନ୍ତ ପରି ଲୋକେ । ୨୭ । ଅର୍ଥୀରେ ଉତ୍ତମତ ମହତ୍ତ୍ୱ ରଖାଇଲୁ । ସହଜ ନାମର ମରଜ ଯା ଦେଖାଇଲୁ । ବୋଇଲୁ ରଙ୍ଗଣୀ ଗଣି ଗଣି କେଉଁ ବାମା । ନାହିଁ ଧୀରିଗଣ ଗଣନାରେ ମୋ ଉପମା । ୨୮ । କୃଶୋଦ୍ରୀ ଏପରି ପରହାସରସେ ହଟି । ଅଛହାସାଧରି ଧରଣୀରେ ଯାଏ ଲୋଟି । ଉଦନନ୍ତର ସେ ରସେଙ୍ଗିତଜ୍ଞାରଜାକୁ । କାଞ୍ଚନଫରୁଆରୂଅ ପୀନ ଉରଜାକୁ । ୨୯ । କୁଚଜତାଚଳା ଚଳାପାଙ୍ଗୀ ସୁଷମାକୁ । ସକଳ ଭୁବନ ବନ ସୁରଭିରମାକୁ । ସଖୀଏ ବିଗ୍ଭିର ଗ୍ଭିର ପାଞ୍ଚେଗଲେ ଗଲେ । ମନୋହର ବାସ ବାସନ୍ତିକ ବେଶ କଲେ । ୩୦ । କଲେ ଯେ ଯାହାର ହାର ଅଦ୍ଦ ଫୁଲ ଭୂଷା । ପ୍ରଫୁଲ୍ଲ ବ୍ରତତୀତତି ପରି ହେଲେ ଯୋଷା । ନବୀନ ପ୍ରବାଳ ବାଳ ଅରୁଣୋଷ୍ଠୀଗଣ । କଲେ ଶ୍ରୁତିପାଶ ପାଶ ପରି ବିଭୂଷଣ । ୩୧ । ହସି ବାଳାବର ବରଷିଲୁ ଫଗୁମୁଷ୍ଟି । ଅହା ରସାଳସା ଲସାଇଲୁ ଶୋଭିସୃଷ୍ଟି । ଯଥାଟି ମଧୁପୀ ଧୂପି ପିଅଇ ମରନ୍ଦ । ଫେରେ ଲଭି ତାପ ତା ପଂରିଗେ ହୋଇ

---

ବଳାହକକେଶା—ଘନକେଶା । ୨୭ । ପାଟଳୀ—ପାଟଳୀଫୁଲ, ଟଳ—ହଲ ହଲ, ହେ ପାଟଳ ! ତୋଡେ ଲୋକେ କର୍ଣ୍ଣସମ (କାନପରି, ପାଟଳୀ ଫୁଲ ସଙ୍ଗେ କାନର ତୁଳନା ହୁଏ ଅଥଚ ଦାତାକର୍ଣ୍ଣ ଭଳି ବୃଝନ୍ତ ପରି । ୨୮ । ଅର୍ଥୀରେ ଉତ୍ତମ କର୍ଣ୍ଣ—ଯାଚକମାନଙ୍କ ପ୍ରତି ଉତ୍ତମ ଥିଲେ । ୨୯ । ରସେଙ୍ଗିତଜ୍ଞାରଜାକୁ—ଯେଉଁମାନେ ରସର ଇଙ୍ଗିତ ( ମନୋଗତ ଭାବ ) ବୁଝି ପାରନ୍ତି, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠା । କାଞ୍ଚନଫରୁଆରୂଅ—ସୁନା ଫରୁଅ ପରି ଉଠିଥିବା, ପୀନ—ସ୍ଥୂଳ । ୩୦ । କୁଚଜତାଚଳା—କୁଚଦ୍ୱାରା ପର୍ବତକୁ ଜୟକରନ୍ତି । ସକଳ...ସମଗ୍ର ବ୍ରହ୍ମାଣ୍ଡର ଅରଣ୍ୟର ବସନ୍ତଲକ୍ଷ୍ମୀକୁ । ମନୋହର-ବାସ ବାସନ୍ତିକ—ମନୋହର ସୌରଭଯୁକ୍ତ ବାସନ୍ତିକ ପୁଷ୍ପରେ ବେଶ କଲେ । ୩୧ । ପ୍ରଫୁଲ୍ଲ-ବ୍ରତତୀତତି—ପ୍ରସ୍ଫୁଟିତ ଲତାସମୂହ । ପ୍ରବାଳ—ନୂଆପତ୍ର, ବାଳଅରୁଣୋଷ୍ଠ—ବାଳଅରୁଣ (ସକାଳଅରୁଣ) ପରି (ରକ୍ତବର୍ଣ୍ଣ) ଓଷ୍ଠ ଯାହାଙ୍କର । ଶ୍ରୁତିପାଶ—ସୁନ୍ଦର କର୍ଣ୍ଣଦ୍ୱୟକୁ ପାଶପରି ( କର୍ଣ୍ଣକୁ ଫାଶ ସଙ୍ଗେ ତୁଳନା କରିଯାଏ ) । ୩୨ । ବାଳାବର—ଏଠାରେ ଚନ୍ଦ୍ରକଳା, ଲସାଇଲୁ—ଦବାଇଲା, ପରିସ୍ତ କଲା; ମଧୁପୀ—ଭ୍ରମରୀ, ଧୂପି—ଧାଇଁ ଯାଇଁ, ମରନ୍ଦ—ମକରନ୍ଦ, ତାପ—ଦୁଃଖ ।

ଅଙ୍ଗ । ୩୨ । ମାଣିକ୍ୟଖଣିରୁ ନିରୁପମ ଶିଳ୍ପ କରି । କଲା କି ସେ ଜାତ ଯାତ ଚତୁର୍ମୁଖଧାତ୍ରୀ । ହିଙ୍ଗୁଳଦ୍ୱୀପର ପର ଦେବତାମଣ୍ଡଳୀ । ଅସି ସେ ବନୀକି ନିକି ଅରମ୍ଭିଲେ କେଳି । ୩୩ । ଅନୁରାଗ ରସର ସଙ୍କୋଚ-ନ ଥିବାରୁ । ଅଛନ୍ତି କି ବହି ବହିରନ୍ତରେ ରମ୍ଭୋରୁ । ଗାଇବା ହେତୁରୁ ଚତୁରାଜ ହୋରିଗୀତ । ତେଜିଲେ କୂଜିତ ଜିତ ହେଲେ ପରଭୃତ । ୩୪ । କେମା ହାତୀ ମାର ମାର ବୋଲି ଏହା ଡରେ । ବୋଲି କେ କାହାର-ହାର ଅଡ଼ଆ ଧଇଲେ । ଜଣଇ ଚପଳା ପଳାଇବା ବେଳେ କହି । ଅଣେ କେ ଅବଳା ବଳାତ୍କାରେ ଧରି ବହି । ୩୫ । ଦକ୍ଷିଣ ମରୁତରୁ ଉ-ଚେଲ ଉଡ଼େ ଦେଖି । ଫିଙ୍ଗେ ଲାଲରଜ ରଜନୀଶବିମ୍ବମୁଖୀ । ଉଡ଼ନ୍ତେ ଦୁକୂଳକୁ ଲଜ୍ଜାରେ ସେ ସୁନ୍ଦରୀ । ମାରଇ ମୁଖକୁ ଖକୁ ଉଡ଼ାଇଲା ପରି । ୩୬ । ହୋଇ ସବିନୟ ନୟନରେ ଦେଉ ପାଣି । ଫିଙ୍ଗିଲା ତଳକୁ ଲକୁଚକୁଚ ତରୁଣୀ । ସଖୀ ନୀବୀପାଶ ପାଶ ଗଲା ତାର ଦଶି । ଅନଙ୍ଗନିକେତ-କେତେ ରଙ୍ଗ ଗଲା ମିଶି । ୩୭ । ବରଙ୍ଗ ବରଜ ରଜବତୀଠାକୁ ବୋଲି । ଖେଳନ ସାହସୀ ହସି କରେ ଦିଏ ପେଲି । ଫଗୁଖେଳ ସରୁ ସରୁମଧ୍ୟମା-ଛଇଲା । ଅତର ପନୀର ନୀର ଖେଳେ ମନ ଦେଲା । ୩୮ । ବିବିଧ-ଅତର ତ ରମଣୀମଣି ତୁଲେ । ସୁନାକଲଶିରେ ଶିରେ ଦାସୀ ବହି-

---

ତା ପରାଗରେ—ତା ରେଣୁରେ । ୩୩ । ନିରୁପମ—ଉପମାରହିତ । ମାଣିକ୍ୟଖଣି—ରକ୍ତବର୍ଣ୍ଣର ଖଣି, ସେ ଯାହାକୁ ଜାତ କଲା କି ? ଚତୁର୍ମୁଖଧାତ୍ରୀ—ବିଧାତା । ହିଙ୍ଗୁଳଦ୍ୱୀପ—ହଂସପାଦ ନାମକ ଗାଢ଼ ରକ୍ତବର୍ଣ୍ଣବିଶିଷ୍ଟ ଦ୍ୱୀପ । ପରଦେବତା-ମଣ୍ଡଳୀ—ଉତ୍କୃଷ୍ଟ ଦେବୀମାନେ, ବନୀ—ଉପବନ । ୩୪ । ଅନୁରାଗରସ—ସ୍ନେହରସ ( ସ୍ନେହ ରକ୍ତବର୍ଣ୍ଣ ବୋଲି କବିମାନେ ବର୍ଣ୍ଣନା କରନ୍ତି ) । ଅଛନ୍ତି-କି···ରମ୍ଭୋରୁ ସଖୀମାନେ ଭିତରେ ଓ ବାହାରେ ରକ୍ତବର୍ଣ୍ଣ ହୋଇଅଛନ୍ତି କି ? କୂଜିତ—ପକ୍ଷୀଙ୍କର ମଧୁର ଶବ୍ଦ । ପରଭୃତ—କୋକିଳ । ୩୫ । ଅଡ଼ଆ—ହାତୀ ପ୍ରଭୃତି ବନ୍ୟଜନ୍ତୁଙ୍କ ନିବାରଣ ପାଇଁ କରାଯିବା ଯଷ୍ଟି ପ୍ରଭୃତିକୁ ଅଡ଼ଆ କହନ୍ତି । (ଏଠାରେ ଚନ୍ଦ୍ରକଳା ରୂପ ହାତୁଣୀ ଫଗୁ ମାରୁଥିବାରୁ ତାକୁ ନିବାରଣ କରିବାପାଇଁ ହାରରୂପ ଅଡ଼ଆକୁ ଧରିଲେ ) । ଚପଳା—ବିଜୁଳି । ୩୬ । ମରୁତରୁ—ପବନ-ହେତୁରୁ । ଲାଲରଙ୍ଗ—ଫଗୁ, ରଜନୀଶବିମ୍ବମୁଖୀ—ଚନ୍ଦ୍ରମୁଖୀ । ଖକୁ—ଆକାଶକୁ । ୩୭ । ଲକୁଚ—ଜେଉଟ ଫଳ, ନୀବୀପାଶପାଶ—ପିନ୍ଧାଲୁଗାର ଅଣ୍ଟାପାଖ ଖୋସଣୀ ପାଖ । ଅନଙ୍ଗନିକେତ—ଗୁପ୍ତଅଙ୍ଗ । ୩୮ । ରଙ୍ଗବତୀ—ପୁଷ୍ପବତୀ । ସରୁମଧ୍ୟମା—

ଥିଲେ । ମଣିମୟ କମ କମନୀୟ ବାଛୁ ଦେଖି । କରେ ଦେଲା ନଳ ନଳିନାକ୍ଷୀର କେ ସଖୀ । ୩୯ । ଖେଳିଲା ଅଖଞ୍ଜ ଖଞ୍ଜନାକ୍ଷୀ ନାରୀ-ରାଜା । ମଣ୍ଡନଶିଞ୍ଜିତଜିତ ହେଲା ଘନ ବାଜା । ବହିଲା ଅତରତରଙ୍ଗିଣୀ ସ୍ରୋତ ପରି । ଘେରିଲେ ଭ୍ରମର ମରକତଗୋଲ ସରି । ୪୦ । ଉପବନ ତଳ ତ ଲସଇ ଚନ୍ଦ୍ରୋପଳ । କୁସୁମରଜରେ ଜରେ ଅତରକଲ୍ଲୋଳ । କାର ଏକପାଖ ପା ଖସିଲେ କେ ହସିଲା । ଦୁଇପଦ ତାର ତାରତମ୍ୟରେ ଖସିଲା । ୪୧ । ପରିଗଳମ୍ବାଳ ବାଲମୃଗାକ୍ଷୀ କେ ଧରି । ଅଲଙ୍ଗି କ୍ଷେପି ଲେପିଲେ ହସଇ କଣୋଗ୍ରୀ । କେ କାହା ଉପରେ ପରେ ଭରି ଦେଇ ପଡ଼େ । ଧରି କରତାଳ ତାଲସ୍ତନା ହସି ପଡ଼େ । ୪୨ । କାଳ ପ୍ରତିବିମ୍ବ ବିମ୍ବଅଧରୀ କେ ଲେଖି । କହେ ଭ୍ରମେ ଅନା ଅନାୟତ୍ତ ହେଲା ସଖୀ । ତୋଳ ଧରିବା କି ବାକି ରହିଯିବ ସିନା । ନୋହେ ଆମ୍ଭ ସମ ସମରଥା ଏ ନୂତନା । ୪୩ । କିରୂପେ ଗୋ ସହ ସହଚରୀ ଏ କି ପ୍ରୀତି । ଶୁଣି ଏ ଭାରତୀ ରତିତୁଲ୍ୟାଏ ହସନ୍ତି । ତନୟାମାନଁ ବଳି ବଳଶୋଭିନୀ ଖେଳିଲା । ଅତି ମୃଦୁତନୁ ତ ନୂତନା ଶ୍ରାନ୍ତ ହେଲା । ୪୪ । କୃଶ ମଧ୍ୟମ ତ ମତ୍ତଗଜ ଗମନାର । ଗୃମୀକରଘଟ ଘଟନୀୟ ପୟୋଧର । ଅଙ୍ଗକୁ ଶିରୀଷର ସମତା ନାହିଁ ଯାର । ସେ ହେଲେ ଅଶ୍ରମୀ ଶ୍ରମରତ ଚମତ୍କାର । ୪୫ । କଲା ସୁଲଯତ ଯତନରେ ଲଗି ବାସ । ହୋଇଲା ଜବନ ବନରୁହବାସ ଶ୍ୱାସ । ନୟନ ଅଞ୍ଜନ ଜନମୋହନାର ଭଲା । ସ୍ୱେଦରେ ଗାଧୋଇ ଧୋଇ ହୋଇ କି ଛଇଳା । ୪୬ । କଞ୍ଜଜୟୀ ଦୟିଦକ୍ଷକରକୁ ବୁଲାଇ । ଜେମାଦେଈ ଦେଇ

---

କ୍ଷୀଣକଟି । ୩୯ । ନଳ—ପିଚକାରୀ ।୪୦। ଅଖଞ୍ଜଖଞ୍ଜନାକ୍ଷୀ—ନିର୍ଦୋଷଖଞ୍ଜନପକ୍ଷୀ ପରି ଚଞ୍ଚଳ ଅକ୍ଷି ଯାହାର, ମଣ୍ଡନଶିଞ୍ଜିତ—ଅଳଙ୍କାରଧ୍ୱନି, ଘନବାଜା—ଉଚ୍ଚ ସ୍ୱରରେ ବାଜୁଥିବା ବାଦ୍ୟ, ଅତରତରଙ୍ଗିଣୀ—ଅତରର ନଈ, ମରକତଗୋଲ ସରି—ମରକତମଣିର ଗୋଲ ପରି । ୪୨ । ଉପବନ···ଚନ୍ଦ୍ରକାନ୍ତମଣିରେ ଛଅରି ହୋଇଥିବା ବଗିଚାର ତଳଦେଶ ଲସଇ (ତଳକୁ ଦବିଗଲା) । ୪୨ । ପରିଗଳମ୍ବାଳ —ଫଗୁକାଦୁଅ, କ୍ଷେପି—ଫୋପାଡ଼ି, ପରେ—ଅନ୍ୟ ଉପରେ । ୪୩ । କାଳ ପ୍ରତିବିମ୍ବ—ଚନ୍ଦ୍ରକଳାର ସ୍ୱପ୍ରତିକୃତି, ସଖି ( ଚନ୍ଦ୍ରକଳା ) ଅନାୟତ୍ତ (କ୍ଳାନ୍ତ) ହେଲା । ୪୫ । ମଧ୍ୟମ—କଟିଦେଶ, ଗୃମୀକରଘଟଘଟନୀୟ—ସୁନା ମାଠିଆ ପରି ସୁନ୍ଦର, ଶିରୀଷର ସମତା—କୋମଳ ଶିରୀଷ ଫୁଲର ସାମ୍ୟ, ଶ୍ରମ-ରତ—ପରିଶ୍ରମକ୍ଳାନ୍ତ, ଅଶ୍ରମୀ ହେଲେ—ଅଶ୍ରମ ମଣ୍ଡପରେ ବସିଲେ । ୪୬ । ହୋଇଲା······ପଦ୍ମଗନ୍ଧବିଶିଷ୍ଟ ନିଶ୍ୱାସ ଶୀଘ୍ର ଶୀଘ୍ର ବହିଲା । କି ଛଇଳା—କି ସୁନ୍ଦର । ୪୭ । କଞ୍ଜଜୟୀ—ପଦ୍ମ ଅପେକ୍ଷା ସୁନ୍ଦର ।

ଅଳି ଅଂସରେ ଗେଲଇ । ମଧ୍ୟେ ଦେଇ ବାମ ବାମକର ହେଲା ଭଙ୍ଗୀ । କେ କହିବ ଶେଷ ସେ ସମୟେ ତାର ଶୋଭା । ୪୭ । ମଜ୍ଜାଇ ଗୃଦର ଦରକଣ୍ଠୀ କେ ପମ୍ପାରେ । ପୋଛିଲା ସୁନ୍ଦର ଦରପଣମୁଖୀ ଧୀରେ । ଅତପ ସକଳ କଳକଣ୍ଠବାଣୀ ଦେହେ । ନ ବାଧିଲା ପର ପରପାଳିବାକୁ ସ୍ନେହେ । ୪୮ । ଧଇଲା କେ ବିଧୁ ବିଧୁନନହାସଦ୍ୟୁତି । ବିଶାଳ ପେଷଳ ସଲକ୍ଷଣ ଫୁଲ୍ଲଛତି । ମୃଦୁଲ ପବନେ ବନେ ଏପରି ବିହରୁ । ଭଲି ସୁତରଙ୍ଗ ରଙ୍ଗରସେ ମନେ ଭାରୁ । ୪୯ । ପଞ୍ଚାଶତ ଏକ ଏ କବାଣ ପଦେ ଛନ୍ଦ । ବନବିହାର ସରସ ଜାଣିବେ କୋବିଦ । ହେଲେ ରସବଶ ବସନ୍ତରେ ପାଠ ହେବ । ଉତ୍ତରେ ସଲିଳ ଲୀଳାରସ ବରଷିବ । ୫୦ । ପ୍ରପନ୍ନ ଜନର ନରକାଦ୍ଧ ମହାଦୁଃଖ । ଯେଉଁ ପ୍ରଭୁ ହରେ ହରେ । ଉଛାରଚନ୍ତ୍ର ମୁଖ । ତାଙ୍କ ସନ୍ନିଧିରେ ଧୀରେ ଜଳନ୍ତରପତି । ସଗରମାଦର ଦରଶନ କଲେ ନିତି । ୫୧ ।

---

## ଏକାଦଶ ଛାନ୍ଦ

### ରାଗ—ସିନ୍ଧୁଡ଼ା

### ( ଜଳକେଳି )

ଶୁଣ ହେ ସୁଜନ ମଧୁ କାଳ ବନ-ବିହାର କୁସୁମ ତୋଳା । କୁତୁକ ଶେଷରେ ଶ୍ରୀଅଙ୍ଗ ଦେଶରେ ଅଳସ ଲଭିଲା ବାଳା ସେ । ମହାରାଜ-କୁମାରୀ । ନବ ଶିରୀଷରୁ ସୁକୁମାରୀ ସେ । ଶତେ ଚନ୍ଦ୍ରିଲ ସୁଶୀତ ବାର ସେ । ୧ । ମନ ଜାଣି ପ୍ରାଣ ସହଚରୀଗଣ କୁସୁମ ତଳ୍ପ ଟେକି ।

---

ଦୟିତଦକ୍ଷକର—ଦୟିତାପୁଣ୍ଡ ଦକ୍ଷିଣ ହସ୍ତ, ଅଂସ—କାନ୍ଧ, ମଧ ଦେଇ···ଅଣ୍ଟାରେ ବାମ (ସୁନ୍ଦର) ବାମକର ଦେଇ । ୪୮ । ଦରକଣ୍ଠି—କମ୍ବୁକଣ୍ଠୀ, ଅତପ—ଖରା, କଳକଣ୍ଠବାଣୀ—କୋକିଳଭାଷିଣୀ । ୪୯ । ବିଧୁବିଧୁନନହାସଦ୍ୟୁତି—ଯାହାର ହାସ୍ୟର ଶୋଭା ଚନ୍ଦ୍ରକୁ କମ୍ପାଇ ଦଏ, ପେଷଳ—ସୁନ୍ଦର, ସଲକ୍ଷଣ—ଶୁଭଚିହ୍ନ-ଯୁକ୍ତ, ସୁତରଙ୍ଗରଙ୍ଗରସେ—ସୁନ୍ଦର ଲହରୀ ଥିବା ପୁଷ୍କରିଣୀ କ୍ରୀଡ଼ାରେ । ୫୦ । କବାଣପଦେ—ବଡ଼ ବଡ଼ କବିଙ୍କଦ୍ୱାରା ପ୍ରଯୁକ୍ତ ପଦରେ । ୫୧ । ହରେ—ହେ ହରି ! ସଗରମାଦର—ଗୌରବ ଓ ଆଦର ସହିତ ।

ଧୀରେ ଧୀରେ ଗେଲେ ବିଜେ କରିଥିଲେ ସତରଙ୍ଗ ସରସୀକି ଯେ । ଧରି-ଚମ୍ପକଗଭି । ତିନି ଭୁବନ ଇନ୍ଦିରା ଶୋଭି ସେ । ସରସୀରେ ଯାଇ ହେଲ ବିଭା ସେ । ୨ । ସଲୀଳ ଲହରୀ କଞ୍ଜ ମଧୁଝର ସଙ୍ଗ ଶୀତଳ ମରୁତ । ମୃଦୁ ମୃଦୁତର ସ୍ପର୍ଶରୁ ତାର ତନୁ କଲା ଅପ୍ୟାୟିତ ସେ । ସେହି ସମୟ ଠାକୁ । ରଙ୍ଗି ମର୍ଦ୍ଦନ ମଣିଚଉକ । ବିଜେ କରାଇ ନେଲେ ତହିଁକି ଯେ । ୩ । ସଂଯତ ରସନା ହୋଇ ସୁଦଶନାମଣ୍ଡଳୀ ବାଳାକୁ ଘେରି । ତା ଶୋଭାସଦନ ଅଙ୍ଗେ ମରଦନ କଲେ କେତକୀ ଫୁଲରି ଯେ । ଦିବ୍ୟ ଝୁନା ଗୁଁଦରେ । ଅତି ଯତ୍ନେ ପୋଛୁଲେ ଆଦରେ । ଅନୁରାଗରୁ ଅବିବାଦରେ ଯେ । ୪ । ପଟ୍ଟୀର ସୁବାସ ଘଟୀକି ସେ କୃଶକଟୀ ଅଙ୍ଗୁଷ୍ଟିରେ ବୋଳ । ଗ୍ରନ୍ଥିଲ ନିଯାମା ପଙ୍କ ତୁଲେ ବାମା କୁଙ୍କୁମକୁ ଥିଲେ ଦଳ ଯେ । ବୋଳାଦେଇ ବହଲେ । କଡାଇଲେ ହେମବଂଶଦଲେ ଯେ । ତନୁକାନ୍ତି କୁନ୍ଦନକୁ ଛଳେ ସେ । ୫ । ବିଗୁରିଲା କବି ଜେମା ଅଙ୍ଗଛବି ସମାନ ନୋହିବା ଘେନି । ରଜନୀ କାଶ୍ମୀର ଶ୍ରୀଅଙ୍ଗରେ ତାହା ନ ରଙ୍ଗି ପ୍ରିୟସଜନୀ ସେ । ଡରେ ବୋଇଲେ ଛି ଛି । ଅଙ୍ଗତୁଲ୍ୟ ନୋହିବାରୁ କଛି ଯେ । ସେହିକ୍ଷଣେ ପକାଇଲେ ପୋଛି ଯେ । ୬ । କି ଅବା ଅବଳାମଣିଦ୍ୟୁତି ତୁଳା ଲଭିବା ବାଞ୍ଛାରେ ରସି । ତା ଶରୀର ସୁରତରଙ୍ଗୀଣୀପୁର ମଧ୍ୟରେ ମୁହୂର୍ତ୍ତେ ଝାସି ସେ । ହେଲେ ଯହୁଁ ତା ସଙ୍ଗୀ । ପାପ ପଙ୍କଯାକ ଦେଲେ ଫିଙ୍ଗି ଯେ ।

---

## ଏକାଦଶ ଛାନ୍ଦ

୨ । ସତରଙ୍ଗ—ତରଙ୍ଗଯୁକ୍ତ । ତିନିଭୁବନରଇନ୍ଦିରା—( ଲକ୍ଷ୍ମୀ )ଙ୍କ ପରି ସୁନ୍ଦରୀ । ୩ । ସଲୀଳଲହରୀ···ଖେଳୁଥିବା ତରଙ୍ଗ ଉପରେ ଥିବା ପଦ୍ମମାନଙ୍କର ମଧୁ (ମକରନ୍ଦ) ଝର (ପ୍ରବାହ) ସଙ୍ଗ ହେତୁରୁ ଶୀତଳ; ଅପ୍ୟାୟିତ—ସନ୍ତୋଷିତ; ମର୍ଦ୍ଦନମଣିଚଉକ—ରତ୍ନନିର୍ମିତ ଯେଉଁ ଚୌକିରେ ବସି ତେଲ ମର୍ଦ୍ଦନ କରାଯାଏ । ୪ । ସଂଯତ ରସନା—ଅଠ ସୂତ୍ରଅ କାଞ୍ଚୀଦାମକୁ ଢାଙ୍କ ଦେଇ, କେତକୀଫୁଲରି—କେତକୀଫୁଲର ଅତର, ଝୁନା—ପାତଳ । ୫ । ପଟ୍ଟୀର—ଚନ୍ଦନ, ପଟ୍ଟୀର···ବାସଚନ୍ଦନର ଅର୍କ ଥିବା ପାନକୁ । ଗ୍ରନ୍ଥିଲନିଯାମାପଙ୍କ ତୁଲେ—ଗଣ୍ଠିହଳଦୀ ବଟା ସାଙ୍ଗରେ, ହେମବଂଶଦଲେ—ସୁନା ବାଉଁଶ ପତ୍ରରେ, କୁନ୍ଦନ—ସୁନା । ୬ । ରଜନୀକାଶ୍ମୀର—ହଳଦୀ ଓ କୁଙ୍କୁମ । ୭ । ଦ୍ୟୁତିତୁଲ —କାନ୍ତିର ତୁଳନା; ତା ଶରୀର ସୁରତରଙ୍ଗିଣୀପୁରମଧ୍ୟରେ—ଚନ୍ଦ୍ରକଳାର ଶରୀର-

ଧନ୍ୟ କାମଦାୟିନୀ ଶୁଭାଙ୍ଗୀ ସେ । ୭ । କୁନ୍ଦନଖୋପୀ ନୀଳ ମୃଗ ଚର୍ମିରୀ ଯତନେ ରଙ୍ଗ ଖସାଇ । କମ୍ବୁକଣ୍ଠୀର କଣ୍ଠୀରବମଧ୍ୟାଏ କବରୀକି ଲହସାଇ ଯେ । ସେହି ସହ୍ୟ ତାହାର । କର ଜାଣନ୍ତି ଶୋଭା ବାହାର ସେ । ତୁଙ୍ଗ ଉରଜକୁ ଯଥା ହାର ଯେ । ୮ । ପୁଣି ଲଗି ଶାଢ଼ୀ ଅଞ୍ଚଳ ନିବାଡ଼ି ଉଡ଼ି ଯାଉଦେଲେ ଫେର । ବାନା କି ସେ ଡାକ ମୃଗେନ୍ଦ୍ରକଟୀକି ଜେମା ମଧ୍ୟ ଜଣିବାର ଯେ । କାଞ୍ଚୀ ତାହା ତଳରେ । କହେ କିଙ୍କିଣୀ ଧ୍ୱନି ଛଳରେ ସେ । ଧନ ସାବଧାନଟି କଳରେ । ୯ । ସ୍ତବକାବନତା ତପନୀୟଲତା ସଞ୍ଚାରଣୀ ହେଲା ପର । ତମାଲ ତଳ କୁରୁବିନ୍ଦ ବୃନ୍ଦମୀ ଉପରେ ଭ୍ରମୁ କଶୋରୀ ଯେ । ତାହା ଯାମୁରେ ରହି । କେଉଁ ପରିଣତ ଚନ୍ଦ୍ରମୁହୀଁ ମେ । ସରଶୋଭା ଘେନାଇଲା କହି ସେ । ୧୦ । ଗୃହାଁରେ ଚନ୍ଦ ଦରଶନ ଚକ୍ରିତ-ଚମରୀଗୃହୁନୟନା । ତୋ ଅଙ୍ଗ ଅଲିଙ୍ଗନ ଲୋଭେ ତଡ଼ାଗ ବେଶେ ହୋଇଛୁ ଅଙ୍ଗନା ସେ । ଚଳାଚଳ ଶଫରୀ । ଲୀଳାଲୋଳ ବାଲାନେତ୍ର ପରି ସେ । ଅରବିନ୍ଦ ତ ବଦନ ସରି ସେ । ୧୧ । ଜଳଜସନ୍ତତିବୃନ୍ତ ଗ୍ରୀବା-କାନ୍ତି ଗୈରିକଲା ପରି ଦିଶେ । ଅଲିଙ୍ଗିତ ଅଙ୍ଗ ପୃଥୁଳ ରଥାଙ୍ଗମିଥୁନ ସ୍ତନ ସଦୃଶେ ଗୋ । ସତେ କେଡ଼େ ସୁଗମ । ଜଳମାଳୀ ରୋମରାଜି ସମ ଗୋ । ଜଳଭ୍ରମି ନାଭିହ୍ରଦୋପମ ଗୋ । ୧୨ । ହେମସୋପାନଅବଳି ନିବଳିରୁ ବଳିଚ୍ଛି କଳନା କର । ଏହା ଲହରୀକି ଭୁରୁବଲ୍ଲରୀକି ତୁଳି-

---

ରୂପ ସ୍ୱର୍ଗଙ୍ଗାପ୍ରବାହରେ, କାମଦାୟିନୀ—ଅଭିଳାଷ ପୂରଣକାରିଣୀ । ଶୁଭାଙ୍ଗୀ—ସୁନ୍ଦରୀ ( ଚନ୍ଦ୍ରକଳା ) । ୮ । କୁନ୍ଦନଖୋପୀ—ସୁନା ଚଉଁରୀଭୂଷଣରେ ଲଗିଥିବା, କବରୀ—ବେଣୀ ବା ଜୁଡ଼ା, ଲହସାଇଦେଲେ—ଢିଲା କରିଦେଲେ ବା ଫିଟାଇ ଦେଲେ ।୯। ବାନା କି ସେ—ସେ ଫେର ଜେମାର କଟିଦେଶ ଡାକ (ଡମରୁ) ଓ ମୃଗେନ୍ଦ୍ରକଟୀ (ସିଂହକଟି)କୁ ଯେ ଜିଣିଅଛି ତାହାର ଜୟପତାକା କି ? କାଞ୍ଚୀ—କଟିମେଖଳା । ୧୦ । ସ୍ତବକାବନତା—ଫୁଲପେଣ୍ଡା ହେତୁରୁ ନଇଁ ପଡ଼ିଥିବା, ତପନୀୟଲତା—ସ୍ୱର୍ଣ୍ଣଲତା, କୁରୁବିନ୍ଦ—ପଦ୍ମରାଗମଣି ।୧୧। ଚନ୍ଦଦର୍ଶନ —ବଚନଶୋଭା, ପୋଖରୀ ସ୍ତ୍ରୀ ବେଶ ଧାରଣ କରିଅଛି । ଚଳାଚଳ ଶଫରୀ—ଚଞ୍ଚଳ କେରାଣ୍ଡି ମାଛ, ଅରବିନ୍ଦ—ପଦ୍ମ । ୧୨ । ଜଳଜସନ୍ତତିବୃନ୍ତ—ପଦ୍ମସମୂହର ଡେମ୍ଫ; ଅଲିଙ୍ଗିତ······ପରସ୍ପର ଜକାଜକି ହୋଇ ରହିଥିବା ସ୍ଥୂଳ ଚକ୍ରବାକ ଚକ୍ରବାକୀ; ଜଳମାଳୀ—ଶୈବାଳ, ଶିଉଳି; ଜଳଭ୍ରମି—ପାଣିଭଉଁରୀ, ନାଭିହ୍ରଦୋପମ—ଶରୀର ନାଭିସଦୃଶ ।୧୩। ହେମସୋପାନଅବଳି —ସୁନାର ପାହାଚସବୁ । ଭୁରୁବଲ୍ଲରୀ—ଭ୍ରୂଲତା ( ଲହରୀସଙ୍ଗେ ତୁଳିତ), ରସ ଜଳ ଓ ଶୃଙ୍ଗାରଭାବ, କୋକନଦ—ରକ୍ତପଦ୍ମ, କୂର୍ମଜଘନା—ବଡ଼ କଇଁଛ ପରି

ଦେଲେ ବରାବର ଗୋ । ରସେ ରହିଛନ୍ତି ପୁରି । କୋକନଦ ପାଣି ପାଦ ପରି ରେ । କୂର୍ମଜଘନା ଏ ବରନାରୀ ରେ ।୧୩। ବେ ବୋଲେ ରେ ଭୀରୁ ବଇଜୟନ୍ତୀରୁ ମୁକୁରଭଉଁଶକଳ । ଖସି ପଡ଼ି କେହି ସରଦମ୍ଭେ ରହି ମଣ୍ଡିଛନ୍ତି ମହୀମଣ୍ଡଳ ସେ । ଦିବ ଅମରୀକୁଳ । ଗୃହିଁବାରୁ ମୁଖ ପ୍ରତିଫଳ ସେ । ପଦ୍ମବ୍ୟାଜେ ହୋଇ ଦିଶେ ଠୁଳ ସେ ।୧୪। ରମଣୀର ମଣିରମଣୀୟ ମୁଖ ପୁରୁଷ ଚୁମ୍ବିଲ ପରି । ସାରସ ସାରସ ସାରଷଟ୍‌ପଦମାନେ ନେଉ-ଛନ୍ତି ହରି ରେ । ବାତ ବାଜି ବାରିଜ । ଅନ୍ଦୋଳିତ ହୋଇବାର ବ୍ୟାଜ ଗୋ । ନାହିଁ ନାହିଁ ବୋଲି କରେ ଲାଜ ଗୋ ।୧୫। ହୀରା ଇନ୍ଦ୍ରନୀଳ ଗୋମେଦ ପ୍ରବାଳ କପୋତକ ପାରାବତ । ବରୁଣ ବିମାନସମ ଦ୍ୱୀପଦଣ୍ଡି ମଣ୍ଡିଅଛନ୍ତି କେମନ୍ତ ଗୋ । ଦେଖ ଶିଖରଦନ୍ତି ! ଏ କି କୃତ୍ରିମ ପରି ଦିଶନ୍ତି ଗୋ । ଜୀବ ଥିଲ ପରି ହେବ ଭ୍ରାନ୍ତି ଗୋ ।୧୬। ସକୁଳଶକୁଳସଂକୁଳ ଏ ସର ନ କର ନକ୍ର ଭୀତି । ରସରେ ରସରେ ରମ୍ବରେ ଏହାର ବାରଣ-ବାରଣଗତି ଗୋ । ପୁଷ୍ପାବଚୟ ଶ୍ରମ । ଜଳକେଳିରୁ ଲଭ ବିରାମ ଗୋ । ସୁଶୀଳା ଶୀତଳ ସରେ ରମ ଗୋ ।୧୭। କଣାଣ ଶେଷର ସମୟେ ସେ

---

ଜଘନ ଯାହାର ।୧୪। ବୈଜୟନ୍ତ—ଇନ୍ଦ୍ରପୁରୀ, ମୁକୁରଭଉଁଶକଳ—ଦର୍ପଣ କାନ୍ତିଖଣ୍ଡ, ସରଦମ୍ଭେ—ପୋଖରୀ ବ୍ୟାଜରେ; ଦିବ—ସ୍ୱର୍ଗରେ ।୧୫। ମଣି ରମଣୀୟମୁଖ—ମଣି ପରି ସୁନ୍ଦର ମୁଖ, ସାରସ—ସରରେ ଜାତ, ସାରସ—ପଦ୍ମ, ସାର—ମକରନ୍ଦାଦି ନିର୍ଯ୍ୟାସ; ଷଟ୍‌ପଦ—ଭ୍ରମର, ବାତବାଜି···ପବନ ବାଜି ପଦ୍ମ କମ୍ପୁ ନାହିଁ ଯେ; ଭ୍ରମର ( ପୁରୁଷ ) ପୁଷ୍କରିଣୀ ( ରମଣୀ ) ର ପଦ୍ମ ( ମୁଖ ) ଚୁମ୍ବିବାରୁ ସେ ଲଜ୍ଜାରେ ନାହିଁ କରି ମୁହଁ ହଲାଉ ଅଛି ।୧୬। ହୀରା—ଶୁକ୍ଳବର୍ଣ୍ଣ ରତ୍ନ; ଗୋମେଦ—ପୀତବର୍ଣ୍ଣର ରତ୍ନ; ଶୁକ୍ଳାଦି ଚତୁର୍ବିଧ ବର୍ଣ୍ଣ ରତ୍ନରେ ନିର୍ମିତ କପୋତ ଓ ପାରାମାନେ ବରୁଣଙ୍କ ବିମାନ ପରି ଦିଶୁଥିବା ଦ୍ୱୀପଦଣ୍ଡିରେ କି ସୁନ୍ଦର ଦିଶୁଅଛନ୍ତି । ହେ ଶିଖରଦନ୍ତି—ହେ ସୂକ୍ଷ୍ମାଗ୍ରଦନ୍ତଧାରିଣି; ଏମାନେ ଅଜ ନିର୍ଜୀବ କୃତ୍ରିମ ଗିଲୁଲା ପରି ଦିଶୁନାହାନ୍ତି; ପ୍ରାଣ ଥିବାପରି ଭ୍ରମ ହେବ । ୧୭ । ସକୁଳଶକୁଳସଂକୁଳ—ସ୍ୱଜାତୀୟ ଅନ୍ୟ ମାଛଙ୍କ ସହିତ ଶକୁଳ (ଶେଉଳ) ମାଛମାନଙ୍କରେ ଏ ସର ସଂକୁଳ ( ପୂର୍ଣ୍ଣ ) ହୋଇଅଛି; ନକ୍ର (କୁମ୍ଭୀର) ଏଥିରେ କୁମ୍ଭୀର ଅଛି ବୋଲି ଭୟ କର ନା; ରେ ବାରଣ-ବାରଣଗତି—ରେ ଗଜଗତି ପରା-ଜୟକାରିଣି! ଏହାର ରସରେ (ଜଳରେ) ରସରେ(ଆନନ୍ଦରେ) ରମ (କ୍ରୀଡ଼ାକର); ପୁଷ୍ପାବଚୟ—ଫୁଲ ତୋଳା, ସୁଶୀଳା—ହେ ସୁସ୍ୱଭାବ (ଚନ୍ଦ୍ରକଳା)।୧୮। ସେ ସର

ସର-ସରସିଜନେତ୍ରାଞ୍ଚଳେ । ଅଧର ବାମୋଷ୍ଠ ହେଲେ ଭଡ଼ାଭଡ଼ ଅପଣା ଦୁକୂଳାଞ୍ଚଳେ ଯେ । ଗୃହିଁ ହସୁଛ୍ତି କେମା । କମା ହେବାର ସକଳ ବାମା ସେ । ରୂପେ ସମସ୍ତେ ଉର୍ବଶୀସମା ସେ । ୧୮ । ଚନ୍ଦ୍ରକଳାକର ଘେନା କୁମୁଦନୀ ହେଲ ପର ପ୍ରମୁଦିତ । ବାଳାକର ଧର ଜଳେ ସେ ସୁନ୍ଦରୀ ପ୍ରକାଶିଲେ ସେହ୍ନେ ମତ ସେ । କବା ନିର୍ମଳ ଘନେ । ଲୋଲେ ଖେଳିଲେ ଚପଳାମାନେ ଯେ । ବାଳା ଖେଳିଲେ ଅତ ଶୋଭନେ ଯେ । ୧୯ । ସହଚରୀ ପର ଲହରୀରେଖାର ପହିଁରଲେ ହରଣାକ୍ଷୀ । କଳହଂସକୁଳ ହୋଇଲେ ନିଷ୍ଫଳ ବାଳାବଳୀ ଖେଳ ଦେଖି ସେ । କେହ୍ନ ନୟନ ବୁଜ । ସଖୀ ନ ଗୃହୁଁ ରହେ ନିମଜ୍ଜି ସେ । ଅର ସଖୀ ମଜ୍ଜିପାଏ ଖୋଜ ଯେ । ୨୦ । କେ କାହାର ଜଳନିମଗ୍ନ ବିପୁଳ ଊରୁଯୁଗ ତଳେ ବୁଡ଼େ । ଚମକ ସେ ଉରେ ଭୁଜେ ନିବଡ଼ରେ ସମୀପ ସହ୍ରୀକ ଭଡ଼େ ଯେ । ଜାଣି ହସି ହରଷେ । ତାର ସୁନ୍ଦର ମୁଖସାରସେ ଯେ । କରାଞ୍ଜଳରେ ଜଳ ବରଷେ ଯେ । ୨୧ । କେ ବାଳା କାହାର ଶିଥିଳାଇ ଫେର ନିତମ୍ବ ନିକଟ ହେଜ । ନଖ ଚଳାଇ ଚମକାଇ ପଳାଇ ସଲ୍ଲଳେ ସଲିଳେ ମଜ୍ଜି ଯେ । ଦୂରେ ଯାଇ ବାହାର । ଅଟ୍ଟହାସ କଲ ମନୋହାରୀ ଯେ । କେହ୍ନ କାହାକୁ ଖେଳେ ନ ହାର ଯେ । ୨୨ । କେ ଗେଲେ ଗୁହାର କହଇ କୁହାର କେମା ସନ୍ନିଧିରେ ହସି । ଦେଖୁଅଛୁ ପରା ପ୍ରଭୁ ତୁ ତ ଧରାମଣ୍ଡନା ତମାଳକେଶି ରେ । କାହିଁପାଇଁ ଏ ମୋର । ବକ୍ଷସ୍ଥଳ କଲ ଦିଗମ୍ବର ଗୋ । ଲଜ୍ଜା ରଖିଲ ସିନା ଶମ୍ବର ଗୋ । ୨୩ । ବାଳା ଶୁଣି କହେ ଅତଥ୍ୟ ଏ ନୋହେ ଏହାର ଏ ହାର ହେବ । ପ୍ରତ୍ୟକ୍ଷେ ପାଣିରେ ରହିବାରୁ ସିନା ବଞ୍ଚାଇଲୁ ଅବୟବ ରେ ।

---

ସରସିଜନେତ୍ରାଞ୍ଚଳେ—ସେ ପୁଷ୍କରଣୀର ପଦ୍ମମାନଙ୍କ ପର ନେତ୍ରପ୍ରଦେଶ ଯେଉଁମାନଙ୍କର ସେହ୍ନ ସଖୀମାନେ । ୧୯ । ଚନ୍ଦ୍ରକଳାକର—ଚନ୍ଦ୍ରଲେଖାର କାରଣ, ଲୋଲେ—ଚଞ୍ଚଳ ହୋଇ, ଚପଳାମାନେ—ବିଜୁଳିସବୁ । ୨୦ । ଲହରୀରେଖାର ସହଚରୀପର—ଲହରୀ ସମାନ ହୋଇ, ବାଳାବଳୀ—ଯୁବତୀସମୂହ । ୨୧ । ଜଳ-ନିମଗ୍ନବିପୁଳ ଊରୁଯୁଗଳେ—ପାଣିରେ ବୁଡ଼ିଥିବା ବଡ଼ ଜଙ୍ଘଦ୍ୱୟ ତଳରେ, ମୁଖସାରସେ—ମୁଖପଦ୍ମରେ, କରାଞ୍ଜଳରେ—ହାତ ଅଞ୍ଜୁଳାରେ । ୨୨ । ଫେର—ଜଙ୍ଘ ନିକଟରେ ଥିବା ଲୁଗା, ନିତମ୍ବନିକଟ ହେଜ—ପିଚ୍ଛପାଖ ଜାଣି ପାର, ସଲ୍ଲଳେ—କୌତୁକରେ, ସଲିଳେ—ପାଣିରେ । ୨୩ । ତମାଳକେଶୀ—ତମାଳ ଗଛର ପତ୍ର ପର କେଶ ଯାହାର, ଦିଗମ୍ବର—ବସ୍ତ୍ରଶୂନ୍ୟ, ଶମ୍ବର—ଜଳ । ୨୪ । ବାଳା ଏଠାରେ ଚନ୍ଦ୍ରକଳା, ଅତଥ୍ୟ—ମିଥ୍ୟା, ଏହାର—

ଅନ ସହାୟେ ବଳେ । ବର୍ଣ୍ଣି ପାରନ୍ତି କି ଜଳଖେଳେ ରେ । ବୁହାଯିବ ବେହରଣ ବେଳେ ରେ । ୨୪ । ଜେମାର ବିପୁଳ ଜଘନକୁ ଜଳ ଯହୁଁ କଲା ଅଲିଙ୍ଗନ । ଯୁବରାଜ ପାଣି ଲଗି ପରି ମଣି ପୁଲକେନ୍ତେ ଅପଘନ ଯେ । ହସି କେଉଁ ମହିଳା । ଛଳ ଅନକୁ ଗୁହିଁ କହିଲା ଯେ । କାଳ କଳି ହେଲେ କି ନୋହିଲା ଗୋ । ୨୫ । ପରକୁ ଯେ ଯାହା କରଥାଇ ତାହା ଅନୁଭବ କରେ ଆପେ । ସବୁ ପ୍ରାଣୀଙ୍କର ଘରବୁଡ଼ା ମାରଘର ବୁଡ଼ିଗଲା ଅପେ ଗୋ । ଶୁଣି ଲଜେ କଣୋରୀ । ନେନ ଅନ୍ତରେ ମିଶାଇ କର ଯେ । ଢାଙ୍କିଲା ନୀଳକଞ୍ଚୁ ଧରି ସେ । ୨୬ । ଦେଖି ଅତି ବେଳ ହେଲା ଜଳ-ଖେଳ ଜେମାର ସଇରନ୍ଧ୍ରୀକା । ଅଳୀନିକରକୁ ତଅର ଗିରକୁ କହିଲା ଏ କି ଜୀବିକା ଗୋ । ଦେଖ ପ୍ରତୀଚୀ ଦିଗ । ବହିଲାଣି ଅଳକତରାଗ ଗୋ । ଶୁଣି ଲଭିବେ ଦେବୀଉଦ୍‌ବେଗ ଗୋ । ୨୭ । ଶରମ ତାର ଶ୍ରୀଅଙ୍ଗୁକଳ୍ପାଇବ ଅତିଶୟ 'ସରମତା' । ବିପରୀତ ଶେଷ ବିଧିମୁଖ କରେ ଦିଅ ଧରୁଁ ଭୂପସୁତା । ଗୋ । ଶୁଣି ଜେମା ସହାସେ । ସଇରନ୍ଧ୍ରୀକି କହେ ହରଷେ ସେ । ଅନ୍ତୁ ବିଶେଷ ଲୋଡ଼ା ନାହିଁ ସେ ଗୋ । ୨୮ । ଅଲୋମ ବିଲୋମ ଅଦ୍ୟ ପ୍ରାନ୍ତ କ୍ରମ ଅନ୍ତ ଅଦ୍ୟ କର ରୁଣ୍ଡ । ଉଭୟ ବହିର୍ଲିପିକାରେ ହୋଇବ କିଶଙ୍କୁ ନୃପତି ଦଣ୍ଡ ଗୋ । ପ୍ରଶ୍ନ ବର୍ଣ୍ଣ୍ୟଯୁଗଳୀ । ରଙ୍ଗେ ତହୁଁ ପଢ଼ୁଥିବ ଗଳା ଗୋ । ତହିଁ ଥିବ ସେ ଉଭୟ କେଳି ଗୋ । ୨୯ । ଅର୍ଦ୍ଧ ଅଲୋମ

---

ଏ ସଖୀର, ଏ ହାର ହେବ—ଏଥିରେ ପରାଜୟ ହେବ, ପୁରୁଷେ ପାଣିରେ —ଏକପୁରୁଷ ପରିମିତ ପାଣି ଭିତରେ ଅଥଚ ପୁରୁଷର ପାଣି ବା ହାତରେ । ବେହରଣବେଳେ—ସଭା ବୈଠକ ସମୟରେ । ୨୫ । ଜେମାର ବିପୁଳ···ଜେମା ଯେତେବେଳେ ଜଙ୍ଘ ପାଣିରେ ପଶିଲା, ରାଜପୁତ୍ରର ହାତ ଲାଗିଲା ପରି ଅନୁଭବ କରି ଶରୀରର ରୋମ ଟାଙ୍କୁର ଉଠିଲା, କଳିକାଳ ହେବାରୁ କଅଣ ନ ହେଲା ? ୨୬ । ମାର (କନ୍ଦର୍ପ) ସମସ୍ତଙ୍କର ଘର ବୁଡ଼ାଏ ଅର୍ଥାତ୍ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରେ, ଏବେ ମାରଘର ( ଜେମାର ଗୁପ୍ତଅଙ୍ଗ ) ନିଜେ ପାଣିରେ ବୁଡ଼ିଗଲା । ୨୭ । ସଇରନ୍ଧ୍ରୀକା—ବେଶକାରିଣୀ ସ୍ତ୍ରୀ, ପ୍ରତୀଚୀଦିଗ···ପଶ୍ଚିମ ଦିଗରେ ଅଳତା ରାଗ ହେଲାଣି ଅର୍ଥାତ୍ ସନ୍ଧ୍ୟା ନିକଟବର୍ତ୍ତୀ, ତଅର—ଶାସନ କରି, ଗିର—କଥା, ଦେବୀ—ଜେମାଙ୍କ ମା ପାଟରାଣୀ । ୨୮ । ଶରମ—ପରିଶ୍ରମ ବା କ୍ଳାନ୍ତ, ଅତିଶୟ ସରମତା—ଅତ୍ୟନ୍ତ ସୁଖଭିବ, ଅତ୍ୟନ୍ତ ସୁକୁମାରୀ ହେବାରୁ ବେଶି ଖେଳିଲେ ସେ କ୍ଳାନ୍ତ ହୋଇ ପଡ଼ିବ, ବିଧିମୁଖ—ଗୁରୁ, 'ସରମତା' ଶବ୍ଦର...ବିପରୀତ, 'ତାମରସ' ହୁଏ, ଅତଏବ ତା ହାତରେ କ୍ଳାନ୍ତ ଦୂର କରିବା ପାଇଁ ତାମରସ

ବିଲୋମରେ ହୋଇବ ସସିରସିହସିରୁସି । କଳପୁଥିଲେ ସେ ବର୍ଣ୍ଣ ଧାଡି ହେବ କଳପଲ୍ଲଡା ସଦୃଶୀ ଗୋ । ମୋତେ ଦିଅ ସେ ଫୁଲ । ପୁଣି ନୃପ ଆଦେଶକୁ ବୋଲ ଗୋ । ତଦନନ୍ତର ପ୍ରଶ୍ନ ତ ଭଲ ଗୋ । ୩୦ । ନ ସହି କଳି ଆରମ୍ଭିଲା ଲୋକଙ୍କୁ କି ବୋଲନ୍ତି ବୁଧ ନରେ । ନିବାସ ମାଗିବା ଲୋକଙ୍କୁ ତା ଦେଇ କି ବୋଲନ୍ତି ବଚନରେ ସେ । ଆଦ୍ୟେ ବିନ୍ଦୁକୁ ପାଇ । କେଉଁ ଦ୍ୱିବର୍ଣ୍ଣ ଗଜ ଦଳଇ ସେ । କୃଷାଣକୁ ପ୍ରାବୃଷିକ କହି ସେ । ୩୧ । ଶୁଚିରସମିଶ୍ର କେ ସଖୀ ସଖୀଙ୍କି କି ଶିଖାଏ ପ୍ରିୟ ହୋଇ । ବିଦ୍ୟାର୍ଥୀଙ୍କ ନିରକ୍ଷରେ ସେ କି ବୋଲି ସରସ ହୃଦେ କି ଥାଇ ସେ । ଶୁଣି ସେ ତ ଚତୁରୀ । ବାଳା ଚିବୁକକୁ ସ୍ନେହେ ଧରି ସେ । ଗଲା ପ୍ରମୋଦ ପୁଲକେ ପୁରି ସେ । ୩୨ । ଜଣାଇଲା ଆରେ ପଣ୍ଡିତାମଣ୍ଡଳୀମଣ୍ଡଳୀରତନଭୂଷା । ପରିପାଳିଲ ତ ମୋହର ବଚନ ଆନ ହେଲା ସିନା ଭାଷା ଗୋ । ତୁ ତ ଈଶ୍ୱରୀ ମୋର । ତେଣୁ ବଳିଲା ଏକ ଅକ୍ଷର ଗୋ । ସେବ୍ୟ ସେବକେ କେତେ ଅନ୍ତର ଗୋ । ୩୩ । କ୍ଷିତିପତିକନ୍ୟା ଆଗେ କେ ମନ୍ତ୍ରିଲା ଚିତ୍ତ ପହିଁରୀରେ ଅମ୍ବୁ । ପାଶୀ ସ୍ୱର୍ଗକୁ ଯିବାକୁ ପଡ଼ିଲା କି କାଶୀଅରିଜରୀ ତମ୍ବୁ ଯେ । ଅଭ୍ରସିଲା ସେପରି । ତାର ଉନ୍ନତ ଦ୍ୱିରଜଶିରୀ ଯେ । ମାରି ହୃଦୟକୁ ଦିଏ ଘାରି ଯେ । ୩୪ । ଏକାବେଳେ ଜଳେ ବୁଡ଼ିଲେ ସକଳେ ଭାସିଲା ଊର୍ଦ୍ଧ୍ୱେ କେବଳ । ଇନ୍ଦ୍ରନୀଳ ଛାୟା ଭ୍ରମର ନିଚୟ ପ୍ରଲମ୍ବ କୁନ୍ତଳକୁଳ ଯେ । ସରୁଁ ଏକ ପ୍ରଦେଶ । ଧଇଲା କି ସୂରସୁତା ବେଶ ଗୋ । ଅବା ତମାଲଚ୍ଛାୟା ପ୍ରବେଶ ଯେ । ୩୫ । ସ୍ଫୁରିବାରୁ କଚ ସୁବାସ ବିକଚ କୁସୁମ ବନ ଉପେକ୍ଷି । ଅଗଣିତ ଭୃଙ୍ଗରାଜି ତହିଁ ଅଙ୍ଗ ଜମାଇ ରହିଲେ ଲାଗି ସେ । କେ ସେ ଭ୍ରମରାବଳୀ । କେ ସେ କେଶୋରୀଙ୍କ କେଶପାଳୀ । ହେଲା କେବଳ ଧ୍ୱନିରୁ କଳି ଯେ । ୩୬ ।

---

(ପଦ୍ମ) ଦିଅ । ୨୯-୩୩ । ସରସିରୁହ ଶବ୍ଦର ପ୍ରତ୍ୟେକ ଅକ୍ଷରକୁ ଓଲଟ ପାଲଟ କରିଦେଲେ ଏହି ପାଞ୍ଚପଦର ଅର୍ଥ ବାହାରିବ; କୃଷାଣ—କୃଷକ, ପ୍ରାବୃଷି—ବର୍ଷାକାଳରେ, ଶୁଚିରସ—ଶୃଙ୍ଗାର ରସ । ୩୪ । ପାଶୀ—ବରୁଣ, କାଶୀଅରିଜରୀତମ୍ବୁ—ଜରୀଲଗା ଦୁଇଗମ୍ବୁଜ ଥିବା ବନାରସୀ ତମ୍ବୁ । ୩୫ । ଇନ୍ଦ୍ରନୀଳ...ଇନ୍ଦ୍ରନୀଳମଣିର କାନ୍ତିଯୁକ୍ତ ନୀଳଭଅଁର ପରି ଲମ୍ବ କେଶଗୁଚ୍ଛ; ସରୁ...ସେ ପୋଖରୀରୁ ଏକ ଅଂଶ ସୂରସୁତା (ଯମୁନା) ନଦୀ ବେଶ (ଯମୁନାର ଜଳ ନୀଳବର୍ଣ୍ଣ) ଧଇଲା କି ? ଅବା ପୋଖରୀର ସେ ଅଂଶରେ ତମାଲ ବୃକ୍ଷର ଛାୟା ପ୍ରବେଶ କଲା କି ? ୩୬ । କଚ—କେଶ, କେଶର ସୁବାସ ବାହାରିବାରୁ ଅସଂଖ୍ୟ ଭ୍ରମର ବିକଚ (ପ୍ରସ୍ଫୁଟିତ) ପୁଷ୍ପବନ ଛାଡ଼ି ସେ ସବୁ କେଶରେ ଦେହକୁ ଲୀନ କରି ଲାଗିଗଲେ, କେଶପାଳୀ—କେଶସମୂହ । ୩୭ । ସେମାନଙ୍କ

ସେ କେଳିମନ୍ଦର ହୋଇବାରୁ କ୍ଷୀରସାଗର ଉଦରଗତ । ବାଳାବୃନ୍ଦ ତୁଲେ ସମ୍ଭବ ଲଭିଲେ ଦ୍ରବିଣ ଅପରିମିତ ଯେ । ଐରାବଣଗତ । ମଣିସନ୍ତତି ମଣି ସନ୍ତତି ଯେ । ଗିରେ ହୋଇଲା ସୁଧା ପ୍ରତୀତ ଯେ । ୩୭ । ନିଜ ଅଙ୍ଗ ହରିଚନ୍ଦନବଲ୍ଲରୀ କଟାକ୍ଷ କାଳାଗରଳ । ବଦନ ନିକର ପରିଣତତର ହରିଣଧରମଣ୍ଡଳ ଯେ । ପୁଣି ହେଲା ଉପମା । ପଦ୍ମସୁବାସିତ-ଅଙ୍ଗୀ ବାମା ଯେ । ଲୀଳାପଦ୍ମ ଧରିବାରୁ ରମା ସେ । ୩୮ । ମନ୍ଦହାସୀଚୟ ଯେ ଯାହା ସିଚୟ ଫେରାଇହୋଇ ହାଜର । କେତକୀଦଳ ହିମକୁ ପରି ଲୁଚିଦେଲେ ତା ଶ୍ରୀଅଙ୍ଗ ନୀର ଯେ । ଉରୁ ନିତମ୍ବ ସ୍ତନ । ଭେଦିଥିଲା ସୁଚିକ୍କଣ ବସନ ଯେ । ତାର ଶୋଭାଦୃଷ୍ଟି ନେଲା ଅନ ଯେ । ୩୯ । ଗୁଚ୍ଛର ନୀଳମଣି ଭ୍ରମର ନୀରଦ ସମ କରିବାର ଜାଣି । ଜଳବିନ୍ଦୁ ଛଳେ ଅଶ୍ରୁ ମୁଞ୍ଚୁଥିଲା ଜେମାର କୁନ୍ତଳଶ୍ରେଣୀ ଯେ । ତାକୁ ବୋଧିଲା ପରି । ମୃଦୁ ଆଶ୍ୱାସନେ ଯତ୍ନେ ଧରି ସେ । ଲୁଚିଦେଲେ ପ୍ରିୟ ସହଚରୀ ଯେ । ୪୦ । ବୋଧିବା ବେଳେ ମୁଦିବା ପରି ଦେଇ ବଦନରେ କରପୁଟୀ । କାନ୍ତାରତନର କୁନ୍ତଳ ପ୍ରାନ୍ତରେ ପକାଇଲେ କୁଶବେଣ୍ଟୀ ସେ । ଫେଣ୍ଟାଯାଏ ମଣ୍ଡିଲା । ନେହ କଦନ ଧନ ଦଣ୍ଡିଲା ସେ । ଶିଖିକଳାପମଦ ଖଣ୍ଡିଲା ସେ । ୪୧ । ଚଳଦଳ ହେମରମ୍ଭାସ୍ତମ୍ଭ କାମରଥ ଚକ୍ରତୁଲେ ବାଦେ । ବାଳାର କେହି ଗୁପତ

---

କେଳି ମନ୍ଦର ପର୍ବତ ପରି, ପୋଖରୀ କ୍ଷୀରସାଗର ପରି, ଦ୍ରବିଣ—ଧନ, ଐରାବଣ—ଐରାବତହାତୀ, ମଣିସନ୍ତତି—ମଣିସମୂହ ।୩୮। ସମୁଦ୍ରମନ୍ଥନରୁ ହରି-ଚନ୍ଦନ ଲତା ପ୍ରଭୃତି ଜାତ ହୋଇଥିଲେ, ଏଠାରେ ଚନ୍ଦ୍ରକଳା ପ୍ରଭୃତିଙ୍କର ଅଙ୍ଗ ହରିଚନ୍ଦନ ଲତା ପରି, କଟାକ୍ଷ କାଳାଗରଳ (କାଳକୂଟ) ପରି, ମୁଖସମୂହ ପରିଣତତର (ପୂର୍ଣ୍ଣ) ହରିଣଧରମଣ୍ଡଳ (ଚନ୍ଦ୍ରମଣ୍ଡଳ) ପରି ପଦ୍ମପରି ସୁଗନ୍ଧ ଶରୀରଧାରିଣୀ ଚନ୍ଦ୍ରକଳା ହସ୍ତରେ ଲୀଳାପଦ୍ମ ଧରିବାରୁ ରମା (ଲକ୍ଷ୍ମୀ)ଙ୍କ ସଙ୍ଗେ ତୁଳିତ ହେଲା । ୩୯ । ସିଚୟ—ବସ୍ତ୍ର, ଫେରାଇ ହୋଇ—ବଦଳାଇ ହୋଇ, କେତକୀ ପାଖୁଡ଼ାରୁ କାକର ପୋଛି ଦେଲା ପରି । ୪୦ । ଗୁଚ୍ଛ—ଭୃଙ୍ଗ, ନୀଳମଣି, ଭ୍ରମର ଓ ନୀରଦ (ମେଘ) ଏମାନେ ଜେମାର କେଶଗୁଚ୍ଛ ସଙ୍ଗେ ତୁଳିତ ହେବାରୁ ତାହା ଯେପରି ବିନ୍ଦୁ ବିନ୍ଦୁ ଜଳପାତ ଛଳରେ କାନ୍ଦୁଥିଲା । ୪୧ । କେହି କାନ୍ଦୁଥିଲେ ଯେପରି ତାକୁ ବୁଝାଇ ତା ମୁହଁରେ କରପୁଟୀ (ହାତପାପୁଲି) ଦିଅନ୍ତି, ସେହିପରି ସେ କେଶଗୁଚ୍ଛକୁ ଧୀରେ ଧୀରେ ପୋଛି ଦେଇ ତହିଁ ଅଗରେ କୁଶଗଣ୍ଠି ପକାଇ ଦେଲେ, ନେହକଦନ···ସେ କେଶଗୁଚ୍ଛ ନେହ କଦନ ଅର୍ଥାତ୍ କ୍ଲେଶରୂପ ଧନକୁ ଦଣ୍ଡିଲା ଅର୍ଥାତ୍ କ୍ଲେଶ ଦୂର କଲା । ଶିଖିକଳାପ···ମୟୂର ପୁଚ୍ଛର ଗର୍ବ ଧ୍ୱଂସ କଲା । ୪୨ । ଚଳଦଳ—ଅଶ୍ୱତ୍ଥପତ୍ର (ଗୁପ୍ତଅଙ୍ଗ ସଙ୍ଗେ ତୁଳିତ), ହେମରମ୍ଭାସ୍ତମ୍ଭ—

ଅଙ୍ଗମାନେ ଦିବ୍ୟବନ୍ଧି ଚିନ୍ତି ହୃଦେ ଯେ । ଜଳେ ନିମଜ୍ଜିଥିଲେ । ଜିଣି
କଳମ୍ୱେ ଯା ବାହାରିଲେ ଯେ । ପ୍ରଭୁପଣ ପ୍ରକାଶିଲ ଭଲେ ଯେ । ୪୨ ।
ହରଗଉରି ଜଘି ଜାଲି କୁସୁମବୁଟା ଧଡ଼ି ପଡ଼ି ଶାଢ଼ୀ । ତିନିଙ୍କ ମୁନିଙ୍କ
ଧଇର୍ଯ୍ୟ ଧ୍ୱଂସିନୀ ବାନ୍ଧିଲ ଶାଢ଼ୀ ନିବାଡ଼ି ଯେ । ବହୁମାନର ଶେଷେ ।
ପ୍ରଶଂସିଲେ ସଜନୀ ବିଶେଷେ ଯେ । ତାର ସ୍ତବ ଘଟିବ ବା ଶେଷେ ଯେ ।
୪୩ । ସ୍ତନଯୁଗ ପୁଣି ପୁଅଇଲ ଜିଣି ମଣିସାନୁ ମନେ ଦିକା । ,ସୁନା
ଜଘି ମଲ୍ଲୀକସିଦା ମତଲ୍ଲୀ କୁସୁମ୍ଭା ରଙ୍ଗ ସିଇକା ଯେ । ଦେଲି ତାହାଙ୍କୁ
ବାଳା । ତଦୁପରି ଦିବ୍ୟ ମୋତିମାଳା ଯେ । ମୃଦୁ ବୟସେ କେଡ଼େ
ବସ୍ତ୍ରଳା ଯେ । ୪୪ । ତଦନନ୍ତରେ ଅନ୍ତରଙ୍ଗ ତରଙ୍ଗଚଳନେତ୍ରା ଜଣେ
ଲୋକେ । ବିଜେବେଳ ଜାଣି ଖଞ୍ଚାଇଲି ମଣି କଠାଉ, ଚରଣତଳେ ଯେ ।
ଧନ୍ୟ ସେ ରାଜଜେମା । ଜଗନ୍ନୟନ ଭାଗ୍ୟପ୍ରତିମା ସେ । ଅହା କି ମଣ୍ଡିଲି
ମହୀସୀମା ଯେ । ୪୫ । ମୋ ନାଦ ଶୁଣିଲେ ମଦନ ଅମଳେ ଯୁବାଙ୍କ
ହୃଦୟ ଝୁମ୍ପୁ । ଜଗତୀ ଧୃତି ହରଣରେ ମୁଁ ଠକ ବୋଲି କହେ ଧ୍ୱନି କମ୍ପୁ
ଯେ । ଭଲି ତା ଜନ୍ମ ଲୋକେ । ନାହିଁ ତା ଭାଗ୍ୟ ଶକ୍ରମସ୍ତକେ ଯେ ।
ଦୁଃଖେ ପାସୋରିଏ ଅବଲୋକେ ଯେ । ୪୬ । ହରପୁରପୁଞ୍ଜା ସରପଣା
ସ୍ୱାଦୂତର ପଥ୍ୟ ଭାଷୀ ବାଳା । ନରପତିଜେମାବର ପଙ୍କେରୁହ କର ପଇଠ

---

ସୁନା କଦଳୀଗଛ ( ଊରୁ ସଙ୍ଗେ ତୁଳିତ ); କାମରଥଚକ୍ର—କନ୍ଦର୍ପରଥର ଚକ
(ନିତମ୍ବ ସଙ୍ଗେ ତୁଳିତ ) । ଦିବ୍ୟ ବନ୍ଧି—ଶପଥ ବାନ୍ଧି; ଜେମାର ସେହି ତିନିଅଙ୍ଗ
ଉପମିତ ଅଶ୍ୱତ୍ଥ ପତ୍ର, ସୁନା କଦଳୀଗଛ ଓ କାମରଥ ଚକକୁ ଜିଣିବା ଇଚ୍ଛାରେ
ବହୁକ୍ଷଣ ପାଣିରେ ବୁଡ଼ିରହି ସେମାନଙ୍କୁ ଜିଣିଲେ ( ଆଗେ ଅନ୍ୟକୁ ଜିଣିବାପାଇଁ
ଏହିପରି ଜଳଦିବ୍ୟବନ୍ଧି ଚଳୁଥିଲା, ଯେ ବହୁକ୍ଷଣ ଜଳରେ ବୁଡ଼ିରହି ପାରୁଥିଲା ସେ
ଜୟୀ ବୋଲି ବିବେଚିତ ହେଉଥିଲା ) । ୪୩ । ହରଗଉରିଜଘି ( ଧଳା ଓ
ହଳଦିଆ ରଙ୍ଗର ଜଘି)ରେ ଜାଲି ପଡ଼ିଥିବା ଓ କୁସୁମବୁଟାଧଡ଼ି (ଫୁଲବୁଟା ପଡ଼ିଥିବା
ଧଡ଼ି ) ଶାଢ଼ୀଦ୍ୱାରା ସେ ତିନିଙ୍କ ମୁନିଧୈର୍ଯ୍ୟନାଶିନୀ ଚନ୍ଦ୍ରକଳା ଦୃଢ଼ରୂପେ ବାନ୍ଧିଲା ।
୪୪ । ସେହି ସ୍ତନଦ୍ୱୟ ମଣିସାନୁ ( ମେରୁ ପର୍ବତକୁ ଜିଣି ) ପୁଣି ତା ମନରେ
ଦିକା ପୁଅଇଲା (ଭୟଦେଲା) ଅର୍ଥାତ୍ ଅତି ଉନ୍ନତ ଦିଶିଲା, ତେଣୁ ଚନ୍ଦ୍ରକଳା
ସେ ଦୁହିଙ୍କ ପ୍ରତି ଅତି ଦୟାର୍ଦ୍ର ହୋଇ ସୁନାଜଘି ଲାଗିଥିବା ମତଲ୍ଲୀ (ଅତ୍ୟୁତ୍କୃଷ୍ଟ)
କୁସୁମ୍ଭାରଙ୍ଗ (ଲାଲବର୍ଣ୍ଣର) ସିଇକା (କାଞ୍ଚୁଲା) ତାଙ୍କୁ ଦେଲା ଅର୍ଥାତ୍ ସୁନାଜଘିଲଗା
ମଲ୍ଲୀଫୁଲ ପଡ଼ିଥିବା ଗୋଟାଏ ନାଲି କାଞ୍ଚୁଲା ସ୍ତନ ଦ୍ୱୟ ଉପରେ ପିନ୍ଧିଲା ଇତ୍ୟାଦି ।
୪୫ । ଅନ୍ତରଙ୍ଗ—ଅନ୍ତରୀଙ୍ଗା, ତରଙ୍ଗନେତ୍ରା—ଚଞ୍ଚଳନୟନା । ୪୬ । ମଣିକଠାଉ
ନାଦ ଛଳରେ କହିଲା...ମଦନ ଅମଳେ (କାମବଶରେ) ଯୁବକମାନଙ୍କ ମନ ଝୁମ୍ପୁ

ଧଇଲ ଯେ । ବିଜେ ମଣିମା ଡାକ । ଶୁଣି ବିସ୍ମରିଲେ ସଖୀଯାକ ଯେ । ଧିକ ବାକ ତ୍ରୟୋଦଶଲୋକ ଯେ । ୪୭ । ଅର୍ଦ୍ଧପକ୍ଷତରେ ଦୁଇ ଦାସୀ ଆସି ମିଶିଲେ ମସାଲ ଜାଳି । ଗୁରୁଶୁକ୍ରପାଶେ ପୂର୍ଣ୍ଣ ବିଧୁ ପରି ବିଜେ କରିଗଲ ବାଳୀ ଯେ । ଇଷ୍ଟଦେବୀଙ୍କି ଦେଖି । ଘେନି ପ୍ରସାଦ ମାଳ୍ୟ ସୁମୁଖୀ ଯେ । ଭେଟି ଜନନୀଙ୍କି କଲ ସୁଖୀ ଯେ । ୪୮ । ସେଠାରୁ ନିଜ ମନ୍ଦିରକୁ ସୁନ୍ଦରୀବର କରିଗଲ ବିଜେ । କେଶକୁ ଅଙ୍ଗନା ଧୂପ ଦେଲେ ଜନାର୍ଦ୍ଦନ କୃଷ୍ଣାଗୁରୁ ରଜେ ଯେ । ହେଲ କବିମାନସେ । ଧୂମ ନୁହଇ ନବଘନ ସେ ଯେ । ହାବ ଶୋଭାକୁ ଶରଣ ପଶେ ଯେ ।୪୯ । ଭାଲ ଖାଲିଥିବା ଭଲ ନୁହେ ବୋଲି ଦାନ ଦିବ୍ୟ ଗୋରଚନା । ଭ୍ରୂରୁ ମଧ୍ୟେ ଇନ୍ଦୁବିରଚିତ ବିନ୍ଦୁ ରଚିଲେ ମୃଗଲୋଚନା ଯେ । ହେଲ ଚିହ୍ନ ବିଚକ୍ଷଣା । ମାଳବରକାଳ ହେଲ ଜଣା ଯେ । ଫରମାସିଲ ମର୍ଦ୍ଦଳ ବୀଣା ଯେ । ୫୦ । ଦୁଇ ପଞ୍ଚାଶତ ପଦ ପରମିତ ଲୋକେ ମୋଦ ମହୋଦୟ । ଅଳକସୁନ୍ଦର ଚନ୍ଦ୍ରବଦନାର ଜଳକେଳି ରସମୟ ଯେ । କର୍ଣ୍ଣମନ ମୋହନ । ଯୁବା ମାନସ ମୃଗ ଗହନ ଯେ । ଦୁଃଖ ଇନ୍ଧନ ଦାହ-ଦହନ ଯେ । ୫୧ । ହରି ବନ୍ଦନୀୟ ସଭୋଗି-ବଳୟ ବିରାଜିତ ରାଜବଳ । ସଦାଶିବ ରାମ ରଙ୍ଗ ଧାମ ରାମଚନ୍ଦ୍ର ଦେବ ହୃଦସ୍ଥଳ ଯେ । ଶେଷ ହେଲ ଏ ଛାନ୍ଦ । ଜଳବିହାର ରସିକାନନ୍ଦ ଯେ । ମହୀ ଶଶିକାନ୍ତକୁ ଏ ବୃନ୍ଦ ଯେ । ୫୨ ।

---

ଘାରି ହେଜ । ୪୭ । ହରିପରି···କନ୍ଦର୍ପପୂଜାର ସରପଣା ଅପେକ୍ଷା ଅଧିକତର ସ୍ୱାଦୁ ଓ ହିତକର ବାଣୀ ଯାହାର ଏପରି ରାଜକନ୍ୟାର, ପଙ୍କେରୁହକରପଇଠ—ପଦ୍ମହସ୍ତର ଖରି । ବାକ ତ୍ରୟୋଦଶଲୋକକୁ ଧିକ୍—ଚତୁର୍ଦ୍ଦଶ ଭୁବନ ମଧ୍ୟରୁ ଏ ମର୍ତ୍ତ୍ୟ ଲୋକକୁ ଛାଡ଼ (କାରଣ ଏଠାରେ ଚନ୍ଦ୍ରକଳାର ଜନ୍ମ) ବାକି ୧୩ଟାକୁ ଧିକ୍ । ୪୮ । ଅର୍ଦ୍ଧପକ୍ଷତ—ଅଧଦାଣ୍ଡ । ୪୯ । ଜନାର୍ଦ୍ଦନକୃଷ୍ଣାଗୁରୁରଜ—ଏକପ୍ରକାର ସୁଗନ୍ଧ ଧୂପ ମସଲାଚୂର୍ଣ୍ଣ, ନବଘନ—ନୂଆ ମେଘ । ୫୦ । ଇନ୍ଦୁବିରଚିତ—ଚନ୍ଦ୍ରପରି ଗୋଲ ଗୋରଚନା ଟୋପା, ମାଳବରକାଳ—ସଙ୍ଗୀତର ପ୍ରଥମ ରାଗର ସୁସମୟ । ୫୧ । ଏ ଛାନ୍ଦ ଯୁବକ ମନମୃଗପକ୍ଷରେ ଅରଣ୍ୟ ପରି, ଦୁଃଖରୂପଇନ୍ଧନ (ଜାଳେଣିକାଠ)କୁ ପୋଡ଼ିଦେବା ବିଷୟରେ ଦହନ (ଅଗ୍ନି)ପରି । ୫୨ । ହରି—ବିଷ୍ଣୁ ଓ କପିରାଜ ସୁଗ୍ରୀବ, ସଭୋଗିବଳୟ—ସର୍ପବଳୟଧାରୀ (ଶିବ), ରାଜମଣ୍ଡଳ ସହିତ (ରାମ) ବିରାଜିତରାଜବଳ—ଚନ୍ଦ୍ରଖଣ୍ଡଶୋଭିତ (ଶିବ) ଓ ଇନ୍ଦ୍ରଙ୍କସୈନ୍ୟ-ଦ୍ୱାରା ପରିବେଷ୍ଟିତ (ଲଙ୍କା ଯୁଦ୍ଧରେ); ରଙ୍ଗଧାମ—କ୍ରୀଡ଼ାସ୍ଥାନ, ମହୀଶଶିକାନ୍ତ—ପୃଥିବୀରୂପ ଚନ୍ଦ୍ରକାନ୍ତମଣି ପକ୍ଷରେ ।

## ଦ୍ୱାଦଶ ଛାନ୍ଦ

### ରାଗ—କଳଙ୍ଗଡ଼ା

### ( ଚନ୍ଦ୍ରକଳା ନିକଟକୁ ଅନଙ୍ଗସୁନ୍ଦରର ଚିଠାଉ )

କୁନ୍ଦଲତା ବନା କେହ୍ନ ସେ ନବୀନା ପାଶେ ନ ଥିବାର ବେଳେ । ଖେଳି ହଂସାବତଂସ ମୋଦ ଜଳେ । ଚନ୍ଦନ ମୁଦ ଚିଠାଉ ଦ୍ରୁଶ କରୁଁ ଧରି ଗୃହ୍ନରଞ୍ଚୁ ଦଳେ ସେ । ମଞ୍ଜୁଳା । ସ୍ତମ୍ଭ ସମ୍ଭରୁଁ ସ୍ୱାତ୍ତ୍ୱିକ ପ୍ରସରି । ଭ୍ରମେ ବିଗ୍ନୁରିଲି ନବକିଶୋରୀ । ମୂର୍ତ୍ତିମନ୍ତ ନବପଲ୍ଲବ ଶବଦ ପ୍ରାନ୍ତର ବିସର୍ଗ ପଦ୍ମ ସେ । ୧ । ଗୃମୀକରପୃଷ୍ଠ ପଦ୍ମରାଗ ପୀଠ କରି ଉପରେ କରି ସ୍ଥିତ । କଲି ବଲୟନିନଦେ ସ୍ୱାଗତ । କରଜ ମୁଦ୍ରିକା ମଣିମୟୂଖରେ ପାଦ୍ୟ ଦେଲି ବିଧିମତ ସେ । ମଞ୍ଜୁଳା । ପ୍ରମୋଦରେ ଦରେ ଯାହା ହସିଲି । ତରେ ଅର୍ଘ୍ୟଦାନ କରି ତୋଷିଲି । ଅମନ୍ଦ ପ୍ରଣୟ ପ୍ରବାହ ଉଦୟ ଆଚମନ ପ୍ରକାଶିଲି ସେ । ମଞ୍ଜୁଳା । ୨ । ଢାଳି ନୟନଇନ୍ଦୀବରଯୁଗଳୀ ଆନନ୍ଦ ଅଶ୍ରୁବିନ୍ଦୁଛଳେ । ଘନ କୁସୁମ ବରଷାର ବେଳେ । ଢନ୍ତ୍ରିପିବା ମଳୟଜ ମୁଦ୍ରାଜାଲି ଶିଥିଳାଇ କୁତୂହଳେ ସେ । ମଞ୍ଜୁଳା । ସ୍ୱର ସାତ୍ତ୍ୱିକ ବିକାର ପାଇଲି । ଚମ୍ପାକଳୀ ଅଙ୍ଗୁଳୀ କମ୍ପାଇଲି । ତରୁଣ ସ୍ନେହ ସନ୍ଦେହ

---

ଦ୍ୱାଦଶ ଛାନ୍ଦ

୧ । ହଂସାବତଂସ—ଗୋଟିଏ ରାଜହଂସ, ମୋଦଜଳେ—ଆନନ୍ଦଜନକ ଜଳରେ, ଦ୍ରୁଶ କରୁଁ—ଦେଖାଉଁ । ମୂର୍ତ୍ତିମନ୍ତ···ହଂସର ଚଞ୍ଚୁ ( ଥଣ୍ଟ ) ସାକ୍ଷାତ୍ ରକ୍ତବର୍ଣ୍ଣ ନୂଆପଲ୍ଲବ ପରି, ଚିଠାଉ ( ପଦ୍ମ ) ଖଣ୍ଡ ସେହି ପଲ୍ଲବ ଶବ୍ଦର ଶେଷରେ ଲାଗିଥିବା ବିସର୍ଗ(ଃ)ପରି ଅବୃଭବଶିଷ୍ଟ । ଏହା ଦେଖି ଚନ୍ଦ୍ରକଳା ପ୍ରଥମେ ସ୍ତବ୍ଧହୋଇଗଲା, ପରେ ତାହାର ଅନ୍ୟ ସାତ୍ତ୍ୱିକଭାବ(ସତ୍ତ୍ୱଗୁଣାଶ୍ରିତସାଧୁଭାବ ସ୍ନେହ ରୋମାଞ୍ଚ ପ୍ରଭୃତି) ପ୍ରସାରିତ ହେଲା । ୨ । ଗୃମୀକର—ସୁବର୍ଣ୍ଣ, ପୃଷ୍ଠ—ପାପୁଲିର ପଛପଟ, ପାପୁଲି ପଦ୍ମରାଗମଣିର ପୀଠ ପରି, ବଲୟ (ହାତର ବଳା ) ନିନଦେ (ଶବ୍ଦରେ) (ସେ ଚିଠାଉକୁ) ସ୍ୱାଗତ କଲା, କରଜ (ଆଙ୍ଗୁଠି) ମୁଦିମାନଙ୍କ କିରଣରେ ପାଦ୍ୟ (ପାଦ ଧୋଇବା ପାଣି ) ଦେଲା, ପ୍ରମୋଦରେ ଦରେ (ଅଳ୍ପ କରି) ଯାହା ହସିଲା, ତାହା ଦରେ (ଶଙ୍ଖରେ) ଅର୍ଘ୍ୟ( ପୂଜା ପାଣି ) ଦେଲା ପରି ହେଲା, ପ୍ରଣୟପ୍ରବାହ ଏଠାରେ ଆଚମନ ପରି । ୩ । ମଳୟଜମୁଦ୍ରାଜାଲି —ଚନ୍ଦନରେ ଦିଆଯାଇଥିବା ମୋହରରୂପ ଆବରଣକୁ ଶିଥିଳାଇ (ହୁଗଳା

ଗଣ୍ଠିତୁଲେ ଚଣ୍ଠାଭଟି ଫିଟାଇଲା ସେ । ୩ । ଶିରେ ଲଗାଇବା ସମୟେ ଖସାଇ କରୁ ଅନାୟତ୍ତ ଦମ୍ଭରେ । ଭିଡ଼ି ଲଗାଇ ଉରଜକୁମ୍ଭରେ । ଔଷ୍ଠପୃଷ୍ଠତଟେ ଧଇଲା କପଟେ ସ୍ନେହଚୁମ୍ବ ଆରମ୍ଭରେ ସେ । ମଞ୍ଜୁଳା । ମନେ ସ୍ୱପୁଣ୍ୟକୁ ଧନ୍ୟ ବୋଇଲା । ମଧ୍ୟଦୃଷ୍ଟି କରି ପୁଣି ଧଇଲା । ଅନାଇଲା ଯତ୍ନେ ବନାଇବା ନବଲେଖ ପତ୍ରିକା ଛଇଲା ସେ । ୪ । ଯୁବରାଜ ଅଙ୍ଗୁ ଅଙ୍ଗରାଗ ସଙ୍ଗୁ କନକ ପାଟ ପରି ଦଶେ । ମିନା ଲେଖା ଅବା ବର୍ଣ୍ଣଧାଟୀ ସେ । ମଣିଲା ରାମଣୀୟକ ଜଳନିଧି ରମଣୀମଣି ସନ୍ତୋଷେ ସେ । ମଞ୍ଜୁଳା । ରେଖା ରେଖାକେ ଲେଖାଧିପଶିରୀ । ପଦତଳେ କରୁଛି ନଜକର । ବର୍ଣ୍ଣ ବର୍ଣ୍ଣଙ୍କରୁ ବଳି ଅର୍ଣ୍ଣବରୁ ପିଇଲା ସୁଧାନିର୍ଝରୀ ସେ । ୫ । ଗୁଣ ରୀତି ରସ ଶ୍ଳେଷ ଅନୁପ୍ରାସ ଯମକ ଭୂଦଳ ରଚନ । ଧୃତିଧ୍ୱଂସୀ ଏକ ଏକ ବଚନ । ଲୋଚନ ଅଦ ନିଖିଳ ଇନ୍ଦ୍ରିୟରେ ମଣିଲା ସୁଧାସେଚନ ସେ । ମଞ୍ଜୁଳା । ଅରେ ବାଳା ମହାରାଜକୁମାରୀ । ନବନୀତ ଶିରୀଷ ସୁକୁମାରୀ । ଧରାମଣ୍ଡଳ ଜଙ୍ଗମ ହେମଚମ୍ପାଝରୀ ବିଶ୍ୱମନୋହରୀ ରେ । ୬ । ବିପ୍ରଯୋଗୀଙ୍କର ସହାୟ ଶଙ୍କର ଏହା ଜାଣିଲେ ହେଲେ ଭଲେ । ତାଙ୍କ ନାମ ନ ଲେଖିଲ ପଦ୍ମଲେ । ସରଯାନ୍ତ୍ର ଧ୍ୟାନ କରୁ କରୁ ଜ୍ଞାନ ଚନ୍ଦ୍ରଚୂଳ ଜାଳିଦେଲେ ରେ । ମଞ୍ଜୁଳା । ଧୃତି ନ ରଖେ ଯା ଏକ କିରଣ । ପ୍ରାଣନ୍ତୁଲେ ନ କରେ ସେ କି ରଣ । ଏ ଘେନି ବିଗ୍ରହରେ ସମସ୍ତ

କରି ), ତରୁଣ (ଅନଙ୍ଗସୁନ୍ଦର) ର ସନ୍ଦେହଗ୍ରନ୍ଥୀ ଭୂଲେ (ସାଙ୍ଗରେ) ଚଣ୍ଠାଉଲୁ ଫିଟାଇଲା ଅର୍ଥାତ୍ ଚଣ୍ଠାଉଫିଟାଇବାରୁ ତରୁଣର ସନ୍ଦେହ ଦୂର ହେଲା । ୪ । କରୁ —କରରୁ, ଅନାୟତ୍ତଦମ୍ଭରେ—ଧୈର୍ଯ୍ୟ ସମ୍ଭାଳି ନ ପାରି । ୫ । ଯୁବରାଜ —ଅନଙ୍ଗସୁନ୍ଦର, ଅଙ୍ଗରାଗସଙ୍ଗୁ—ଜାଫ୍ରାନ୍ କେଶର ପ୍ରଭୃତି ଅଙ୍ଗରାଗ ଲାଗିଥିବାରୁ, କନକପାଟ—ହଳଦିଆ ପାଟ, ମିନାଲେଖା—ସୁନାରେ ମିନାକାମ ପରି ସେ ବର୍ଣ୍ଣଧାଟୀ (ଅକ୍ଷର ଧାଡ଼ି) ଦିଶୁଅଛି, ରାମଣୀୟକ—ଶୋଭା, ଜଳନିଧି—ସାଗର, ରେଖା···ପ୍ରତ୍ୟେକ ଗାର ଲେଖାଧିପ (ଇନ୍ଦ୍ର) ଐଶ୍ୱର୍ଯ୍ୟକୁ ତୁଚ୍ଛ କରୁଛି । ବର୍ଣ୍ଣବର୍ଣ୍ଣଙ୍କରୁ—ଅକ୍ଷର ଚନ୍ଦ୍ରଙ୍କରୁ, ବଳି ଅର୍ଣ୍ଣବରୁ—ସମୁଦ୍ରଠାରୁ ଅଧିକ । ୬ । ଭୂଦଳ—ପରିପୂର୍ଣ୍ଣ, ରଚନ—ରଚନା, ଧରାମଣ୍ଡଳ ଇତ୍ୟାଦି—ପୃଥିବୀ ମସ୍ତକର ଗତିଶୀଳ ସୁନାଚମ୍ପା ପୁଷ୍ପଗୁଚ୍ଛସ୍ୱରୂପା । ୭ । ବିପ୍ରଯୋଗୀ—ବିରହୀ, (ଶିବ କାମକୁ ଭସ୍ମ କରିଥିବାରୁ ) ସେ କାମକ୍ଳିଷ୍ଟ ବିରହୀଙ୍କ ସହାୟ । ଚନ୍ଦ୍ରଚୂଳ—ମସ୍ତକରେ ଥିବା ଚନ୍ଦ୍ରରେଖା, ଧୃତି ନ ରଖେ···ଯେଉଁ ଚନ୍ଦ୍ରର ଷୋଳକଳାରୁ ଏକ କଳାର କିରଣ ( ଶିବଙ୍କ ମୁଣ୍ଡରେ ଥିବା ) ଧୈର୍ଯ୍ୟ ନଷ୍ଟ କରି ଦିଏ, ତାହାର ସମଗ୍ର କିରଣ

ପ୍ରକାରେ ତୁହି ଏକା ମୋ ଶରଣ ରେ । ୭ । ମୋହନ କଳା ମୂର୍ତ୍ତିମନ୍ତ୍ର ମନ୍ତ୍ରର କାରିକା ତାରକେଶାନନା । ସୁଧାପୂର୍ଣ୍ଣ ସୁବର୍ଣ୍ଣଘଟସ୍ତନା । ପରିଜନ ପରିପାଳନେ ଯାହାର ତୃତେ ଦୟାକୁତାବାନା ରେ । ମଞ୍ଜୁଳା । ତୋର ନିସର୍ଗ ଚଞ୍ଚଳ ନୟନ । କର୍ଣ୍ଣେ ଲଗ ହେବାରୁ ପ୍ରଭଦନ । ବନ ଜଳରେ ଭୟରେ ଅନାରତେ ମୀନଶ୍ରେଣୀ ହେଲ ଲୀନ ରେ । ୮ । ନିଖିଳ ଗୁଣଗଣବତୀ ଯୁବତୀ ସୀମନ୍ତମଣି ସାମନ୍ତାଣୀ । କଳକଣ୍ଠ କୂଜନ ଠାଣି ବାଣୀ । ତୋ ସଙ୍ଗୀତବିଦ୍ୟା ତେତେ ବିଶାରଦା ଶାରଦା ନ ଥିବେ ଜାଣି ରେ । ମଞ୍ଜୁଳା । ତୁ ଯେ ବିବେକୀଙ୍କ ଶିରୋଭୂଷା । ଶେଷଦେବ ହୋଇବେ ଲେକହସା । ଏକ ସହସ୍ରବଦନେ ଆରମ୍ଭିବେ ଯେବେ ତୋହର ପ୍ରଶଂସା ରେ । ୯ । ମଣୁଅଛୁ ବ୍ରହ୍ମପଦ ତୋର ପଦତଳେ ପଶିଅଛୁ ଶରଣ । ହଂସଭୂଷଣ ହଂସ ସଞ୍ଚରଣ । ରଜୋଗୁଣବିଗ ଜାଗରୂକ ହୋଇ ଦିଶେ ଅତ୍ୟନ୍ତ ଅରୁଣ ରେ । ମଞ୍ଜୁଳା । ଜନ୍ମ ଆକର ଆକାର ଧରିଛୁ । ନଖକାନ୍ତି ମକରନ୍ଦ ଝରୁଛୁ । ଚୁମ୍ବନଲାଳସ ହୋଇ ମୋ ମାନସମିଳନ୍ଦ ଅନୁସରିଛୁ ରେ । ୧୦ । ଭଜିଛୁ ତୋ ଊରୁଯୁଗକୁ ଅଖଣ୍ଡ ଲକ୍ଷ୍ମୀ ଆଖଣ୍ଡଳ ପଦବୀ । ରମ୍ଭାରୁଚି ଯହିଁରେ ଅଛୁ ସେବି । ପୁଲକେ ରୋମଜାଳମୂଳେ ଯାହାର ଭକେ ଶତକୋଟି ଛବି ରେ । ମଞ୍ଜୁଳା । ନେତ୍ର ସହସ୍ର ଅର୍ଥେ

---

ଜୀବନ ନେବାକୁ ଯତ୍ନ କରେ ନାହିଁ କି ? ( ଚନ୍ଦ୍ରକିରଣ ବିରହୀଙ୍କ ପକ୍ଷରେ ଅସହ୍ୟ ) । ୮ । ମୋହନ…କାରିକା—ତୁ ବିମୋହନ ମନ୍ତ୍ରଧାତ୍ରୀ ପରି, ତାର-କେଶାନନା—ଚନ୍ଦ୍ରବଦନା, ବନଜଳରେ—ପାଣି ମଧ୍ୟରେ, ଭୟରେ—ଡରରେ, ଅନାରତେ—ସର୍ବଦା । ୯ । ବିଶାରଦା—ପଣ୍ଡିତା, ଶାରଦା—ସରସ୍ୱତୀ, ଶେଷଦେବ—( ସହସ୍ରମୁଖ ) ଅନନ୍ତଦେବ । ୧୦ । ବ୍ରହ୍ମପଦ—ବ୍ରହ୍ମାଙ୍କ ଐଶ୍ୱର୍ଯ୍ୟ, ହଂସଭୂଷଣ—ହଂସ ( ପରମ ବ୍ରହ୍ମ ) ଭୂଷଣ ( ହୃଦୟାଧିପ ) ଯାହାଙ୍କର, ହଂସ ( ନୂପୁର ) ଭୂଷଣ ( ଅଳଙ୍କାର ) ଯାହାର । ହଂସସଞ୍ଚରଣ—ହଂସବାହନ ଓ ହଂସ ପରି ଧୀରଗମନ; ରଜୋଗୁଣ…ବ୍ରହ୍ମା ରଜୋଗୁଣ ବଶବର୍ତ୍ତୀ ହୋଇ ସୃଷ୍ଟିକରନ୍ତି; ତୋ ଚରଣ କୁଙ୍କୁମକେଶରାଦିର ଧୂଳିଦ୍ୱାରା ରକ୍ତବର୍ଣ୍ଣ, ଜନ୍ମ-ଆକର…ବ୍ରହ୍ମାଙ୍କ ଜନ୍ମସ୍ଥାନ ପଦ୍ମ, ତୋ ଅଙ୍ଗୁଳି ପଦ୍ମ ପରି ହେବାରୁ ତହିଁରୁ ନଖଶୋଭାରୂପ ମକରନ୍ଦ ଝରୁଛି, ମାନସ ମିଳନ୍ଦ—ମନରୂପ ଭ୍ରମର । ୧୧ । ତୋ ଜଙ୍ଘ ଦୁହିଙ୍କୁ ଅନନ୍ତ ଶୋଭାପୂର୍ଣ୍ଣ ଇନ୍ଦ୍ରପଦ ଆଶ୍ରୟ କରିଛି । ରମ୍ଭାରୁଚି—କଦଳୀ-ଗଛପରି ମନୋହର ଓ ରମ୍ଭା ନାମକ ସ୍ୱର୍ବେଶ୍ୟାଦ୍ୱାରା ମନୋହର, ପୁଲକେ—ରୋମାଞ୍ଚବେଳେ, ରୋମଜାଳମୂଳେ—ରୋମମାନଙ୍କ ମୂଳରେ, ଶତକୋଟି—ବଜ୍ର ଓ ବହୁସଂଖ୍ୟକ; ଛବି—ଶୋଭା, ନେତ୍ରସହସ୍ର ଅର୍ଥେ—ସହସ୍ରନେତ୍ର ଇନ୍ଦ୍ରଙ୍କ ପାଇଁ

ତୋ ଲବଣ୍ୟ ବିନା ଆଉ ଇତର ନ ଦିଶେ । କି ମୋହନମନ୍ତ୍ରସିନ୍ଧୁ ଭିତରେ ନ ଦିଶେ । ୧୦ । ନୟନ ବୁଜିଲେ ଦିଶୁ ମୋ ଅନ୍ତଃକରଣେ । ଗୃହିଁଲେ ଚକିତ ଦିଶୁ ହରତବରଣେ । ପ୍ରିୟ ଅଳୀ ଜଣେ ମାତ୍ର ସମୀପେ ଥୁଆଇ । ଯାଇ ଜାଲି ଯବନିକା ପାଶେ ଉଭା ହୋଇ । ୧୧ । କୁସୁମମଣ୍ଡପେ ମୁଁ ଏକାନ୍ତେ ଥିବା ଜାଣି । ନ ଜାଣିଲା ହୋଇ କହିବାର ରସ ବାଣୀ । ରସାଇ ସଖୀଙ୍କ କରିବାର ପରିହାସ । ମିଶାଇ ତହିଁରେ ମୁଁ ଶୁଣିବାଭଳି ହାସ । ୧୨ । ମଞ୍ଜୁଅତି ବନ୍ଧୁ ସ୍ୱରମଞ୍ଜୁଳ ଅଙ୍ଗୁଳି । ଗଳାଇ ପରିଦା ରନ୍ଧ୍ରେ କରାଇବା କେଳି । କେଉଁ ଉଦ୍ଦେଶ୍ୟରେ କହୁଛ ମା କଥା ବୋଲି । କାଳମାର୍ଗେ ଅନାଇଁ ନଚ୍ଛଇ ଗୃରୁ ଚଲ୍ଲୀ । ୧୩ । ଫିଙ୍ଗି ମୋ ବଦନେ ନେତ୍ର ଇନ୍ଦୀବରବର । ଅମନ୍ଦ କନ୍ଦର୍ପ ମନ୍ଦସ୍ମିତ ବହିବାର । କହି କହ ସଙ୍ଗ କେହ୍ନୁ ନାହାନ୍ତି ତ ବୋଲି । ସଖୀଙ୍କ ଦେବାର ଶାଢ଼ୀ-ବାଡ଼ଦେଗେ ପେଲି । ୧୪ । ପୁଣି ସବୁ ସଖୀଙ୍କି ଡକାଇ କରି ସଭା । କର-କଞ୍ଜ ଖଞ୍ଜି ଜନମାଇ ବୀଣାଶୋଭା । ଙ୍ଗରାଇ ସୁବର୍ଣ୍ଣ କର୍ଣ୍ଣସୁଧା ଙ୍ଗରିବାର । କ୍ଳାନ୍ତସ୍ୱ ଗାଇମା ଶିସ୍ ରେଖ୍ ଦବାର । ୧୫ । ମୁଁ ମିଳୁ ମନ୍ଦାକ୍ଷେ ହସି ରସନା ଛାମୋଡ଼ି । ରସନା ବଜାଇ ତଲ୍ଲେ ବିପଞ୍ଚୀ କଗୁଡ଼ି । ପଳାଇ ଯିବାର ମନ୍ଦ କଳହଂସ ପରି । ଦେଲି ପରି ମୋ ନୟନେ ଘନସାର ଚୂରି । ୧୬ । ନେହାଅଁଲେ ଗୃହିଁ ପରକାଶି ଦର ସ୍ମିତ । ଏ ଜୀବ ଥିବାରେ କି ପାସୋରି ପାରେ ଚିତ୍ତ । ଚରମାଦ୍ରିଚୂଳକୁ ଚୁମ୍ବନ୍ତେ କରମାଳୀ । ଯେପରି ବାତକଳକଳକୁଳେ କରମାଳି । ୧୭ । ଭୁଙ୍ଗ ଙ୍ଗୁରେ ମିଶାଇ ପୁଷ୍ପଚୟ ତୋଷି । ହେଲି ବାର ନ ଯୋନବେ ବୋଲି ଅଜ ଭାଷି । ସେ ଇଙ୍ଗିତ ଭଙ୍ଗୀ ଶୁଭାଙ୍ଗୀର ଡରିକଇ । ଅଧ ଊର୍ଦ୍ଧ୍ୱେ ସାତଗୋଟି ପଙ୍କଜ

---

ସ୍ତନ ଯାହାର । ୧୧ । ଜାଲି ଯବନିକା—ଝାଲିର ପରଦା । ୧୨ । ରସବାଣୀ—ରସପୂର୍ଣ୍ଣ କଥା । ୧୩ । ଗୃରୁଚଲ୍ଲୀ—ସୁନ୍ଦର ଭ୍ରୂଲତା । ୧୪ । ନେତ୍ର-ଇନ୍ଦୀବରବର—ସୁନ୍ଦର ନେତ୍ରରୂପ ନୀଳପଦ୍ମ । ଶାଢ଼ୀବାଡ଼ ଦେଗେ—ପରଦା ଅଢ଼କୁ । ୧୫ । କରକଞ୍ଜଖଞ୍ଜି ଜନମାଇ ବୀଣାଶୋଭା—ହସ୍ତପଦ୍ମରେ ବୀଣା ଧରି । ୧୬ । ମନ୍ଦାକ୍ଷେ—ଲଜ୍ଜାରେ, ରସନା—ଜିହ୍ୱା ଓ କଟିଭୂଷଣ କାଞ୍ଚୀଦାମ, ତଲ୍ଲେ—ବାଜଣାରେ । ବିପଞ୍ଚୀ—ବୀଣା; ଘନସାର—କର୍ପୂର । ୧୭ । ଚରମାଦ୍ରିଚୂଳକୁ—ଅସ୍ତପର୍ବତ ଶିଖରକୁ, କରମାଳୀ—ସୂର୍ଯ୍ୟ ଓ ହାତରେ ଧରିଥିବା ମାଳା, ବାତକଳକଳକୁଳେ—ମଲ୍ଲୀଫୁଲ କଢ଼ିମାନଙ୍କରେ । ୧୮ । ଭୁଙ୍ଗ-ଙ୍ଗୁ—ବଡ଼ ବଡ଼ ଫୁଲତୋଡ଼ା, ହେଲି ବାର ନ ଯୋନବେ—ମୁଁ (ଗୃହଦନ) ସୁଥିଲି ହେଲି, ସାତଗୋଟି ପଙ୍କଜ—ଏକ ମୁଖ, ଦୁଇ କର, ପାଦ ଓ ସ୍ତନ

ରଖିଲ । ୧୮ । ତଳକୁ ରହଇ ତହିଁ ଯେଉଁ ଦୁଇ ଗୋଟି । ଗୋଟି ଗୋଟି କରେ ଚୁମ୍ବ ଦିଏ କୋଟି କୋଟି । ଦିନେ ଦିନେ ଦିନାନ୍ତରେ ଅଜନମ-ସୁଖୀ । ପରିଜନ ବିନା ମୁଁ ଏକାନ୍ତେ ଥିବା ଦେଖି । ୧୯ । ସ୍ନେହସ୍ରୋତେ ଭାସିବା ମାନସ ନ ସମ୍ଭାଳି । କରାଇ ଅଧରେ ଈଷନ୍ଦକା ହାସ କେଳି । କମ୍ପାଇ ତାଙ୍କ ମୋତିଙ୍ଗୁମା ଅପ୍ରକଟେ । ଝମ୍ପାଇ ଶ୍ରୁତିକି ଲୋଲ ନେତ୍ରଖଞ୍ଜରୀଟେ । ୨୦ । ଶ୍ରବଣେ କିଛି କହିବା କପଟରେ ଅସୁ । ସ୍ନେହରେ ମୋ ଗଣ୍ଡେ ଚୁମ୍ବକଦମ୍ବ ବରଷୁ । ଧନ ତୋ ଏ ଅବଧାନ ଭାବିଲି ଡରୁଛୁ । ନ ଫାଟେ ଯା ଛାତି ଏ ନିଷ୍ଠୁର ବଜ୍ରଠାରୁ ।୨୧। ଇନ୍ଦ୍ରହିଁ ହେଲେ ଏହାକୁ ନିଜାସ୍ତ୍ର ନ କରେ । ଶଚିର ଶରବିରହ ସହିବା ଭୟରେ । ପୂର୍ବ ଶୁଦ୍ଧାନ୍ତ ପ୍ରାସାଦେ କୁହୁନିଶାନନେ । ଲଭି ହୋଇଥିଲୁ ନୀଳ ଚେଳ ପିନ୍ଧି ଦିନେ । ୨୨ । ମସାଲ ପ୍ରଦୀପ କିଛି ନ ଥିଲା ହାଜର । ମୁଁ ମଧ୍ୟ ମଣ୍ଡପେ ଥିଲି ପଡ଼ିଲା ନଜର । ତୋ ମୁଖମଣ୍ଡଳ ବୋଲି ନୋହିଲା ବିବେକ । ସେ ନିଶାରେ କଲି ରାକା ବ୍ୟବହାର ଯାକ । ୨୩ । ତମନ୍ମୁଖୀ ଉଚ୍ଛିଷ୍ଟ ସମାନ କଲେ ଯେନି । ବିମ୍ବପ୍ରଭ ବିମ୍ବାଧରା ହୋଇଲୁ ମାନିନୀ । ଶିର ମାଡ଼ିପଡ଼ି ନାଡ଼ି ଛାଡ଼ି ଗଲା ପରି । ଶିରଜୋମାବର-ପର ଶରେ ଗଲି ସରି । ୨୪ । ଜଣାଇଲି ଶିରୁକରେ କରନ୍ୟାସ କରି । ତୁ ମୋ ଧନୀ ପରା ସୁନାଗୋରୀ ସୁକୁମାରୀ । ଦାସୀମାନଙ୍କରେ ଜଣେ ମୁଁ ପରା ତୋହର । ଭାସିଯିବି ସିନା ହେଲେ କରୁଣାନ୍ତ ହର । ୨୫ । ମୁଁ ତୋ ପଦକଞ୍ଜ ଅଳକତ ଶାନକରା । ତୁ ମୋ ମଙ୍ଗଳଭୂଷଣ ରମ୍ଭାଝରା ପରା । ତଳକୁ ଅନାଇ ନ ଚାହୁଁଛୁ ଯାହା ମୋତେ । ନୀଳକୁନ୍ତଳା ମୋ ଭାଗ୍ୟମୂଳ କେ ଜଗତେ । ୨୬ । ଶୁଣି ଗୁଣବତୀ ବେଗେ ଗୁମାନ ଛାଡ଼ିଲୁ । ପୁଣି ହସି ସ୍ତନଯୁଗେ ଜଡ଼ାଇ ଭିଡ଼ିଲୁ । ପ୍ରସାଦ ମୋ ବିବଶ ମନକୁ ବଢ଼ାଇଲୁ । ପ୍ରାସାଦେ ମୁଁ ସିନା ଥିଲି ବୋଲି ବୁଝାଇଲୁ ।୨୭। ବଡ଼ ସାର

---

ସନ୍ତୁଷ୍ଟ । ୧୯ । ପରିଜନ—ଭୃତ୍ୟାଦି ଅନୁଚର । ୨୧ । ଚୁମ୍ବକଦମ୍ବ—ଚୁମ୍ବନ-ସମୂହ, ନିଷ୍ଠୁର — ନିଷ୍ଠୁର, କର୍କଶ । ଏହାକୁ—( ଏଠାରେ ହୃଦୟକୁ) । ପୂର୍ବଶୁଦ୍ଧାନ୍ତ ପ୍ରାସାଦେ—ପୁରୁଣା ଅନ୍ତଃପୁର କୋଠାରେ, କୁହୁନିଶାନନେ—ଅମାବାସ୍ୟାର ସଞ୍ଜବେଳେ, ନୀଳଚେଳ—ନେଳିଆ ଲୁଗା । ୨୩ । ରାକା—ପୂର୍ଣ୍ଣିମା ରାତି; ତୋ ମୁଖ ଚନ୍ଦ୍ରପରି ହୋଇ ଅମାବାସ୍ୟା ଅନ୍ଧକାର ଦୂର କରି ଦେବାରୁ । ୨୪ । ତମମୁଖୀ ଉଚ୍ଛିଷ୍ଟ—ରାହୁ ମୁହଁର ଅଇଁଠା = ଚନ୍ଦ୍ର, ଶିରଜୋମା-ବରପର—ଶିବଶତ୍ରୁ କନ୍ଦର୍ପ । ୨୫ । କରୁଣାନ୍ତ ହର—ନିର୍ଦ୍ଦୟତା ଦୂର କର । ୨୭ । ପ୍ରସାଦ—ଅନୁଗ୍ରହକରି, ବଢ଼ାଇଲୁ—ଭଙ୍ଗାଇଲୁ, ପ୍ରାସାଦେ—କୋଠାରେ ।

ବଡ଼ଭିତରେ ବରଷାର କାଳେ । ବସିଥିଲୁ ଗବାକ୍ଷ ସମୀପେ ମୋର
କେଳେ । ପରବୃଦ୍ଧ ସରତଳହସ୍ତ ଦୂରେ ଗୃହି । ଏମନ୍ତ ଭାଷିଲୁ
ପରଣତ ଗୃହମୂର୍ତ୍ତି । ୨୮ । ଗୀରତରୁମାନଙ୍କର ସାର ନେବ ଧୂନୀ । ମୁଁ
ବୋଇଲି ଅନ୍ତରୁ ତୁ ଫେରାଅ ଭାବନା । ଚତୁରା ତହିଁକି ହସି କହିବା
ଭାରତୀ । କତୁର ପକାଉଛୁ ମୋ ଅନାଦରେ ଧୃତି । ୨୯ । ଦିନେ
ସ୍ମରବଶେ କଚକଞ୍ଚ ଯା ଧଇଲି । ଥରେ ମୋହ ପର ହେବୁ ଛଇଲା
ବୋଇଲି । ତହିଁକି ଭାଷିଲୁ ହସି ଉରେ କର ତଡ଼ି । ଦଶନାନ୍ତେ ରସନା
ପଲ୍ଲବାଅଁଲେ ଭିଡ଼ି । ୩୦ । ମେଧାରେ ଧିଷଣା ବଳେ ବାଲୀ ରୂପେ କାମ ।
ସଙ୍ଗୀତେ ଗନ୍ଧର୍ବ କ୍ଷମ ଗୁଣେ କ୍ଷମୋପମ । ମୋ ଘର କଣେ ଯାଇ ତୁମ୍ଭ ପର
କେହି ହେବ । ଏତେ କହି ଖେଳିଲୁ ମୋ ଘୁଡରେ ବାନ୍ଧବ । ୩୧ ।
ହୋଇଗଲା ବିରତ ମଞ୍ଜୀର ମଞ୍ଜୁରବ । ମେଖଳା କିଙ୍କିଣୀ କଲ୍ପ ଶ୍ରବଣ
ଉତ୍ସବ । ସ୍ୱେଦପ୍ରଗ କମ୍ପିଲା ତଳକୁ କର ଚୂଳ । ବିଷ୍ଣୁପଦେ ଲମ୍ବି
ମନ୍ଦାକିନୀ ହେଲା ଚେଳ । ୩୨ । ଶଙ୍ଖଶିଖେ ଶଶୀ ଶଶୀ ଦୁଇ ପାଖେ ରହି ।
କମ୍ପିଲେ ଭାର୍ଗବ କବି ତରଳତା ବହି । ହଳକା ମୋଡରେ କର ଲବଳୀ
ବିଶ୍ୱାସ । ହଂସି ଫେରିଲା ଖଞ୍ଜନ ଅଟେ ଗୃହି ପାଶ । ୩୩ । ଗୃମୀକର
କର ଚଞ୍ଚୁପୃଷ୍ଠରେ ଲବଳୀ । ଧରି ପ୍ରମୋଦରେ ତଳୁ
ଖେଳାଇଲା ଦୋଳି । ହଂସି ନ ପାରିଲା ପକ୍ୱବିମ୍ବ ତାହା ତଳୁ । ଘୁଞ୍ଚ ନ
ପାରିଲା ଅଶା ଲବଳୀ କବଳୁ । ୩୪ । ବିପରୀତ କାଳ ହୋଇବାରୁ

---

୨୮ । ବଡ଼ସାର ବଳଭିରେ—ଅତ୍ୟୁନ୍ନତ କୋଠାରେ, ଗବାକ୍ଷ—ଝରକା, ପରବୃଦ୍ଧସରତଳହସ୍ତ—ବଢ଼ିଥିବା ନଖର ତେଜ । ୨୯ । ଧୂନୀ—ନଦୀ, ଭାବନା—ହେ ରମଣି, ବୋଇଲି—ତୋ କହିବା ଧାଡ଼ିଟିକୁ ଶେଷଅକ୍ଷର ପଢ଼ 'ନଧୁବନେରସା', ଥରେ ମୋହ ପର ହେବୁ—ପୁରୁଷାୟିତ ରତି ପ୍ରଦାନ କରିବୁ, ଦଶନାନ୍ତେ··· ···ଦାନ୍ତରେ ଓଠ କାମୁଡ଼ି । ୩୧ । ମେଧାରେ—ବୁଦ୍ଧିରେ, ଧିଷଣ—ବୃହସ୍ପତି, ବାଲୀ—ମର୍କଟସ୍ୱଙ୍କ, ରୂପେ କାମ—ସୌନ୍ଦର୍ଯ୍ୟରେ କନ୍ଦର୍ପପରି, କ୍ଷମୋପମ—ପୃଥିବୀ ପରି । ୩୨ । ମଞ୍ଜୀର—ନୂପୁର, ମଞ୍ଜୁରବ—ମନୋହର ଧ୍ୱନି, ମେଖଳା-କିଙ୍କିଣୀ—କଟୀ ଅଳଙ୍କାରର ଘୁଙ୍ଗୁର, ବିଷ୍ଣୁପଦ—ଆକାଶ, ଶୂନ୍ୟ ମନ୍ଦାକିନୀ—ସ୍ୱର୍ଗଗଙ୍ଗା ଓ ହାର, ଚେଳ—ଚମ୍ପଳ । ୩୩ । ଶଙ୍ଖଶିଖେ ଶଶୀ—ଗ୍ରୀବାରୂପ ଶଙ୍ଖ (କମ୍ବୁ) ଉପରେ ମୁଖରୂପ ଶଶୀ (ଚନ୍ଦ୍ର), ଶଶୀ ଦୁଇ ପାଖରେ (ମୁଖ ଦୁଇ ପାଖରେ ଭାର୍ଗବ-କବି—ଶୁକ୍ର ସ୍ୱର୍ଣ୍ଣ ରୂପୀ କର୍ଣ୍ଣଭୂଷଣ) ତରଳତା ବହି ଚଞ୍ଚଳ ହୋଇ କମ୍ପିଲେ । ହଳକା ମୋଡରେ—କାନଫୁଲରେ ଲାଗିଥିବା ମୁକ୍ତାରେ, ଲବଳୀ—ନରକୋଳି, ଖଞ୍ଜନ—ନୟନରୂପ ଖଞ୍ଜନ ପକ୍ଷୀ, ପାଶ—(ଏଠାରେ) କର୍ଣ୍ଣରୂପ । ୩୪ । ଗୃମୀକରକର ଚଞ୍ଚୁପୃଷ୍ଠରେ—ସୁବର୍ଣ୍ଣ ତେଜୋମୟ ଅଣ୍ଟରେ (ନାସିକା-

ପରବେଶ । ବିପରୀତ ଘୃତଯାକ ହୋଇଲା ପ୍ରକାଶ । ଅରମ୍ଭିଲା ନରତନ କୁ ଯତନ କରି । କନକ କେତକୀଦଳେ କଳା ନାଗ ପରି । ୩୫ । ସେ ସମୟ ମିଶି ରସ ବରଷା ସଙ୍ଗରେ । ପୂରିଗଲା ଚନ୍ଦନ ମାରୁତ ତରଙ୍ଗରେ । କ୍ରୀଡାରେ ଲୁଲିତ କେଳି କନକମଞ୍ଜରୀ । ଜମିଗଲା ଗାଢ଼େ ଦ୍ରୁମେ ଅବଲମ୍ବ କରି । ୩୬ । ସେ ସୁଭାଗ୍ୟ ସୁଖସ୍ୱର୍ଗ ସମ୍ପତ୍ତି ସ୍ମରଣ । ନ ଦିଶଇ ମୋତେ ଅନ ଉପାୟ ମରଣ । କବିତା କୁ ବୁଦ୍ଧି ରେ ସୁବୁଦ୍ଧି ଗ୍ରାମାବରି । ବରଷ ଶତ ହେଲାନ ତ୍ରୁଟିକ ମାତରି । ୩୭ । ତରଳି ଗଲାନି ଭୟେ ମନ୍ତ୍ରାନବନୀତ । ନିତମ୍ବିନୀମଣି ପରି ତୁହି ମୋ ଜୀବିତ । ବିତରଣ କରି ଦନ୍ତଚ୍ଛେଦ୍ଦ ସୁଧାରସ । ରସନାକୁ ଯେବେ ମୋର କରିବୁ ସନ୍ତୋଷ ।୩୮। ତୋ ସକାଶୁଁ ସିନା ମୁଁ ତରୁଣ ପୁରନ୍ଦର । ଦରକଣ୍ଠି ନୋହୁ ତୁ ମୋ ପରିଣୁ ବାହାର । ହାର ମଧ୍ୟ ତରଳ ମୁଁ କେହ୍ନ ତୋତେ କରି । କରଗତ ହେବ କେଳିବିପିନବିହାରୀ ।୩୯। ହାର ଜହ୍ନାରବ ଦୂରୁ ପ୍ରସୂନପ୍ରହର । ହର ପ୍ରସାଦୁଁ ଏ ଭାଗ୍ୟ କେବେ ହେବ ମୋର । ତୋ ଶ୍ରୀହସ୍ତ ପ୍ରତିଲେଖ ଦରଶନାବଧି । ରଖିଅଛୁ ଜାଣ ପ୍ରାଣ ଲାବଣ୍ୟବାରିଧି । ୪୦ । ତୁ ତ ଗୁଣଗଣମଣି ମଞ୍ଜୁଷ ମୋ ବନ୍ଧୁ । ବିଶେଷ ଅରଜ କସ ଦେବି ରସସିନ୍ଧୁ । ଶୁଣ ହେ ରସିକବରେ ହୋଇ ପୂର୍ଣ୍ଣମୋଦ । ଜଳନ୍ତର ବସୁନ୍ଧରା କପଟକ୍ଷୀରୋଦ । ୪୧ । ତହିଁ ଶରସୁଧାକର ରାମଚନ୍ଦ୍ର ଦେବ । କଳପନା କଲେ ଏ ଶ୍ରବଣ ମହୋତ୍ସବ । ହେବ ଏ ନିଖିଳ କ୍ଷୁଧାଭୟନିବାରଣୀ । ଦୁଃଖ ନିବେଦନ ରସାମୃତତରଙ୍ଗିଣୀ । ୪୨ ।

---

ଦନ୍ତିରୂପ), ପକ୍ୱବିମ୍ବ—ପାଚିଲା ବିମ୍ବଫଳ ( ଅଧରରୂପ ), ଲବଳୀକବଳ—ନରକୋଳିଫଳ ଭକ୍ଷଣରୁ । ୩୫ । କନକକେତକୀଦଳେ କଳାନାଗପରି—ସୁନାରଙ୍ଗର କେତକୀପତ୍ରରେ କଳାନାଗ ପରି ପୃଷ୍ଠଦେଶରେ ବେଣୀ ନୃତ୍ୟ କଲା ।୩୬। ରସବରଷାସଙ୍ଗରେ—ଜଳବୃଷ୍ଟି ସହିତରେ ଅଥଚ ଶୃଙ୍ଗାରରସମୟ ଯୁଦ୍ଧରେ, ଲୁଲି—କ୍ଲାନ୍ତ ହୋଇ, କନକ ମଞ୍ଜରୀ—ସ୍ୱର୍ଣ୍ଣବର୍ଣ୍ଣ କଳିକା ଅର୍ଥାତ୍ ତତ୍ସଦୃଶୀ କିଶୋରୀ, ଦ୍ରୁମ—ବୃକ୍ଷ ଅଥଚ ଦ୍ରୁମରୂପୀ ପୁରୁଷ ।୩୭। ତ୍ରୁଟି—କ୍ଷଣକାଳ, ମନ୍ତ୍ରାନବନୀତ—ଅନ୍ତଃକରଣରୂପ ଲହୁଣୀ, ନିତମ୍ବିନୀମଣି—ରମଣୀମଣି, ଦନ୍ତଚ୍ଛେଦ୍ଦ—ଅଧରରୁ । ୩୯ । ତରୁଣପୁରନ୍ଦର—ଯୁବକଶ୍ରେଷ୍ଠ, ଦରକଣ୍ଠି । ହେ କମ୍ବୁକଣ୍ଠି ତରଳ—ହାରମଧ୍ୟ ମଣି । ୪୦ । ପ୍ରସୂନପ୍ରହର—କନ୍ଦର୍ପ ।୪୧। ଅରଜ—ଅର୍ଜି, ପ୍ରାର୍ଥନାପତ୍ର, କପଟକ୍ଷୀରୋଦ—କପଟ କ୍ଷୀରସମୁଦ୍ର । ୪୨ । ଶରସୁଧାକର—ଶରତ ଚନ୍ଦ୍ରମା, ରସାମୃତତରଙ୍ଗିଣୀ—ଶୃଙ୍ଗାରରସରୂପ ଜଳପୂର୍ଣ୍ଣ ନଦୀ ।

## ସପ୍ତଦଶ ଛାନ୍ଦ

### ରାଗ—ସମ୍ଭୋଗ ଭୂପାଳ
### (ସଂଭୋଗ ଗୃହ୍ଟ)

କେଉଁ ରସିକ ବାଳାକୁ କୋଳେ ଧର । କହେ ଶବ୍ଦକେ ଭରି ନ୍ୟାସ କର । ୧ । ଶିରୀଷାଙ୍ଗୀ ପ୍ରାଣେଶ୍ୱରୀ ତୁହି ପରା । ପରାଣବନ୍ଧୁଅ ମୋ ହୃଦୟ ହାରା । ୨ । ଗୃହୁ ମୋତଜାତଦନ୍ତୀ ବିମ୍ବାଧରୀ । ଧରନୀମଣ୍ଡନା ମୋ ଲୋଚନଶିରୀ । ୩ । ଝଲଗୋରୀ ସୁନୟନା ସୁକୁମାରୀ । ବାଳାମଣି ମୋ ଶିରଭୂଷଣଶିରୀ । ୪ । ମୁହିଁ ତୋ ଚରଣସେବା ନଜରକର । ତୁ ମୋ ପ୍ରଭୁ ସିନା ନାତମ୍ବିନୀବର । ୫ । ବାଳାବଳୟମଉଳି ଅଲଙ୍କାର । ରମା ସମାନ ନୋହେ ଶୋଭାକୁ ତୋର । ୬ । ଯୋଗିଯୋଗଧ୍ୱଂସିନୀ ରେ ଜୀବବନ୍ଧୁ । ବନ୍ଧୁଜୀବଅଧରୀ କରୁଣାସିନ୍ଧୁ । ୭ । କେଶ ସମ ନୋହୁବାରୁ ନବଘନ । ନୀଚଛଳେ ମୁଞ୍ଚେ ଅଶ୍ରୁ ଘନ ଘନ । ୮ । ମନମୋହନା ନବୀନା ମଦାଳସୀ । ତୋର ବଦନ ସଦୃଶ ନୋହେ ଶଶୀ । ୯ । ନାସା ଶୋଭାକୁ କାହାକୁ ଲକ୍ଷି ପାର । ତିଳତିଳକ ତିଳକେ ନୋହେ ସର । ୧୦ । ନେତ୍ର ତୁଲ୍ୟ ନୋହିବାରୁ ଇନ୍ଦୀବର । ଭୟେ ପଳାଇ ବନରେ କଲା ଘର । ୧୧ । ଭ୍ରୂଧନୁ କଜ୍ଜଳ ଗୁଣରେ ରାଜେ । ଗୁହି ଯତୀନ୍ଦ୍ର ତପଗରବ ଭାଜେ । ୧୨ । ଦିବ୍ୟ ଝଳମଣ୍ଡ ତୋର ଗଣ୍ଡସ୍ଥଳୀ । ମାରମୁକୁର ସ୍ଥିର କି ଏହା ଭଳି । ୧୩ । ନବପଲ୍ଲବେ ତୁଲ୍ୟ କି ତୋ ଅଧର । ଏକା ମଧୁମାସେ

---



୪ । ଝଲଗୋରୀ—ସମୁଜ୍ଜ୍ୱଳ ଗୌରବର୍ଣ୍ଣା । ୫ । ନଜରକର—ଗ୍ରହଣ କର । ୬ । ବାଳାବଳୟମଉଳିଅଲଙ୍କାର—ଯୁବତୀସମୂହର ମସ୍ତକଭୂଷଣରୂପା, ରମା—ଲକ୍ଷ୍ମୀ । ୭ । ବନ୍ଧୁଜୀବଅଧରୀ—ବନ୍ଧୁଲିଫୁଲ ପରି ରକ୍ତବର୍ଣ୍ଣ ଅଧର ଯାହାର । ୮ । ନବଘନ—ନୂତନ ମେଘ ।୧୦। ନାସାଶୋଭାକୁ···ନାସିକା ଶୋଭାକୁ କାହା ସଙ୍ଗେ ତୁଳନା କରିବ ? ତିଳତିଳକ—ଉତ୍କୃଷ୍ଟ ରାଶିଫୁଲ,ତିଳକେ—ଅଳ୍ପମାତ୍ରାରେ ସୁଦ୍ଧା । ୧୧ । ଇନ୍ଦୀବର—ନୀଳକଇଁ, ବନରେ—ଜଳରେ । ୧୨ । ଭ୍ରୂଲତାରୂପ ଧନୁ କଜ୍ଜଳରେଖାରୂପ ଗୁଣରେ ଶୋଭାପାଏ । ୧୩ । ଝଳମଣ୍ଡ—କାନ୍ତିଯୁକ୍ତ, ମାରମୁକୁର—କନ୍ଦର୍ପର ଦର୍ପଣ ।୧୪। ମଧୁମାସ—ବସନ୍ତ ଋତୁ । ୧୫ । ପାଟଳୀ—

ସିନା ସେ ମଧୁର । ୧୪ । ଶ୍ରୁତି ଘଟନା ପାଟଳୀ ନୋହେ ସର । ସ୍ୱର୍ଣ୍ଣ ତୁଲେ ଗୁଞ୍ଜକୁ ତୁଳିଲ ପର । ୧୫ । କମ୍ବୁକଣ୍ଠୁତୁଲେ ତୁଲ୍ୟ ହେବା ପାଇଁ । ଶମ୍ଭୁଠାବରେ ସେବାରେ ନିତ ଯାଇ । ୧୬ । ସେ କି ଶିବ ସେବି ସମ ହୋଇପାରେ । ଯାହା ଉପମା ନାହିଁ ତ୍ରିପିଷ୍ଟପରେ । ୧୭ । ମଧୁକ୍ୱଣା-ବାଣୀ ଅରେ ଧୀରବର । ସୁଧାଂଶୁରୁ ତ ସ୍ୱାଦୁ ଗିର ତୋର । ୧୮ । ଜଇତ୍ରନା ସୁବରନା ଦିବ୍ୟ ବେଣୀ । ଦାସ ସ୍ନେହବସ୍ତ୍ରକା ରେ ନୀଳବେଣି । ୧୯ । ପୂର୍ବକାଳ କାଶୀବାସୀ ସେବିବାର । ଫଳ ଫଳିଲ୍ଲ କି ଏତେକାଳେ ମୋର । ୨୦ । ଧରି ଚରଣକଞ୍ଜ ଅଳତା ଦେଲି । ଶକ୍ରପଦ ପଦତଳେ ରଖାଇଲି । ୨୧ । ଗଙ୍ଗାସାଗରେ ମୁଁ ଙ୍ଗାସିଥିବା ଘେନ । ମୋର ଅଙ୍କ ଅଳଙ୍କାର ହେଲୁ ଧନୀ । ୨୨ । କାମକଳାନିଧି ଅରେ କୃଶୋଦରି । ଦରିଦ୍ର ମୁଁ ବନ୍ଧୁ କଳ୍ପଲତା ପରି । ୨୩ । ପରଣତ କରକ ସୂବୀଜଦନ୍ତି । ଦନ୍ତିରାଜଗମନା ତୁ ମୋ ସମ୍ପତ୍ତି । ୨୪ । କରିଅରିଲଗ୍ନାମଧ୍ୟା ସୁଲକ୍ଷଣା । ଚମ୍ପାଦେହା ଚଞ୍ଚଳାକ୍ଷି ବିଚକ୍ଷଣା । ୨୫ । କଞ୍ଜଗୃହୁଚରଣା ରେ ଚନ୍ଦ୍ରାନନା । ରମ୍ଭା ଉର୍ବଶୀରେ କି ତୋ ଗଣନା । ୨୬ । ରସନିଧି ତୁ ମୋ ଗଳା-ମାଳା ସିନା । ଗୁଣଜଳଧିରେ ତୁ ମୋ ଚଣ୍ଡି ସୁନା । ୨୭ । ପଣ୍ଡିତାମଣି ରମଣୀ ଏଣୀଦୃଶୀ । ଉମାପତିମୋହନୀ ରେ କୁନ୍ଦହାସି । ୨୮ । ନବମାଲୀ-କରଜା ସୁନ୍ଦରିରଜା । ତୋ ଲଗିବାସ ଭଳି ମୁଁ ସୁଭିରଜା । ୨୯ । ରସାଳସା ବରଯୋଷା ସୁନୟନା ! ମୋ ସମସ୍ତ ସଉଭାଗ୍ୟ ତୁହି ସିନା । ୩୦ । ମୋର ମାଗୁଣି ଗୁଣମଣିକି ଏତେ । ସ୍ନେହ କଣା ନ କରିବୁ କଦାଚିତେ । ୩୧ । ଏହି ସୁଖେ ମୁଁ ସମସ୍ତ ହରୁଥିବ । ଚନ୍ଦ୍ରହାରି ପରି ହୃଦେ କରୁଥିବ । ୩୨ । କ୍ଷଣେ କ୍ଷଣେ କରି ଅନ ଅନ ବେଶ । ବ୍ରହ୍ମାନନ୍ଦରେ କରିବି ପରିହାସ । ୩୩ । ମଣି କଠାଉ ଅଳତା ପରି ଅବା ।

---

ପାଟଳୀଫୁଲ (କର୍ଣ୍ଣସଙ୍ଗେ ଉପମିତ ହୁଏ), ଗୁଞ୍ଜ—କାଇଁଚ । ୧୬ । କମ୍ବୁ—ଶଙ୍ଖ । ୧୭ । ତ୍ରିପିଷ୍ଟପରେ—ତ୍ରିଭୁବନରେ । ୨୦ । କାଶୀବାସୀ—ବିଶ୍ୱେଶ୍ୱର ଶିବ । ୨୧ । ଶକ୍ରପଦ—ଇନ୍ଦ୍ରପଦ । ୨୪ । ପାଚିଲା ଡାଳିମ୍ବ ବୀଜ ପରି ଦନ୍ତ ଯାହାର; ଦନ୍ତିରାଜଗମନା—ମତ୍ତହସ୍ତୀର ଗତିପରି ଗତି ଯାହାର ।୨୫। କରିଅରିଲଗ୍ନାମଧ୍ୟା—ସିଂହ କଟିରୁ ଯାହାର କଟି କ୍ଷୀଣ ଅଛି । ୨୮ । ଉମାପତିମୋହନୀ—ଶିବମୋହନୀ, କୁନ୍ଦହାସୀ—କୁନ୍ଦଫୁଲ ପରି ହାସ ଯାହାର ।୨୯। ନବମାଲୀକରଜା—ନୂଆ ମାଳୀଫୁଲ ପରି କରଜ(ନଖ)ଯାହାର, ଲଗିବାସ—ପିକାଳୁଗା । ୩୩ । ବ୍ରହ୍ମାନନ୍ଦରେ କରିବି

ଲାଗି ପଦତଳେ କରୁଥିବ ସେବା । ୩୪ । ମୋତେ ଦେଉଥିବୁ ଚୁମ୍ବ ବରତନ । ମୋର ସେହୁଟି ସଙ୍ଗାଲ ସୁବତନ । ୩୫ । ଜଳନ୍ତରଧସ୍ୱନାଥ ରସବାଣୀ । ବୀଣାବିଶାରଦା ମୋଦେ ଶୁଣି ଶୁଣି । ୩୬ । ଲଜମିଶ୍ରିତ ଧଇର୍ଯ୍ୟଧର ହାସେ । ମଣ୍ଡି ଦେଲ କଣ୍ଠକୁ ଶ୍ରୀଭୁଜ ପାଶେ । ୩୭ । ସୁଧା- ଜନକନନ୍ଦନା ପ୍ରାଣନାଥ । ଦୁଇ ପ୍ରଭୁ ପୁରକର ମନୋରଥ । ୩୮ ।

---

## ଅଷ୍ଟାଦଶ ଛାନ୍ଦ

### ରାଗ—ଅଷାଢ଼ଶୁକ୍ଳ

### ( ବସନ୍ତ ବର୍ଣ୍ଣନା )

ପରବେଶ ହେଲା ସୁରଭିକାଳ । ବରବେଶ ହେଲେ ଭୂରୁହକୁଳ । ଗରବେ ପ୍ରବଳ ହେଲା ମଦନ । ଭରବେ ଜାର ହେଲେ ଯୋଗୀଜନ । ପରବେଶ ଗୃହୀ । ସରବେ ଭଜିଲେ ବଞ୍ଚିବା କେହି । ୧ । ପଲ୍ଲବ ପାଟଳ ହୋଇଲା ବନୀ । କେଶରଧୂସର ହେଲା ଅବନୀ । ଫୁଟିଲେ ବିବିଧ କୁସୁମ- ବୃନ୍ଦ । ଛୁଟିଲା ବିନ୍ଦୁ ବିନ୍ଦୁ ମକରନ୍ଦ । ରସାଳ ମୁକୁଳ । ଗୃହୀ ଶ୍ଳଥ ହେଲା ବାମା ଦୁକୂଳ । ୨ । ସୁରତଶ୍ରାନ୍ତ କାମିନୀକୁଚର । ସ୍ୱେଦବିନ୍ଦୁ ବୃନ୍ଦ ମୁକୁତା ଚୋର । ଲତା ବନିତା ନରତନଗୁରୁ । ପ୍ରସରିଲା ମିତ୍ରପୁତ୍ର ଦିଗରୁ । ଚନ୍ଦନ ପବନ । ପୁଷ୍ପବାସିତ କଲା ଉପବନ । ୩ । ମଳୟବନୀ

---

ପରିହାସ—ବିନ୍ଧୁ ପ୍ରାପ୍ତିଜନିତ ଦବ୍ୟ ଅନନ୍ଦକୁ ଉପହାସ କରିବ । ୩୫ । ବରତନ —ବେତନ ।

---

### ଅଷ୍ଟାଦଶ ଛାନ୍ଦ

୧ । ସୁରଭିକାଳ—ବସନ୍ତ ସମୟ, ଭୂରୁହକୁଳ—ବୃକ୍ଷମାନେ, ବରବେଶ ହେଲେ—ଶବାହୋଚିତ ସୁନ୍ଦର ବେଶରେ ମଣ୍ଡିତ ହେଲେ, ଭରବେ —ଭ୍ରମର ଧ୍ୱନି ଶୁଣି, ଜାର—କାମୁକ । ୨ । ପଲ୍ଲବପାଟଳ—ନବପତ୍ର- ଦ୍ୱାରା ପାଟଳବର୍ଣ୍ଣ; ବନୀ—ଅରଣ୍ୟଭୂମି; କେଶରଧୂସର—ପୁଷ୍ପପରାଗରେ ଧୂଳିମୟ; ରସାଳମୁକୁଳ—ଆମ୍ବ ବଉଳ; ଶ୍ଳଥ—ଢିଲା, ବାମାଦୁକୂଳ— ସ୍ତ୍ରୀମାନଙ୍କର ପିନ୍ଧା ପାଟଶାଢ଼ୀ । ୩ । ଲତା-ବନିତା-ନରତନଗୁରୁ—ଲତାରୂପ ସ୍ତ୍ରୀମାନଙ୍କୁ ନଚାଇବାରେ ଗୁରୁସ୍ଥାନୀୟ । ମିତ୍ରପୁତ୍ରଦିଗରୁ—ସୂର୍ଯ୍ୟଙ୍କ ପୁତ୍ର ଯମଙ୍କ ଦିଗରୁ ଅର୍ଥାତ୍ ଦକ୍ଷିଣ ଦିଗରୁ । ପୁଷ୍ପବାସିତ କଲା ଉପବନ—ବଗିଚାମାନଙ୍କୁ

ଭୁଜଙ୍ଗ ସଙ୍ଗରେ । ହରିବାର ଢାଳ ଗିରିଶୃଙ୍ଗରେ । କଳନା କଲେହେଁ ନାନା ଅଗମ । ମାନ୍ୟ ଲକ୍ଷଣ ତ୍ୟାଗେ ନୋହୁ କ୍ଷମ । ଡରେ ନ କମ୍ପିଲା । ତେବେ ପୁଷ୍ପିତା ବନିତାକୁ ଝାମ୍ପିଲା । ୪ । ଦେଖି ଶାଖୀଙ୍କ ପରସ୍ପର କଳି । ଝଙ୍କାର ହୁଙ୍କାରେ ମଧ୍ୟରେ ମିଳି । ଭଲ ଭଙ୍ଗାଇ ଦେଲେ ଭୃଙ୍ଗମାନେ । ଫୁଟି ବାସିଲେ ସେ ଯେ ଯାହା ସ୍ଥାନେ । ଥିଲେ ଭଲ ଲୋକ । ନୁହଇ କି ସମ ବିଷମଯୋଗ । ୫ । ହେଲା ପଲାଶମୁକୁଳ ପ୍ରକାଶ । ସନ୍ଦେହିତ ସିଂହନଖ ସଦୃଶ । ତହୁଁ ପଛଘୁଞ୍ଚା ଦେଇ କୁଞ୍ଜରେ । ଲୁଚିବାରୁ ଆନ କୁଞ୍ଜପୁଞ୍ଜରେ । ତାହା ଗୁହ୍ନିକରି । ହସିଲା ନବମାଲିକା ବଲ୍ଲରୀ । ୬ । ଶାଖାମାନଙ୍କେ ରଖି ପଦକ୍ରମ । ବିଯୋଗି ବିଧ୍ୱଂସ ଅଥର୍ବୋପମ । ପଞ୍ଚମସ୍ୱରେ କଳକଣ୍ଠଦ୍ୱିଜ । ପକ୍ଷପାତ କଲେ ଅନଙ୍ଗ ଓଜ । ଏକାକୀ ଡରିଲେ । ଦମ୍ପତି ସୁଖେ ବନେ ବିହରିଲେ । ୭ । କାଳକଳଙ୍କ ଦିଗେ ଯାହା ପ୍ରୀତି । କଳି ଆରମ୍ଭରୁ ଯାହା ଉତ୍ପତ୍ତି । ଯେ ପ୍ରସରନ୍ତେ ଜାତକାହିଁ ନାହିଁ । ପୁନ ସ୍ତ୍ରୀ ପୁଷ୍ପିତ ହୋଇଲା ତହିଁ । ବିଟପ ମଧୁପେ । ଉନ୍ମତ୍ତ ହେଲେ ତା ଦେଖି ସମୀପେ । ୮ । ଇତର ତରୁଭାଗ୍ୟ ଦେଖି ପାଶେ । ଅଳିସଙ୍ଗ ଭୋଗ ଲଭିବା

---

ସ୍ଥାୟୀ ସୌରଭମୟ କଲା । ୪ । ମଳୟବନୀ ଭୁଜଙ୍ଗ ସଙ୍ଗରେ—ମଳୟବନର ସାପ ସଙ୍ଗରେ, କଳନା କଲେହେଁ—ଜାଣିଥିଲେହେଁ, ଅଗମ—ଶାସ୍ତ୍ର, ପୁଷ୍ପିତା ବନିତା—ପବନ ଫୁଲ ଫୁଟିଥିବା ଲତାରୂପ ସ୍ତ୍ରୀକୁ ଆକ୍ରମଣ କଲା । ୫ । ଶାଖୀ—ବୃକ୍ଷ, ନୁହଇ କି ସମ ବିଷମଯୋଗ—ପରସ୍ପର ବିରୁଦ୍ଧ ଭାବ ସମତାପ୍ରାପ୍ତ ହୁଏ ନାହିଁ କି ? ୬ । ସନ୍ଦେହିତ···ସିଂହର ଲାଲ ନଖ ପରି, କୁଞ୍ଜରେ—ହାତୀମାନେ, ଆନ କୁଞ୍ଜପୁଞ୍ଜରେ—ପଲାଶଭିନ୍ନ ଅନ୍ୟ ବୃକ୍ଷକୁଞ୍ଜମାନଙ୍କରେ, ନବମାଳିକାବଲ୍ଲରୀ—ନଅଲୀଫୁଲ ଲତା । ୭ । ଶାଖା—ଡାଳ ଓ ବେଦର ବିଭିନ୍ନ ଶାଖା, ପଦକ୍ରମ—ପଦବିକ୍ଷେପ ଓ ବିଦ୍ୱଲ୍ଲୁଯୁକ୍ତ ଶବ୍ଦର କ୍ରମ, ବିଯୋଗିଧ୍ୱଂସଅଥର୍ବୋପମ—ବିରହୀମାନଙ୍କୁ ମାରିବାରେ ଅଥର୍ବବେଦୋକ୍ତ ମାରଣ ମନ୍ତ୍ର ସଦୃଶ, କଳକଣ୍ଠ ଦ୍ୱିଜ—କୋକିଳରୂପ ବ୍ରାହ୍ମଣ, ଅନଙ୍ଗଓଜ—କାମଶକ୍ତି ( ପକ୍ଷ ), ପଞ୍ଚମସ୍ୱରେ ପକ୍ଷପାତ କଲେ, ( ବ୍ରାହ୍ମଣ ପକ୍ଷରେ ) ସୁକଣ୍ଠରେ ବେଦମନ୍ତ୍ରପାଠ କରି କନ୍ଦର୍ପର ପକ୍ଷ ଗ୍ରହଣ କଲେ; ( କୋକିଳ ପକ୍ଷରେ ) ପଞ୍ଚମସ୍ୱରରେ ଗୀତ ଗାଇ ବୁଲିଲେ । ୮ । କାଳକଳଙ୍କଦିଗେ—ଦକ୍ଷିଣ ଦିଗରେ, କଳି ଆରମ୍ଭରୁ—ଫୁଲରେ କଢ଼ ହେବା ଦିନରୁ, ଯେ—ଯେଉଁ ମଳୟପବନ ଜାତକାହିଁ ନାହିଁ···ମାଲତୀଫୁଲ ମଧ ଫୁଟେ ନାହିଁ ( ମାଲତୀ ବସନ୍ତରେ ଫୁଟେ ନାହିଁ ), ସୁନାସ୍ତ୍ରୀ—

ଅଶେ । ସୁନ୍ଦର ଗନ୍ଧଫଳୀବୃନ୍ଦମିଷେ । ସ୍ୱଶାଖା ଅଙ୍ଗ ସକଳ ପ୍ରଦେଶେ ।
ଜାଳି ଦୀପଚୟ । ଚମ୍ପାଲତା କଲା ବ୍ରତୋପଚୟ । ୯ । ଅଳୀଙ୍କି ଯେଣୁ
ଯୁବତୀନଚୟ । ରସେ ରଚିଲେ କୁସୁମାବଚୟ । ନିମଗ୍ନ ହୋଇ ପବନ
ହରଷେ । ବହିଲେ ସଂଳାପ ବିବିଧ ରସେ । କେ ବୋଲେ ସଖୀଙ୍କ ।
ପୁରୁଷେ ଏତେ ବିଶ୍ୱାସ କାହିଁକି । ୧୦ । ଅନ୍ୟ କେ କହେ କାହିଁକି
ନୋହିବ । ଅଶୋକ ତ ତତେ କଲା ଦାଇବ । ମୁଖେ ରଖିଅଛୁ ମଲ୍ଲିକା
ହାସ । କାହିଁକି ନ କରିବୁ ପରିହାସ । କେ ପୁଣି ବୋଇଲା । ମୋ କରେ
ଛୁଇଁଅନା ରେ ଛଇଳା । ୧୧ । ପୁନ୍ନାଗମୟୀ ହେବାରୁ କେ ବାଳା । ବହି କେ
ଅଂସରେ କେଶରମାଳା । ମାରି ତା ଉରୋଜକୁମ୍ଭେ କରଜ । ସିନ୍ଧୁବାର
କଳି ମାଳିକାବ୍ରଜ । ମୁକୁଳା ବାନ୍ଧିଲା । ବାରଣଦାରଣଲୀଳା ବାହିଲା ।
୧୨ । ମିଳିନ୍ଦେ ଯୂଥିକଳି ମୁଖେ ଧରି । ରବବ୍ୟାଜେ ବଜାଇଲେ
ମଧୁରୀ । ଭୃଙ୍ଗୀ ଆରମ୍ଭିଲେ ମଙ୍ଗଳ ଗୀତ । କଳକଣ୍ଠୀପାଳ ହୋଇ ସଂଘାତ ।
ହୋଇ ମଦଭୋଳ । ଝିଲ୍ଲିକି ପୂର୍ଣ୍ଣ କଲେ ଜଳସ୍ଥଳ । ୧୩ । ତରୁ କରୁଛନ୍ତି
ସେବା ପ୍ରକଟ । କେ ହୋଏ ଫଳ ଫୁଲ ଧରି ଭେଟ । ନବ କିଶଳୟ ପଟ
ଅଳଟ । ଯେଣୁ କେ ବଜନେ ହେଲା ଲମ୍ପଟ । କେଉଁ ଶାଖୀ ନଟ ।
ଉଡ଼ାଇଲା ବ୍ୟୋମ ପରାଗପାଟ । ୧୪ । କରକ ଯେଣିକା ସ୍ୱଫଳ ଘଟ ।
ପଣ୍ଡ ସରକ-ହେବାରୁ ଦୁର୍ଘଟ । ମୋଠାରେ କେ କଲା ବୋଲି କପଟ ।
କସ୍ତୁରୀ ମନେ ହେଲା ଛଟପଟ । ଅଳି ଯୋଗକୁଠ । କେଉଁ ବଲ୍ଲରୀ ଗୃହେଁ
ମଟ ମଠ । ୧୫ । ହୋଇ ଅନଳସ୍ୱନଧାରୀ ଗୃହ । ପୁଷ୍ପଭୂଷଣେ ହୋଇ

---

ଏକପ୍ରକାର ଅରଣ୍ୟ ବୃକ୍ଷ, ବିଟପ—ଜାର, ମଧୁପେ—ଭ୍ରମରମାନେ । ୯ । ଚମ୍ପା-
ଲତା ଭ୍ରମରକୁ ଆକର୍ଷଣ କରିବାପାଇଁ ଗନ୍ଧଫଳୀବୃନ୍ଦମିଷେ ( ଚମ୍ପା କଢ଼ ସମୂହ
ବ୍ୟାଜରେ ) ନିଜ ସର୍ବ ଶରୀରରେ ଦୀପ ଜାଳି ବ୍ରତଜନିତ ପୁଣ୍ୟର ଉପଚୟ
(ବୃଦ୍ଧି) କଲା । ୧୦ । କୁସୁମାବଚୟ—ଫୁଲତୋଳା । ୧୧ । ମୋ କରେ ଛୁଇଁ-
ଅନା—ମୋ ହାତରେ ଛୁଇଁ ଅଛ ଦେଖ, ମୋ ହାତରେ ଛୁଇଁଅନା ଫୁଲ ।
୧୨ । ପୁନ୍ନାଗମୟୀ—ନାଗେଶ୍ୱର ପୁଷ୍ପମଣ୍ଡିତ; ପୁନ୍ନାଗ—ନାଗେଶ୍ୱର, ଅଣ୍ଡିରି ହାତୀ;
ଅଂସରେ—କାନ୍ଧରେ, କେଶରମାଳା—ନାଗେଶ୍ୱରଫୁଲ ମାଳା ଓ ସିଂହର ସଟା-
ସମୂହ, ଉରୋଜକୁମ୍ଭେ—ସ୍ତନରୂପ କୁମ୍ଭସ୍ଥଳରେ; କରଜ—ନଖ, ସିନ୍ଧୁବାରକଳି-
ମାଳିକାବ୍ରଜ—ନେଗୁଣ୍ଡିଆ କଢ଼ିର ମାଳସବୁ, ବାରଣଦାରଣଲୀଳା—ସିଂହର ହାତୀ
ମାରିବା କ୍ରୀଡ଼ା । ୧୩ । ମିଳିନ୍ଦେ—ଭ୍ରମରମାନେ, ଯୂଥିକଳି—ଯୂଥୀଫୁଲ କଢ଼,
ମଧୁରୀ—ମହୁରୀ, କଳକଣ୍ଠ—କୋକିଳ, ସଂଘାତ—ମିଳିତ, ଝିଲ୍ଲିକ—ହୃଦ୍ୟ ହୋଳି
ଧ୍ୱନି । ୧୪। ଉଡ଼ାଇଲା କେଉଁ ବୃକ୍ଷ ନଟ ହୋଇ ଆକାଶର ପରାଗ (ପୁଷ୍ପଧୂଳି) ରୂପ
ପାଟ ଉଡ଼ାଇଲା । ୧୫ । କରକ—ଡାଳିମ୍ବ, ପଣ୍ଡସରକ ହେବାରୁ ଦୁର୍ଘଟ—ବାହିଁଶ

ଝଟ ଝଟ । ଉଗାଳ ମଦନଭୂପତି ବାଟ । କେଉଁ ଲତିକା ଅରମ୍ଭିଲ ନାଟ ।
କେଉଁ ତରୁଘାଟ । ପଡ଼ିବବେ ସୂତ୍ର କଲ୍ପ ନାରାଟ । ୧୬ । ଫଳକରେ କଶି
ହୋଇ ବିକଟ । କେତେ ବିଟପୀ ବେଶେ ହେଲେ ଭଟ । ବିରହୀନାଦା
ଶସ୍ତ୍ରକୁ ଅକାଟ । କ୍ଷଣିମାରେ କି ସେ ସମର୍ଥ ଥାଟ । କି ରସିକ ହାଟ ।
ସବୁରି ପ୍ରୀତି କଣିବାରେ ହଟ । ୧୭ । ନିକୁଞ୍ଜ ସଞ୍ଚାରେ ନାହିଁ ଅକଟ ।
ନାନାବିଧ ସୁଖ ଅତି ନିକଟ । ଉମ୍ମତଭିରେ ଚଟେ କଟ କଟ । ପ୍ରତି
ସଙ୍କେତ ଲତା ଗୃହେ ଖଟ । ସରଗଲ୍ଲ ଲଟ । ଚଳି ଯୋଗୀଏ ଛୁଣ୍ଡାଇଲେ
ଜଟ । ୧୮ । କେ ବାସ କରି କେଳିବାପୀ ତଟ । ପାଟସାରି ଦେଲେ
ଚିନ୍ଧିବାର ପଟ । ରଖିଲେ ମାନକ ପ୍ରଚ୍ଛଦପଟ । ରସ ଅବଶ ହୋଇଲେ ନିପଟ ।
ଯାଠାରେ କପଟ । ଧାତା ଖେଳିଛୁ ତାହାର ଅପଟ । ୧୯ । ନ ମାନି ଭବ
ଶାର୍ଦ୍ଦୁଳ ଝପଟ । ଯେ ଜନେ ବାନ୍ଧିଥିଲେ ଯୋଗପଟ । ବାଜିବାରୁ ମନମଥ
ଚପେଟ । ନ କଲେ କେ କାହାକୁ ଉଇପେଟ । ତାଳ ପହପଟ । ହେଲ
ସବୁରି ତଳପରେ ସ୍ଫୁଟ । ୨୦ । ହେବାରୁ ହୃଦ ଅନଙ୍ଗ ଅଖୋଟ ।
ଧୈର୍ଯ୍ୟଶିଳାଘଟିତ କବାଟ । ଅତରକତେ ହୁଅନ୍ତେ ବିପାଟ । ବିରହିଣୀ
ଏକାନ୍ତ ଚିହ୍ନପଟ । ତରି ସ୍ନେହଘୋଟ । ମଣ୍ଡିଲେ ନିଜ ବକ୍ଷୋଜସଂପୁଟ
୨୧ । କାହା ସ୍ଥିର ମଦ ହୋଇବ ମୋଟ । ହୋଇଲା ହରଧୃତି ଯହିଁ ଖୋଟ ।
କନମ୍ମ ଅମ୍ଭେ ନୋହୁ ବୋଲି ବଟ । ଯେଉଁମାନେ ବାନ୍ଧିଥିଲେ ମୁକୁଟ ।
ରଟନ୍ତେ କୁକ୍କୁଟ । ଜୀବ ହେଲା ତାକୁ ଶତ ଶକଟ ।୨୨। ବିରହେ ବନ୍ଧା

---

କରଣ୍ଡରେ ପଦ ପର୍ଯ୍ୟନ୍ତ ନ ଥିବାରୁ, କସ୍ତିର—ଗଜାବାଉଁଶ ବା କରଡ଼ୀ, ଅଳିଯୋଗକୂଟ—ଭ୍ରମରମିଳନରୂପ କପଟ (ପ୍ରକୃତି ପୁରୁଷ ମିଳନ) । ୧୬ । ଅନିଲ-ସୂତ୍ରଧରେଗ୍ରଟ—ପବନରୂପ ପ୍ରଧାନ ନଟର ଶିଷ୍ୟ । ୧୭ । ଫଳକରେ କସି ହୋଇ ବିକଟ—ଡାଳରେ ପ୍ରଚୁର ଫଳ ଧରିବାରୁ ଫଳକଧାରୀ ହାତୀ ପରି ଭୟଙ୍କର ହୋଇ; ବିଟପୀ—ଗଛ, ଭଟ—ଯୋଦ୍ଧା, ଥାଟ—ସୈନ୍ୟଦଳ, ହଟ—ଜିଦ୍ ବା କୌତୁକ । ୧୮ । ଲଟ—କୌତୁକ, ଚଳି—ବିରକ୍ତ ହୋଇ । ୧୯ । କେଳିବାପୀ—କ୍ରୀଡ଼ାପୁଷ୍କରଣୀ, ପାଟସାରିଦେଲେ···ସବୁବେଳେ ନଗ୍ନ ହୋଇ ଜଳକ୍ରୀଡ଼ା କରିବାରୁ ପିନ୍ଧାଲୁଗାକୁ ମଧ୍ୟ ଭୁଲିଗଲେ; ପ୍ରଚ୍ଛଦପଟ—ଘୋଡ଼ି ହେବା ଗୁଦର, ଯାଠାରେ କପଟ···ବିଧାତା ଯାହା ପ୍ରତି ବିମୁଖ (ଯେ ପରୀଶୂନ୍ୟ) ତାହାର ଏକା ଦୁଃଖ । ୨୦ । ଭବଶାର୍ଦ୍ଦୁଳଝପଟ···ସଂସାରରୂପ ବ୍ୟାଘ୍ର ଅକ୍ରମଣ ନ ମାନି ଯେଉଁମାନେ ଯୋଗୀ ହୋଇଥିଲେ । ମନମଥଚପେଟ—କନ୍ଦର୍ପର ଗୁମ୍ଫିଚା ବା ଅଘାତ, ଉଇପେଟ—ଗର୍ବବତୀ, ତଳପ—ତଳ୍ପ, ଶଯ୍ୟା । ୨୧ । ଅନଙ୍ଗଅଖୋଟ—କନ୍ଦର୍ପର କ୍ରୀଡ଼ାଭୂମି, ବିପାଟ—ଉନ୍ମୁକ୍ତ, ବକ୍ଷୋଜସଂପୁଟ—କୁଚରୂପ ପେଡ଼ି । ୨୨ । ଯେଉଁଠାରେ ଶିବଙ୍କର ଧୈର୍ଯ୍ୟ ଖୋଟ (କ୍ଷୁଦ୍ର) ହେଲା ଅର୍ଥାତ୍ ଶିବଙ୍କ ଧୈର୍ଯ୍ୟ ସୁଦ୍ଧା ନଷ୍ଟ ହେଲା ସେଠାରେ ଅନ୍ୟ କାହାର ଗର୍ବ ରହି ପାରିଲା କି ? ବଟ—

ହେବାରୁ ଜକଟ । ସଂଖାଳି ହେବାରୁ ନୀରଜକଟ । କରି ନ ପାରି କୋଧ ଅପ୍ରକଟ । କେ କାହାକୁ ବୋଲେ ରେ ଶରକଟ । ମନକୁ ଚକଟ । ଅମୃତ୍ତ ତ ତତ୍ତ୍ଵ ନାହିଁ ବକଟ । ୨୩ । ଭଲ ହୋଇ ଅସ୍ତ ନୋହୁ ପତଙ୍ଗ । ଅଭିସାରିକା ହେଲେ ଚଙ୍ଗଚଙ୍ଗ । ପିକ ନୟନ ଦଶିଲି ତ ରଙ୍ଗ । ସପୁଷ୍ପରଜ ଅନିଳ ତରଙ୍ଗ । ବାଜ ଯୁବଅଙ୍ଗ । ଚମକି ଲେଉଟିଲେ ତରୁଣୀସଙ୍ଗ । ୨୪ । ଶୂନ୍ୟ ପୁଣ୍ଡ୍ର ହେଲା ସ୍ମରକାମଷଙ୍ଗ । ସବୁଠାରେ ତାହାର ପରସଙ୍ଗ । ପିଙ୍ଗି ରଙ୍କଅଭିଳାଷୀ ଅପାଙ୍ଗ । ଠାବଲେ ହେଲେ ଯା ନ ଘେନି ଖଙ୍ଗ । ମଣ୍ଡିଲେ ଜସ୍ରଙ୍ଗ । ଯହିଁ ଅପଚରିତାର ଏ ଢଙ୍ଗ ।୨୫। ଲତାବଳୀ ଗୁଚ୍ଛେ ଖେଳନ୍ତେ ଭୃଙ୍ଗ । ମଣି ତାହାକୁ ଲୀଳା ଭୃରୁଭଙ୍ଗ । ସଂଯମୀଙ୍କ ପୀଡ଼ା ଦେଲା ଅନଙ୍ଗ । ଚଳି ନ ପରି ହେଲେ ଥଙ୍ଗ ଥଙ୍ଗ । ଯେ କାଳ ଭୁଜଙ୍ଗ । ସେ ନାରୀ ସଙ୍ଗେ ନ କଲେ କୁ ରଙ୍ଗ । ୨୬ । ସେ ଋତୁ ନବ ଋତୁମତୀ ହେଲା । ନେହକୁ ନବକୁସୁମେ ମଣ୍ଡିଲା । ପ୍ରତିଦାନ ଗତି ହୋଇଲା ମନ୍ଦ । ରସ ବରଷିଲା ନୋହେ ମରନ୍ଦ । କୁନ୍ଦବିକସନ । ମନ୍ଦାର ଅଧର ମନ୍ଦ ହସନ । ୨୭ । ନାନା କିଶଳୟ ରକ୍ତ ବସନ । ଯୁବା ବିହାର ସୁରତ ବ୍ୟସନ । ଦକ୍ଷିଣ ବାତ ସୁରଭି ଶ୍ଵସନ । ଗୃହାଣୀ ଚଞ୍ଚଳ ମରନ୍ଦାଶନ । ମଲ୍ଲିକା ଦଶନ । ବହଳ ପୁଷ୍ପଧୂଳି ତା ଅସନ । ୨୮ । ନାଗ ସଜରଭି ଅଧିବାସନ । ପଙ୍କଜପାନକ ପାନବାସନ । ଯୁବରଞ୍ଜନ ଯାହା ଦରଶନ । କେତକୀତନୁ କେଉଡ଼େ ପରସନ । ବିବେକନାଶନ । ଗିର ତ ହାର କଳକଣ୍ଠସ୍ଵନ । ୨୯ । ଏପରି ଦେଖି ସେ ଋତୁଲକ୍ଷଣ । କୋଟିସଂଖ୍ୟକ ଯୁଗ ହେଲା କ୍ଷଣ । ଅନଙ୍ଗସୁନ୍ଦର ସୁବିଚକ୍ଷଣ । ଭମାଇଲା ପ୍ରତି ଦିଗେ ଈକ୍ଷଣ । ନ କଲା ବୀକ୍ଷଣ । ହରିଣାକ୍ଷୀ ବିନା ଆନ ରକ୍ଷଣ ।୩୦।

---

ତାର; ଜୀବ ହେଲା···ଜୀବନ ଭ୍ରଷ୍ଟହାନ୍ତି ବୋଧ ହେଲା । ୨୩ । ଜକଟ—ଦୃଢ଼ ରୂପେ; ନୀରଜକଟ—ପଦ୍ମପତ୍ରର ଶଯ୍ୟା, ଶରକଟ—ଦୁର୍ବଳ । ୨୪ । ପତଙ୍ଗ—ସୂର୍ଯ୍ୟ; ସପୁଷ୍ପରଜ ଅନିଳ ତରଙ୍ଗ—ଫୁଲପରାଗଯୁକ୍ତ ପବନର ଲହରୀ । ୨୫ । କାମନିଷଙ୍ଗ—କନ୍ଦର୍ପର ଶରତୂଣୀ; ଶୂନ୍ୟ ପୁଣ୍ଡ୍ର ହେଲା—ଶୂନ୍ୟଦ୍ଵାରା ପୁର୍ଣ୍ଣ ହେଲା ଅର୍ଥାତ୍ ସମ୍ପୂର୍ଣ୍ଣରୂପେ ଶୂନ୍ୟ ହୋଇଗଲା ( ସବୁବେଳେ ଶର ମାରିବା ହେତୁରୁ ) । ପରସଙ୍ଗ—ପ୍ରସଙ୍ଗ; ଖଙ୍ଗ—ଅସୁଖ । ୨୬ । କାଳଭୁଜଙ୍ଗ—ସ୍ଵଭାବତଃ ଶଠ । ୨୭ । ମରନ୍ଦ—ମକରନ୍ଦ । ୨୮ । ଦକ୍ଷିଣବାତ···ମଳୟ ପବନ ସୁଗନ୍ଧଯୁକ୍ତ ନିଶ୍ଵାସ ପରି ହେଲା । ଗୃହାଣୀ ଚଞ୍ଚଳ ମରନ୍ଦାଶନ—ମରନ୍ଦାଶନ (ଭ୍ରମର) ଚଞ୍ଚଳ ଗୃହାଣୀ ହେଲା । ୨୯ । ଅଧିବାସନ—ଗନ୍ଧମାଲ୍ୟାଦି-ଦ୍ଵାରା ସଂସ୍କାର; ପଙ୍କଜପାନକ······ପଦ୍ମରୂପ ପାନପାତ୍ର, ପାନ ବାସନ ( ପାନ-

ଚିଠାର ସଙ୍କେତ ସମୟ ଅସି । ହେବାରୁ ହୃଦସ୍ଥଳବିଳାସୀ । ହେଲା ସେ ଧୃତିଧରାଧରଶମ୍ବ । ଦଶିଲ ନାହିଁ କାହିଁ ଅବଲମ୍ବ । ମେହ ଅନ୍ଧକାର । କଲା ଚେତନା-ଚନ୍ଦ୍ରକୁ ଧିକ୍କାର । ୩୧ । ଗୃହିଁ ତା ତାହା ପ୍ରିୟ ସହଚର । ଶୂନ୍ୟ ମଣି ବିଶ୍ବ ସଚରାଚର । କୃଷ୍ଣପ୍ରତିପଦା ରଜନୀମୁଖ । ଅଙ୍କେ ଧଇଲା କି ସୁଧାମୟୂଖ । ସେହିପରି କୋଳେ । ଧଇଲ ଯୁବରାଜକୁ ବିକଳେ । ୩୨ । ନ ଲଭି ତା ମୃଦୁ ବଦନବାତ । ଶ୍ରବଣେ କେ ଦେଲା ବଦନବାତ । ଘନସାରମିଶା ପନ୍ନୀର ପାଣି । ନୟନ ଯୁଗରେ ଲଗାଇ ପୁଣି । ଲପନେ ସିଞ୍ଚିଲା । କରକମଳ ବ୍ୟଜନେ ବିଞ୍ଚିଲା । ୩୩ । ପୁଣି କେ କରି ଧମନୀ ପରୀକ୍ଷା । ବୋଇଲା ଜଗଦୀଶ କର ରକ୍ଷା । ଶ୍ରୁତ ସମୀପେ ଡାକିଲା ଏ ଗିର । ଅଖଣ୍ଡ ଧରାଖଣ୍ଡଳ କୁମାର— ଗୀର ଅଧୀଶ୍ବର । ନବ କୋଟି ବାହାରେହପ୍ରବର । ୩୪ । ଚତୁରୀ ଚକ୍ଷୁ- ଚକୋର ଚନ୍ଦ୍ରମା । ଭାରତୀ ସାରକେଳ କଳାସୀମା । ଯାଚକ ମନୋରଥ କଳ୍ପଶାଖୀ । ଦେଉ ମହାଦେଈ ଦୁହିଙ୍କ ଅକ୍ଷି । ନବ ଯୁବରାଜ । ଶ୍ରୀଅଙ୍ଗ କି ଲାଗୁଅଛୁ କି ଆଜ । ୩୫ । ସେ ପୁରେ ସେପରି ଚହଲ ଜାଣି । ପ୍ରତାପ କଣ୍ଠୀରବ ନୃପମଣି । ଅଗଦଙ୍କାରରାଜକୁ ଅଣାଇ । ପୁଚ୍ଛନ୍ତେ ସେ କଣାଇଲେ ମଣାଇ । ତାହାଙ୍କ ମନକୁ । ହେବ ଅସୁ ଦ୍ରବ୍ୟ ଅବଧାନକୁ । ୩୬ । ଶ୍ରୀହସ୍ତ ଦେଖି ବିଗୃହିଲେ ଦେବ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ । ଚନ୍ଦ୍ରକଳା କର ପଡ଼ିଲେ ଗାତ । ଶାନ୍ତ ହେବ ସେ ଅତନୁତପତ । ମଣି ନରପତ । ଗନ୍ତାରେ ନମସ୍କାର ହେଲେ ମତ । ୩୭ । ଅରୁଣ

---

ରଶୀବା ଡବା ) ହେଲା । ୩୦ । କ୍ଷଣକ କୋଟି ସଂଖ୍ୟକ ଯୁଗ ପରି ହେଲା । ଅନଙ୍ଗସୁନ୍ଦର—ଯୁବରାଜଙ୍କ ନାମ; ଈକ୍ଷଣ—ଅକ୍ଷି; ବୀକ୍ଷଣ—ଦର୍ଶନ । ୩୧। ସେ ଧୃତିଧରାଧରଶମ୍ବ ହେଲା—ଚନ୍ଦ୍ରକଳାଠାରୁ ପାଇଥିବା ପତ୍ର ଧୈର୍ଯ୍ୟପର୍ବତ ନାଶ ପକ୍ଷରେ ଶମ୍ବ (ବଜ୍ର) ହେଲା । ୩୩। ଶ୍ରବଣେ କେ ଦେଲା ବଦନ ବାତ— କିଏ କାନ ଫୁଙ୍କିଲା । ଘନସାର—କର୍ପୂର; ଲପନ—ମୁଖ । ୩୪ । ଧମନୀ—ନାଡ଼ି, ବାହାରେହପ୍ରବର—କ୍ଷତ୍ରିୟବଂଶଜାତ । ୩୫ । ଭାରତୀ ସାରକେଳକଳାସୀମା— ହେ ସରସ୍ବତୀଙ୍କ ସଙ୍ଗୀତ ବିଦ୍ୟାରେ ପରମପ୍ରବୀଣ; ଦେଉ—ରାଜା, ମହାଦେଈ— ରାଣୀ । ୩୬ । ପ୍ରତାପୀ କଣ୍ଠୀରବ ନୃମଣି—ପ୍ରତାପସିଂହ ରାଜା, ଅଗଦଙ୍କାର- ରାଜ—ବୈଦ୍ୟରାଜ । ୩୭ । ବିଷମ ପ୍ରହର ପର୍ଯ୍ୟନ୍ତେ ହେବ— କ୍ଲେଶକର ଅବସ୍ଥା ପ୍ରହରକାଳ ହେବ । ଚନ୍ଦ୍ରକଳା କର—ଚନ୍ଦ୍ରଙ୍କ କଳାର କିରଣ ଓ ଚନ୍ଦ୍ରକଳା ନାୟିକାର ହସ୍ତ । ଅତନୁତପତ—

ଉଦୟେ ସେ ଦିନ ନିଶି । ସ୍ୱପ୍ନେ ଧରଣୀସୁର ଜଣେ ଆସି । ଆଶିଷ ଦେଇ ସେ ନରପତିଙ୍କ । ପ୍ରବୋଧି କହିଲେ ଗିର ଏତିକ । ଶୁଣ କ୍ଷମାଧବ । ମହାମହିମବସନ୍ତମାଧବ । ୩୮ । କାମକଳାରେ ବିଜେ କରିଛନ୍ତି । କାମକଳାପ କଳାପ ମୂରତି । ତାହାଙ୍କ ରଙ୍ଗ ରାଜୀବ ଚରଣ । ବିଲୋକେ ତୋ ପୁଣ ଅପମରଣ । କେବଳ ବଞ୍ଚିବ । ଅନ୍ୟଥା ରକ୍ଷି ନ ପାରନ୍ତି ଶିବ । ୩୯ । ଏହା କହି ହୋଇ ଅନ୍ତରହିତ । ହୋଇଲା ପ୍ରଭାତିକ ନଉବତ । ଶୁଭିଲା ବନ୍ଦିବୃନ୍ଦ ସ୍ତୁତିବାଦ । ଶୁଦ୍ଧାନ୍ତକାନ୍ତାଜନଭୂଷାନାଦ । ଧରି ହରିନାମ । ଅପହୁଡ଼ ହେଲେ ନୃପସତ୍ତମ । ୪୦ । ହୋଇଲା କାଠିଲାଗି ଅବକାଶ । ମନ୍ତ୍ରିବରଙ୍କୁ କଲେ ଫରମାସ । ମାଧବମାସ ବଳକ୍ଷ ପକ୍ଷରେ । କାମକଳାଖ୍ୟ ନଗରୀ ମୁଖ୍ୟରେ । ଶ୍ରୀମାଧବଙ୍କର । ହେବ ବାସନ୍ତିକ ଯାତ୍ରା ପ୍ରବର । ୪୧ । ମୋ କୁଳନଳସୂ ନୈଜସମ୍ପଦ । ନ ଲଭିବାକୁ ମହାମୋହପଦ । ଦରଶନକୁ ଯିବ ଯୁବରାଜ । ତହିଁ ସମୁଚିତ ସମ୍ଭାର ସଜ । ଏ ନାଦେଶ ଗିର । ଉଷ୍ଣୀଷ କଲା ସଚିବପ୍ରବର । ୪୨ । ଶେଷବିଳାସରୁ ଲଭି ବିରାମ । ଅଶେଷ-ବିଳାସୀ ଯେଉଁ ଶ୍ରୀରାମ । ଏକ ରଥାଙ୍ଗ ପରିତ୍ୟାଗ କଲେ । ଦଶରଥାଙ୍ଗରୁ ସମ୍ଭୂତ ହେଲେ । ରଚଇ ପ୍ରଣତି । ତାଙ୍କ ଚରଣେ ଜଳନ୍ତିରପତି । ୪୩ ।

---

ଶୂନ୍ୟ, ତାଛ ଓ କନ୍ଦର୍ପ ଜ୍ୱାଳା । ୩୮ । ଧରଣୀସୁର—ବ୍ରାହ୍ମଣ, କ୍ଷମାଧବ—ରାଜା, ବସନ୍ତମାଧବ—ଦେବତା ବିଶେଷ । ୩୯ । କାମକଳା—ନଗରୀର ନାମ, କାମକଳାପ କଳାପ ମୂରତି—କମନୀୟ ମୟୂରପୁଚ୍ଛରେ ଶୋଭନ ବର୍ଣ୍ଣ ମୂର୍ତ୍ତି ଯାହାଙ୍କର । ଅପମରଣ—ଅପମୃତ୍ୟୁ । ୪୦ । ନଉବତ—ନହବତ ବାଜା, ବନ୍ଦିବୃନ୍ଦ—ଭାଟସମୂହ, ଶୁଦ୍ଧାନ୍ତକାନ୍ତାଜନ—ଅନ୍ତଃପୁରସ୍ଥା ସ୍ତ୍ରୀମାନଙ୍କର । ୪୧ । କାଠିଲାଗି ଅବକାଶ—ଦାନ୍ତ ଘଷିବା ବେଳ । ମାଧବ ମାସ—ବୈଶାଖ ମାସ, ବଳକ୍ଷ ପକ୍ଷରେ—ଶୁକ୍ଳପକ୍ଷରେ । ୪୨ । ମହାମୋହପଦ—ମୂର୍ଚ୍ଛାପ୍ରାପ୍ତି ଉଷ୍ଣୀଷ—ପଗଡ଼ି, ଶିରୋଧାର୍ଯ୍ୟ । ୪୩ । ଶେଷ ବିଳାସ—ସର୍ପରାଜ ଶେଷଦେବଙ୍କ ଉପରେ ଶୋଇବାରୂପ ବ୍ୟସନ । ଏକ ରଥାଙ୍ଗ ପରିତ୍ୟାଗ କଲେ—ଏକ ଚକ୍ର ମଧ୍ୟ ସଙ୍ଗରେ ରଖି ନ ଥିଲେ । ଦଶରଥାଙ୍ଗ—ଦଶରଥଙ୍କ ଶରୀରରୁ ।

## ଊନବିଂଶ ଛାନ୍ଦ

### ରାଗ—ରାମକେରୀ

(ଚନ୍ଦ୍ରକଳାର ପରିଣୟ ମନ୍ତ୍ରଣା)

ମସୀକେଶାରସ ରସିକେ ଶୁଣ ଏ ରସ ସ୍ନେହେ । ମଣିମଞ୍ଜୁଳେଶ ମଲ୍ଲୀକ ଅଣି ଏକାନ୍ତେ କହେ । ୧ । ସୁତାପରିଣୟସୁତାପ ଶୀର୍ଣ୍ଣ କଲା ମୋ ଦେହ । କି ବୁଦ୍ଧି ଏଥିକି ସୁବୁଦ୍ଧି ବଳେ ବିଗୁର କହ । ୨ । ସଚିବ ତହିଁକି ବିବଚ ବହୁ ବିଗୁର ଭାଷେ । କହିବାର ମୋର ମହୀବାସବ ଘେନ ମାନସେ । ୩ । ନାକରେ ଭୂଲୋକ ଯାକରେ ନାଗେ ଦେଲନ୍ତି ମନ । ବରତମାନରେ ବର ତ ନାହିଁ ଜେମା ସମାନ । ୪ । ଶାରଙ୍ଗଧରଙ୍କୁ ତ ରଙ୍କୁନେତ୍ରା ବୋଲିବା ନାହିଁ । ବରିବ କରିବଦନଙ୍କ ଜନକଙ୍କୁ ସେ କେହୁ । ୫ । ଗୃହିବଦନଙ୍କୁ ପାରିବ ନାହିଁ ଭ୍ରାତରୁ ବର । ନତନୁ ତନୁବିହୀନ ତ ସେ କି କଶୋଖି ସର । ୬ । ବାସବ ତାହାର ଦାସବତହିଁ ହୋଇବେ କିକ । ଅସିତପକ୍ଷରେ ଶଶୀ ତ କ୍ଷୟ ଲଭେ କଳଙ୍କୀ । ୭ । ପାଶୀଙ୍କ ସ୍ଫୁଟ୍ଟନ୍ଦହାସୀକି ମନେ ହସି ନ ଦେବ । ଧନଦଙ୍କୁ କାହୁଁ ବନଦକେଶା ମନ ବଳିବ । ୮ । କୁବେର ତ ନଳକୁବର ତହିଁ କ୍ଷମତା ନାହିଁ । ସୁରଭିତଦେହା ସୁରଭିଷଙ୍କେ ରସିବ ନାହିଁ । ୯ । ମାର୍ତ୍ତଣ୍ଡରେ ଜେମା ରତମନା କେବେ ନୋହିବ । ଜ୍ୱଳନେ ସୁଷମା ବଳନେ ମଜେ ନ ସ୍ପୃହେ ଲଚ । ୧୦ । ଶିଖିବାହନେ ସୁମୁଖୀ ବା ଭକ୍ତି ଲଭନ୍ତା ସୁଖ ।

---

ଊନବିଂଶ ଛାନ୍ଦ

୧ । ମସୀକେଶା—କୃଷ୍ଣକେଶଯୁକ୍ତା ରମଣୀ । ୨ । ସୁତା ପରିଣୟ ସୁତାପ—କନ୍ୟାବିବାହର କଷ୍ଟ । ୩ । ମହୀବାସବ—ପୃଥିବୀର ଇନ୍ଦ୍ର ବା ମହୀନ୍ଦ୍ର । ୪ । ନାକରେ—ସ୍ୱର୍ଗରେ, ନାଗେ—ନାଗଲୋକରେ, ପାତାଳରେ । ୫ । ଶାରଙ୍ଗଧରଙ୍କୁ—ଶୃଙ୍ଗନିର୍ମିତ ଧନୁକୁ ଧରିଥିବା ବିଷ୍ଣୁଙ୍କୁ. ରଙ୍କୁନେତ୍ରା—ମୃଗନୟନା, ଚନ୍ଦ୍ରକଳା; କରିବଦନଜନକ—ହାତୀମୁହାଁ ଗଣେଶଙ୍କ ପିତା ଶିବ । ୬ । ଗୃହିବଦନ—ବ୍ରହ୍ମା; ନତନୁ ତନୁବିହୀନ—କନ୍ଦର୍ପର ତ ଶରୀର ନାହିଁ । ୭ । ବାସବ—ଇନ୍ଦ୍ର; ଦାସବତ—ଭୃତ୍ୟପରି; ଅସିତପକ୍ଷର ଶଶୀ—କୃଷ୍ଣପକ୍ଷର ଚନ୍ଦ୍ର । ୮ । ପାଶୀ—ବରୁଣ; ଧନଦ—କୁବେର; ବନଦକେଶା—ଘନକେଶା । ୯ । ନଳକୁବର—କୁବେର ପୁତ୍ର; କୁବେର—କୁତ୍ସିତରୂପଧାରୀ; ସୁରଭିଷଙ୍କେ—ଦେବବୈଦ୍ୟ ଅଶ୍ୱିନୀକୁମାରଙ୍କଠାରେ । ୧୦ । ମାର୍ତ୍ତଣ୍ଡ—ସୂର୍ଯ୍ୟ, ରତମନା—ଅନୁରକ୍ତଚିତ୍ତ; ଜ୍ୱଳନେ ସୁଷମା

ପଞ୍ଚମରୁ ବଳେ ପ୍ରପଞ୍ଚ ବଳେ ତାହାଙ୍କ ମୁଖ । ୧୧ । ସମରେ ଇତର
ଅମରେ ପର କେହି ନ ଦିଶେ । ପକ୍ଷରେ ଶତ୍ରୁ ବା ପକ୍ଷରେ ହାସ ସ୍ଫୁରେ
ମାନସେ । ୧୨ । ଅନ୍ଧର ପ୍ରକାରେ ଗନ୍ଧରବରେ ତାକୁ କେ ଦେବ ।
ଭିନ୍ନରେ ଭାବିଲେ କିନ୍ନରେ ବର କାହୁଁ ଆସିବ । ୧୩ । ଗ୍ରହରେ
ଯେବେ ଅଗ୍ରହରେ ଖୋଜି ବସିବା ବର । ଧିଷଣ କବିରୁ ଅଭୀଷଣ ଅଜ
ନାହିଁ ସୁନ୍ଦର । ୧୪ । ନାଗରେ କେ ଅବା ନାଗରେ ଥିବେ ନ ଥାଇ
ଜାଣି । ଭୋଗରେ ସେ ଅଧୋଭୋଗରେ ବଡ଼ ଦାରୁଣ ପୁଣି । ୧୫ ।
ରସାରେ ତ ମୋତେ ସୁହାରେ ନୃପତନୟ କେହି । ରାଜନନ୍ଦନାର
ଭାଜନ ହୋଇ ଦିଶଇ ନାହିଁ । ୧୬ । ଆନରେ ତ ଅନୁମାନରେ ତାହାର
ଅନୁରୂପେ । ନ ଦିଶେ ସୁଷମା ନ ଦିଶେ ଭୂଷା ସପ୍ତଦ୍ୱୀପେ । ୧୭ ।
କବିନବିଦ୍ୟାରେ ଭବନନ୍ଦନଠାରୁ ବଳିବ । ସରସଗୁଣେ ଶ୍ରୀହର୍ଷ
ଲଭିଥିବ ଲାଘବ । ୧୮ । ଖଣ୍ଡିତ ନୋହିବା ପଣ୍ଡିତପଣେ ଶେଷକୁ
ଜିଣି । ନାରଦଠାରୁ ବିଶାରଦ ହେବ ସଙ୍ଗୀତ ପୁଣି । ୧୯ ।
ବିଗ୍ରହ ଥାଇ ରବିଗ୍ରହ ପରି ପ୍ରତାପୀ ହେବ । କୁମାର ସଦୃଶ ଯେ
ମାର କରଗ୍ରହ କରିବ । ୨୦ । ଶିବକୁ ପ୍ରତ୍ୟକ୍ଷ ଶିବଙ୍କୁ ମନାଇଛୁ
କେ ଯୁବା । କାଶୀରେ ଗିରିଜେମା ଶିରେ ଦେଇ ଅସଂଖ୍ୟ ଜବା । ୨୧ ।
ଗଙ୍ଗାତୀରଙ୍କର ସଂଗତଶସ୍ତୁ ପାବନବନେ । କରିଚି କେ ତପ ଧରି ଶନୁସୁ
ଦେହ ଭୁବନେ । ୨୨ । କଲପ ନ୍ତ ଯାଏ ଜଳପାନହିଁ ଦେଇ ବରଜା ।
ଶ୍ୱସନମାନଙ୍କ ଅଶନ କରି ହରିଙ୍କି ଭଜି । ୨୩ । ଜଳପ ତେଜି ସଂକଳପ
କରି ଗରିଷ୍ଠ ଫଳ । ତଳପ କରି ଅନଳପ କାଳ ଧରଣୀତଳ । ୨୪ । ଘରକୁ

---

କଳନେ—ଅଗ୍ନିକଠାରେ ସୌନ୍ଦର୍ଯ୍ୟ ଥିବା ବିଷୟରେ । ୧୧ । ଶିଖିବାହନ—
କାର୍ତ୍ତିକେୟ, ପଞ୍ଚମରୁ······ତାଙ୍କର ମୁହଁ ପାଞ୍ଚରୁ ଅଧିକ ଅର୍ଥାତ୍ ଛଅଟି, ଏ କଥା
ସଂସାରରୁ ବାହାର । ୧୨ । ସମରେ—ସମାନତାରେ, ପର—ଉତ୍କୃଷ୍ଟ । ୧୩। ଅନ୍ଧର
ପ୍ରକାରେ—ଅନ୍ଧକାରରେ । ୧୪ । ଧିଷଣ କବି ଅଭୀଷଣ—ବୃହସ୍ପତି କେତେକ
ପରିମାଣରେ ଅଭିଯୁକ୍ତ । ୧୫ । ନାଗରେ—ନାଗଲୋକରେ ଏବଂ ନାଗରମାନେ;
ଭୋଗରେ—ଫଣାରେ, ଅଧୋଭୋଗରେ—ନିମ୍ନଦେଶ ପାତାଳରେ । ୧୮ । କବିନ
ବିଦ୍ୟାରେ—କବିତ୍ୱ ସ୍ଫୁରଣରେ, ଭବନନ୍ଦନ—ଗଣେଶ, ଶ୍ରୀହର୍ଷ—ନୈଷଧ
କାବ୍ୟ ପ୍ରଣେତା କବି । ୧୯ । ଶେଷ—ଶେଷଦେବ ଫଣୀଶ୍ୱର । ୨୦ । ବିଗ୍ରହ—
ଶରୀର, ମାର—କନ୍ଦର୍ପ । ୨୧ । ଶିବ—ମହାଦେବ, ଶିବଙ୍କୁ—ନିଜର ମଙ୍ଗଳ
ନିମିତ୍ତ । ଗିରିଜେମା—ପାର୍ବତୀ, ଅନ୍ନପୂର୍ଣ୍ଣା; ଜବା—ମନ୍ଦାରଫୁଲ । ୨୩ । ଜଳ-
ପାନହିଁ—ପାଣି ପିଇବା ମଧ୍ୟ, ଶ୍ୱସନ—ପବନ, ଅଶନ—ଭୋଜନ । ୨୪। କଳପ—

ପାସୋର ଧରକୁଟର ଜଟଳେ ବସି । ଶୟନ ନ ଭଜ ନୟନ ନାସା ଅଗ୍ରେ ନବେଶି । ୨୫ । ଯେ ଜପିଥିବ ତ ଶେଯପୀଠରେ ଶତବରଷ । ସେ ସିନା ଧରିବ ଏ ସୁନାଗୋଷ୍ଠି କରସାରସ । ୨୬ । ଚରମାଦ୍ରି ଯାଏ ଚରମାନଙ୍କୁ ପେଷିବା ଶିବେ । ନାଦେଶମାର୍ଗିକେ ବଦେଶଯାକ ବୁଝି ଅସିବେ । ୨୭ ବାଳୀବର ବର ଖ୍ୟାଦେ ନ ଛବି ହେବ ପ୍ରକଟ । ରଙ୍ଗାଜୀବେ ଯିବେ ଅସିବେ ଲେଖି ତା ରୂପପଟ । ୨୮ । ମାୟାନର ନରଛନସ୍ୱେ ଜାଣନ୍ତି ଇନ୍ଦ୍ର-ଜାଲେ । ଅଜ୍ଞା ଦେବ ଦେବ ସେ ଯିବେ ଦେଶ ହେଲବେ ଭଲେ । ୨୯ । ଧୀରପଣେ ପଣେ ଅମରଗୁରୁ ଯିବେ ଓହରି । ପୃଥିବୀରେ ବୀରେ ନ ଥିବେ ଯାହା କଳାକୁ ସରି । ୩୦ । ସମ୍ପଦରେ ଦରେ ଶଙ୍କିବେ ଯାକୁ କୁଳଶପାଣି । ବଳ କର୍ଣ୍ଣ କର୍ଣ୍ଣେ ଯା ଦାନ ଯଶ ନ ଥିବ ଶୁଣି । ୩୧ । ଗୁଣରୂପରୁ ପୁରୁଷତା-ଭାସ ମାନକ ଥିବ । ଅବଧାନ ଧାନ ପ୍ରମାଣେ ଯାହାଠାରେ ହୋଇବା ୩୨ । ସେହି ହେବ ଦେବ ସୁମନ୍ତମଣ୍ଡଳୀସଂନ୍ଦନ । ଜେମାମଣି ମଣି-ସଂଯୋଗବିଧାନରେ କୁନ୍ଦନ । ୩୩ । ସ୍ୱୟମ୍ବର ବରବର୍ଣ୍ଣନା ମନେ ବାଞ୍ଛିବ ଅବା । ମନୋରଥ ରଥସଞ୍ଚାରପଥ କମେ ଜାଣିବା । ୩୪ । ଏ ବିଧିରେ ଧୀରେ କହନ୍ତି କନ୍ୟାରତନ ଛବି । ତାହାର ସେ ରହେ ବଳିବା ଚିତ୍ତ ପ୍ରଧାନ ଭାବି । ୩୫ । ଜନମୀର ନାରବଧିକ ଧନେ ବଳେ ଯେ ମତ୍ତ । ଜାଣି ତାତ ତା ତରଳତା ଲୋଡ଼େ ସୁଗୁଣଖ୍ୟାତ । ୩୬ । ବନ୍ଧୁ କୁଳକୁ ଲଜ୍ଜା ନୋହେ କୁଳ ହେଲେ ନିର୍ମଳ । ଗୁଣିବରଙ୍କ ରଙ୍କପଣରୁ ଲୋଜ କରନ୍ତି ମୂଳ । ୩୭ । ମହତ୍ତ୍ୱ ମହତ୍ତମମାନେ ପ୍ରବଳାଇ କରନ୍ତି । ଅନନ

---

କଳ୍ପ, କଥା । ୨୫। ଧରକୁଟରେ ଜଟଳେ—ପର୍ବତଶୃଙ୍ଗସ୍ଥ କୁଢ଼ଅରେ । ୨୬। କରସାରସ —କରପଦ୍ମ । ୨୭ । ଚରମାଦ୍ରି—ଚରମାଚଳ, ପଶ୍ଚିମସୀମା ଶେଷ, ଶିବେ—ଶୁଭକୃତ୍ତିରେ । ୨୮ । ରଙ୍ଗାଜୀବେ—ଚିତ୍ରକରମାନେ । ୩୦ । ପଣେ ଅମର-ଗୁରୁ—ଅଣୀ ଜଣ ବୃହସ୍ପତି, ଓହରିଯିବେ—ପରାସ୍ତ ହେବେ । ୩୧ । କୁଳଶ-ପାଣି—ଇନ୍ଦ୍ର, ବଳ କର୍ଣ୍ଣ—ପ୍ରସିଦ୍ଧ ଦାତା ଦୁଇ ଜଣ, କର୍ଣ୍ଣ—କାନ । ୩୨ । ପୁରୁଷତାଭାସ—ପୌରୁଷର ସୂଚନା ବା ସଙ୍କେତ । ଅବଧାନ—ଚିତ୍ତର ଏକାଗ୍ରତା, ଧାନ ପ୍ରମାଣେ—ଅତି ଅଳ୍ପ ମାତ୍ରାରେ । ୩୩ । ସୁମନ୍ତମଣ୍ଡଳୀ-ସଂନ୍ଦନ—ପଣ୍ଡିତସମୂହର ଇନ୍ଦ୍ର, ଅର୍ଥାତ୍ ଶ୍ରେଷ୍ଠ ପଣ୍ଡିତ, କୁନ୍ଦନ—ସୁବର୍ଣ୍ଣ । ୩୪ । ମନୋରଥରଥ ସଞ୍ଚାରପଥ—ଅଭିଳାଷରୂପ ରଥର ଗତିପଥ ଅର୍ଥାତ୍ ଯେଉଁ ଦିଗରେ ଇଚ୍ଛା ତାହା । ୩୬ । ନାରବଧିକ ଧନେ—ପ୍ରଚୁର ସମ୍ପତ୍ତିରେ ( ମା ଧନ ଖୋଜେ ), ତା ତରଳତା—ଧନର ଅସ୍ଥିରତା, ସୁଗୁଣ

ଆନ ନର ନନ୍ଦା ସ୍ତବ କରେ ଭରତ । ୩୮ । ତଥାପି ତଥାପି ହୋଇବ ଦେବ ଦୁଃଖ ବଗୁର । ମନୁଜ ମନୁଜନ୍ୟପୀଡ଼ା ନ ରଖନ୍ତୁ ଈଶ୍ୱର । ୩୯ । ତରୁଣୀ ତ ରତୀ କରନ୍ତୁ ତପେ ଦେବଙ୍କୁ ପୂର୍ବେ । ଦେବ କା ଦେବ କଶୋଗୀଙ୍କ ଦୁଃଖ ନ ସୁଝି ଏବେ । ୪୦ । ସଚବ ଶଚବରତୁଲ୍ୟ ନୃପ ଦୁହେଁ ଏପର । ମାନସମାନ ସମାଧାନ କର ନେଲେ ଶର୍ବରୀ ।୪୧। ପ୍ରଭାତପ୍ରଭା ତରଣିଙ୍କ ସୂତ କଲେ ପ୍ରକାଶ । ବାସବ-ବାସବତୀ ଦଗ ହେଲା ଯୋଗିନୀ ବେଶ । ୪୨ । ଅମ୍ବର ଅମ୍ବର କଷାୟ ପିନ୍ଧବାରେ ରସିଲା । ଦଣ୍ଡକ ଦଣ୍ଡ-କମଣ୍ଡଳୁ ଘେନି ସମୁଲ୍ଲସିଲା ।୪୩। ହରଷେ ହରସେବନରେ ମାଳୀ ହେଲେ ବାହାର । ସାରସସାର ଷଟ୍‌ପଦେ ପିଇ କଲେ ଝଙ୍କାର । ୪୪ । କାରଣ ହେଲା ସେ ସମୟ କୋକଲୋକ ମୋଦର । ଦରରୁ ଉଲୂକେ ନୋହିଲେ କୋରଡ଼ରୁ ବାହାର । ୪୫ । ହୀର ନୀହାରପର ହେଲା ସ୍ତନେ ଅଭିରାମାର । ମାରମାରଗଣ ବରଷା କରୁଁ ହେଲା ଓଡ଼ର । ୪୬ । ହରଣ କୁଲଟା ନୀବୀର କରୁଥିଲେ ଯେ ବାଟ । ବାଟପିଚ୍ଛାୟୀରେ ଛପିଲେ ଗୁଡ଼ ବହଳ ଖଟ । ୪୭ । ଖଟଣୀ ଲୋକେ ଫିଟାଇଲେ ନୃପଦ୍ୱାର କବାଟ । ବାଟଜଗାଙ୍କୁ ଅଭିସାରୀ ଦେଲେ ଭୂଷଣ ପାଟ । ୪୮ । ପାଟବ ତମିସ୍ରପୁଞ୍ଜର ରବ କଲେ ବପାଟ । ପାଟଇରେ ବାସେ ଅଶ୍ୱୟୂ କଲେ ଅଚଳକୂଟ । ୪୯ । କୂଟ-ଯୋଧୀ ଦନୁଜଙ୍କର ଯେଉଁ ଗ୍ରାମ ମାରଣ । ରଣମୁଖେ ସେ ସ୍ଫୋଟରାୟ ନୃପତର ଶରଣ । ୫୦ । ପରିଣୟମନ୍ଦାନନ୍ଦନ ଜାଣ ଏ ଛାନ୍ଦ ନାମ । ଏକ ପଞ୍ଚାଶତ ସଂଖ୍ୟକ ପଦେ ହେଲା ବିରାମ । ୫୧ ।

---

ଖ୍ୟାତ—ଜନର ପ୍ରଶଂସା । ୩୯ । ମନୁଜମନୁଜନ୍ୟପୀଡ଼ା—ମନୁଷ୍ୟର ମାନସିକ ସନ୍ତାପ । ୪୧ । ସଚବ—ମନ୍ତ୍ରୀ; ଶଚବର—ଇନ୍ଦ୍ର । ୪୨ । ତରଣିଙ୍କ ସୂତ—ସୂର୍ଯ୍ୟ ସାରଥି ଅରୁଣ; ବାସବବାସବତୀଦଗ—ଇନ୍ଦ୍ରଙ୍କ ଅଧିଷ୍ଠିତ ପୂର୍ବଦଗ; ଯୋଗିନୀ-ବେଶ—ତାପସୀ ବେଶ; ଅମ୍ବର···ଗୈରିକବସ୍ତ୍ରରୂପ ରକ୍ତବର୍ଣ୍ଣ ଆକାଶ । ୪୩ । ସାରସସାର—ପଦ୍ମର ମଧୁ ବା ମକରନ୍ଦ । ୪୫ । କୋକଲୋକ—ଚକ୍ରବାକ ସଙ୍ଘ; ଉଲୂକ—ପେଚା । ୪୬ । ନୀହାରପର—ତୁଷାର ପର ( ଶୀତଳ ) । ମାରମାରଗଣ—କନ୍ଦର୍ପଶର; ଓଡ଼ର—କ୍ଷୀଣ, ଅଳ୍ପ । ୪୭ । କୁଲଟା—ଅସତୀ ନାରୀ, ନୀବୀ—ସ୍ତ୍ରୀମାନଙ୍କ ଲୁଗାର ଅଣ୍ଟାଗଣ୍ଠି, ବାଟପିଚ୍ଛାୟୀ—ଗଛଛାଇ । ୪୮ । ଅଭିସାରୀ—ଅଭିସାରିକା ନାୟିକା । ୪୯ । ପାଟବ ତମିସ୍ରପୁଞ୍ଜର—ଘନ ଅନ୍ଧକାରସମୂହର, ବପାଟ—ବିଦାରଣ; ପାଟଇର—ଗୈରି; ଅଚଳକୂଟ—ପର୍ବତ ଶିଖର । ୫୦ । କୂଟଯୋଧୀ—ମାୟା. ଯୁଦ୍ଧକାରୀ । ୫୧ । ପରିଣୟ-ମନ୍ଦାନନ୍ଦନ—ଆନନ୍ଦପ୍ରଦ ବିବାହ ମନ୍ତ୍ରଣା ।

## ବିଂଶ ଛାନ୍ଦ

### ରାଗ—ଦେଶାଖ

### ( ଇନ୍ଦ୍ରଜାଲ ପ୍ରଦର୍ଶନ )

ଶୁଣ ହେ ସୁହୃଦ ଜନେ ନବ ଯୁବରାଜ ଦିନେ ପୁର ବାହ୍ୟ ଉପବନ ମଣ୍ଡପେ ବସି । ରାଜବଲ୍ଲଭ ପ୍ରମୁଖ ସଖାନିବହକୁ ସୁଖ ଦେଉଥିଲେ ମୁଖ୍ୟ ଅକ୍ଷଲୀଳାରେ ରସି । ଖଟଣି ସାମନ୍ତ କିଶୋରେ । ଖଟିଥିଲେ ସାବଧାନ ହୋଇ ପାଶରେ । ୧ । ଏ ସମୟେ କୁଞ୍ଜଦ୍ୱାରପାଳ ବେତ୍ର-ଲତାଧର ଧରଣୀ ହୃଦୟେ ଶିରସ୍ପରଶ କରି । ଜଣାଇଲା ଦିବ୍ୟ ଅବଧାନଙ୍କୁ ଆସୁ ହେ ଦେବ ନଟ ଅଶେଷ ବିଭବ ବୈଶସଞ୍ଚାରୀ । ମାୟାମୟ ବିଦ୍ୟା-କୁଶଳ । ତବ ପାଦମୂଳ ଦରଶନରେ ଲୋଳ । ୨ । କସାଇଛୁ କ୍ରମେ କ୍ରମେଲକ ତୁରଙ୍ଗ ଚରମେ ଦାମାମା ନାଗରି ଭୁରି ଅଛୁ ଅନେକ । ବୁହାଇଛୁ ମତ୍ତଗଜ ସମଜରେ କରି ସଜ୍ଜ ଜାମ୍ବୁନଦ ଜରୀତମ୍ବୁ ନେପଥ୍ୟ ଯାକ । ଅଛି ପଟୁ ଟଟ୍ଟୁପଟଳୀ । ମହୋନ୍ନତ ବଳୀବର୍ଦ୍ଦ ନୁହଇ କଳି । ୩ । ସିଂହସଂହନନ ସାରମେୟ ଅଛନ୍ତି ଅପାର ମେଷବୁହା ଗଧ ଅଧଶତ ସମେତେ । ପାଟୀର ଚର୍ଚ୍ଚିତସ୍ତନ ଘଟୀ କଞ୍ଚୁକ ଶୋଭନ ନଟୀ ଦଶ ଗୋଟି ସିଂହକଟୀ ସମସ୍ତେ । ଗାନ ନରତନ ରୀତରେ । ଅନ ନର ତ ନ ଥିବେ ପୁଣି କ୍ଷିତରେ । ୪ । ଶୁଣି ଗୋତ୍ରାଧିପ ପୁତ୍ର ମିତ୍ର ସମ୍ମତରେ ନେତ୍ର-କୋଣକୁ କମ୍ପାଇଁ ଆସୁ ବୋଲି ସୂଚିଲେ । ଅବକାଶେ ଭେଟି ନଟ ଯୋଡ଼ି ରହି କରପୁଟ ଜୟ ପୂର୍ବ ସ୍ତବ ଭାଟ ପରି ରଚିଲା । କଳପିଲ ହଟ କପଟ ।

---

ବିଂଶ ଛାନ୍ଦ

୧ । ମୁଖ୍ୟ ଅକ୍ଷଲୀଳା—ପ୍ରଧାନ ପଶାଖେଳ । ୨ । କୁଞ୍ଜଦ୍ୱାରପାଳ—କୁଞ୍ଜ-ଦ୍ୱାରର ଦ୍ୱାରୀ; ଧରଣୀହୃଦୟେ ଶିର ସ୍ପରଶ କରି—ମାଟିରେ ବକ୍ଷ ଓ ମସ୍ତକ ଲଗାଇ ଅର୍ଥାତ୍ ସାଷ୍ଟାଙ୍ଗ ପ୍ରଣାମ କରି । ୩ । କସାଇଛୁ—ଦୃଢ଼ରୂପେ ବାନ୍ଧିଛୁ; କ୍ରମେଲକ —ଓଟ, ତୁରଙ୍ଗ—ଘୋଡ଼ା, ଚରମେ—ପିଠିରେ, ଦାମାମା ନାଗରିଭୁରି—ବାଦ୍ୟବିଶେଷ, ମତ୍ତଗଜସମଜରେ—ବଡ଼ ବଡ଼ ହାତୀସମୂହଦ୍ୱାରା, ଜାମ୍ବୁନଦ··· ସୁନାଜରିର ପଡ଼ିଥିବା ତମ୍ବୁ ଏବଂ ନେପଥ୍ୟ ( ବେଶ ) ସବୁ । ଟଟ୍ଟୁପଟଳୀ—ଛୋଟ ଘୋଡ଼ାସବୁ । ୪ । ସିଂହସଂହନନସାରମେୟ—ସିଂହପରି ଶରୀରବିଶିଷ୍ଟ କୁକୁର, ମେଷ—ଛେଳି (ତମ୍ବୁ ଟାଣିବାପାଇଁ), ପାଟୀର—ଚନ୍ଦନ, କଞ୍ଚୁକ—କାଞ୍ଚୁଲି, ଗାନ ନରତନରୀତରେ—ଗାଇବା ଓ ନାଚିବାରେ । ୫ । ଗୋତ୍ରାଧିପପୁତ୍ର—ରାଜପୁତ୍ର,

କଦଳୀତରୁ ତୋରଣ କନକପୁଟ । ୫ । ଯୁବରାଜ ସଭା ଗୁଡ଼ି ଯେତେକ ନଟୀ ଅଜାଡ଼ି ହେଲେ ନାଟ ଦେଖିବାକୁ ମଣ୍ଡଳୀ ଘେର । ହୋଇ ତାଙ୍କ ମାବା ଭ୍ରଂଶ ଜାତ ହେଲେ ରାଜହଂସ ତା ଦେଖି ଯେ ହସିଲା ତାଠାରୁ ସେପର । ତହୁଁ ପୁଣି ଅକାଶେ ଗୃହି । ଡାକିଲା ରେ କାମଚଣ୍ଡି ରହିଲୁ କାହିଁ । ୬ । ତହୁଁ ଆକାଶରୁ କାଶମିଶା ବୃଦ୍ଧା ଅଟ୍ଟହାସ ସହିତେ ଶୁଭିଲା ଘୋର ଘର୍ଘରସ୍ୱରେ । ସୁରତ ବିନା ନିମିଷ ହୋଇଛୁ ମତେ ବରଷ କର ରେ ମୋର ସନ୍ତୋଷ ନବକିଶୋରେ । ଏତେ କହି ପଡ଼ିଲା ଖସି । କାଳରାତ୍ରି ମୂର୍ତ୍ତି ତାଳତରୁ ସଦୃଶୀ । ୭ । ଧବଳ ଝାଞ୍ଜିରକେଶା ତହିଁ ପୁଣି ଲେକହସା କମୁକ ସଦୃଶ ଖୋସା ସଧ କରଛୁ । କାକ ବକ ପକ୍ଷଟିରା ଦୃଷ୍ଟ ବଦ ଗୃରସୋରା ବେଢ଼ରେ ବସନ୍ତ ତୋରା ଫୁଲ ଘେରିଛୁ । ନେଣ ତରୁକୋଟର ପରା । ଗୋଟାକରେ ଅଛୁ ମାନ ସଫେଦ ତାରା । ୮ । ପୀନସଗଦ ବିକୃତ ନାସାବିଳ ଅନ୍ତର୍ଗତ ଲୋମ ନିକୁରମ୍ବ ଚୁମ୍ବେ ଲମ୍ବ ଚିବୁକ । କଞ୍ଚୁକ ହୁଗୁଳା ଗଳବଳା ତଳା କୁକ୍ଷିସ୍ଥଳୀ ଲୁଳି ହେଉଛୁ ଅନ୍ଦୋଳା ଯାହାର ବୁକ । ଶଙ୍ଖ ମଣିମାଳା ଅନେକ । ମଣ୍ଡିଛୁ ସେ ଚଣ୍ଡୀ ଗଳଗଣ୍ଡିଆ ବେକ । ୯ । ଭାନ୍ଦୁକ ଇନ୍ଧନ ଗୋରା ଦେହା ପୃଥୁଳପଞ୍ଜରା ଜରାଶୁଷ୍କଲଗ୍ନଳୀ କପୋଳ ନିତମ୍ବ । ଘୋଡ଼ାଇଁ କାଷାୟ ବାସେ ଅଧ ଅଧମାଙ୍ଗେ ଦଶେ କାସୀସ ଓଷ୍ଠୀର ଶ୍ୱେତ ଲୋମ-କଦମ୍ବ । ତରୁଣଙ୍କ ଗୃହି ସଂକୋଚେ । ରସନା କାମୋଡ଼ି ହସି ଅଳପ ନାଚେ । ୧୦ । ପାଶେ ମିଳି ଯିବା ଯୁବାଜନଙ୍କ ସୂନଧନବା ବିକାର ଅନ୍ତରେ କମି

---

କଲପିଲ ହଟକପଟ—ମାୟାପୂର୍ଣ୍ଣ ଇନ୍ଦ୍ରଜାଲ କଳ୍ପନା କଲ, କନକପୁଟ—ସୁନାପୁଟଦିଆ । ୬ । ନଟୀ—ବେଶ୍ୟା, ହୋଇ ତାଙ୍କ ମାବାଭ୍ରଂଶ—ଖୋସଣୀ ଫିଟି-ଯାଇ । ୭ । କାଶମିଶା—କାଶରୋଗଯୁକ୍ତା, ନିମିଷ—କ୍ଷଣକାଳ । ୮ । ଧବଳଝାଞ୍ଜିର-କେଶା—ଯାହାର କେଶ ଧଳା ଓ ପାତଳା, କମୁକସଦୃଶ—ଗୁଆ ପରି କ୍ଷୁଦ୍ର, ସଧକରଛୁ—କୌତୁକରେ ବାନ୍ଧିଛୁ, କାକବକପକ୍ଷଟିରା—କୁଆ ଓ ବଗ ପକ୍ଷୀ ଖୋସାରେ ଖୋସିଛୁ, ଦୃଷ୍ଟ ବଦ ଗୃରସୋରା—ଦେଖାଯାଉଥିବା ଗୃରସର ବଦ, ବସନ୍ତତୋରା—ହଳଦିଆ ବର୍ଣ୍ଣର ସୁନ୍ଦର (ଫୁଲ), ତରୁକୋଟର—ଗଛଖୋଲ । ୯ । ପୀନସଗଦବିକୃତ—ପୀନସ ରୋଗଦ୍ୱାରା ବିକାର ପ୍ରାପ୍ତ, ନିକୁରମ୍ବ—ସମୂହ, କୁକ୍ଷିସ୍ଥଳୀ—ଉଦରଦେଶ, ବୁକ—ବକ୍ଷସ୍ଥଳ ( ସ୍ତନ ); ଗଳଗଣ୍ଡିଆ ବେକ—ଗଳଗଣ୍ଡ ରୋଗଯୁକ୍ତ ସ୍ଥୂଳ ବେକ । ୧୦ । ଭାନ୍ଦୁକଇନ୍ଧନ—କେନ୍ଦୁକାଠ, ଜରା—ବାର୍ଦ୍ଧକ୍ୟ, ଶୁଷ୍କଲଗ୍ନଳୀ-କପୋଳନିତମ୍ବ—ଗଣ୍ଡଦେଶ ଓ ନିତମ୍ବ ଶୁଖିଲା ନଡ଼ିଆ ଭଳି, କାଷାୟବାସ—ଗେରୁଆ ଲୁଗା, କାସୀସଓଷ୍ଠୀ—ଯାହାର ଓଷ୍ଠର ବର୍ଣ୍ଣ ହୀରାକସ ବର୍ଣ୍ଣ ପରି ଛେଡା ବା ପୀତାଭ, ଲୋମକଦମ୍ବ—ରୋମସବୁ । ୧୧ । ସୂନଧନବା—ପୁଷ୍ପଧନ୍ୱା, କନ୍ଦର୍ପ; ବିକୃତ—ସ୍ୱଭାବର

ଭିଡ଼ଇ ଭୃଙ୍ଗେ । ରଦବହ୍ନାନବଦନା କରି ରସ ଅସ୍ୱାଦନା ଇଷି ଇଷି ଭାଷି ଶୋଷି ନୟନ ଭୃଙ୍ଗେ । ତା ବକ୍ରତ ଅନ୍ତରହିତ । ହସାଇ ହସାଇ ହେଲ ଅନ୍ତରହିତ । ୧୧ । ପୁଣି ମାୟା ନାଗ ନାକ ନଗରୀ ନାଗରୀଯାକ ଜମା ହୋଇ ଜଣାଇଲେ ଦିବ୍ୟ ସଙ୍ଗୀତ । ମିଶାଇ ଶଙ୍କରତପଭଞ୍ଜନ-ଭଙ୍ଗୀ କଳାପ ମନ୍ଦ ମନ୍ଦହାସ ପରିହାସ ଇଙ୍ଗିତ । ମେରୁଧୀର ନୃପକୁମାର । ତେବେ ହେଲେ ନ ଖଣ୍ଡିଲ ଧଇର୍ଯ୍ୟ ସାର । ୧୨ । ଏ ସମୟେ ଘନସାର-କସ୍ତୁରୀ-କୁଙ୍କୁମସାର-ଚନ୍ଦନସୁବାସୀ ମନ୍ଦବାତ ବହିଲ । କେବଳ ମାଙ୍କ ସେ ଜନାଧିନାଥନନ୍ଦନ ବିନା ଇତର ନରଙ୍କୁ କିଛି ଦୃଶ୍ୟ ନୋହିଲ । ହେଲ ଦିବ୍ୟ ପୁଷ୍ପବରଷା । ହେଲ ସୁରଧରାପରି ସେ ରଙ୍ଗରସା । ୧୩ । ଶୁଭିଲ ମଣିମା ତାଙ୍କ ଅଧିପଲାଞ୍ଛନଯାକ ମଧ୍ୟେ ଦିଶିଲ କନକମୟ ପାଲିଙ୍କି । ଜାମ୍ବୁନଦ ଚନ୍ଦ୍ର ପ୍ରଭାକର ପରଦାର ପ୍ରଭାବବଶରୁ ପଡ଼ୁଥିଲ ପ୍ରଭା ଝଲକି । ମଣ୍ଡପ ନିକଟ ଚତ୍ୱରେ । ଅବତରନ୍ତେ ସେ ଯାନବର ସତ୍ୱରେ । ୧୪ । ଉପବନକୁ ପବନ କେହି କମ୍ପାଉଛି ବନରୁହ ସୁଲୋଚନା ଅନା ବୋଲି କେ ବାଳା । ପରଦା ଧରନ୍ତେ ଟେକି ମଣ୍ଡିଲି ସେ ଧବଳୀଙ୍କ ସଖୀ ଅଂସେ ଦେଇ ଭୁଜ ଚମ୍ପକମାଳା । ଝଟ କରି ପଡ଼ନ୍ତେ ଦୃଷ୍ଟି । ସରିଗଲ କୁମାରର ବିବେକ ସୃଷ୍ଟି । ୧୫ । ନବସ୍ନେହ ବିଶାରଦ ନୃପାତ୍ମଜ ସେ ଶାରଦ-ସୁଧାମୟୂଖମୁଖୀର ଶୋଭା ବୀକ୍ଷଣେ । ମକରଧ୍ୱଜ ମୋହନ ସୁନଶିଳୀମୁଖ ମୁନ ବାଜି ବିଗତଚେତନ ହୋଇଲ କ୍ଷଣେ । ମୋହନାବସାନେ ଅନାଇ । ଭାବିଲ ଏ ସୁଷମା ତ ଦେଖିଲି ନାହିଁ । ୧୬ । ନୂତନ ତମାଲମାଳ ନୀଳ ଶଇବଳ ବଳ ଦଳିତକଜ୍ଜ୍ୱଳ ଜଳଧର ସଙ୍ଘାତ । ଏ ସବୁ ଛବି ପାତଳ ଏହାର କୁନ୍ତଳତଳ ଗ୍ରୁମର ମରକତରୁ ନୋହେ ତ ଜାତ । ଭ୍ରମରେ କେ ହେଲେ ଭ୍ରମରେ । ବିଗ୍ରହବିଅଛି କିଛି ଏହା ସମରେ । ୧୭ । ଲମ୍ବ କୁଞ୍ଚିତ

---

ଅନଂଥା ଭାବ, ବକ୍ରତ; ଅନ୍ତରହିତ—ଅନନ୍ତ, ପ୍ରଚୁର; ଅନ୍ତରହିତ—ଅନ୍ତର୍ହିତ, ଅଦୃଶ୍ୟ । ୧୨ । ନାଗନାକନଗରୀନାଗରୀଯାକ—ପାତାଳ ଓ ସ୍ୱର୍ଗର ନଗର-ମାନଙ୍କର ଯୁବତୀମାନେ; ମେରୁଧୀର—ଦୃଢ଼ଚିତ୍ତ । ୧୩ । ଘନସାର—କର୍ପୂର; ସୁରଧରା—ସ୍ୱର୍ଗ; ରଙ୍ଗରସା—କ୍ରୀଡ଼ାମଞ୍ଚ । ୧୪ । ଅଧିପଲାଞ୍ଛନ—ରାଜଚିହ୍ନ; ଜାମ୍ବୁନଦ—ସୁବର୍ଣ୍ଣ; ପ୍ରଭାକର—ସୂର୍ଯ୍ୟ; ପରଦାର ପ୍ରଭାବବଶରୁ—କନାଟିବାଡ଼ ଆଗରେ ଥିବାରୁ; ଚତ୍ୱର—ଅଗଣା; ଯାନବର—ଶ୍ରେଷ୍ଠଯାନ, ପାଲିଙ୍କି । ୧୫ । ବନରୁହସୁଲୋଚନା—ପଦ୍ମନେତ୍ରା, ଅଂସେ—କାନ୍ଧରେ । ୧୬ । ମକରଧ୍ୱଜ···କନ୍ଦର୍ପର ମୋହଜନକ ଫୁଲଶରର ମୁନ ବାଜି କ୍ଷଣକ ମଧ୍ୟରେ ଅଜ୍ଞାନ ହୋଇଗଲ, ସୁଷମା—ପରମଶୋଭା । ୧୭ । ଶଇବଳ—ଶିଙ୍ଗଳା, ବଳ—

କୋମଳ ସଜଳଜ ପରିମଳ ନୋହେ ତ ମହେନ୍ଦ୍ରନୀଳ ତହିଁକି ତୁଳା । ତମ ତମୋନୁଦଙ୍କର କରଣର ଉପୁଙ୍କର ଏ ତ ମଣ୍ଡିଅଛୁ ହୀରୁ ହେମ-ପିତୁଳା । ଏହା ଦ୍ୟୁତି ଆନରେ ନାହିଁ । କଳାପୀର କଳାପେ ତ କଳା ଏ ନାହିଁ । ୧୮ । ଏକା ଏ କାମିନୀ ଧନ୍ୟ ଭଲ ଲଲାଟ ଲାବଣ୍ୟ ସୁନାମୟୁ କେତକେ ତ ନାହିଁ ଏ ଶିରୀ । ବଳକ୍ଷପକ୍ଷ ଅଷ୍ଟମୀ ସୁଧାଂଶୁ ଖେ ଭ୍ରମି ଭ୍ରମି ଶ୍ରମୁଁ ରହିଛନ୍ତି କି ଜମି ଦେଶେ ଏପରି । କି ଚକ୍‌କଣ କି ଝଲମଲ୍ଲ । ଦେଖା ନାହିଁ ଲେଖା ଲେଖାପୁରେ ଏମନ୍ତ । ୧୯ । ବିମଳ ସୁନ୍ଦର ଦରପଣ ସହୋଦର ଦରହାସୀର ଭାସୁର ସୁରଞ୍ଜନ କପୋଳ । କେଡ଼େ ମନୋହର ହରମୋହନ ରୁଚି ରୁଚିର କେଳି କଳନ ମନ୍ଦିର ଏ ଗଣ୍ଡସ୍ଥଳ । ଥରେ ଏଥି ଚୁମ୍ବିଲେ ରସେ । ବୋଲାଇବ ନିଖିଳ ତରୁଣେଶ୍ୱର ସେ । ୨୦ । ଅହା ଏ ହେମନଭାଙ୍ଗୀ ଭ୍ରୂଯୁଗ ଭଙ୍ଗି ଭାଙ୍ଗି ଦେଇଛି ନୀଳଭୁଜଙ୍ଗୀ ଗର୍ବକୁ ଖେଳେ । କମ୍ପାଇବ ମନ ମନସିଜ ଶରାସନ ସନକଙ୍କର ଚେତନ ତ ନ ରହିବ ତଳେ । ଯୁବ ମର୍ମକଟା କତୁରୀ । ସମ୍ପାଦ କି କମ୍ପାଉଛି ଗୋରୀ ଚତୁରୀ । ୨୧ । ସୁଧାରସ ହଳାହଳ ମିଶାମିଶି ଚଳାଚଳ ଯଉଧୃତବଳାବଳ ବଗୁରଶୀଳ । ଚକିତାଲୋକସସମ୍ଭ୍ରମ ଚମୂରୁ ଚକ୍ଷୁର୍ଗ୍ରହ ମଦଦ୍ରମର୍ଦ୍ଦନକ୍ଷମ ନେତ୍ରଯୁଗଳ । ଲାଞ୍ଚି ମଞ୍ଜୁତର ଅଞ୍ଜନ । ଯୋଗୁଁ ଖଞ୍ଜରୀଟପୁଞ୍ଜ ଗର୍ବଗଞ୍ଜନ । ୨୨ । ନୀଳ ଇନ୍ଦୀବରବର ସୁରଭିବାସର ସରସିଜ ବିଲୋଳ ଶଫର ଏ ଅଧ ଯେତେ । ଶିଖିଲେ ହେଁ ବାରବାର ଏ ନେତ୍ର ଶୋଭାର ଭାର ବହି ମହୀ ମୋହିପାରିବ କି କାହିଁତେ ।

ଶବ୍ଦ; ଜଳଧରସଂଘାତ—ମେଘସମୂହ, ଭ୍ରମରେ—ଭଅଁରଠାରେ, ଭ୍ରମରେ—ଭୁଲରେ । ୧୮ । ସଜଳଜପରିମଳ—ପଦ୍ମଗନ୍ଧଯୁକ୍ତ, ମହେନ୍ଦ୍ରନୀଳ—ଇନ୍ଦ୍ରନୀଳମଣି, ତମ—ସତ୍ତ୍ୱ ବା ଅନ୍ଧକାର; ତମୋନୁଦ—ସୂର୍ଯ୍ୟ ବା ଚନ୍ଦ୍ର; କରଣ—ଶରୀର, କଳାପୀ—ମୟୂର, କଳାପ—ମୟୂରପୁଚ୍ଛ । ୧୯ । ସୁନାମୟୁକେତକେ—ସ୍ୱର୍ଣ୍ଣନିର୍ମିତ କେତକୀଫୁଲ, ପାଖୁଡ଼ା; ବଳକ୍ଷପକ୍ଷ—ଶୁକ୍ଳପକ୍ଷ, ସୁଧାଂଶୁ—ଚନ୍ଦ୍ର, ଖେ—ଆକାଶରେ, ଝଲମଲ—କାନ୍ତିଯୁକ୍ତ, ଲେଖା—ଦେବ, ଲେଖାପୁରେ—ସ୍ୱର୍ଗରେ । ୨୦ । ଦରପଣ-ସହୋଦର—ଦର୍ପଣତୁଲ୍ୟ, ଭାସୁର—ଉଜ୍ଜ୍ୱଳ । ୨୧ । ହେମନଭାଙ୍ଗୀ—ସୁବର୍ଣ୍ଣତୁଲ୍ୟ ଅଙ୍ଗ ଯାହାର, ମନସିଜଶରାସନ—କାମଧନୁ, ସନକ—ପ୍ରସିଦ୍ଧ ସଂଯମୀ ଋଷି । ୨୨ । ସୁଧାରସ—ଅମୃତ, ହଳାହଳ—ବିଷ, ଚକିତାଲୋକ ସସମ୍ଭ୍ରମ—ଅଦ୍ଭୁତ ଦର୍ଶନରେ ଉଦ୍‌ବିଗ୍ନ, ଚମୂରୁଚକ୍ଷୁ·····ତାହାର ନେତ୍ରଦ୍ୱୟ ଚଞ୍ଚଳ ଉଦ୍‌ବିଗ୍ନ ଚମୂରୁମୃଗର ଚକ୍ଷୁ ଗର୍ବ ଧ୍ୱଂସ କରିବାରେ ପାରଗ । ୨୩ । ସୁରଭିବାସରସରସିଜ—ବସନ୍ତକାଳରେ ଫୁଟିଥିବା ପଦ୍ମ, ବିଲୋଳଶଫର—

କି ଅନୀଳ ତରଳତାର । ମସାରନିର୍ମିତ ଖେଳା ମିଳିନ୍ଦ ପରି । ୨୩ । ମାର ମାରଗଣ ଗଣି ରଖିବାକୁ ତିଳତୂଣୀ ବଇଞ୍ଚି ରଚିଛନ୍ତି ଯୋଷା ନାସା କପଟେ । କୀର କି ବହିଛନ୍ତି ଲମ୍ବି କରକର ବୀଜାବଳିରଦର ଦମ୍ଭେ ଥିବାରୁ ବିମ୍ବ ନିକଟେ । ନୂଆ ଯଉବନ ଗୁମାନ । ପୁଟଉଲ୍ଲାସରୁ ସ୍ଫୁଟେ କରିଛନ୍ତି ଧନ । ୨୪ । ଏ ଶ୍ରୁତି ଦ୍ୟୁତିପଟଳି ଗୁହିଁ କେ ନ ଯିବ ଟଳି କେ ବୋଲେ ହିରଣ୍ୟ ଦଳି ଗଢ଼ିବା ପାଶି । କଞ୍ଜାସନ ରୂପମାନଙ୍କରେ ଏହା ଉପମାନ ରଖି ପାରି ନାହିଁ ହୋଇ ମହାଅଭ୍ୟାସୀ । ମଣ୍ଡାଲବିବର୍ଜିତ ମନେ । ଶଷ୍କୁଳୀ ବୋଲନ୍ତି ଅତି ଦୁଷ୍କୁଳୀ ଜନେ । ୨୫ । ବାଳାର ଦଶନାମ୍ବର ଜିଣିଛି ପକ୍ୱ ବିମ୍ବର ସଉଭାଗ୍ୟ ଆଡ଼ମ୍ବରକୁ ଶୋଣଗୁଣେ । ସିନ୍ଦୂର ମନ୍ଦାର ନବ କିଶଳୟ ବନ୍ଧୁଜୀବ କୁରୁବିନ୍ଦବୃନ୍ଦକୁ ତ ହେଳାରେ ଜିଣେ । ଲେଖିଛି କା ଭୁଲେ ଦଇବ । ଏଥୁ ସୁଧାକୁ ବସୁଧା ଲୋକେ ପିଇବ । ୨୬ । ସ୍ୱରୂପ ସରୁଚୁମ୍ବନେ ଥିଲେ ହେଁ ବିଲକ୍ଷ ମନେ ରୁଚିର ଚିବୁକର ହୁଅନ୍ତା ସଦୃଶ । ତାହାର ନାହିଁ ମୂରତି ଏହାର ନାହିଁ ଜଗତୀତଳେ ତିଳେ ଉପମିତି ଏଣୁ ଲୋକେଶ । ଅତୁଳ୍ୟ ଏ ବୋଲି ଜଗତେ । ଅଙ୍ଗୁଳିଅଗ୍ରରେ ଚିହ୍ନ ଦେଇଛନ୍ତି ଅନ୍ତେ । ୨୭ । ବିଭାବରୀବର ତୁଳ ଶ୍ରୀମୁଖ କି ବରତୁଳ ମୋ ନେବ କି ବରତ୍ରୁ ଲଭିଲା ଲୋଚନ । ଏହାର ସୁ-ଆଦରଶ ଲଭୁଥିଲେ ଆଦରଶମଣ୍ଡଳରେ ଆଦର ସମ୍ଭବ କେ ଜନ । କଳାକୁ କି ତୁଲ୍ୟ ଏହାର । ମଳିନ ପଙ୍କସଙ୍କର ନଳିନ ସ୍ଥିର । ୨୮ । ବାଣୀ ବାଣୀଙ୍କର କର-

---

ଚଞ୍ଚଳ ଦର୍ଶିକାର ବା କେସଣ୍ଡି ମାଛ, ଅନୀଳ—ଈଷତ୍ ନୀଳ, ତରଳ ତାର—ଚକ୍ଷୁର ଗୋଲକ, ମସାର—ଇନ୍ଦ୍ରନୀଳମଣି, ମିଳିନ୍ଦ—ଭ୍ରମର । ୨୪ । ତିଳତୂଣୀ—ରାଶିଫୁଲରେ ନିର୍ମିତ ଶରମୁଣା, କୀର—ଶୁଆ (ନାସାସହିତ ଉପମିତ), କରକ—ଡାଳିମ୍ବ, ରଦର ଦମ୍ଭେ—ଦନ୍ତବ୍ୟାଜରେ (ଡାଳିମ୍ବବୀଜ ଦନ୍ତ ସଙ୍ଗେ ଉପମିତ), ବିମ୍ବ—ବିମ୍ବଫଳ (ଅଧର ସଙ୍ଗେ ଉପମିତ), ପୁଟଉଲ୍ଲାସ—ନାକପୁଡ଼ାର ଫୁଲିବା । ୨୫ । ଶ୍ରୁତି—କର୍ଣ୍ଣ, ଦ୍ୟୁତି—ଶୋଭା, ହିରଣ୍ୟ—ସୁବର୍ଣ୍ଣ, ପାଶି—ପାଶ, କଞ୍ଜାସନ—ବିଧାତା, ବ୍ରହ୍ମା; ମହାଅଭ୍ୟାସୀ—ଅତ୍ୟନ୍ତ ଯତ୍ନଶୀଳ । ଶଷ୍କୁଳୀ—ଚକୁଳିପିଠା ( କର୍ଣ୍ଣ ସଙ୍ଗେ ଉପମିତ ), ଦୁଷ୍କୁଳୀଜନେ—ନୀଚକୁଳୀୟ ଲୋକମାନେ । ୨୬ । ଦଶନାମ୍ବର—ଅଧର, ଶୋଣଗୁଣେ—ରକ୍ତିମାରେ, ବସୁଧାଲୋକେ—ମର୍ତ୍ତ୍ୟରେ । ୨୭ । ସରୁଚୁମ୍ବନ—କ୍ଷୀଣଚୁମ୍ବନ (ଅକୁଣ୍ଠବିହୀନ), ଉପମିତି—ଉପମାନ, ଲୋକେଶ—ବ୍ରହ୍ମା । ୨୮ । ବିଭାବରୀବର—ଚନ୍ଦ୍ର, ବରତୁଳ—ବର୍ତ୍ତୁଳ, ଗୋଲ; ବରତ୍ରୁ—ବ୍ରତରୁ, ସୁଆଦରଶ—ସୁଖମୟ ଦର୍ଶନ; ଆଦରଶମଣ୍ଡଳ—ଦର୍ପଣମଣ୍ଡଳ, ମଳିନପଙ୍କସଙ୍କର—ଅବିଶୁଦ୍ଧ ପଙ୍କ ମିଶ୍ରଣରୁ

ବିପଞ୍ଚୀ ପଞ୍ଚମ ତାରସ୍ୱର ସ୍ୱର ଜୁର କରଅଛୁ କି ସତେ । ମଧୁମଧୁ ଝର ଝର ନ ଧରିବ ଏ ମାଧୁରୀଧୁରୀଣତାକୁ ଏପରି ହୋଏ ପରତେ । ମୁଖ-ପେୟ ପୀୟୂଷରସ । ଏ ତ ଶ୍ରୁତିପଥେ ପିଅ ପୀୟୂଷରସ । ୨୯ । ଭୃଙ୍ଗୀ ଶୁକ ପିକରବ ସୁଭଗରବ ଗରବ ରବାର ବଢ଼ାଇ କରି ଦେଇଅଛୁ ଦୂର । ବର୍ଣ୍ଣ ବର୍ଣ୍ଣକରେ କରେ କରେ ମହେନ୍ଦ୍ରଲୋକରେ ନ ମିଳିବା ଶିରି ଶିରିଷାଙ୍ଗୀର ଗିର । ଏହୁ ଗିରେ ସ୍ନେହ ଆଳାପ । ବାଜିବ ଯା କର୍ଣ୍ଣେ ତାର ପୁଣ୍ୟ ଅମାପ । ୩୦ । ଅପୋତ ଶୁଦ୍ଧ କାଞ୍ଚନ କପୋତ କାନ୍ତି ବଞ୍ଚନ ଗଳାର ଲାବଣ୍ୟ ଧନ୍ୟ ଧନ୍ୟ ଏହାର । କମ୍ବୁ ଶମ୍ଭୁଙ୍କ କଲପ ଦର ବୋଇଲେ ଅଳପ ଅର୍ଥାନ୍ତରୁ ଭୟ ରୂପ ହୋଏ ଏହାର । କଣୋରୀକଣ୍ଠର ଶିରୀକି । କନକ କଳଶ ଗ୍ରୀବା ହେଲେ ସରି କି । ୩୧ । ଅଂସ ଦରନତ ବରସମ୍ପଦ ରମା ରୂପର ପରମ ମୃଦୁଳ ମୂଳ ଗଜଶୁଣ୍ଡାର । ନିର୍ଲୋମ କୋମଳ କକ୍ଷ ହେବ କେଉଁ ଧନ୍ୟ ତୀକ୍ଷକରଜମୂଳର ମୁଖ୍ୟସୁଖ ଭଣ୍ଡାର । କେଉଁ ପୁଣ୍ୟେ ଏ ମୃଦୁବାହା । କାହାର ହାରସଙ୍ଗିନୀ ହେବଟି ଅହା । ୩୨ । ଏ ବାହୁଯୁଗଳ-ଗଳ ପ୍ରଦେଶରେ ସମୁଜ୍ଜ୍ୱଳ ମୃଦୁଅଲଙ୍କୃତଫଳ ଦେବ ଯାହାର । ମୃଣାଳ-ଲହରୀବଲ୍ଲୀ ପାଶ ଚମ୍ପାମାଳା ବୋଲି ତାହାର ବଦନ୍ତୁ ହୋଇବ କି ବାହାର । ଦେବଲତା ନବ ପଲ୍ଲବେ । ଦେବ କେ ଏ ପଞ୍ଚଶାଖେ ସ୍ୱରୂପ ଲବେ । ୩୩ । ଅଙ୍ଗୁଳି କଳିକାବଳି ଦେଇଅଛୁ କି କବଳି ନବ କୁଶଳୟାବଳି

---

ଉତ୍ଫୁଲ୍ଲ, ନଳିନ—ପଦ୍ମ । ୨୯ । ବାଣୀ—କଥା ଓ ସରସ୍ୱତୀ; କରବିପଞ୍ଚୀ—ହାତରେ ଥିବା ବୀଣା, ଜୁର କରିବା—ନଷ୍ଟ କରିବା, ପୀୟୂଷରସ—ଅମୃତ ରସ, ମଧୁମଧୁ—ବସନ୍ତର ପୁଷ୍ପରସ, ମାଧୁରୀଧୁରୀଣତା—ମାଧୁର୍ଯ୍ୟର ଶ୍ରେଷ୍ଠତା, ମୁଖପେୟ—ମୁହଁରେ ପାନର ଯୋଗ୍ୟ, ଶ୍ରୁତିପଥେ—କାନବାଟେ । ୩୦ । ସୁଭଗ-ରବଗରବ—ଧ୍ୱନି ଗର୍ବଜନିତ ସୌଭାଗ୍ୟ, ରବା—ଏକପ୍ରକାର ବୀଣା, ବଢ଼ାଇ—ବଢ଼ମା, ବର୍ଣ୍ଣବର୍ଣ୍ଣକରେ—ପ୍ରତି ଅକ୍ଷରରେ, କରେ—ବ୍ରହ୍ମଲୋକରେ, ମହେନ୍ଦ୍ର ଲୋକରେ—ସ୍ୱର୍ଗରେ, ଗିର—କଥା, ଅମାପ—ପ୍ରଚୁର । ୩୧ । ଅପୋତ—ପ୍ରୌଢ଼, କମ୍ବୁ—ଶଙ୍ଖ, ଶମ୍ଭୁଙ୍କ କଲପ—ଶିବସଦୃଶ, ଦର—ଶଙ୍ଖ ଓ ଭୟ; ଶିରୀ—ସୌନ୍ଦର୍ଯ୍ୟ, କନକ କଳଶଗ୍ରୀବା—ସୁନାମାଠିଆର ବେକ । ୩୨ । ଅଂସ—କାନ୍ଧ, ଦରନତ—ଅଳ୍ପ ଅବନତ, ଗଜଶୁଣ୍ଡା—ହାତୀଶୁଣ୍ଢ, କକ୍ଷ—କାଖ, ତୀକ୍ଷ—ତୀକ୍ଷ୍ଣ, କରଜମୂଳ—ନଖମୂଳ, ମୁଖ୍ୟସୁଖ—ପ୍ରଧାନ ସୁଖ । ୩୩ । ଅଲଂକୃତ—ଅଳଙ୍କାର, ମୃଣାଳ—ପଦ୍ମନାଡ଼, ବଲ୍ଲରୀ—ଲତା ( ଏଗୁଡ଼ିକ ବାହୁର ଉପମା ହୁଏ ), ଦେବଲତାନବପଲ୍ଲବେ—କଳ୍ପଲତାର ନୂତନ ପତ୍ରରେ, ପଞ୍ଚଶାଖେ—(ପଞ୍ଚମାଙ୍ଗୁଳିରୂପ ଶାଖା ଥିବାରୁ) କରରେ । ୩୪ । ଅଙ୍ଗୁଳିକଳିକା-

ମୃଦୁଲତାକୁ । ଅବ ନୋହୁ କେହୁ ହେଲେ ଗନ୍ଧଫଳରେ ଭୁଲିଲେ ବନ୍ଧନରେ ରୁନ୍ଧିବାର ଉଚିତ ତାକୁ । ଧନ୍ୟ ହୀରାଙ୍କୁରକରଜା । ଜିଣିଗଲା ଯୁବତିକଦମ୍ବଙ୍କ ରଜା । ୩୪ । ଚରମ ସୃଷ୍ଟରୁ ନିର୍ମଳ ପରମ ରମ୍ୟ କୋମଳ ଭରମକଦଳୀଦଳଠାରୁ ବଳିବ । ଧରମରେ ଧୁରନ୍ଧର କରମବନ୍ତଜନର ନରମ ସମୟେ କରତଳେ ଖେଳିବ । ଏ କି ଦିବ୍ୟ କାଞ୍ଚନମହୀ । ବେଣୀ କଳାଫଣୀ ଗୃହ୍ମ ଲାଞ୍ଛନ ସହି ।୩୫। କୁଚକୁ ଚକ୍ରଯୁଗଳ କନକନଗ ଶ୍ରୀଫଳ ତୁମ୍ବୀ କୁମ୍ଭିକୁମ୍ଭସ୍ଥଳ ଏତେ ଉପମା । ବାଳାର ଏ ପୟୋଧର ସୁଧାସମ୍ପୂର୍ଣ୍ଣ-ସୋଦର କଲନୋହେ ମହତ୍ତ୍ୱର ଲାବଣ୍ୟ ସୀମା । ଏ ଯୋଗ କି ମୋତେ ହୋଇବ । ଛଇଳା ଏ ସ୍ତନେ ମୋ ଛାତିକି ଛୁଇଁବ । ୩୬ । ଯେତେ ଥିଲେ ପଟ୍ଟପୁଟପାଳି ପ୍ରସିଦ୍ଧ ପୁରଟ ବଟଦଳ ପ୍ରତିଭଟ ଅବା ବୋଲନ୍ତି । ସ୍ତନ ମନସିଜ କେଳି-ବଡ଼ଭିସୋପାନ ବଳି ସମ୍ପୃକ୍ତ ସିନା ପ୍ରଜ୍ଜ୍ୱଳ ରହୁଛି କାନ୍ତି । ନବ ରୋମରାଜି କପଟ । ଏ କି ବଡ଼ଭିକି ନୀଳ ରତନ ବାଟ । ୩୭। ବାଳା ଉରୋଜଯୁଗଳ ବ୍ୟାଜ ରଜନୀ-କମଳ ଚୁମ୍ବି ଲୋଭେ ନାଭିବଳ ଗର୍ଭରୁ ଧାଇଁ । ଅଛି କି ମିଳନ୍ଦଶ୍ରେଣୀ କି ମରକତନିଃଶ୍ରେଣୀ ବକ୍ଷୋଜ ସୁଷମା ରମା ସଞ୍ଚାର ପାଇଁ । କିବା ମାର କରିଛି ମାୟା । ନିଜ ଝଣ୍ଡା ନ ଦିଶି ଦିଶୁଛି ତା ଛାୟା । ୩୮ । ନବୀନ ବିଳାସବତୀ ତନୁ ତ ନୂତନଦ୍ୟୁତି ତରଙ୍ଗିଣୀ ଏ ତ୍ରିବଳୀ ତାର ଲହରୀ । ନବ ରୋମରାଜି ନୀଳ ଦୀର୍ଘ ସୂକ୍ଷ୍ମ ଶଇବଳ ଗଭୀର ନାଭି ବିମଳତର ଭଉଁରି । ଏଥି ଯେବେ ତରୁଣଚିତ୍ତ ।

---

ବଳି—ଅଙ୍ଗୁଳିରୂପ ପୁଷ୍ପକଳିସବୁ । କବଳି ଦେଇଛ—ଗ୍ରାସ କରି ଦେଇଛ, ପରାସ୍ତ କରି ଦେଇଛ; ମୃଦୁଲତା—କୋମଳତା, ଗନ୍ଧଫଳ—ଚମ୍ପାକଳି, ହୀରାଙ୍କୁର କରଜା—ହୀରାର ଅଙ୍କୁର ପରି ନଖ ଯାହାର; ଯୁବତୀକଦମ୍ବ—ଯୁବତୀସମୂହ । ୩୫ । ଚରମ—ପୃଷ୍ଠଦେଶ;ଭରମକଦଳୀଦଳ—ସୁନା କଦଳୀପତ୍ର; ନରମ ସମୟେ—କ୍ରୀଡ଼ାବେଳେ, ବେଣୀକଳାଫଣୀ—ବେଣୀରୂପ କଳା ସାପ, ଲାଞ୍ଛନ—କଳଙ୍କ ବା ଚିହ୍ନ । ୩୬ । ଚକ୍ରଯୁଗଳ—ଚକୁଆଚକୋଇ ପକ୍ଷୀ ଦୁହେଁ, କନକନଗ—ମେରୁ ପର୍ବତ, ଶ୍ରୀଫଳ—ନଡ଼ିଆ, ତୁମ୍ବୀ—ଲାଉ, କୁମ୍ଭିକୁମ୍ଭ—ହାତୀର ଗଣ୍ଡସ୍ଥଳ, ସୁଧା-ସମ୍ପୂର୍ଣ୍ଣସୋଦର—ଅମୃତପୂର୍ଣ୍ଣ ଫରୁଆ ପରି । ୩୭ । ପୁରଟବଟଦଳ—ସୁନା ଓଅର ବରପତ୍ର, ପ୍ରତିଭଟ—ସମକକ୍ଷ,କେଳିବଡ଼ଭି—କ୍ରୀଡ଼ା ଅଟ୍ଟାଳିକା, ନୀଳରତନବାଟ—ଇନ୍ଦ୍ରନୀଳମଣିରେ ନିର୍ମିତ ପାହାଚ । ୩୮ । ରଜନୀ-କମଳ—ମୁଦ୍ରିତ ପଦ୍ମ (ରାତିରେ ପଦ୍ମ ମୁଦ୍ରିତ ଥାଏ) । ମିଳନ୍ଦଶ୍ରେଣୀ—ଭ୍ରମରଦଳ (ରୋମାବଳିରୂପ), ମରକତ-ନିଃଶ୍ରେଣୀ—ମରକତମଣିନିର୍ମିତ ନିଶୁଣୀ, ଝଣ୍ଡା—ପତାକା । ୩୯ । ତନୁ—ଶରୀର,

ପଡ଼ିଯିବ ବଞ୍ଚିବାକୁ ନାହିଁ ଅଯୁତ୍ତ । ୩୯ । ପାଠୀର ଚହଟୀକଣି ହଟିଛୁ ଯୁବକରଟି ଶପୁ ମଧ୍ୟ ପରିପାଠୀ ଲୁଟି ନେବାରେ । ସମସ୍ତେ ପଦାନ୍ତେ ନାଭ ବିସର୍ଗ କରୁଛୁ ସ୍ଥିତ ଡାକ ଡାକ ଡାକ ମରେ ନଶି ହବାରେ । ଏହା ଶୋଭା ଭୁବନେ ନାହିଁ । ଅଧର ନିର୍ମିତ ବେଦୀ ମଧ୍ୟରେ କାହିଁ । ୪୦ । ବରବର୍ଣ୍ଣିନୀର ନିରନ୍ତରେ ମନ୍ମଥରଥର ଚକ୍ରଗୃରୁ ନିତମ୍ବକୁ ଘେନଲେ ଶତ୍ରେ । ଜାମ୍ବୁନଦ ତୁମ୍ବୀ ଶିଖ ଅବଲମ୍ବୀ ଫର ପର ହେଉଛୁ ପରତେ ରତେ କି ହେବ ସତେ । ବିପରୀତେ ରହିଛୁ ପରା । ମନସିଜରାଜାର ବିଜୟ ନାଗରୀ । ୪୧ । ନେଜ ହେଉଛୁ ଅଚ୍ଛନ୍ନ ନୈଟନ ନୋହେ ବିଲୋକନ କନକମୟ ପୂଳନ ଘନ ଜଘନ । କି ଅବା ମୀନକେତନ ଅଭିଷେକ ସିଂହାସନ କରନ୍ତା ମୋତେ ବସନ ପଙ୍କଜାସନ । ଅସ୍ତରଣ ହୁଅନ୍ତ ସୁଖେ । ନ କର ନଜର ମନୋଜର ବଶିଖେ । ୪୨ । ପ୍ରତୀତ ହୁଅଇ ପ୍ରଭ ପ୍ରତୀକ କାନ୍ତିସନ୍ତତ ଅନୁରୂପବନ୍ତ ଅନ୍ତ ମନୋଜବାସ । ନବ ନବନୀତ ନିତ ସାରସ୍ୱର୍ଣ୍ଣ ପରିଣତ ବହଲ ତାମ୍ବୂଳେ ଥିବ ସରୋଜବାସ । ନବ ଲୋମସ୍ତୋମ ହରଷ । ଇନ୍ଦ୍ରଗୋପପୃଷ୍ଠ ସମ ସୁଖସ୍ପରଶ । ୪୩ । ଏ ଉରୁ ଶୋଭା ସମ୍ଭାର ନାହିଁ ତ ହେମ ରମ୍ଭାର ଏହା ତୁଳାକୁ କି କରଭର ଭରସା । କଲଭଲଭବ ନାସା ଦଣ୍ଡେ କି ଏହା ପ୍ରଶଂସା

---

ନୂତନ ଦ୍ୟୁତିତରଙ୍ଗିଣୀ—ନୂତନ ଶୋଭାର ନଦୀ । ୪୦ । ପାଠୀର ଚହଟୀକଟି—ଚନ୍ଦନସୁବାସିନୀର କଟିଦେଶ, ହଟିଛୁ—ବଳାତ୍କାର କରଛୁ, ଯୁବ—ଯୁବକ, କରଟୀ—ହାତୀ, ଯୁବକରଟିଶପୁ ମଧ୍ୟ ପରିପାଠୀ—ଯୁବକସିଂହର କଟିର ସୌଷ୍ଠବକୁ । ପଦାନ୍ତେ—ବିଭକ୍ତିଯୁକ୍ତ ଶବ୍ଦ ଶେଷରେ ଓ ପାଦତଳେ, ବିସର୍ଗ—'ଃ' ଏହି ବିସର୍ଗ ଚିହ୍ନ (କଟୀ ସଙ୍ଗେ ଏହା ଉପମିତ ହୁଏ), ଡାକ—ଡମରୁ, ଡାକ ଡାକ—ଶବ୍ଦ କରି କରି । ଅଧର ନିର୍ମିତ······ଯଜ୍ଞ ବେଦୀର ମଧ୍ୟଭାଗରେ ସୂକ୍ଷ୍ମ ନାହିଁ (ସ୍ତ୍ରୀମାନଙ୍କ ବେଦୀବିଲଗ୍ନମଧ୍ୟା କୁହାଯାଏ) । ୪୧ । ନିରନ୍ତର—ସାନ୍ଦ୍ର, ନିବିଡ଼ । ଜାମ୍ବୁନଦ···ସୁନା ଲାଉ ପରି ସୁନ୍ଦର; ଫର ପର—ଡାଲ ପରି । ୪୨। କନକମୟପୂଳନ—ସ୍ୱର୍ଣ୍ଣମୟ ତୀରଭୂମି, ଘନଜଘନ—ନିବିଡ଼ ଜଙ୍ଘ, ବସନ—ଆଚ୍ଛାଦନ ବସ୍ତ୍ର, ପଙ୍କଜାସନ—ବ୍ରହ୍ମା, ଅସ୍ତରଣ—ଆଚ୍ଛାଦନ ବସ୍ତ୍ର, ନଜର—ଦୃଷ୍ଟି, ମନୋଜର ବିଶିଖ—କନ୍ଦର୍ପବାଣ । ୪୩ । ପ୍ରଭପ୍ରତୀକ······ପ୍ରଭ ଇନ୍ଦ୍ରାୟୁର ଲାବଣ୍ୟସମୁଦ୍ରର ଅନୁରୂପ, ମନୋଜବାସ—କାମଗୃହ, ସ୍ତ୍ରୀଚିହ୍ନ । ସାରସ୍ୱର୍ଣ୍ଣ ପରିଣତ—ଉତ୍କୃଷ୍ଟ ସୁବର୍ଣ୍ଣର ଅବସ୍ଥାନ୍ତର ପ୍ରାପ୍ତି, ସ୍ତୋମ—ସମୂହ । ଇନ୍ଦ୍ରଗୋପପୃଷ୍ଠ—ସାଧବାଣୀପୋକର ପିଠିପରି । ୪୪। ଶୋଭାସମ୍ଭାର—ସୌନ୍ଦର୍ଯ୍ୟସଂଗ୍ରହ, ହେମରମ୍ଭା—ସୁବର୍ଣ୍ଣ କଦଳୀ, କରଭ—ମଣିବନ୍ଧଠାରୁ କାଣୀ ଅଙ୍ଗୁଠି ଶେଷ ପର୍ଯ୍ୟନ୍ତ କରତଳର

ରସାଳସା ରସାଶଯ୍ୟ ସଦୃଶଦୃଶା । କି ଭାଗ୍ୟ ଏ ନୟନ ପଥ । ମଣ୍ଡିଲା ପୂର୍ଣ୍ଣ କରିବି କି ମନୋରଥ । ୪୪ । ଜଙ୍ଘାଭ ହାଟକସ୍ତମ୍ଭ ସଙ୍ଘାତ ଗରବାରମ୍ଭ ସଙ୍ଘାତ ଘାତବିଧିରେ ଅଧ୍ୱରଯୂପ । ଚରଣଯୁଗଳ ଛବି ବରନି ନ ପାରି ଦବି ରହିଛି ପୂର୍ବରୁ ଭାବି ଶ୍ରୀହସ୍ତରୂପ । ଶଶୀଙ୍କ ନ ଜିଣିଲା ମୁଖ । ଦାରା ତାରାଭୟେ ଭଜି ହେଲେ କି ନଖ । ୪୫ । ଗମନ ମତ୍ତମାତଙ୍ଗରାଜ ରଥଚରଣାଙ୍ଗ ଗରବ ଗରମ ଭଙ୍ଗ ପଟୁତ୍ୱସୀମା । ଶିରୀଷମାଳ ମାଳତୀ ନବୀନ ଲବଣୀ ପ୍ରତିଭଟ ସିନା ଘଟସ୍ତନା ତନୁମ୍ରଦିମା । କି ହେବଟି ସେବେଳେ ପାଶେ । ବିକଚ କମଳବନୀ ପରି ଏ ବାସେ । ୪୬ । ଏପରି ନାଗରମଣୀ ସେବିତ ନାଗରୀମଣି ପ୍ରୀତି ବିନା ଗର ମଣି ତେଜେ ବିଭବ । ମଦନଦରଦନ୍ତୀର ଦଶାରେ ଦିବସାନ୍ତର ହୁଅନ୍ତେ ନଟ ପ୍ରକଟ କଲା ପ୍ରଭାବ । ଦିନ ଥାଉ ହେଲା ତ୍ରିଯାମା । ପିନ୍ଧିଲା ବ୍ୟୋମ ଅନ୍ଧାର ସୁନୀଳଜାମା । ୪୭ । ନ ଦିଶିଲେ ସଖା ଅଳୀ ଜିଣିଲା ପ୍ରଦୀପାବଳୀ ଜଳି ଲଳିତଉଦରୀ ତନୁ କମ୍ପିଲା । ମିଶିଗଲା ଗୃହନେତ୍ର ଦିଶିଗଲା ଦୁଇଗାତ୍ର ସପୁଲକ ହୋଇ ସ୍ମରଶରେ କମ୍ପିଲା । ଉରୁଉରୁ କରଚରୁକେ । ଜନ୍ମିଲା ବେପଥୁ ଦୁଇ ଶ୍ରୀଅଙ୍ଗ ଯାକେ । ୪୮ । ଧନରେ ମୁଁ ମହାଗଜଘୋଷ ମହେନ୍ଦ୍ର ତନୁଜ

---

ବହିର୍ଭାଗ ( ଊରୁ ସଙ୍ଗେ ଉପମିତ ), କଲଭ—ହାତୀଛୁଆ, ନାସାଦଣ୍ଡ—ଶୁଣ୍ଡ, ରସାଳସା—ରସମୁଗ୍ଧା, ରସାଶଯ୍ୟ ସଦୃଶଦୃଶା—ରସର ଆଧାରସ୍ୱରୂପ ଚକ୍ଷୁ ଯାହାର । ୪୫ । ହାଟକସ୍ତମ୍ଭ—ସୁନା ଖମ୍ବ, ଗରବାରମ୍ଭସଙ୍ଘାତ—ଅହଙ୍କାର ସମୂହର, ଘାତବିଧିରେ—ହତ୍ୟା ବ୍ୟାପାରରେ, ଅଧ୍ୱରଯୂପ—ଯଜ୍ଞସ୍ତମ୍ଭ (ଯଜ୍ଞରେ ପଶୁକୁ ଯୂପରେ ବାନ୍ଧି ହତ୍ୟା କରାଯାଏ) । ଶ୍ରୀହସ୍ତରୂପ—ସରସ୍ୱତୀଙ୍କର ହସ୍ତର ରୂପ, ଦାରତାରା—ତାରକାରୂପ ସ୍ତ୍ରୀମାନେ ( ତାରାମାନେ ଚନ୍ଦ୍ରଙ୍କ ସ୍ତ୍ରୀରୂପେ କଳ୍ପିତ ) । ୪୬ । ଏ ସ୍ତ୍ରୀର ଗତି ମତ୍ତମାତଙ୍ଗରାଜ ( ମତ୍ତହସ୍ତି ଶ୍ରେଷ୍ଠ )ର, ରଥଚରଣାଙ୍ଗ—( ରଥଚକ୍ର )ର ଗର୍ବ ଧ୍ୱଂସ କରିବାରେ ନିପୁଣ, ପ୍ରତିଭଟ—ପ୍ରତିଯୋଦ୍ଧା, ସମସ୍କନ୍ଧ; ତନୁମ୍ରଦିମା—ଶରୀରର ମୃଦୁତା; ବିକଚକମଳବନୀ—ପ୍ରସ୍ଫୁଟିତ ପଦ୍ମବନ । ୪୭ । ନାଗରମଣୀସେବିତ···ନାଗକନ୍ୟାମାନେ ଯାହାକୁ ସେବା କରୁଥିଲେ । ନାଗରୀମଣିପ୍ରୀତିକି···ସେହି ନାଗରୀଶ୍ରେଷ୍ଠାର ପ୍ରୀତିତୁଳନାରେ ପ୍ରଚୁର ବିଭବକୁ ଗର ମଣି ( ବିଷଜ୍ଞାନ କରି ), ମଦନଦର ଦନ୍ତୀ—କାମଭୟରୂପ ହସ୍ତୀ; ଦିବସାନ୍ତର—ଦିବାବସାନ, ନଟ—ଐନ୍ଦ୍ରଜାଲିକ, ତ୍ରିଯାମା—ରାତ୍ରି । ୪୮ । ଉପସ୍ଥିତ ସଖା ଓ ସଖୀମାନଙ୍କୁ ଦେଖାଗଲା ନାହିଁ । ଜଳି—ଚକ୍ ଚକ୍ ହୋଇ, ଲଳିତଉଦରୀ—ଲଳିତ ଉଦରଯୁକ୍ତା (ମାୟା ଯୁବତୀ), ସପୁଲକ—ରୋମାଞ୍ଚିତ, ବେପଥୁ—କମ୍ପ ।

ଧନ ହେ ମୁଁ ସରସିଜକୁଳଦୁଲ୍ଲଣୀ । ଏତେ ମାନ ସାଲାପରେ ପ୍ରସୂନଗୃପବେପରେ ଗଲା ଗୁନ୍ଥାପର ଦୁଇ ଶରୀର ଝାଳ । ପରସ୍ପର ରଦନବାସ । ନିବିଡ଼େ ପୀଡ଼ି ପିଇଲେ ତହୁଁ ପୀୟୂଷ । ୪୯ । ଗର୍ଭକେତକୀ ପାଖୁଡ଼ୀ ଯୋଗେ ସ୍ନେହେ ଦେଲା ଭିଡ଼ି ଚରମରେ ବୁଡ଼ି ବୁଡ଼ି ସଞ୍ଚା ରହିଲା । ଦୁହିଙ୍କ ତାମ୍ବୂଳବୋଳ ମଣ୍ଡି ଦୁଇ ଓଷ୍ଠଦଳ ତହିଁ ଦନ୍ତକ୍ଷତଲକ୍ଷ୍ମୀ ସଞ୍ଚାର ହେଲା । ସୁଖି ବ୍ରହ୍ମାନନ୍ଦ ଅମଳେ । କିଶୋର କିଶୋରୀ ଦୁହେଁ ଅଚେଷ୍ଟ ହେଲେ । ୫୦ । ଏକାଳେ ମୋହନ ଡାକ୍କ ବଜାଇ ସେ ନଟଟେକ ଶାବରମନ୍ତ୍ରରେ କି କି ଗାଇଲା ଗୀତ । ମାୟା ଜେମା ଅଦ ନଟ ବାଧି ହେଲା ଅପ୍ରକଟ କ୍ରମେ ଅପେ ହେଲା ପୁଣି ଅନ୍ତରହିତ । ଦିବସ ବିବଶ ହୋଇଲା । ରବିକର ମାୟା ନିଶାମସୀ ଧୋଇଲା । ୫୧ । ସେ ଦିନ ସେହି ସମୟେ ଚନ୍ଦ୍ରକଳା ସ୍ୱନିଳୟେ ପ୍ରମୋଦମୋଦହୃଦୟେ ପହୁଡ଼ିଥିଲା । ତ୍ରିପୁର-ସୁନ୍ଦରୀ ପରସାଦୁ ଅନଙ୍ଗସୁନ୍ଦର ସମ୍ଭୋଗ ସୁମନୋହର ସ୍ୱପନ ହେଲା । ମାୟା ସ୍ୱପ୍ନଭଙ୍ଗେ ସେ ଦୁହେଁ । ଭିଜହୋଇଲେ ବିରହ ଅନଳଦାହେ । ୫୨ । ତଥାପି ଭୂପୁରନ୍ଦର ସୁତ ଅନଙ୍ଗସୁନ୍ଦର ମରଜି ଧୈର୍ଯ୍ୟମନ୍ଦର ପରି ଉଭାର । ମଦନାଗ୍ନି ନିରନ୍ତର ଦହିଲେହେଁ ହୃଦନ୍ତର ପ୍ରକାଶ ନ କରି ରଖିଥାଏ ଉଭାର । କ୍ରମେ କ୍ରମେ ମାନ ଇଙ୍ଗିତେ । ରାଜବଲ୍ଲଭଙ୍କୁ ଜଣା କରାଏ କେତେ । ୫୩ । ଜୀମୂତ ତମାଳକାନ୍ତ ଚନ୍ଦ୍ରମୁକୁଟ ଭୂଷିତ ଅଚଳାଙ୍ଗ-ଭବାନାଥ ଶିବ ଶ୍ରୀରାମ । ରାମଚନ୍ଦ୍ରଦେବ କ୍ଷିତିପୁରନ୍ଦର ହୃଦେ ନିତି କରିବେ କି ନିଜ ତେଜ ପ୍ରକାଶଧାମ । କୁମାରମୋହନ ଏ ଛାନ୍ଦ । ବେଦାଧିକ ପଞ୍ଚାଶତସଂଖ୍ୟକ ପଦ । ୫୪ ।

---

୪୯ । ପ୍ରସୂନଗୃପବେପରେ—କନ୍ଦର୍ପବାଣରେ, ଗୁନ୍ଥା ପର—ଗୁନ୍ଥା ହେଲା ପରି, ଝାଳଗଲା—ପରସ୍ପର ମିଶିଗଲା, ରଦନବାସ—ଅଧର । ୫୦ । ଚରମରେ—ପିଠିରେ, ସଞ୍ଚା—ଚିହ୍ନ, ଦନ୍ତକ୍ଷତଲକ୍ଷ୍ମୀ—ଦନ୍ତାଘାତଜନିତ ଶୋଭା, ଅଚେଷ୍ଟ—ଅଜ୍ଞାନ । ୫୧ । ମୋହନଡାକ୍କ—ବିମୋହନ ଡମ୍ବରୁ, ରବିକର···ସୂର୍ଯ୍ୟରଶ୍ମି ଦ୍ୱାରା ମାୟାରଜନୀର କାଳିମା ଧୋଇଗଲା, ଅର୍ଥାତ୍ ମାୟାରାତି ଉଭେଇଗଲା; ସୂର୍ଯ୍ୟ-କିରଣ ଦିଶିଲା ।୫୨। ତ୍ରିପୁରସୁନ୍ଦରୀ—ଚନ୍ଦ୍ରକଳାର ଇଷ୍ଟଦେବୀ । ୫୩ । ମରଜି—ହୃଦୟରେ, ଉଭାର—ଦଣ୍ଡାୟମାନ ହୋଇ, ଉଭାର—ଘୋଡ଼ାଇ । ୫୪ । ଜୀମୂତ-ତମାଳକାନ୍ତ—ମେଘ ଓ ତମାଳବୃକ୍ଷ ପରି କମନୀୟ (ଶ୍ରୀରାମ), ଅଚଳାଙ୍ଗଭବାନାଥ—ପାର୍ବତୀପତି (ଶିବ), ସୀତାପତି (ଶ୍ରୀରାମ) ।

## ଏକବିଂଶ ଛାନ୍ଦ

### ରାଗ—ଶଙ୍କରାଭରଣ

### (ସ୍ୱପ୍ନାନ୍ତ ବିଳାପ)

ଦିବସ ତୃତୀୟଯାମ ସମୟରେ ଦିନେ । ପହୁଡ଼ିଥିଲା କିଶୋରୀରତନ ଭବନେ । ଦେବୀ କଲେ କି କରୁଣା । ସ୍ୱପନେ କି ଭେଟ ହେଲା ତାହାକୁ ସେ ଜଣା । ୧ । କାତରେ ତରଳତରନେତ୍ରା ନିଦ୍ରା ତେଜି । ଘନାଙ୍କେ ଚଞ୍ଚଳାପରି ଶେଯରେ ବିରାଜି । ଦୃଷ୍ଟି ନ୍ୟାସ କରି ଅଙ୍କେ । ଖେଳାଇଲା ଦୁଇ ଭୁଜବଲ୍ଲରୀ ପଲଙ୍କେ । ୨ । ଅପାତଳ ତଳପତ୍ର କରେ ଦେଇ ଟାଣି । ତୋଳି ତୁଳି ତକିଆତଳକୁ ଚାହିଁ ପୁଣି । କୁଚ କାଞ୍ଚୁଲି ଫେଡ଼ିଲା । ଉଭରି ଉରଜପରି ଅମ୍ବର ଝାଡ଼ିଲା । ୩ । ପୁଣି ଅଂସ ଅବତଂସ ଖୋସା ଶିଥିଳାଇ । ବଜଳ ଚଉଁରୀଗର୍ଭେ ଅଙ୍ଗୁଳି ଗଳାଇ । ଫେରାଇଲା କର୍ଣ୍ଣଭୂଷା । ହୋଇଲା ବିଗଡା ଶ୍ୱାସ ଗୁଣ୍ଡି ମୃଗଦୃଶା । ୪ । କମ୍ପାଇ ବନ୍ଧୁକବନ୍ଧୁ ରଦନଚ୍ଛଦନ । ବିକଳେ ଏପରି ଧୀରେ ରଚିଲା ରୋଦନ । ହା ମୋ ପ୍ରାଣ ସହଚର । କି ଦୋଷୁଁ ନୋହୁଛ ମୋରେ ଲୋଚନଗୋଚର । ୫ । କିଶୋରକିରୀଟ ଅହେତୁକ ଦୟାଳୁ ହେ । ମୁଁ ଯେବେ ତୁମ୍ଭର ଦରଶନ ଯୋଗ୍ୟ ନୁହେଁ । କାହିଁପାଇଁ ଦେଲ ଦେଖା । ରଖାଇ ମୋ କରରେ ଶରୀର ଭାଗ୍ୟ ରେଖା । ୬ । ଦରଶନ ହେବାଭଳି ନୋହେ ଯେଉଁ ଛାର । କରି କି ତାହାରେ ଆଲିଙ୍ଗନ ଅଙ୍ଗୀକାର । ଅହେ ବିବେକଜଳଧି । ଛଡ଼ାଇ ନେଇ କି ରଙ୍କଅଙ୍କେ ଦେବା ନିଧି । ୭ । ଧରି ଅଙ୍ଗରାଗ ପରି ଜମାଇ ଦେହରେ । ପିଅଇ ଦଶନବାସୁଁ ପୀୟୂଷ ସ୍ନେହରେ । କେଉଁ ଅପରାଧୁ ପୁଣି । ଅପ୍ରକଟ ହେଲ ହେ ସୁନ୍ଦରଶିରୋମଣି । ୮ । ଅକିଞ୍ଚନ ଆଗେ ମଣିମଞ୍ଜୁଷ ଫିଟାଇ । ଅନାଇବା କାଳେ ଦେଲ ନୟନ ଫୁଟାଇ । ଏ କି

---

ଏକବିଂଶ ଛାନ୍ଦ

୨ । ଘନାଙ୍କେ ଚଞ୍ଚଳାପରି—ମେଘ କୋଳରେ ବିଜୁଳି ପରି । ୩ । ଅପାତଳ ତଲ୍ପ—ଗଦି ପ୍ରଭୃତି ମୋଟା ଶେଯ, ତୁଳି—ତୁଳା ବେଙ୍କେଇ, ଉଭରି—ଠିଆ ହୋଇ, ଅମ୍ବର—ଲୁଗା । ୪ । ଅଂସ—କାନ୍ଧ, ଅବତଂସ—ଭୂଷଣ, ବିଗଡା—ନଷ୍ଟ ଭ୍ରଷ୍ଟ । ୫ । ବନ୍ଧୁକବନ୍ଧୁ—ବନ୍ଧୁକପୁଷ୍ପସଦୃଶ, ରଦନଚ୍ଛଦନ—ଅଧର ।୮। ଦଶନ-

ହୋଇଲା ଉଚିତ । ଏବେ ଧାନଦାସ୍ୟାରେ ଉଦ୍ୟତ ହେଉ ଚିତ୍ତ । ୯ । ବନ୍ଧୁ ହେ ଅଧରକୁ ଦେଲ ଚଷୁଲଭ ସୁଖ । ଲବମାନେ ନବନେନେ ମାରିଦେଲ ନଖ । ନୋହେ ଏ ତ ପ୍ରଭୁଚିତ୍ତ । ଅଜ୍ କି ମସ୍ତକେ ଶେଷ ବହୁରେ କଗତୀ । ୧୦ । ନ କଲେ ପହିଲୁ ନ କର ସେ ଅଙ୍ଗୀକାର । ଅଙ୍ଗୀକାର କରି ପରିତ୍ୟାଗ କରିବାର । ନ୍ୟାୟ୍ୟପଥରୁ ଫିଟିଲା । ଶରଣାପନ୍ନ ଜନ ଭରସା ତୁଟିଲା । ୧୧ । କ୍ଷଣେ ଖଟି ନାହିଁ ରଙ୍ଗରାଜୀବ ପା ତଳ । ବିନା ଅପରାଧେ ହେଲା ସେ ସ୍ନେହ ପାତଳ । ମନ୍ଦଭାଗିନୀ ତ ମୁହିଁ । ଅପରାଧ ହେବା ସେବା ଭଲ କାଳ କାହିଁ । ୧୨ । ଅକାଳ ଜଳଦମୁକ୍ତ ସଲିଲ-ଶୀକର । ପଡ଼ିବା ସମୟେ ଚଞ୍ଚୁପୁଟେ ଗୃହକର । କାହିଁ ବହୁ ପବମାନ । ଭାଙ୍ଗିଲା ଗୃହକ ଅଶାତରୁ ପବମାନ । ୧୩ । ଧନ ରେ ମୁଁ ମହାଗଜଘୋଷ ନୃପସୁତ । ଏହି ମନ୍ତେ ମନ୍ଦି ହାଲାହଲ କି ଅମୃତ । ଦନ୍ତଚେଲ୍ଲ ପିଅଇଲା । ମୋହର ଚେତନା ନାଶି ବୋଲି ଜାଣିଲା । ୧୪ । ସେ ଅମଳ ସମୟେ କି ଦେଲ ଗାଢ଼େ ଭିଡ଼ି । ଲଗାଇ ମାଣିକ୍ୟମଣିକରକଣ ଚୁଡ଼ି । ମୃଦୁ ତନୁକୁ ବାଧିଲା । ତହୁଁ ଦ୍ରବ୍ୟଚିତ୍ତ କି କୋଧକୁ ଅରାଧିଲା । ୧୫ । ଆହେ ପଣ୍ଡିତ ମଣ୍ଡଳୀମଣ୍ଡଳୀମଣ୍ଡନ । ଅଜ୍ଞାତ ଦୋଷକୁ ଦ୍ୱେଷ ଅଛୁରି କି ଘେନ । ଅହେ କ୍ଷମାଗୁଣସୀମା । ଦୋଷ କରିଥିଲେ ଡକିବାର କର କ୍ଷମା । ୧୬ । କଗତୀଭୂଷଣ ହେ କୁସୁମାୟୁଧରୁଚ । ଅଞ୍ଚଳ ପ୍ରସାରି ଦନ୍ତେ ମୁଁ ତୃଣ ଧରୁଚ । କରୁଅଛୁ ଦଣ୍ଡବତ । ଶୁଣାଅ ସୁମଧୁର ଭାରତୀ ଖଣ୍ଡବତ । ୧୭ । ବହିବ ଲାଗି କଠାଉ ସରବଦା ଶିରେ । ରହିବି ମୁଁ କଣେ ହୋଇ ସରବ ଦାସୀରେ । ଅହେ ଶରଦନ୍ଦୁମୁଖ । ତାହାଙ୍କ ଚରମାଚରି କରି ହେଲେ ରଖ । ୧୮ । ଭଜିଥିବ ନିଦ୍ରାହାର ବିହାର ବରଜ । ହେଉଥିବ ଯେଉଁ ସେବା ଘେନିବା ମରଜ । ମୁଁ କି ନ କରିବି ରାଜ । ଏକା ମୋ ନୟନପଥେ ଥିବ କି ବିରାଜ । ୧୯ । ଦରଶନସୁଖ-

---

କାସୁଁ—ଅଧରରୁ । ୯ । ମଣିମଞ୍ଜୁଷ—ରତ୍ନପୂର୍ଣ୍ଣ ପେଡ଼ି । ୧୦ । ଶେଷ—ସର୍ପରାଜ, ଶେଷଦେବ । ୧୨ । ରଙ୍ଗରାଜୀବପାତଳ—ରକ୍ତପଦ୍ମରୂପ ପାଦର ତଳ; ପାତଳ—କ୍ଷୀଣ । ୧୩ । ସଲିଲଶୀକର—ଜଳବିନ୍ଦୁ, ପବମାନ—ପବନ, ଅଶାତରୁ ପବମାନ—ଅଶାରୂପ ବୃକ୍ଷର ସବୁ ଗଣ୍ଡି ।୧୪। ଦନ୍ତଚେଲ୍ଲ—ଅଧରରୁ ।୧୬। କୁସୁମାୟୁଧରୁଚ—କନ୍ଦର୍ପସୁନ୍ଦର; ଅଞ୍ଚଳ—କାନି ପ୍ରଣତ । ୧୮ । ତାହାଙ୍କ ଚରମାଚରି—ଦାସୀଙ୍କ

ଶତମଖଭୂତଦାନେ । ନ ରଖିବ ଯେବେ ପଦକଞ୍ଜ ସନ୍ନିଧାନେ । ନାଗ୍ରି ନାଶ ଦୋଷ ପାଇ । ଭୁବନଭୂଷଣଦୋଷ ଦେଲଟି ବୁଡ଼ାଇ । ୨୦ । ତୁମ୍ଭ ନାମେ ପିଇବ ଅବଶ୍ୟ କାଳକୂଟ । ଗଳେ ଭଉଁହେବ ଅବା ଲଗି ଶେଷ ପଟ । ଲୀଳାବାପୀଗର୍ଭେ ଅବା । ପଡ଼ି ପ୍ରାଣ ଛାଡ଼ିବ ହେ ତରୁଣୀ-ମଘବା । ୨୧ । ଅହା କି ସୁନ୍ଦର ସୁକୁମାର ପ୍ରତିଅଙ୍ଗ । କି ନବୀନ ଯଉବନ କି ଲୋଲ ଅପାଙ୍ଗ । କି ମୃଦୁଳ ମନ୍ଦହାସ । ସୁଧାରୁ ଧାରିଛେ ତୁଲ୍ୟ ସ୍ୱାଦୁ ରଦବାସ । ୨୨ । କି ସରସଗଭୀର ସମ୍ଭାର ଭାଷାଭଙ୍ଗୀ । କି ପଟୁନାଟଲମ୍ପଟ ଭ୍ରୂବଲ୍ଲୀ ଭୁଜଙ୍ଗୀ । କେଉଁଠେ ସୁବାସିତ ତନୁ । ବଳିଥିବ ବାସନ୍ତିକ ଅରବିନ୍ଦ ବନୁଁ । ୨୩ । ପିଇ ନ ପାଇଲି ଯାହା ବିମ୍ବବତି କେହୁ । ଜୀବିତକୁ ଛାଡ଼ି ଦେହୀ ପାରିବ କି ରହୁ । ଉପାୟୁ ତ ଦିଶୁନାହିଁ । କି କରିବି କାହିଁ ଯିବ ରହିବଟି କାହିଁ । ୨୪ । ଦଣ୍ଡେକର ବିରହ ତ ହେଲା କଳ୍ପ ପର । ଶିବ ହେଲେ କି ରହି ପାରିବି ଦେହ ଧରି । ମନେ ପଡ଼ିଲେ ତ ଶଶୀ । ମାର୍ତ୍ତଣ୍ଡମଣ୍ଡଳ ପରି ଗଲାନି ଅଭ୍ରସି । ୨୫ । ପ୍ରଳୟ କାଳ ଅନଳ ଜ୍ୱାଳାରୁ ତ ମୋତେ । ମଳୟବନ ପବନ ହେଲାନି ପରତେ । ମଳୟଜ ଘନସାର । ଗୋଳା ହାଳାହଳଠାରୁ ହେଲାନି ଅସାର । ୨୬ । ଲଗିବାସ ଆସି ଆଶୀବିଷରୁ ବଳିଲା । କରପ୍ରାପ୍ୟ ସୁରତରୁ ଉପଳ ଫଳିଲା । ଭଲ ଭଲ ରେ ଲଲାଟ । ତୁଳିବା ବିଶୁଦ୍ଧ ହେମ ହେଲା ଆରକୂଟ । ୨୭ । ଧିକ ଧିକ ଅବିବେକ ହେ କମଳାସନ । ଭୋଗେ କରେ ଦେଇ ସୁଧା ସଦୃଶ ଅଶନ । ପୁଣି ନେବାର ଛଡ଼ାଇ । ଘେନ ତ ଏ କେଉଁ ବଡ଼ଲୋକର ବଡ଼ାଇ । ୨୮ । ପିତାମହ ହେବାରୁ କି ପରିହାସ କର । ଛପାଇ ରଖିଛ ମୋର ସଉଭାଗ୍ୟ-ଶଶି । ଏବେ ଅଣ୍ଟିଲା ନାହିଁ କି । ନାଗ୍ରି ମରିଯିବାଯାଏ କୁହ କାହିଁକି । ୨୯ । ତୁମ୍ଭେ ସତ୍ୟ ଲୋକନାଥ ପରା ଚତୁର୍ମୁଖ ।

---

ପଛରେ ରହିବା ଗୃହବଣୀ ବା ସ୍ୱାମୀ ଦାସୀ । ୨୦ । ଦରଶନସୁଖ—ଦର୍ଶନସୁଖରୂପ ରତ୍ନ ସମର୍ପି ଦେବାରେ । ୨୧ । କାଳକୂଟ—ବିଷ, ଲୀଳାବାପୀ—କ୍ରୀଡ଼ା ପୁଷ୍କରିଣୀ । ୨୩ । ସମ୍ଭାର—ପରିପୂର୍ଣ୍ଣତା (ଯୁକ୍ତ) । ୨୪ । ଶିବ—ଦୀର୍ଘକାଳସ୍ଥାୟୀ । ୨୬ । ମଳୟଜ—ଚନ୍ଦନ, ଘନସାର—କର୍ପୂର, ହାଳାହଳ—ବିଷ । ୨୭ । ଆଶୀବିଷ—ସାପ, ସୁରତରୁ—କଳ୍ପଲତା, ଉପଳ—ପଥର, ହେମ—ସୁନା, ଆରକୂଟ—ପିତ୍ତଳ । ୨୮ । କମଳାସନ—ବିଧାତା, ବ୍ରହ୍ମା; ଅଶନ—ଭୋଜନ । ୨୯ । ପିତାମହ—ବ୍ରହ୍ମା ଓ

ମିଥ୍ୟା କର ମୁଁ ସାକ୍ଷାତ ଭୋଗ କଲି ସୁଖ । ଜନନନ୍ଦାରୁ ନ ଡର । ପ୍ରଭୁ ହେଲେ ହେଲେ ନାକ ଏତେ ଅବଗୁର । ୩୦ । ଅଧୀରହିଁ ହେଲେ କରେ ପର ଉପକାର । ବଧିରହିଁ ହେଲେ ଶୁଣେ ଅତ ଉଇସ୍ୱର । ଶ୍ରୁତମୟୂ ଗୋଟିଯାକ । ହୋଇ ତ ନ ଶୁଣ ପରମାର୍ତ୍ତି ଜନ ଡାକ । ୩୧ । ଏପରେ ସେ ପରଶଇ ଶରଦନ୍ଦୁମୁଖୀ । ବକଳ ହୁଅନ୍ତେ ଚେତ କୁନ୍ଦଲତା ସଖୀ । ମୁଖ ପୋଛି କୋଳେ ଧର । ପଚ୍ଚରଲି କସ ରେ ଅଶ୍ରିତ ଜୀବେଶ୍ୱର । ୩୨ । ପୁନଃ ପୁଚ୍ଛୁ ସ୍ୱପ୍ନରେ କ ଦେଖିଲୁ କ କହ । କପଟ ନ କର ମୋରେ ଅଛି ଯେବେ ସ୍ନେହ । ମୋ ଶିରର ସବଡଟି । କହ କହ ରେ ତରୁଣକଣ୍ଠୀରବ-କଟି । ୩୩ । ପ୍ରାଣସଖୀ ବାଣ ଶୁଣି ବଳମ୍ବ ନ ସହ । ଦେଖାଇ ସମ୍ଭୋଗ ଚହ୍ନ ସ୍ୱପ୍ନଗ୍ରତ କହ । କହିଲ ରେ ସ୍ନେହଶୀଳା । ରଖ ମୋତେ ହୋଇ ଦୁଃଖତରଙ୍ଗିଣୀଭେଳା । ୩୪ । ଶୁଣି ତା ଚବୁକ ଧର ଜଣାଇଲ ସଖୀ । ଚନ୍ଦ୍ରଚୁଡ଼ ଚନ୍ଦ୍ରାକୁ ଭେଳ ଅଜନମସୁଖି । ଧାତା ଅଛି ଅନୁକୂଳ । ବକାଶକୁ ଅଛି ମାନ ତୋ ଭାଗ୍ୟମୁକୁଳ । ୩୫ । ରଜକୀ ନାପିତ୍ନୀ ଗୋପୀ ମାଲାକାରନାରୀ । ଏମାନଙ୍କଠାରୁ ମୁଁ ଶୁଣିଲି ତଥ୍ୟ କର । ତାତ ମହାରାଜ ପୁଣି । ତୋର ପରଣୟୁ ମଙ୍ଗଳକୁ ହୃଦେ ଗୁଣି । ୩୬ । ଅଙ୍ଗ ବରପକ ତଲୁ ଭଲ ମନ୍ତ୍ରୀ ତୁଲେ । ନଟରାଜ ନାମ ମାୟାବୀକ ଡକାଇଲେ । କଲେ ଏହ ଫରମାସ । ବୁଲବୁ ତୁ ନଜବଦ୍ୟା ଘେନ ସବୁ ଦେଶ । ୩୭ । ନୃପକୁଳେନ୍ଦ୍ରର ଯେତି ପ୍ରଥମ ତନୁଜ । ରୂପକୁ ଯାହାର ଊଣା ହେବ ମନସିଜ । ବାହୁଯୁଗଳୀର ବଳେ । ଜୟୁକେର ଯିବ ଧନଞ୍ଜୟୁକୁ ଯେ ହେଲେ । ୩୮ । ବୀରସେନସୁତ ହାର ଯା ସାଦୀପଣରୁ । ବରସେ ନ ବାହାବବେ କୁଟ୍ଟିମକୋଣରୁ । ଜାଣି ପଉଗଣ୍ଡ ଶେଷ । ହୋଇଥିବ ଯାର କୈଶୋରତା ପରବେଶ । ୩୯ । ସର୍ପରାଜଦର୍ପ ଯହିଁ ବଦ୍ୟା ହରଥିବ । ବତରଣଶାଳଗୁଣେ ଇତର ନ ଥିବ । ଊଣା ହେବେ କଣ୍ଡ ବଳା । କ୍ଷମାଗୁଣେ କ୍ଷମାରୁ ଯେ ପଡ଼ୁଥିବ ବଳ । ୪୦ । ରବିଛବ

(ପିରହାସ ପ୍ରିୟୁ) ପିତାଙ୍କ ପିତା, କୁଗ୍ରହ—କୋପ । ୩୧। ଅଧୀର—ମୂର୍ଖ, ବଧିର—କାଲ, ଶ୍ରୁତମୟୂ—ବେଦଜ୍ଞ ଅଥଚ ବହୁକର୍ଣ୍ଣଯୁକ୍ତ, ପରମାର୍ତ୍ତି—ଅତଦୁଃଖିତ । ୩୩ । ମୋ ଶିରର ସବଡଟି—ମୋ ମୁଣ୍ଡ ରାଣ । ୩୫ । ବନା—ଅଭ୍ରବ । ୩୮ । ଧନଞ୍ଜୟୁ—ଅର୍ଜୁନ ବା ଅଗ୍ନି । ୩୯ । ବୀରସେନସୁତ—ନଳରାଜା, ସାଦୀପଣ—ଅଶ୍ୱାରୋହଣ, ବରସେ—ଦୁଃଖରେ, କୁଟ୍ଟିମକୋଣ—ଚୁଡ଼ଆ ଘରର କୋଣ, ପଉଗଣ୍ଡ—ଦଶମବର୍ଷପର୍ଯ୍ୟନ୍ତ ଅବସ୍ଥାକୁ ପୌଗଣ୍ଡ କହନ୍ତି । ୪୦। ବତରଣଶାଳଗୁଣ—

କରୁଥିବ ପ୍ରତାପ ଯାହାର । ସମାନ ଶୀତଳଗୁଣେ ଯାହାର ନୀହାର । ମନ୍ଦେ ଜୀବପ୍ରତଭଟ୍ଟ । ଯେହୁଁଟି ଧାର୍ମିକ ସାଧୁ ସଂସର୍ଗଲମ୍ପଟ୍ଟ । ୪୧ । ଅନୀତି ଲୋଲୁପ ପରଦାରାଧନ ରତ । ଦୁଷ୍ଟ ଲମ୍ପଟ ମିଥ୍ୟାବାଦୀ ଅପଣ୍ଡିତ । ଯାହା ସଭାରେ ନ ଥିବେ । ଯା ହାସ ଅଧରୁ ବକ୍ର ନ ଥିବଟି ଲବେ । ୪୨ । ଦେବ କ୍ଷିତିଦେବ ଗୁରୁ ବଇଷ୍ଣବ ଜନ । ସେବନରେ ଶକ୍ତ ହୋଇଥିବ ଯାର ମନ । କର୍ଣ୍ଣପ୍ରିୟ ମୃଦୁଭାଷା । ଯାହା ମୁଖ ରଚୁଥିବ ପୀୟୂଷବରଷା ।୪୩। ସଙ୍ଗୀତେ ଗନ୍ଧର୍ବ ଗର୍ବ ଦେଉଥିବ ଚୁର । ଯାହା ଧୃତି ହୋଇଥିବ ମଣିସାନୁ ସର । ହୋଇଥିବ ମହୋଦ୍ୟମ । ଅମ୍ଭୋଧିରୁ ବଳିଥିବ ଗମ୍ଭୀରତା ପୁଣ । ୪୪ । ଅସଂଖ୍ୟକ ହୟ ଗଜ ସଂଭଜ ଯାହାର । ରମାରତିବନ୍ଧୁ ନାମ କଦମ୍ବ ଯାହାର । ଷଟ୍ ପଞ୍ଚାଶତ ଦେଶ । ଲିପିଭାଷା ଜାଣିବାରେ ଯେହୁଁଟି ଅସଦୃଶ । ୪୫ । କେଉଁ ଦେଶେ ଥିବ ଏହୁ ବରବର ବର । ତାହା ଅଗେ ପ୍ରକାଶ ତୋ ସମସ୍ୟା ଶାବର । ମାୟା କେମା ତୁଲେ ତାକୁ । ଭେଟ କରାଇବୁ ଦୃଶ୍ୟ ନୋହିବ କାହାକୁ । ୪୬ । ତହୁଁ ଅମ୍ଭ ଅଗେ ତାହା କରିବୁ ପ୍ରକଟ୍ଟ । ନବ ଯୁବରାଜବ୍ୟାଜରୂପ ରମ୍ୟନାଟ୍ଟ । ସରମାସି ଏହୁପର । ପେଷିଥିଲେ ପୁଣି ତୋ ଜନକ ଦଣ୍ଡଧାରୀ । ୪୭ । ସେ ସେହିପ୍ରକାରେ ଯାଇ ମହାରାଜଘୋଷ । କରିଥିବ ନିଜ ବ୍ୟାଜ ବିଦ୍ୟାର ପ୍ରକାଶ । ସ୍ୱପ୍ନଭୋଗପର ତୋର । ଲଭିଥିବ ତୋ ସଙ୍ଗତ ସେ ରାଜକୁମାର । ୪୮ । ମାୟାଶେଷେ ତୋ ବିରହାନଳ ଶ୍ୱାସ ବାଜି । ରାଜସୁନ୍ଦ ତନ୍ଦ୍ର ହୋଇ ଯାଇଥିବ ଭାଜି । ତାହା ଜାଣି କୃପା କର । ଦୁଇକୁଳ ଇଷ୍ଟଦେବୀ ତ୍ରିପୁରସୁନ୍ଦରୀ । ୪୯ । ସ୍ୱପନ ସଙ୍ଗମ ମହୋତ୍ସବବୀଜନାଶା । କଳ୍ପିଥିବେ ସେ ତ କଳ୍ପବଲ୍ଲରୀ ସଦୃଶା । ଧନ ମନ୍ତ୍ର ତାପ ତେଜ । ଅବଶ୍ୟ ହୋଇବେ ଅନୁକୂଳ ହଂସଧ୍ୱଜ । ୫୦ । କେମାମଣି ଶୁଣି ସଖୀ ଦେବାର ଦିଲାସା । ଧୃତବୀଜ ନିଜ ଜୀବିତରୁ ଛାଡ଼ି ଅଶା । କର୍ମି ଗଲ ରଦାମ୍ବର । ଅଶ୍ରୁ ବିନ୍ଦୁ ତନ୍ତ୍ରାଇଲା କୁରଙ୍ଗ ଅମ୍ବର । ୫୧ । ବାଳା ଦୁଃଖ ଦେଖି ସଖୀ ଦୁଃଖିତା ହୋଇଲା । ଶୀତବାସ

---

ଦାତୃତ୍ୱ, ନୀହାର—ତୁଷାର, ମନ୍ଦେ ଜୀବପ୍ରତଭଟ୍ଟ—ମନ୍ଦବିଦ୍ୟାରେ ବୃହସ୍ପତିଙ୍କ ସମାନସ୍କନ୍ଧ । ୪୩ । କ୍ଷିତିଦେବ—ବ୍ରାହ୍ମଣ, ସେବନରେ—ସେବା କାର୍ଯ୍ୟରେ । ୪୪ । ଧୃତି—ଧୈର୍ଯ୍ୟ, ମଣିସାନୁ—ସୁମେରୁ ପର୍ବତ, ଅମ୍ଭୋଧି—ସମୁଦ୍ର ।୪୫। ରମା-ରତି···ବିଷ୍ଣୁ ଓ କନ୍ଦର୍ପଙ୍କ ନାମସମୂହ ମଧ୍ୟରୁ ଯାହାର ଗୋଟିଏ ନାମ ହୋଇଥିବ । ୪୬ । ସମସ୍ୟା ଶାବର—କର୍ତ୍ତବ୍ୟ, ଇନ୍ଦ୍ରଜାଲ ବିଦ୍ୟା । ୪୮ । ବ୍ୟାଜବିଦ୍ୟା—କପଟବିଦ୍ୟା, ଇନ୍ଦ୍ରଜାଲ ।୫୦। ହଂସଧ୍ୱଜ—ବ୍ରହ୍ମା ।୫୧। ଦିଲାସା—ସାନ୍ତ୍ୱନା, ଅଶା—

ଜଳେ ତାର ଶ୍ରୀମୁଖ ଧୋଇଲା । ପଗ୍ଭରଲା ରେ ତରୁଣୀ । ସୁଖକାଳେ ଦୁଃଖ କାହିଁ ଶୁଣା ଅଛୁ ପୁଣି । ୫୨ । ମୋ ଅନତି ସୁଧାଘଟୀଭ୍ରୁଲ୍ଲିପ୍ତନା କହ । ଜଣାଣରେ ମୋର କଷ୍ଟ ହେଲା କ ସନ୍ଦେହ । କାହିଁପାଇଁ ନେତ୍ରକଞ୍ଜ । ବରଷେ ଅଞ୍ଜନମାଳ ଅଶ୍ରୁବିନ୍ଦୁପୁଞ୍ଜ । ୫୩ । ନ ସହ ସଖୀ ଶପଥ ଭାଷିଲା କଶୋଷୀ । ନିବାହ ସରକ ନିକ ନ ଯିବ ମୁଁ ସର । ଜଳେ ଭାସିଲାନି ପ୍ରାଣୀ । ତରୀ କରବାକୁ ବାଞ୍ଛା କରୁଛୁ ବିଜ୍ଞାଣୀ । ୫୪ । ଅଙ୍ଗୀକୃତ ଭଙ୍ଗୀ ସନ୍ଦେଶରେ ପୂରଥିବ । ଦୂରେ ଥାଉ ହର ଦରଶନ ମହୋତ୍ସବ । ନ ଦେଖିଲେ ପ୍ରିୟ ଲେଖ । ସ୍ୱପନକୁ ସତ ମଣି ଲଭିବ କେ ସୁଖ । ୫୫ । ଶୁଣି କୁନ୍ଦଲତା ଜଣାଇଲା କର ଯୋଡ଼ି । ମାନସରୁ ସରୁମଧ୍ୟା ଦିଅ ଚନ୍ତା ଛାଡ଼ି । ଗୁପ୍ତେ ଜଣାଣ ଲେଖିବା । ଅଭୀଷ୍ଟ ଶ୍ରୀହସ୍ତ ଲେଖା ଚାଟାଉ ଦେଖିବା । ୫୬ । ଶିଗ୍ରପାଙ୍ଗୀ ଅଙ୍ଗୀକାର କଲା ଏ ବଗ୍ଭର । ବଗ୍ଭର ଚତୁରତର ସବଶ୍ୱାସ ଗ୍ଭର । ଗ୍ଭହିଁ ସ୍ୱର୍ଣ୍ଣ ପୂର୍ଣ୍ଣକୁମ୍ଭ । କଲେ ସବନୟ ଶୁଭ ଚାଟାଉ ଅରମ୍ଭ । ୫୭ । ଏ ଛାନ୍ଦରେ ଅଷ୍ଟୋତ୍ତର ପଞ୍ଚାଶତ ପଦ । ସ୍ୱପନ ସମ୍ଭୋଗ ନାମ ଧେନବ କୋବଦ । ଜଳନ୍ତର ସଂକ୍ରନ୍ଦନ । ଶ୍ରୀରାମଚନ୍ଦ୍ର ଚରଣେ ରଚଲେ ବନ୍ଦନ । ୫୮ ।

---

---

ଲାଲ ରଦାମ୍ବର—ରକ୍ତବର୍ଣ୍ଣ ଅଧର । ୫୩ । ଅନ—ସ୍ୱଣ । ୫୪ । ନିବାହ ସରକ—ସମ୍ପାଦନ ଯାଏ ( ବବାହ ଯାଏ ), ତରୀ କରବାକୁ—ନୌକା ନର୍ମାଣ କରବାକୁ, ବିଜ୍ଞାଣି—କାରଗର । ୫୭ । ସବଶ୍ୱାସ—ବଶ୍ୱସ୍ତ, ଗ୍ଭର—ଦୂତ । ୫୮ । କୋବଦ—ପଣ୍ଡିତ, ସଂକ୍ରନ୍ଦନ—ଇନ୍ଦ୍ର ।

---

---

ମୁଦ୍ରାକର—ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, କଟକ ପବ୍‌ଲିଶିଂ ପ୍ରେସ୍, କଟକ—୧୯୬୦